ଉପେନ୍ଦ୍ର ଭଞ୍ଜଙ୍କ କୃତ —

# ବୈଦେହୀଶବିଳାସ



ସୁବିଖ୍ୟାତ କବି
ଉପେନ୍ଦ୍ରଭଞ୍ଜଙ୍କ ବିରଚିତ

# ବୈଦେହୀଶବିଳାସ

## ଚତୁର୍ଥ ଖଣ୍ଡ

ସଂସ୍କୃତ ବିଶାରଦ ପଣ୍ଡିତବର୍ଗଙ୍କ ଦ୍ୱାରା
ସରଳାର୍ଥ ଓ ଟୀକା ସହିତ ସଂଶୋଧିତ

ପ୍ରକାଶକ—ଶ୍ରୀ ଗୌରଚନ୍ଦ୍ର ଦାସ୍
ଝଠବନ୍ ସାହି, କଟକ

ପ୍ରାପ୍ତିସ୍ଥାନ
ଓଡ଼ିଶା ଜଗନ୍ନାଥ କମ୍ପାନୀ
ଶ୍ରୀ ଜଗନ୍ନାଥ ସିଂହ
ବାଲୁବଜାର୍ ଡାଃ ପୋଃ ଚାନ୍ଦନୀଚୌକ
କଟକ




## ଚତ୍ୱାରିଂଶ ଛାନ୍ଦ

ରାଗ—ଆଶାବରୀ

ବଳିଲା ରାଘବ ଆଶା ସୀତା ପ୍ରାପତରେ
ବିଚାରିଲେ ସିନ୍ଧୁ ପୋତ ହିବା ପର୍ବତରେ ଯେ । ୧ ।
ବୁଡ଼ିଗଲା ପକାଇଲେ କପି ଯେତେ ଗିରି ।
ବୁଦ୍‌ବୁଦ ନ ଦିଶେ ଜଳ ଫେଣୀକୃତ କରି ଯେ । ୨ ।

---

ଚତ୍ୱାରିଂଶ ଛାନ୍ଦ

୧ମ ପଦ—ରାଘବ ( ରାମଙ୍କର ) ସୀତା ପ୍ରାପତରେ ( ସୀତାଙ୍କୁ ପାଇବାରେ ) ଆଶା ( ତୃଷ୍ଣା ) ବଳିଲା "ବିଭୀଷଣ ଶରଣ ପଶିବାରୁ ଏହିଭଳି" । ସିନ୍ଧୁ ( ସମୁଦ୍ରକୁ ) ପର୍ବତରେ ପୋତହିବା "ଏମନ୍ତ" ବିଚାରିଲେ । ୧ ।

୨ୟ ପଦ—କପି ( ଋକ୍ଷ କପିମାନେ ) "ସମୁଦ୍ରରେ" ଯେତେ ଗିରି ( ବୃକ୍ଷ ପର୍ବତ ) ପକାଇଲେ "ସେ ସବୁ" ବୁଡ଼ିଗଲା । ବୁଦ୍‌ବୁଦ ( ପାଣି-ଫୋଟକା ) ନ ଦିଶେ ( ନ ଦିଶିଲା ) । ଜଳ ଫେଣୀକୃତ ( ଫେଣମାନ ହେବାରୁ ) "ବହୁତ ଜଳଥିବା" ପରି ଅନୁମାନ ହେଲା । ୨ ।

ବିସ୍ମୟ ନିଃଶ୍ୱାସ ତେଜି ବରୁଣ ପ୍ରସନ୍ନେ ।
ବିନାଶନରେ ଶୟନ ସେ ଦର୍ଭଶୟନେ ଯେ । ୩ ।
ବୁଧେ ଶୁଣ ଆନ ପ୍ରସଙ୍ଗକୁ ଦଶଗିର ।
ବରଗିଲ ସେ ଶୁକ ସାରଣ କରି ଗୂଢ଼ ଯେ । ୪ ।
ବିଭୀଷଣେ କହ ଜ୍ୟେଷ୍ଠଭ୍ରାତା ପିତା ସରି ।
ବୁଝି ନ ବୁଝି କୋପୀ ତା ବାଣୀ ପିତା କରି ଯେ । ୫ ।
ବିଭୂତିକି ଭୁକ୍ତ ଥିଲୁ ବିଭୂତିଭୂଷଣେ ।
ବଡ଼କୁଳେ ଜନମି ଶରଣ କି କାରଣେ ଯେ । ୬ ।

---

୩ୟ ପଦ—ପର୍ବତମାନେ ବୁଡ଼ିଯିବାରୁ ହେ (ରାମ) ବିସ୍ମୟ "ହୋଇ" "ଦୀର୍ଘ" ନିଃଶ୍ୱାସ ତେଜି ( ଛାଡ଼ିଲେ) ବରୁଣ "ଦେବତା" ପ୍ରସନ୍ନେ ( ପ୍ରସନ୍ନ ହେବା ଅର୍ଥେ ) ବିନାଶନରେ ( ଉପବାସରେ ରହି ) ଦର୍ଭଶୟନେ ( କୁଶ-ଶଯ୍ୟାରେ ) ଶୟନ "କଲେ" । ୩ ।

୪ର୍ଥ ପଦ—ବୁଧେ (ହେ ପଣ୍ଡିତମାନେ) "ଏ ଉତ୍ତାରୁ" ଆନ ( ଅନ୍ୟ ) ପ୍ରସଙ୍ଗକୁ ଶୁଣ । ଦଶଗିର ( ରାବଣ ) ଶୁକ, ସାରଣ ( ଏ ଦୁଇ ମନ୍ତ୍ରୀଙ୍କ ) ଗୂଢ଼ କରି ବରଗିଲ ( ପଠାଇଲା ) । ୪ ।

୫ମ ପଦ—ତାଙ୍କୁ କହିଲା "ଏ କଥା" ବିଭୀଷଣେ ( ବିଭୀଷଣକୁ ) କହ ( କହିବ ) * ଜ୍ୟେଷ୍ଠଭ୍ରାତା ( ବଡ଼ଭାଇ ) ପିତା ସରି ( ସମାନ ) "ସେ ଏମନ୍ତ" ବୁଝି ବା ନ ବୁଝି କୋପୀ ( କ୍ରୁଦ୍ଧ ହୋଇ ! "କିଛି କହିଲା" ତା ( ତାହାର ) ବାଣୀ ( କଥାକୁ ) ପିତା ( ପିତାଦ୍ରବ୍ୟ ପରି ) କରି ( କଲ ) କିମ୍ବା ତୁମ୍ଭେ ଏମନ୍ତ ବୁଝି ପୁଣି ନ ବୁଝି କରି କୋପୀ ( କୁପିତ ହୋଇ ) ତା ବାଣୀ ( ତାହାଙ୍କ କଥାକୁ ) ପିତା ( ଚିନ୍ତାର୍ପିତ ଅରୋଚକ ) କଲ । ୫ ।

୬ଷ୍ଠ ପଦ—"ବୋଲିବ" ବିଭୂତିକି ( ଐଶ୍ୱର୍ଯ୍ୟ ) ଭୁକ୍ତ ଥିଲୁ ( ଭୁଞ୍ଜୁଥିଲୁ ) ବଡ଼କୁଳେ ( ଉଚ୍ଚ ବଂଶରେ ) ଜନମି ( ଜାତ ହୋଇ ) କି କାରଣେ ବିଭୂତିଭୂଷଣେ ( ତପସ୍ୱି ଜନରେ ) ଶରଣ "ପଶିଲୁ" । ଏ କଥା ଅନୁଚିତ ଏହିଭାବ । ୬ ।

---

*—ଜ୍ୟେଷ୍ଠଭ୍ରାତା ପିତୁଃ ସମ ଇତି ।

ବୋଲ ଅଙ୍ଗଦକୁ ତାତ-ଶତ୍ରୁ-ଭକ୍ତ ପୁଣ୍ୟ
ବାଦ ରଚାଇ ପିତୃବ୍ୟ ବାହୁଡ଼ାଅ ସୈନ୍ୟ ଯେ । ୭ ।
ବିହାୟସେ ବିହରି ସାଗର ଜିଣି ଯାଇ ।
ବର୍ତ୍ତିକ ସ୍ୱରୂପ ଧୃତ କେ କେତି ହୋ କହି ଯେ । ୮ ।
ବିଖ୍ୟାତ କରି ବିଂଶତ-କର କହିବାର ।
ବିଧଭୟ ଉଭୟରେ ପଳାଇ ତତ୍ପର ଯେ । ୯ ।
ବାହୁଡ଼ି ରାବଣେ କହି ଶୁଣ ଦେବରିପୁ ।
ବୋଇଲେ ଅନୁଜ ଯିବ ସୀତାଙ୍କୁ ସମର୍ପୁ ଯେ ।୧୦।

---

୭ମ ପଦ—ଅଙ୍ଗଦଙ୍କୁ ( ବାଳିପୁତ୍ରଙ୍କୁ ) ବୋଲ ( କହିବ ) ତାତ-ଶତ୍ରୁ ( ପିତା ଶତ୍ରୁଠାରେ ) ଭକ୍ତ "କରିବାର" ପୁଣ୍ୟ କି ? "କେବଳ ପାପ ହୁଏ" ଏଣୁ ୧ ପିତୃବ୍ୟ ( ସୁଗ୍ରୀବ ସଙ୍ଗେ ) ବାଦ ( ବିବାଦ ) ରଚାଇ ( କରାଇ ) ସୈନ୍ୟ ବାହୁଡ଼ାଅ ( ଫେରାଇ ନିଅ ) । ୭ ।

୮ମ ପଦ—"ଏମନ୍ତ ରାବଣ କହିବାରୁ ସେ ମନ୍ତ୍ରୀ ଦୁହେଁ" ବିହାୟସେ ( ଆକାଶରେ ) ବିହରି ସାଗର ଜିଣି ଯାଇ ବର୍ତ୍ତିକ ( ଡେଣ୍ଢୋଇ ପକ୍ଷୀ ) ସ୍ୱରୂପ ଧୃତ ( ଧରି ) କେ କେ ତି ହୋ କହି ( ତୁମ୍ଭେ କେ କେ ଏମନ୍ତ ବୋଲି ପଚାରିଲେ ) । ୮ ।

୯ମ ପଦ—ବିଂଶତକର ( ରାବଣ ) କହିବାର କଥା ବିଖ୍ୟାତ କରି ( ପ୍ରକାଶ କରି ବିଭୀଷଣ ଅଙ୍ଗଦଙ୍କୁ କହନ୍ତେ ) ସେ ଉଭୟରେ ( ସେ ମନ୍ତ୍ରୀ ଦୁହିଁଙ୍କଠାରେ ) ବିଧଭୟ ( ବିନାଶ ଭୟ ) ଅଙ୍ଗଦ ହେତୁରୁ "ହେବାରୁ" ସେ ଦୁହେଁ ତତ୍ପର ହୋଇ ପଳାଇ ( ଶୀଘ୍ର ପଳାଇଲେ ) । ୯ ।

୧୦ମ ପଦ—ବାହୁଡ଼ି ( ଫେରିଆସି ) ରାବଣେ ( ରାବଣକୁ ) କହି ( କହିଲେ ) ହେ ଦେବରିପୁ ଶୁଣ । ଅନୁଜ ( ତୁମ୍ଭ ସାନଭାଇ ) ବୋଇଲେ ସୀତାଙ୍କୁ ସେ ସମର୍ପୁ ମୁଁ ଯିବ । ୧୦ ।

---

୧ ପିତୁର୍ଭ୍ରାତା ପିତୃବ୍ୟଃ ସ୍ୟାଦ୍ଭ୍ରାତୃ୍ୟମରଃ ।

ବାଞ୍ଛିଲୁଁ ଅଙ୍ଗଦେ ଅଙ୍ଗ ଦେବାରେ କ ଧର୍ମେ ।
ବଜ୍ରାଘାତ ସମ ତଳ ପ୍ରହାରିଲ ବ୍ୟୋମେ ଯେ । ୧୧ ।
ବାଜଥିଲେ ଚୂର୍ଣ୍ଣ ବା ପାତାଳେ ଭଜିଥିବ ।
ଭାନୁ ଭାନୁ ତୋଷୀ ହେବ ବଞ୍ଚାଇ ଦଇବ ଯେ । ୧୨ ।
ବଳ କେତେ ବୋଲୁଁ ବୋଲେ ଯେତେ ଶଙ୍ଖ ସେହି ।
ବାରିରାଶିରେ ଜନତ ତେତେ ଶଙ୍ଖ ନାହିଁ ଯେ । ୧୩ ।

---

୧୧ଶ ପଦ—ଅଙ୍ଗଦେ ( ବାଳି ପୁତ୍ରଠାରେ ) ୧ ଅଙ୍ଗ 'ଦେବାରେ ( ତୁମ୍ଭ କହିବ କଥା ପୁନରପି କହିବାରେ ) କ ଧର୍ମେ ( କେଉଁ ଧର୍ମକର୍ମରୁ ) "ଆମ୍ଭେ" ବାଞ୍ଛିଲୁଁ । ବ୍ୟୋମେ ( ଆକାଶରେ ) ବଜ୍ରାଘାତ ସମ ୨ ତଳ ( ଚାପୁଡ଼ା ) "ଆମ୍ଭଙ୍କୁ" ପ୍ରହାରିଲ । ୧୧ ।

୧୨ଶ ପଦ—"ସେ ଚାପୁଡ଼ା" ବାଜଥିଲେ ବିନ୍ଧ୍ୟ ଗିରି ଚୂର୍ଣ୍ଣ ହୋଇ-ଥିବ ବା ପାତାଳ ଭଜିଥିବ ( ପାତାଳେ ପଶିଥିବ ) । ଭାନୁ ( ସୂର୍ଯ୍ୟ ) ତୋଷୀ ( ସନ୍ତୁଷ୍ଟ ) ହେବ । "କାରଣ ? ରାମଙ୍କର ପ୍ରତିବନ୍ଧ ନୋହିବ ବୋଲି" । "କିନ୍ତୁ ଆମ୍ଭଙ୍କୁ" ଦଇବ ( ବିଧାତା ) ବଞ୍ଚାଇ ( ବଞ୍ଚାଇଲା ) "ଆମ୍ଭ ଦେହରେ ନ ବାଜିଲା ବାଜଥିଲେ ମରିଥାନ୍ତୁ" । ୧୨ ।

୧୩ଶ ପଦ—"ଏମନ୍ତ ଶୁଣି ରାବଣ" ବଳ (ସୈନ୍ୟ) କେତେ ବୋଲୁଁ (ପଚାରନ୍ତେ) "ମନ୍ତ୍ରୀ" ବୋଲେ ସେହି ସୈନ୍ୟ ଯେତେ "ଯେତେ ସଂଖ୍ୟକ ଶଙ୍ଖ ତେତେ ୧ ଶଙ୍ଖ ବାରିରାଶିରେ ( ସମୁଦ୍ରରେ ) ଜନତ ( ଜନ୍ମ ) ହୋଇ ନାହିଁ । ୧୩ ।

---

୧—ପୁନରର୍ଥେଽଙ୍ଗନାଦାସ୍ତ୍ରାଂ କୁଷ୍ଟଚୁଷ୍ଟ ବ୍ରଣ'ମନେ ଇତ୍ୟମରଃ ।
୨—ତଳଂସ୍ୱରୂପାଧରସ୍ତ୍ୱୋ ଖଡ଼୍ଗମୁଷ୍ଟି ଚ ପେଃସ୍ତ୍ୱୋ ଶବ୍ଦବର୍ଣ୍ଣଃ ॥
୧—ଏକଂ ଦଶଂ ଶତଂ ଚୈବ ସହସ୍ରମୟୁତଂ ତଥା ।
ଲକ୍ଷଂ ଚ ନିୟୁତଂ ଚୈବ କୋଟି ମର୍ବୁଦମେବଚ ।
ବୃନ୍ଦଂ ଖର୍ବଂ ନିଖର୍ବଂ ଚ ଶଙ୍ଖଂ ପଦ୍ମଂ ଚ ସାଗରମେବ ରାଜଗଣିତେ ।

ଉତ୍ତରଣେ ସାଗର କି ପାଞ୍ଚ ପଚାରିଲ ।
ଉଦ୍ଦେ ରାମ କୁଶଶଯ୍ୟା ପ୍ରତ୍ୟୁତ୍ତର ଦେଲା ଯେ ।୧୪।
ବିରସକୁ ମନ୍ଦ କରି ମନ୍ଦହାସ ଜନ୍ମେ ।
ବୋଲେ କି କରିବ ଏଡ଼େ ହୀନ ପରାକ୍ରମେ ଯେଁ ।୧୫।
ବୁଧେ ଶୁଣ ଆନରସ ରଘୁନାଥ ଉଠି ।
ବିରକ୍ତ ହୋଇଣ କରିଛନ୍ତି ରକ୍ତଦୃଷ୍ଟି ଯେ ।୧୬
ବିକସିତ କାଳନ୍ଦୀରେ କୋକନଦ ମତ ।
ବିଚଳିତ ଭ୍ରୂବଲ୍ଲିକା ଶୈବାଳ ଯେମନ୍ତ ଯେ ।୧୭।
ବିପୁଳ ଗୁଣପରେ କରି ହେବାରୁ ସଂଯୁତ ।
ବୀଚି ହସ୍ତ ଉଲ୍ଲୋଳିତ କାଣ୍ଡ-ପୂର୍ଣ୍ଣ ସତ ଯେ ।୧୮।

---

୧୪ଶ ପଦ—"ପୁଣି" ପଚାରିଲା ସାଗର ଉତ୍ତରଣେ (ସମୁଦ୍ର ତରିବା ଉଦ୍ଦେଶ୍ୟରେ) କି ପାଞ୍ଚ (ବିଚାର) କରୁଅଛ । "ତହିଁକି ସେ" ପ୍ରତ୍ୟୁତ୍ତର ଦେଲା ରାମ କୁଶଶଯ୍ୟା ଉଦ୍ଦେ (କୁଶଶଯ୍ୟା କରି ସମୁଦ୍ରକୁ ପ୍ରାର୍ଥନା କରୁଅଛନ୍ତି) ।୧୪।

୧୫ଶ ପଦ—"ରାମ ସୈନ୍ୟ ଯେନ ସମୁଦ୍ରକୂଳରେ ରହିବା ଶୁଣି ଜାତ ହୋଇଥିବ।" ବିରସକୁ ମନ୍ଦ (ଊଣା) କରି ମନ୍ଦହାସ (ଈଷତ୍‌ହାସ) ଜନ୍ମେ (ଜନ୍ମିଲା) । ବୋଲେ ପରାକ୍ରମେ (ପରାକ୍ରମରେ) ଯେ ଏଡ଼େ ହୀନ ସେ ମୋହର କି କରିବ ।୧୫।

୧୬ଶ ପଦ—ହେ ବୁଧେ (ହେ ବୁଧଜନମାନେ) ଏବେ ଆନ (ଅନ୍ୟ) ରସ ଶୁଣ । "ବରୁଣ ପ୍ରସନ୍ନ ନୋହିବାରୁ" ରଘୁନାଥ (ରାମ) ଉଠି (କୁଶ ଶଯ୍ୟା ଛାଡ଼ି) ବିରକ୍ତ ହୋଇଣ (ହୋଇ) ରକ୍ତଦୃଷ୍ଟି କରିଛନ୍ତି ।୧୬।

୧୭ଶ ପଦ—"ସେ ରକ୍ତଦୃଷ୍ଟି" କାଳନ୍ଦୀରେ (ଯମୁନା ନଦୀରେ) କୋକନଦ (ରକ୍ତୋତ୍ପଳ) ବିକସିତ "ହେଲାପରି" ମତ (ପ୍ରସିଦ୍ଧ ହୋଇ-ଅଛି) । ଭ୍ରୂବଲ୍ଲିକା (ଭ୍ରୂଲତା) ବିଚଳିତ "ହେବାରୁ" ଶୈବାଳ (ଶିଉଳି) ଯେମନ୍ତ "ସେମନ୍ତ ଦିଶୁଅଛି" ।୧୭।

୧୮ଶ ପଦ—ବିପୁଳ (ବଡ଼) ଗୁଣପରେ (ଧନୁରୂପ ନୌକା) କର (ଦ୍ୱାରା) ସଂଯୁତ (ସଂଯୁକ୍ତ) ହେବାରୁ ତହିଁରେ ଉଲ୍ଲୋଳିତ ହସ୍ତରୂପ ବୀଚି

ବୋଲନ୍ତି ପୃଥ୍ୱୀନାଶକ ଦୈତ୍ୟଙ୍କୁ ଲୁଗୃଜ ।
ବିରଚି କବନ୍ଧନାଟ ଜନଙ୍କୁ ଉଗ୍ରଜ ଯେ ।୧୯।
କହନ୍ତି ଜ୍ୟା-ଜାମାତା ମୁଁ ଦୈତ୍ୟାରି ବୋଲାଇ ।
ବଧି କବନ୍ଧ କରିଛି ଯିବୁ ଆଜ କାହିଁ ଯେ ।୨୦।
ବାଟ ଦେଖା ଆଗେ ତୁ ନୋହିଲେ ହେବୁ ଲୋପ ।
ବ୍ୟାକରଣ ସାଧନରେ ବର୍ଣ୍ଣର ସ୍ୱରୂପ ଯେ ।୨୧।

---

(ଲହସି), ୧ କାଣ୍ଡ (ଶରରୂପ ଜଳ) ପୂର୍ଣ୍ଣ ହେବା ସତ । ବୃନ୍ଧିବାପାଇଁ ଧନୁରେ ଶର ଯୋଚଲେ ଏହିଭାବ ।୧୮।

୧୯ଶ ପଦ—"ରାମ ସମୁଦ୍ରକୁ ବାନ୍ଧି" ବୋଲନ୍ତି ତୁ ପୃଥ୍ୱୀ ନାଶକ "ଯେଣୁ" ଦୈତ୍ୟଙ୍କୁ ଲୁଗୃହ (ଲୁଚାଇ ରଖୁ) ୧ କବନ୍ଧ (ଯୁଦ୍ଧରେ ଛିନ୍ନ-ମସ୍ତକ ଜନ) ନାଟ "କଳ୍ପରି" ୨ କବନ୍ଧ (ଜଳ) ନାଟ ବିରଚି ଜନଙ୍କୁ ଉଗ୍ରହ ।୧୯।

୨୦ଶ ପଦ—ମୁଁ ୧ ଜ୍ୟା (ପୃଥିବୀର) ୨ ଜାମାତା (ଜ୍ୱାଇଁ) "ବୋଲି" କହନ୍ତି (ଲୋକରେ କଥିତ) "ପୁଣି" ଦୈତ୍ୟାରି (ଦୈତ୍ୟ ଶତ୍ରୁ) ବୋଲାଇ, କବନ୍ଧ ଦୈତ୍ୟକୁ ବଧ କରିଛି, ଏଣୁ ତୁ ମୋର ସମ୍ମୁଖେ ଶତ୍ରୁ ହେଲୁ ତୋତେ ଯିବାଲାଗି ଆଜ କାହିଁ ଯିବୁ ।୨୦।

୨୧ଶ ପଦ—ତୁ ଆଗେ (ଆଗ ହୋଇ) ବାଟ ଦେଖା, "ନୋହିଲେ" ବ୍ୟାକରଣ ସାଧନରେ ୧ ବର୍ଣ୍ଣର ସ୍ୱରୂପ (ଲୋପ ହେଲାପରି) ଲୋପ (ନାଶ) ହେବୁ ।୨୧।

---

୧—କାଣ୍ଡୋଽସ୍ତ୍ରୀ ଦଣ୍ଡବାଣାର୍ବବର୍ଗାବସରବାରିଷୁ ଇତି ।
୧—କବନ୍ଧୋଽସ୍ତ୍ରୀ କ୍ରିୟା ଯୁକ୍ତ ମପମୂର୍ଦ୍ଧକଳେବର ମିତି ।
୨—କବନ୍ଧମୁଦକ ପାଥ ଇତ୍ୟମରଃ ।
୧—କ୍ଷୋଣୀଜ୍ୟା କାଶ୍ୟପୀ କ୍ଷିତି ଇତ୍ୟମରଃ ।
୨—ଜାମାତା ଦୁହିତୁଃ ପତି ଇତ୍ୟମରଃ ।
୧—ଏଦୋତ୍ପରଃ ପଦାନ୍ତେ ଲୁପ୍ୟତେଽକାରଃ—ତେଽନ । ଇତି ବ୍ୟାକରଣେ

ବେଳୁଁ ବେଳ କୋପ ବୃଦ୍ଧି ଗୃପ ଚକ୍ରୀକୃତ ।
ବିଧବା ଅବସ୍ଥା ଜହ୍ନୁ ତନୟା ବନ୍ଧିତ ହେ ।୨୨।
ବ୍ୟକ୍ତ ପାରାବାର ବାର-ବାର ଶର ମୁନେ ।
ବିନ୍ଦୁ କୁଶର ଅଗ୍ରରେ କୁଶର ଯେସନେ ହେ ।୨୩।
ବଡ଼ବାନଳ ଖ-ଦ୍ୟୋତକାରୀ ଯେ ଖଦ୍ୟୋତ ।
ବତ ଦଶେ ସେ ନାରାଜରାଜତ ରାଜତ ହେ ।୨୪।

---

୨୨ଶ ପଦ—ବେଳୁଁ ବେଳ କୋପ ବୃଦ୍ଧି "ହେବାରୁ" ଗୃପ (ଧନୁ) ଚକ୍ରୀକୃତ ମଣ୍ଡଳୀକୃତ ) ହେଲା । ତାହା ଦେଖି ୧ ଜହ୍ନୁତନୟା ( ଗଙ୍ଗା ) ବିଧବା ଅବସ୍ଥା "ମୋର ହେବ ବୋଲି" ବନ୍ଧିତ ( ବିଶେଷରେ ଭୟକଲେ ) ସମୁଦ୍ର ନଦୀଙ୍କର ପତି ଏଣୁ ।୨୨।

୨୩ଶ ପଦ—ଶରମୁନେ ( ରାମଚନ୍ଦ୍ର ଧନୁରେ ସନ୍ଧାନ କରିବା ଶର ମୁନରେ ) ପାରାବାର ( ସମୁଦ୍ରର ) ବାରବାର ( ଜଳସମୂହ ) କୁଶର ଅଗ୍ରରେ ୧ କୁଶର ( ଜଳର ) ୨ ବିନ୍ଦୁ ଯେସନେ ( ଯେମନ୍ତ ଦଶେ ତେମନ୍ତ ଦଶିଲା ) ।୨୩।

୨୪ଶ ପଦ—ସେ ନାରାଜ ( ନାରାଚର ) ରାଜତ ରାଜତ (ଧାତ୍ରିପ୍ରସର) ବଡ଼ବାନଳ ଖଦ୍ୟୋତକାରୀ ( ବଡ଼ବାନଳଙ୍କୁ ଜୁଳଜୁଳ ପୋକପ୍ରାୟ କରି ) ଖଦ୍ୟୋତ ( ସୂର୍ଯ୍ୟ ) ବତ ( ପ୍ରାୟ ) ଦଶେ । ଅଥବା ସେ ନାରାଜ ରାଜତ (ନାରାଚ ବର ତ), "ତାହାର" ରାଜତ ତେଜରେ ବଡ଼ବାନଳ, ୧ଖଦ୍ୟୋତ-କାରୀ ( ସୂର୍ଯ୍ୟ ) "ତୁହେଁ" ଖଦ୍ୟୋତ୍ବତ ( ଜଳୁଜୁଳାପୋକପ୍ରାୟ ) ଦଶେ ( ଦଶିଲେ ) ।୨୪।

---

୧—ଗଙ୍ଗା ବିଷ୍ଣୁପଦୀ ଜହ୍ନୁତନୟା ସୁରନିମ୍ନଗା ଇତ୍ୟମରଃ ।
୧—ନାଦର୍ଭେ ସ୍ତ୍ରୀ କୁଶଂ ଜଳେ ଇତି ମେଦିନୀ ।
୨—ପୃଷତ ବିନ୍ଦୁପୃଷତା ଇତ୍ୟମରଃ ।
୧—ଖଦ୍ୟୋତୋ ଗ୍ରହ୍କରେ ଚନ୍ଦ୍ରେ ଖଦ୍ୟୋତୋ ଜ୍ୟୋତିରିଙ୍ଗଣେ । ଇତି କୃମୁଦାକରଃ

ବ୍ୟାକୁଳେ ସଲିଳ-ଚର ସଲ୍ଲୀଳ ତେଜିଲେ ।
ବାଡ଼-ଲେଖା ଲେଖା ଚିତ୍ର ଭାବକୁ ଭଜିଲେ ଯେ ।୨୫।
ବେଳାରେ ସ୍ୱର୍ଣ୍ଣସରର ସୁଦର୍ଶନ ପ୍ରାପ୍ତେ ।
ବିକାଶି ପ୍ରଚେତା ନାମୁଁ ସୁ-ଦର୍ଶନ ପାଏ ଯେ ।୨୬।
ବିଲୋକି ଶରର ସୁଦର୍ଶନ ପରି ପ୍ରଭା ।
ବିଦୂରେ ସେ ପାଶୀ ହେଲା ପାଶୀ ନୋହିଁ ଉଭା ଯେ ।୨୭।
ବସୁଧାଭୃତରେ ପ୍ରଜାବନ୍ତ ଶାନ୍ତ ପାଇ ।
ବୋଧିଲା ସେ କର ରତ୍ନ ଅଳଙ୍କାର ଦେଇ ଯେ ।୨୮।

---

୨୫ଶ ପଦ—ଯେ ଶର ତେଜରେ ସଲିଳଚର (ଜଳଜନ୍ତୁମାନେ) ବ୍ୟାକୁଳେ (ବ୍ୟାକୁଳହୋଇ) ୧ ସଲ୍ଲୀଳ (କ୍ରୀଡ଼ାଯୁକ୍ତ ଅନନ୍ଦକୁ, ତେଜିଲେ (ଛାଡ଼ିଲେ) । ବାଡ଼ ଲେଖା (କାନ୍ଥରେ ଲେଖା ହୋଇଥିବା ଚିତ୍ର) ୨ଲେଖାଚିତ୍ର (ଦେବଚିତ୍ରର) ଭାବକୁ ଭଜିଲେ । କିମ୍ବା ବାଡ଼ଲେଖା (ବାଡ଼-ଶ୍ରେଣୀର) ଲେଖା "ସବୁ" ୩ଚିତ୍ର ଭାବକୁ ଭଜିଲେ (ସ୍ତମ୍ଭୀଭୂତହେଲେ) ।୨୫।

୨୬ଶ ପଦ—ସ୍ୱର୍ଣ୍ଣସରର (ଜମ୍ବୁନଦର) ବେଳାରେ (କୂଳରେ) ୧ ସୁଦର୍ଶନ (ଜମ୍ବୁବୃକ୍ଷ) ପ୍ରାପ୍ତେ "ଶୋଭା ପାଉଥିବା ରାମଙ୍କର" ବରୁଣ ପ୍ରଚେତା ନାମ ବିକାଶି ସୁଦର୍ଶନ (ଉତ୍ତମ ଦର୍ଶନକୁ) ପାଏ ।୨୬।

୨୭ଶ ପଦ—ଶରର (ବାଣର) ପ୍ରଭା ସୁଦର୍ଶନ (ଚକ୍ର) ପରି ବିଲୋକି (ଦେଖି) ପାଶୀ ନୋହିଁ (ଭୟରେ ପାଖକୁ ନ ଆସି) ସେ 'ପାଶୀ (ବରୁଣ) ବିଦୂରେ (ବହୁତ ଦୂରରେ) ଉଭା ହେଲା । ।

୨୮ଶ ପଦ—ବସୁଧାଭୃତରେ (ନୃପଗଣଠାରେ) ପ୍ରଜାବନ୍ତ (ପ୍ରଜାପ୍ରାପ୍ତ) ଶାନ୍ତ ପାଇ ସେ (ବରୁଣ) ରତ୍ନ ଅଳଙ୍କାର "ରୂପ" ୧ କର (ଖଜଣା) ଦେଇ "ରାମଙ୍କୁ" ବୋଧିଲା ।୨୮।

---

୧—କ୍ରୀଡା ଖେଳା ଚ ନର୍ମ ଚ ଇତ୍ୟମରଃ
୨—ଲେଖା ଦେବେଽପି ପଂକ୍ତୌ ସ୍ୟାଦଥ ଚିକାଣ୍ଡଶେଷଃ ।
୩—ଚିତ୍ରଂ ସ୍ୟାଦଦ୍ଭୁତାଲେଖ୍ୟ ତିଳକେଷ୍ୱ ଚିତ୍ରାସ୍ୱପି ଇତିବିଶ୍ୱଃ ।
୧—ସୁଦର୍ଶନଂ ହରେଶ୍ଚକ୍ରେ ମେରୁଜମ୍ବୁଦ୍ରୁମେ ପୁମାନ୍ ଇତିମେଦିନୀ ।
ଶାଖାସ୍ୱ ଜମ୍ବୁଜନତଶ୍ରିୟଃ ତ୍ରିସ୍ୟଂ ସୁମେରୁଶୃଙ୍ଗସ୍ୟ ତଦା ତଦାସନଂ ଇତିମାଘେ ।
୧—ପ୍ରଚେତା ବରୁଣଃ ପାଶୀ ଇତ୍ୟମରଃ ।
୧—ଭାଗଧେୟଃ କରୋ ବଳି ଇତ୍ୟମରଃ ।

ବୋଲି ସ୍ୱବଂଶକୀର୍ତ୍ତିକି ନାଶିବ କି ଏତେ ।
ବଧାଇଲା ସେ ବାଣେ ଅସାଧ ଥିଲେ ଯେତେ ଯେ । ୨୯ ।
ବୋଲେ ବଗୁର ତମିରେ ଜଗତ ଗ୍ରାସିତ ।
ବଚନ ନକ ତମିରେଂ ଗ୍ରାସିତ ପର୍ବତ ଯେ । ୩୦ ।
ବାର୍ଦ୍ଧି ଗର୍ଭସ୍ଥିତ ଲକ୍ଷ୍ମୀ ମନ୍ଦର ତାଡ଼ନେ ।
ବିରାଟମୂର୍ତ୍ତିମାନେ ସେ ପରାପତ ଯେତନେ ଯେ । ୩୧ ।
ବାର୍ଦ୍ଧିଗର୍ଭସ୍ଥିତ ଏବେ କମଳା ଅବଧି ।
ବିରାଟମୂର୍ତ୍ତିମାନେ ତୁମ୍ଭର ବଡ଼ ସିଦ୍ଧି ହେ । ୩୨ ।

---

୨୯ଶ ପଦ—ସ୍ୱବଂଶ ( ଅପତ୍ୟବଂଶର ) କୀର୍ତ୍ତିକି ନାଶିବ କି ଏତେ ବୋଲି ସେ ୧ବାଣେ (ସେହି ଅମୋଘ ଶରରେ) ଅସାଧ ଶତ୍ରୁ ଯେତେ ଥିଲେ "ତାଙ୍କୁ" ବଧାଇଲା ( ମାରିଇଲା ) । ୨୯ ।

୩୦ଶ ପଦ—ତମିରେ ( ଅନ୍ଧକାରରେ ) ଜଗତ ( ସଂସାର ) ଗ୍ରାସିତ "ହୋଇଅଛି" ତମିରେ ( ତମିନାମକ ମାଛଦ୍ୱାରା ) ପର୍ବତ ଗ୍ରାସିତ "ହେବାର" ବଚନ ନକ ( ବଚନ ନୁହଇ ) ✻ । ୩୦ ।

୩୧ଶ ପଦ—ବାର୍ଦ୍ଧି ( ସମୁଦ୍ର ) ଗର୍ଭସ୍ଥିତ ଲକ୍ଷ୍ମୀ ମନ୍ଦର "ପର୍ବତ" ତାଡ଼ନେ ( ମନ୍ଥନରେ ) ବିରାଟ ମୂର୍ତ୍ତିମାନେ (ବିରାଟମୂର୍ତ୍ତିଧାରୀ ନାରାୟଣଦ୍ୱାରା) ସେ ପରାପତ ( ପ୍ରାପ୍ତ ) "ହୋଇଥିଲେ" ମୁଁ ଯେତନେ ( ଦେଖୁଅଛି ) । ୩୧ ।

୩୨ଶ ପଦ—ଏବେ ବାର୍ଦ୍ଧିଗର୍ଭ (ଲଙ୍କାରେ) ୧ କମଳା ( ସୀତା ) ଅବଧି (ନିକଟସ୍ଥ ) ସ୍ଥିତ "ହୋଇଅଛନ୍ତି" । ମନ୍ଦର ( ସମରେ ) ତାଡ଼ନେ ( ନାଶରେ ) ସେ ପରାପତ ( ପ୍ରାପ୍ତ ) "ହେବେ" । ତୁମ୍ଭର ୨ବିରାଟ (କ୍ଷତ୍ରିୟ) ମୂର୍ତ୍ତିର ସିଦ୍ଧି ବଡ଼ "ଏହା" ମାନେ ( ମନେକରୁଅଛୁ ) । ୩୨ ।

---

୧—ଅମୋଘୋ ରାମସାୟକ ଇତି ରାମାୟଣେ ।

✻—ଅସ୍ତି ମତ୍ସ୍ୟସ୍ତିମିର୍ନାମ ଶତଯୋଜନବିସ୍ତରଃ ।
ତିମିଙ୍ଗିଲଗିଳୋଽପ୍ୟସ୍ତି ତଦ୍ଗିଳୋଽପ୍ୟସ୍ତି ରାଘବ ଇତି ॥

୧—କମଳା ଶ୍ରୀବରସ୍ତ୍ରୀୟୋଃ ଶୋଭେ ମେଦିନୀ ।
ରାଘବତ୍ୱେଽଭବତ୍ସୀତାରୁକ୍ମିଣୀ କୃଷ୍ଣଜନ୍ମନି ଇତି ବିଷ୍ଣୁପୁରାଣେ ॥

୨—ବାହୁଜଃ କ୍ଷତ୍ରିୟୋ ବିରାଟ୍ ଇତ୍ୟମରଃ ।

ବାନ୍ଧ ସେତୁ ହେତୁ ଅଛି ବିଶ୍ୱକର୍ମାସୁତ ।
ବସ୍ତ୍ର ମାଳା ଜଳେ କ୍ଷେପେ ଶିଶୁକାଳେ ନିତ୍ୟ ଯେ ।୩୩।
ବାଳ ବୋଲି କୋପୀ ନୋହି କହି ମୁନି ସର୍ବ ।
ବୁଡ଼ୁ ନା ମରେ ସେ ପକାଇବୁ ଯେତେ ଦ୍ରବ୍ୟ ଯେ ।୩୪।
ବୁହାଇଣ ଗୋତ୍ର-ଗୋତ୍ର ପକାଅ ଲୁଆଇ ।
ବାର୍ଦ୍ଧିକଳନାରେ ନଳ ନାମ ଅଛି ପାଇ ଯେ ।୩୫।
ବୋଲି ପ୍ରଦକ୍ଷିଣ କରି ହୋଇଲା ଅନ୍ତର ।
ବିଶ୍ୱକର୍ମାପୁତ୍ରେ କରି ଶ୍ରୀରାମ ଆଦର ଯେ ।୩୬।

୩୩ଶ ପଦ—ସେତୁ ( ବନ୍ଧ ) "ସମୁଦ୍ରରେ" ବାନ୍ଧ "ଏଥିରେ" ହେତୁ ( କାରଣ ) ଅଛି; ବିଶ୍ୱକର୍ମାସୁତ ( ନଳ ) ଶିଶୁକାଳେ ( ବାଳକ-ସମୟରେ ) ବସ୍ତ୍ର ମାଳା ( ମୁନିମାନଙ୍କର ବସ୍ତ୍ର ମାଳାମାନ ) ଜଳେ କ୍ଷେପେ ( ପାଣିରେ ପକାଇଦିଏ ) ।୩୩।

୩୪ଶ ପଦ— ସର୍ବମୁନି ( ସେ ସମସ୍ତ ମୁନି ) ବାଳ ( ବାଳକ ) ବୋଲି କୋପୀ ନୋହି ( କ୍ରୁଦ୍ଧ ନ ହୋଇ ) କହି ( କହିଲେ ) ତୁ ଆଜିଠାରୁ ଯେତେ ଦ୍ରବ୍ୟ "ନେଇ ଜଳରେ" ପକାଇବୁ ସେ ବୁଡ଼ୁନା ( ନବୁଡ଼ୁ ) । "ଏହି ତାହାର ହେତୁ" ।୩୪।

୩୫ଶ ପଦ—ଗୋତ୍ରଗୋତ୍ର ( ପର୍ବତସମୂହ ) ବୁହାଇଣ ( ବୃକ୍ଷ କପିଙ୍କଦ୍ୱାରା ବହିଆଣି ) "ନଳ ହାତରେ" ଲୁଆଇ 'ସିନ୍ଧୁରେ ପକାଅ" ବାର୍ଦ୍ଧି ( ସମୁଦ୍ରକୁ ) କଳନା ( କଳନା କରିବାକୁ ) ନଳନାମ ବହିଅଛି । ବାର୍ଦ୍ଧିକଳନା, ବାର୍ଦ୍ଧିଶରେ ନଳ ପଦକା ପ୍ରଭୃତି ହୁଏ ।୩୫।

୩୬ଶ ପଦ—ବୋଲି ( ସେମନ୍ତ କହି ରାମଙ୍କୁ ) ପ୍ରଦକ୍ଷିଣ କରି ଅନ୍ତର ହୋଇଲା । ଶ୍ରୀରାମ ବିଶ୍ୱକର୍ମାପୁତ୍ରେ ( ନଳକୁ ) ଆଦର କରି ( କଲେ ) ✻ ।୩୬।

✻—ପ୍ରୟୋଜନାପେକ୍ଷିତ୍ୱାତ୍ ଦ୍ରଭୂଣାଂ ପ୍ରାଯୁକ୍ତଲଂ ଗୌରବମାଶ୍ରିତେହ୍ନ—
ଇତି କୁମାରସମ୍ଭବେ ।

ବ୍ୟାପି କପି ଶିଖରୀ ଉପ୍ପାଟିଲେ ଅଦ୍ଭୁତେ ।
ବିଚ୍ଛନ୍ଦସୂତ ସ୍ପରଶେ ଉଦକେ ପକାନ୍ତେ ଯେ । ୩୭ ।
ବଲ୍କଳ ତଳର ଯଥା ଉଶ୍ୱାସେ ରହିଲ ।
ବିଶେଷିତ ଅଦ୍ଭୁତ ଏ ସେ ସମାନେ ହେଲ ଯେ । ୩୮ ।
ନିର୍ଭୟ ନିବିଡ଼ତେ ରହିଲେ ଏତେ ଗିରିବର ।
ବଚନ ରାମ ଭାବେ ମେରୁ ମୁଁ ଦେବନଗର ଯେ । ୩୯ ।
ବନ୍ଦନ୍ତି ସେ ଚଣ୍ଡୀ ଶମ୍ଭୁ ଭାବ ହିମାଳୟ ।
ବାଂସବନପ୍ରା ବାତଜ ଥିବାରୁ ମଳୟ ଯେ । ୪୦ ।

---

୩୭।୩୮ଶ ପଦ—କପି ( ବାନରମାନେ ) "ଚତୁର୍ଦ୍ଦିଗ" ବ୍ୟାପି ଅଦ୍ଭୁତରେ ( ଆଶ୍ଚର୍ଯ୍ୟରୂପେ ) ଶିଖରୀ ( ପର୍ବତମାନଙ୍କୁ ) ଉପ୍ପାଟିଲେ ( ଉପାଡ଼ିଲେ ) । ଯେ ପର୍ବତମାନଙ୍କ ବିଚ୍ଛନ୍ଦସୂତ ( ଜଳକୁ ) ସ୍ପରଶେ (ଛୁଆଁଇ) ଉଦକେ ( ଜଳରେ ) ପକାନ୍ତେ ତଳରବଲ୍କଳ (ତଳରଗୁପା) ଯଥା ( ପ୍ରାୟ ) ହୋଇ ଉଶ୍ୱାସେ ରହିଲ ( ଉଶ୍ୱାସରେ ଭାସିଲ ) ବିଶେଷିତ ( ବିଶେଷରେ ) ଅଦ୍ଭୁତ ଏ ( ଆଶ୍ଚର୍ଯ୍ୟ ଏ ) ୩୭।୩୮ ।

୩୯ଶ ପଦ—ଏତେ ଗିରିବର ନିର୍ଭୟ ନିବିଡ଼ତେ ( ନିର୍ଭୟରେ ) ରହିଲେ । ମେରୁ ( ଗିରି ) ଭାବେ ( ଭାବିଲେ ) ମୁଁ ଦେବନଗର ( ଦେବତାମାନଙ୍କର ବାସସ୍ଥାନ ) ରାମ "ସେଠାରେ" ବଚନେ "ଅଛନ୍ତି"। "ସେ ଦେବଙ୍କ ପାଇଁ ଅବର୍ତ୍ତଣ୍ଡ ହୋଇଅଛନ୍ତି ଏଣୁ ମୋତେ ଛାଡ଼ି ଦେବେ" । ୩୯ ।

୪୦ଶ ପଦ—* ହିମାଳୟ ( ଗିରିରାଜ ) ଭାବ ( ଭାବିଲେ ), ସେ ( ରାମ ) ଚଣ୍ଡୀ ଶମ୍ଭୁ "ଏ ଦୁହିଙ୍କି" ବନ୍ଦନ୍ତି, "ମୁଁ ତାଙ୍କର ନିବାସ ସ୍ଥାନ ଏଣୁ ମୋତେ ଛାଡ଼ି ଦେବେ" । ବାସବନପ୍ରା ( ଅଙ୍ଗଦ ) ବାତଜ ( ହନୂମାନ୍ ) "ଏ ଦୁହେଁ" ଥିବାରୁ †ମଳୟ "ପର୍ବତ ବିଚାରିଲ ମୁଁ ଇନ୍ଦ୍ର ପବନର କ୍ରୀଡ଼ା ସ୍ଥାନ ମୋତେ ନେବେ ନାହିଁ" । ୪୦ ।

---

*—କୃତ୍ତାବେତୋହଥ ହିମ ଲଯ୍ୟୋ ନଗପତି ର୍ମେନାଧିବୋ ମା ଗୁରୁଃ
କୈଲାସୋ ଗଣପର୍ବତଶ୍ଚ ରଜତପ୍ରସ୍ଥଃ କୁବେରାଚଳଃ ଇତି ତ୍ରିକାଣ୍ଡଶେଷଃ ।
†—ପ୍ରାଲେୟସ୍ପୃଷ୍ଟବନେଚ୍ଛ ଯାନସରଣି ଶ୍ରୀଖଣ୍ଡଶୈଳାନିଳଃ ଇତି ଗୀତଗୋବିନ୍ଦେ ।

ବ୍ରହ୍ମାପୁତ୍ର ଅଶ୍ୱିନୀକୁମାରସ୍ଥିତ ସ୍ଥିତ ।
ବଧୀରକୁ ତେଜ ଗନ୍ଧମାଦନ ଏ ସତ ଯେ । ୪୧ ।
ବିଶ୍ରବଣ ଭେଟିଅଛି କଇଳାସ ସ୍ଥିର ।
ବିଦୃଶ୍ୟତା ଭାବି ଲୋକାଲୋକ ମହୀଧର ଯେ । ୪୨ ।
ବିବେକ ଏ ଚିତ୍ରକୂଟ ମାଲ୍ୟବନ୍ତ କରେ ।
ବିଳସିବା ରାଘବ ଇଚ୍ଛନ୍ତି ଆତ୍ମପରେ ଯେ । ୪୩ ।
ବିନ୍ଧ୍ୟ ମନ୍ଦର ସଭୟ ଅଛି ରବିସୁତ ।
ବିଗ୍ରହିଲେ ଏହି ବିଧି ପର୍ବତ ବିହ୍ୱତ ଯେ । ୪୪ ।

୪୧ଶ ପଦ—* ବ୍ରହ୍ମାପୁତ୍ର ( ଜାମ୍ବବାନ୍ ) ଅଶ୍ୱିନୀକୁମାର ସୂତ ( ସୁଷେଣ ) "ଜାମ୍ବ ମୈନ୍ଦ ଦ୍ୱିବିଦ" ସ୍ଥିତ ହେବାରୁ ବଧୀର ( ଚଞ୍ଚଳତାକୁ ) ଗନ୍ଧମାଦନ ( ପର୍ବତ ) ତେଜ ( ତେଜିଲା ) ଏ ସତ ( ମିଛ ନୁହେଁ ) କାହିଁକି ନା ? ବ୍ରହ୍ମାଙ୍କର ସେ କ୍ରୀଡ଼ାସ୍ଥାନ ଏବଂ ଅଶ୍ୱିନୀକୁମାରଙ୍କର ଔଷଧ ବନ ଏଣୁ ମୋତେ ନେବେ ନାହିଁ । ୪୧ ।

୪୨ଶ ପଦ—କଇଳାସ (କୈଳାସ ପର୍ବତ) ସ୍ଥିର "ହେଲା" କାହିଁକି ? ବିଶ୍ରବଣ ( କୁବେର ଭାଇ ) ଭେଟିଅଛି । "ଏମନ୍ତ ବିଚାରିଲା" । ଲୋକାଲୋକ ମହୀଧର ( ପର୍ବତ ) ବିଦୃଶ୍ୟତା ( ଅଦୃଶ୍ୟତ୍ୱକୁ ) ଭାବି ସ୍ଥିର ହେଲା "ମୋତେ ଦେଖି ପାରିବେ ନାହିଁ" । ୪୨ ।

୪୩ଶ ପଦ—ଚିତ୍ରକୂଟ ( ପର୍ବତ ) ମାଲ୍ୟବନ୍ତ ( ମାଲ୍ୟବାନ୍ ପର୍ବତ ) ଏ ( ଏରୂପ ) ବିବେକ ( ବିଚାର ) କରେ ( କଲେ ) । ଆତ୍ମପରେ ( ଆତ୍ମଉପରେ ) ରାଘବ ବିଳସିବା ( ବିହାର କରିବା ) ଇଚ୍ଛନ୍ତି । "ଏଣୁ ଆମ୍ଭମାନଙ୍କୁ ଉପାଡ଼ିବେ ନାହିଁ" । ୪୩ ।

୪୪ଶ ପଦ—ରବିସୁତ ( ସୁଗ୍ରୀବ ) ଅଛି "ଏମନ୍ତ ଭାବି" ବିନ୍ଧ୍ୟ ମନ୍ଦର ( ପର୍ବତ ଦୁହେଁ ) ସଭୟ ( ଭୟଯୁକ୍ତ ହେଲେ ) । ପୂର୍ବରେ ବିନ୍ଧ୍ୟ ମନ୍ଦର ଦୁହେଁ ବିବାଦ କରି ସୂର୍ଯ୍ୟଙ୍କ ଗତିରୋଧ କରିଥିଲେ । ୪୪ ।

*—ପିତାମହସୁତଶ୍ଚାପି ଜାମ୍ବବାନିତି ବିଶ୍ରୁତ ଇତି ରାମାୟଣେ ।।

ବାମେ ଛୁଇଁ ବାମ ହେଉଁ ମାରୁତିକ ବୋଧି ।
ବନ୍ଧ ପଣ୍ଡିବାରେ ଶୋଭା ପାଇଲା ବାରିଧି ଯେ । ୪୫ ।
ବାଲୁକା ପକାଅ ବନ୍ଧେ ରାମ ଆଜ୍ଞା ହେଲା ।
ବହୁତ ନଗର ରୁଚି ଏକ ହୋଇ ଗଲା ଯେ । ୪୬ ।
ବିଖ୍ୟାତ ହୋଇଲା ସେ ଆଶ୍ଚର୍ଯ୍ୟ ଜଗତିରେ ।
ବିଭ୍ରାଜେ କୁମ୍ଭୀରଗତି ସେ ତଳପଥରେ ଯେ । ୪୭ ।
ବାଜି ଗତାଗତ ରାଜି ହେଲା ଅତିଶୟ ।
ବିଦୂର ହୋଇଲା ଯହିଁ କୁଳଟାର ଭୟ ଯେ । ୪୮ ।

---

୪୫ଶ ପଦ—"ହନୁମାନର ଆଣିବା ପର୍ବତକୁ ନଳ ନୃପେ" ବାମେ (ବାମ ହସ୍ତରେ) ଛୁଇଁ (ଛୁଅନ୍ତେ) "ହନୁମାନ୍" ବାମ (ପ୍ରତିକୂଳ) ହେଉଁ (ହୁଅନ୍ତେ) "ଜାଣି ରାମ" ମାରୁତିକି (ହନୁମାନଙ୍କୁ) ବୋଧି (ବୋଧ କଲେ) । ଏମନ୍ତେ ବନ୍ଧ ପଣ୍ଡିବାରେ ବାରିଧି (ସମୁଦ୍ର) ଶୋଭା ପାଇଲା ।୪୫।

୪୬ଶ ପଦ—"ବନ୍ଧର ଖାଲ ଡିପ ଦେଖି" ବନ୍ଧେ (ବନ୍ଧ ଉପରେ) ବାଲୁକା (ବାଲି) ପକାଅ ଏହୁ ଆଜ୍ଞା (ଆଦେଶ) ରାମ (ରାମଙ୍କର) ହେଲା । "ବାଲି ପକାଇବାରୁ" ବହୁତ ନଗର (ପର୍ବତର) ରୁଚି (ଶୋଭା) ଏକ ହୋଇଗଲା (ସମାନ ଦିଶିଲା) । ୪୬ ।

୪୭ଶ ପଦ—"ପର୍ବତ ଜଳେ ଭାସିବାରୁ" ସେ ଆଶ୍ଚର୍ଯ୍ୟ "କଥା" ଜଗତିରେ (ସଂସାରରେ) ବିଖ୍ୟାତ ହୋଇଲା । ସେ "ବନ୍ଧର" ତଳ ପଥରେ (ତଳ ବାଟରେ) କୁମ୍ଭୀର ଗତି (କୁମ୍ଭୀରମାନଙ୍କର ଗମନ) ବିଭ୍ରାଜେ (ଶୋଭା ପାଇଲା) । ଅଥବା—ଜଗତିରେ (ଅଟ୍ଟାଳିକାରେ) ବିଭ୍ରାଜେ (ଶୋଭା ପାଇଲା ପ୍ରାପ୍ତ) ସେ (ବନ୍ଧ) ଆଶ୍ଚର୍ଯ୍ୟ "ରୂପେ" ବିଖ୍ୟାତ ହୋଇଲା (ପ୍ରକାଶ ପାଇଲା)। ଜଗତିର ତଳ ପଥରେ (ତଳ ବାଟରେ) କୁମ୍ଭୀର ଗତି (ହସ୍ତୀର ଗମନାଗମନ) ହୁଏ । ୪୭ ।

୪୮ଶ ପଦ—ବନ୍ଧପଥେ ୧ ବାଜି (ପକ୍ଷିମାନଙ୍କର) ଗତାଗତ (ଯିବା ଆସିବାର) ରାଜି (ଶୋଭା) ଅତିଶୟ ହେଲା । ଯହିଁ (ଯେଉଁ ବନ୍ଧରେ) ୨ ବିଦୂର

---

୧—ବାଜିଂ ବାଣାଶ୍ୱପକ୍ଷିଷୁ ଇତ୍ୟମରଃ ।
୨—ଅବିଦୂରେ ବିଦୂରଶ୍ଚ ଗିରେର୍ଭୂଜ୍ଞ ଶ୍ରୋଧସଃ ଇତି କୋଷଃ ।

ବିକସିତ ହୋଇଲା ସୁଜାତି ଆଖୁ କ-ରେ ।
ବିଭୁ କରେ ଆଶ୍ୱାସିଲେ ପ୍ରଖ୍ୟାତ ସୁବରେ ଯେ । ୪୯ ।
ବିଜେ ରାମ ପ୍ରାପ୍ତି ଇଚ୍ଛା ସୁବଳୟଶୋଭୀ ।
ବଳ ତେଜି କୁ-ବଳୟ ସୁବେଳକୁ ଲଭି ଯେ । ୫୦ ।
ବିସ୍ତାରେ ସ୍ୱର୍ଗ ସୁସଞ୍ଚ ଅଧିକରେ ସତ ।
ବୃନ୍ଦ ବୃନ୍ଦ ରମ୍ଭା ଶତାବଧି ଐରାବତ ଯେ । ୫୧ ।

---

( ପର୍ବତର ଉଚ୍ଚତା ବୋଧରେ ) କୁଳଟାର ( ତସ୍କର ) ଭୟ ହୋଇଲା ; ଅଥବା * କୁଳଟା ( କ୍ଷୁଦ୍ର କ୍ଷୁଦ୍ର ଲଟା ) ଭୟ ବଦୂର ( ଅନ୍ତର ) ହେଲା ଜଗତୀପକ୍ଷେ ।—ଅଟ୍ଟାଳିକା ମାର୍ଗରେ ବାଜି ( ଅଶ୍ୱମାନଙ୍କର ) ଗତାଗତ ( ଗମନାଗମନର ) ରାଜି ( ଶୋଭା ) ଅତିଶୟ ହୁଅଇ । ଯହିଁ ( ଯେଉଁ ଅଟ୍ଟାଳିକାରେ ) ୬ କୁଳଟାର ( ଅସତୀ ସ୍ତ୍ରୀଙ୍କର ) ଭୟ ବଦୂର ହୋଇଥାଏ, କାହିଁକି ନା ? ବୋଧ ବଶରୁ ସେମାନଙ୍କର ବ୍ୟଭିଚାର ଧର୍ମ ନ ଥାଏ । ୪୮ ।

୪୯ଶ ପଦ—ସୁଜାତି ( ଉତ୍ତମ ଜାତୀୟ ) ଆଖୁ ( ଗୁଣ୍ଡୁଚିମୂଷା ) କ-ରେ ( ଜଳରେ ) ବିକସିତ ହୋଇଲା ( ବୁଡ଼ିଲା ) "ତହୁଁ ଆସି ଧୂଳିରେ ଗଡ଼ି ବନ୍ଧରେ ଝୁଣ୍ଡି ହେବା ଦେଖି" ବିଭୁ ( ରାମ ) କରେ ( ହସ୍ତରେ ) ଆଶ୍ୱାସିଲେ ( ଆଉଁଷିଲେ ) । ସୁବରେ ( ଉତ୍ତମ ବର ଦେଇ ) ପ୍ରଖ୍ୟାତ ( ଲୋକରେ ସୁବ୍ରତ ବୋଲି କହନ୍ତି ହେଲେ ) । ୪୯ ।

୫୦ଶ ପଦ—"ବନ୍ଧ ନିର୍ମାଣ ହେବାରୁ" ସୁବଳୟଶୋଭୀ ( ସ୍ୱର୍ଣ୍ଣ-କଙ୍କଣ ଶୋଭୀ ସୀତାଙ୍କ ) ପ୍ରାପ୍ତି ଇଚ୍ଛା ( ଲଭିବା ମାନସେ ) ରାମ ବିଜେ ( ବନ୍ଧ ଉପରେ ବିଜେ କଲେ ) ବଳ ( ସୈନ୍ୟ ) କୁବଳୟ ( ଭୂମଣ୍ଡଳ—ସମୁଦ୍ର ) ତେଜି ସୁବଳୟ ( ସୁବେଳ ଗିରିଙ୍କି ) ଲଭି ( ପାଇଲେ ) । "ସୁବଳୟ ଲଭିବା ଜନ କୁବଳୟକୁ ଛାଡ଼ଇ" । ୫୦ ।

୫୧ଶ ପଦ—"ସେ ସୁବେଳ ପର୍ବତ" ଅଧିକରେ ସ୍ୱର୍ଗସୁସଞ୍ଚ (ସ୍ୱର୍ଗଶୋଭା) ବିସ୍ତାରେ "ଏହା" ସତ । "ସ୍ୱର୍ଗରେ" ଏକ ରମ୍ଭା ( ଅପସରା ) "ଏକ"

---

* —ଲଳାଟସ୍ୟାରେକ୍ୟ ।

୬—ପୁଂଶ୍ଚଳୀ ଧର୍ଷଣୀ ବନ୍ଧକ୍ୟସତୀ କୁଳଟେତ୍ୱ ଇତ୍ୟମରଃ ।

ବୋଲିବାରେ ହନୂମାନ ତହିଁ ଦୁର୍ଗ କରି ।
ବିଲକ୍ଷିଲେ ଲଙ୍କାଗଡ଼ ପାତାଳର ପରି ଯେ । ୫୨ ।
ବଳୀ ରହିଅଛନ୍ତି ଯହିଁରେ କରି ସ୍ଥାନ ।
ବିହରିତ ହୋଇଛନ୍ତି ନାଗସାରମାନ ଯେ । ୫୩ ।
ବିଜ୍ୱଳିତ ହୋଇଅଛି ମଣି କିରଣରେ ।
ବେଷ୍ଟରେ ସେ ରାଜିତ ରାକ୍ଷସ-ଶରଣରେ ଯେ । ୫୪ ।

---

୧ ଶତାବର୍ତ୍ତୀ ( ଶଚୀ ଦେବୀ ) "ଏକ" ଐରାବତ ( ଗଜ ) "ଅଛି" । ଏ ପର୍ବତରେ ବୃନ୍ଦ ବୃନ୍ଦ "ହୋଇ" ରମ୍ଭା ( କଦଳୀ ଗଛ ) ଶତାବର୍ତ୍ତୀ (ଛତୁଆରୀ) ୨ ଐରାବତ ( ନାରଙ୍ଗ ଗଛ ) "ଅଛି" । ୫୧ ।

୫୨ଶ ପଦ—ହନୂମାନ୍ ବୋଲିବାରେ ତହିଁ ( ସେ ପର୍ବତରେ ) ଦୁର୍ଗ ( ଗଡ଼ ) କରି ବିଲକ୍ଷିଲେ ( ଦେଖିଲେ ) ଲଙ୍କାଗଡ଼ ପାତାଳର ( ପାତାଳ-ପୁର ) ପରି ଦିଶିଲା । ୫୨ ।

୫୩ଶ ପଦ—ଯହିଁରେ ( ଯେଉଁ ପାତାଳରେ ) ବଳୀ ( ବଳୀ ରାଜା ) ସ୍ଥାନ କରି ରହିଅଛନ୍ତି । ୧ ନାଗସାରମାନ ( ଶ୍ରେଷ୍ଠ ନାଗମାନେ ) ବିହରିତ ହୋଇଛନ୍ତି ( ବିହାର କରୁଥାନ୍ତି ) । ଯହିଁରେ ( ଯେଉଁ ଲଙ୍କାରେ ) ବଳୀ ( ବଳିଷ୍ଠ ଲୋକେ ) ସ୍ଥାନ (ବାସ) କରି ରହିଅଛନ୍ତି । ନାଗସାରମାନ ( ଶ୍ରେଷ୍ଠ ହସ୍ତି ସବୁ ) ବିହରିତ ହୋଇଛନ୍ତି ( କ୍ରୀଡ଼ା କରୁଛନ୍ତି ) । ୫୩ ।

୫୪ଶ ପଦ—"ପାତାଳ" ମଣି ( ସର୍ପଙ୍କ ମଣି ) କିରଣରେ ବିଜ୍ୱଳିତ ( ପ୍ରଦୀପ୍ତ ) ହୋଇଅଛି । ବେଷ୍ଟରେ ( ବାଧିରେଜ ) ସେ ( ପାତାଳ ) ରାକ୍ଷସ ଶରଣରେ ( ରାକ୍ଷସଙ୍କ ଗୃହରେ ) ରାଜିତ ( ଶୋଭିତ ) । ଏ ଲଙ୍କାମଣି ( ରତ୍ନମାନଙ୍କ ) କିରଣରେ ଉଜ୍ୱଳିତ ( ଉଜ୍ଜ୍ୱଳ ) ହୋଇଅଛି । ବେଷ୍ଟରେ (ବାଧିରେଜ) ରାକ୍ଷସ ୧ଶରଣରେ (ରାକ୍ଷସଙ୍କ ଗୃହରେ) ରାଜିତ (ଶୋଭିତ) ।୫୪।

---

୧—ଶତାବର୍ତ୍ତୀ ତୁ ଶଚ୍ୟାଂ ସ୍ୟାଦନ୍ଧବର୍ଯ୍ୟା ମହିଷ୍ୟାମିତି ମେଦିନୀ ॥
୨ — ଐରାବତେ ନାରଙ୍ଗ ଇତ୍ୟମରଃ ।
୧—ନାଗଃ ପନ୍ନଗମାତଙ୍ଗ କ୍ରୂରାର୍ଶ୍ବର୍ଷ୍ୟୁ ତୋୟଦେ ଇତି ମେଦିନୀ ।
୧—ଶରଣଂ ଗୃହରକ୍ଷିତ୍ରୋରିତି ।

ବାର୍ତ୍ତିକ ଆସର-ଚର ଖର ଲଙ୍କା-ରାଜେ ।
ବଜେ ଖରପର ଯୁକ୍ତ ଲକ୍ଷ୍ମଣ ରବଜେ ଯେ । ୫୫ ।
ବଧିପୂର୍ବରେ ଦକ୍ଷିଣ ପ୍ରଶାଚୀରେ ଉଜ ।
ବଦିତ ତବ ଭ୍ରାତର ଉତ୍ତରେ ସହଜ ଯେ । ୫୬

---

୫୫-୫୬ଶ ପଦ —"ରାମ ସୈନ୍ୟ ସହିତ ସୁବେଳରେ ରହିବା ଦେଖି" ୧ ଆସର ଚର ( ଅସୁର ଚାର ) ଅଥବା ଆସର ( ଶୀଘ୍ରଗାମୀ ) ଚାର ଖର ( ବେଗରେ ) ଲଙ୍କାରାଜେ ( ରାବଣ ସମ୍ମୁଖରେ ) ବାର୍ତ୍ତିକ ( ବାର୍ତ୍ତା କହିଲେ ) ଲକ୍ଷ୍ମଣ ତବଜେ ( ସୁଗ୍ରୀବ ) ଯୁକ୍ତ ( ସଙ୍ଗେ ) ଖରପର (ରାମ) ବଜେ "କହେ" "ସେ ରାମ କପଟ ?" ବଧିପୂର୍ବରେ ( ବଧିପୂର୍ବକ କାର୍ଯ୍ୟ କରିବା ବିଷ-ୟରେ ) ଦକ୍ଷିଣ ( ପ୍ରବୀଣ ବା ଚତୁର ) "ଅଟନ୍ତି" । "ପୁଣି ମୁନିବେଶ ଧାରଣ କରିବାରୁ" ପ୍ରଷ୍ଟ ( ଲକ୍ଷିତ ) ଚୀରେ ( ଚୀର ବସନରେ ) ଉର୍ଜ ( ଜାଜ୍ଜ୍ୱଲ୍ୟ-ମାନ ) "ହୋଇ ଅଛନ୍ତି" । ତବ ଭ୍ରାତର ( ବିଭୀଷଣର ) ଉତ୍ତରେ ( ବାକ୍ୟରେ ) ସହଜ ( ଅନାୟାସରେ ) ବିଦିତ ( ଆସିଅଛନ୍ତି ) କି ବା— ଆସର ( ସବୁ ଆଡ଼ରେ ସଞ୍ଚାର କରୁଥିବା ) ଚର ଲଙ୍କାରାଜେ ( ରାବଣ ଆଗରେ ) ଖର ( ଶୀଘ୍ର ଆସି ) ବାର୍ତ୍ତିକ ( କାର୍ତ୍ତା କହିଲ ) । "କୃଷ୍ଣାଷ୍ଟମୀ ପକ୍ଷ ଯେ" । "ଶୀତାଂଶୁ ହେତୁରୁ" ଖରପର ( ଖଣ୍ଡିତ ଶଶି ) "ପୁଣି" ଲକ୍ଷ୍ମଣ ( ଚିହ୍ନରେ ) ଯୁକ୍ତ ( ଅଙ୍କିତ ) "ଏରୂପ ଚନ୍ଦ୍ର" ଏବଂ ରବି ଯେ ( ସୂର୍ଯ୍ୟ ) "ପୁଣି" ପୂର୍ବରେ ( ପୂର୍ବଦିଗରେ ) ବଧି (ଉଦୟ ବିଧାନ ସଦାଙ୍କର) ଏବଂ ଦକ୍ଷିଣ (ଦକ୍ଷିଣାୟନରେ ଦକ୍ଷିଣ ଦିଗକୁ ଗମନ କରନ୍ତି) । ପ୍ରଶାଚୀରେ (ପଶ୍ଚିମଦିଗରେ) ଉଜ (ଉଜ୍ଜ୍ୱଳ ଦିଶନ୍ତି) । ତବ ଭ୍ରାତର (କୁବେରର) * ଉତ୍ତରେ (ଉତ୍ତର-ଦିଗରେ) ସହଜରେ ( ସ୍ୱାଭାବିକ ) ବିଦିତ ଉଦୟାସ୍ତ ହେତୁରୁ ଖ୍ୟାତ ହୁଅନ୍ତି । "ଚାର ଏରୂପେ ରାମଙ୍କ ପ୍ରଭାବ ଜଣାଇଲା" ଏହି ତାତ୍ପର୍ଯ୍ୟାର୍ଥ । ୫୫ । ୫୬

---

୧—ନବ୍ୟାଦୌ ସ୍ୟାଦସର ଇତ୍ୟମରଃ ।

*—ଲଙ୍କାସ୍ୟାଧିପ କକୁଭି ଯାଚ ଗଙ୍ଗା ପ୍ରସିଦ୍ଧା ଇତି ନୈବଟନ୍ତ୍ର ମତେ ॥

ବାରତା ଶୁଣୁ ରାବଣ ବିଜୟା ଶୁଣିଲା ।
ବୈଦେହୀ ପାଶେ ବଲ୍ଲଭ ପ୍ରବେଶ କହିଲା ଯେ ।୫୭।
ବ୍ୟର୍ଥ ଲକ୍ଷ୍ୟ ଦରିଦ୍ରେ ପ୍ରାପତ ଲକ୍ଷ ଧନ ।
ବୋଲିବା ମୃତପିଣ୍ଡରେ ପ୍ରବେଶ ଜୀବନ ଯେ ।୫୮।
ବିମଳ କମଳନେତ୍ରୁଁ କମଳ ଜନତ ।
ବଗତ ତେଷ ହେଲା ଯେଣୁ ଉଣା ଉତପାତ ଯେ ।୫୯।
ବିଜନ୍ୟ ଗଡ଼ ଚଞ୍ଚଳେ କମଳ ହୋଇଲା ।
ବୋଲିବାରୁ କାହିଁ କାହିଁ ସୁବେଳେ ବୋଇଲା ଯେ ।୬୦।

---

୫୭ଶ ପଦ—ବାରତା (ଏମନ୍ତ ବାର୍ତ୍ତା ଗୂଢ଼ ମୁଖୁ) ଶ୍ରବଣ ଶୁଣୁ (ଶୁଣିବା ସମସ୍ତରେ) ବିଜୟା ଶୁଣିଲ । "ସେ ଯାଇ" ବୈଦେହୀଂ (ସୀତାଙ୍କ) ପାଶେ (ଆଗରେ) ବଲ୍ଲଭ (ତୁମ୍ଭ ପତି ରାମ) ପ୍ରବେଶ "ହେଲେ" "ଏମନ୍ତ" କହିଲା ।୫୭।

୫୮ଶ ପଦ—"ସେ କାଳେ ସୀତାଙ୍କର ଯେଉଁ ଆନନ୍ଦ ଜାତ ହେଲା ତାକୁ" ଦରିଦ୍ରେ (ଦରିଦ୍ର ଲୋକଠାରେ) ଧନ ପ୍ରାପତ (ପ୍ରାପ୍ତ ହେବା) "ଯେଉଁ" ଲକ୍ଷ୍ୟ (ଲକ୍ଷ୍ୟ ଦେବା) "ସେ" ବ୍ୟର୍ଥ ହେଲା । ମୃତ ପିଣ୍ଡରେ ଜୀବନ ପ୍ରବେଶ "ହେଲା ପ୍ରାୟ ହେଲେ" ବୋଲିବା ।୫୮।

୫୯ଶ ପଦ—"ସୀତାଙ୍କ" ବିମଳ (ନିର୍ମଳ) କମଳ ନେତ୍ରୁ (ପଦ୍ମ-ନୟନରୁ) କମଳ (ଅଶ୍ରୁଜଳ) ଜନତ (ଜାତ ହୋଇ) । §ଯେଣୁ ବଗତ§ (ନିର୍ଗତ) "ହେଲା, ତେଣୁ" ଏସ ଉଣା (ଅନଷ୍ଟକର) ‡ଉତପାତ (ଉତ୍ପାତ) "ହେଲା" । "ପଦ୍ମରୁ ଜଳ ଜନ୍ମିବା ଉତ୍ପାତ ହେଲା" ।୫୯।

୬୦ଶ ପଦ—ବିଜନ୍ୟ (ଜାତ ହେବା) ଗଡ଼ ଚଞ୍ଚଳେ (ଚଞ୍ଚଳ-ଗଡ଼ରେ "ସେ ନେତ୍ର" କମଳ (ମୁଣ୍ଡ) ହୋଇଲା । "ସୀତା" ✻କାହିଁ କାହିଁ ବୋଲିବାରୁ "ସେ" ବୋଇଲା ସୁବେଳେ (ସୁବେଳ ପର୍ବତରେ) "ବିଜେ କରିଛନ୍ତି" ।୬୦।

---

§—ମହାତ୍ମ୍ୟଗୁରୁଦେବାନାମଶ୍ରୁପାତଃ କ୍ଷିତୌ ଯଦ ।
ଦେଶଭ୍ରଂଶୋ ମହାଦୁଃଖଂ ମରଣଂ ଚ ଭବେଦ୍ଧ୍ରୁବଂ । ଇତି ।

‡—ଆକସ୍ମିକେ ମହାଭୂତବିକାର ଉତ୍ପାତଃ ।

✻—ଦ୍ବିରର୍ଥେ ଦାପସା ।

ବଚନ ସୁଧାସେଚନ ପରାପ୍ତେ ମଣିଲେ ।
ବିମୋଚନ ଶୋଚନ ସୀତାଙ୍କ ମନୁ କଲେ ଯେ ।୬୧।
ବାନ୍ଧିଲେ ପାବନ ହେଉ ଚରାପୁଷ୍ଟ ହୃଦେ ।
ଶରବର ବାଛଠି ପଦରେ ଗ୍ରନ୍ଥ ଛନ୍ଦେ ଯେ ।୬୨।



## ଏକଚତ୍ୱାରିଂଶ ଛାନ୍ଦ

ରାଗ—କିଦାର ଦେଶାକ୍ଷ

ହେ, ବୋଧ କବ୍ୟାଦେଶ ଶ୍ରୀରାମ ସନ୍ଦେଶ ପାଇଣ ସ୍ୱଦେଶ ଜନ
ବାହାର ବହାର ନ କରାଇ ସାଜି ଯୁଦ୍ଧ ଉପସ୍କରମାନ ଯେ ।
ବନ୍ଧୁବର୍ଗ ପ୍ରବେଶରେ । ବଳ କଳା ଆରତଭାରେ ।୧।

୬୧ଶ ପଦ—ବଚନ ( ହନୁମନ୍ତ କହିବା କଥା ) ସୁଧାସେଚନ ( ଅମୃତ-ସିଞ୍ଚିବା ) ପରାପ୍ତେ ( ପ୍ରାପ୍ତ ) ମଣିଲେ "ଆଉ" ଶୋଚନ ( ରାମ ବିରହ-ଦୁଃଖ) ସୀତାଙ୍କ ମନୁ (ମନରୁ) ବିମୋଚନ କଲେ (ଦୂରକରି ଦେଲେ) ୬୧।

୬୨ଶ ପଦ—"ସୀତା" ପାବନ ( ହନୁମାନ୍ ) ଚରଣସ୍ପୃଷ୍ଟ ( ଚରଣଙ୍ଗି ) ହେଉ "ଏମନ୍ତ" ହୃଦେ ( ହୃଦୟରେ ) ବାନ୍ଧିଲେ । ଶରବର "ଉପେନ୍ଦ୍ର ଭଞ୍ଜ" ଏ ଗ୍ରନ୍ଥ ବାଛଠି ପଦରେ ଛନ୍ଦେ ( ଛନ୍ଦିଲ ) ।୬୨।



## ଏକଚତ୍ୱାରିଂଶ ଛାନ୍ଦ

୧-୨ୟ ପଦ—[1] କବ୍ୟାଦେଶ ( ରାକ୍ଷସେନ୍ଦ୍ର ରାବଣ ) ଶ୍ରୀରାମ ସନ୍ଦେଶ ( ଆସିବା ବାର୍ତ୍ତା ) ପାଇଣ ( ପାଇ ) ସ୍ୱଦେଶ ଜନ (ଆପଣା ରାଜ୍ୟ ଲୋକଙ୍କୁ) ବାହାର ବହାର ( ବାହାର ବୁଲିବା ) ନ କରାଇ ( ନ ଦେଇ ) ଯୁଦ୍ଧ ଉପ-ସ୍କରମାନ ( ଯୁଦ୍ଧର ଉପକରଣମାନ ) ସାଜି ( ସାଜିଲା ) । ବନ୍ଧୁବର୍ଗ ( ରାବଣ )

[1]—କବ୍ୟାଦୋଽସ୍ରପ ଆଶର ଇତ୍ୟମରଃ ।

ଚହ୍ନ, ବେନାମନ୍ତ୍ରୀ ପେଷି ଯେ  ମର୍କଟବେଶେ ପ୍ରକଟ ସେ ସୈନ୍ୟଯାଇଁ
ବିଚେତନ ବୀର-ମୁକୁଟ-ରତନ ଏଣାଙ୍କନ-ଚର୍ମେ ଶୋଇ ସେ ।
ବସି ଲକ୍ଷ୍ମଣ ସମୀପେ । ବର୍ଜେ ମାର୍ଗଣ ଗୃପେ । ୨ ।
ଚହ୍ନ, ବର୍ଣ୍ଣରେ ସୁଗ୍ରୀବ ଜାମ୍ବବ ସୁଷେଣ ଲଙ୍କା ଜୟ  କରିବାର ।
ବାଜଣା ବଜାଇ ବୁଲେ ବିଭୀଷଣ ଜଣା  ଗଲେ ସେହ୍ୱଠାର ସେ ।
ବନ୍ଧାଇ ରଖିଲା ସେହ୍ନ । ବାସର ପ୍ରସର ତହ୍ନିଁ । ୩ ।
ଚହ୍ନ, କ୍ଷିତଜ ସନ୍ଧି କରି ଅରି-କରୀ-ହରି  ହସ୍ତାଗ୍ରେ ଦେଇଣ ଶିର ।
ବାଳିସୁତ ପର କର ହନୁମାନ ମର୍ଦ୍ଦନ କରେ ପଯୂର ସେ ।
ଦେଲେ ଭଲ ଭଲ୍ଲମନ୍ତ୍ରୀ । ବ୍ୟବସ୍ଥିତରେ  କହନ୍ତି । ୪ ।

---

ପ୍ରବେଶରେ ( ପ୍ରବେଶ ଦେବାରେ ) ବଳ କଲା ଆଦେଶରେ ( ଶ୍ରୀମଙ୍କ ସୈନ୍ୟ କଳିବା ନିମନ୍ତେ ) ବେନ ମନ୍ତ୍ରୀ ( ଶୁକସାରଣ ଦୁଇ ମନ୍ତ୍ରିକ ) ପ୍ରେଷେ (ପଠାଇଲ ) । ସେ ( ଦୁଇ  ମନ୍ତ୍ରୀ ) ମର୍କଟ ବେଶେ ( ବାନର ରୂପରେ ) ସୈନ୍ୟ ( ବାନର ଥାଟରେ ) ଯାଇଁ ପ୍ରକଟ ( ମିଳିଲେ )  "ଦେଖିଲେ"  ବୀରମୁକୁଟ-ରତନ (ରାମ) ଏଣାଙ୍କନେ ( ମୃଗ ଚର୍ମରେ ) ବିଚେତନ  (ଅଚେତନ ହୋଇ) ଶୋଇଛନ୍ତି । ସମୀପେ ( ତାଙ୍କ ପାଖରେ ) ଲକ୍ଷ୍ମଣ ବସି ମାର୍ଗଣ ଗୃପେ ( ଧନୁଶରରେ ?) ବର୍ଜେ ( ବର୍ଜୁଛନ୍ତି ) । ୧ । ୨ ।

୩ୟ ପଦ--ସୁଗ୍ରୀବ ( ବାନରରାଜ ), ଜାମ୍ବବ ସୁଷେଣ (ଏ ଦୁଇ ମନ୍ତ୍ରିଙ୍କି ଘେନ ) ଲଙ୍କା ଜୟ କରିବାର (ଲଙ୍କା ଜୟ କରିବା କଥା) ବର୍ଣ୍ଣେ (ବର୍ଣ୍ଣୁଛନ୍ତି ) । ବିଭୀଷଣ ( ରାବଣଭାଇ ) ବାଜଣା  ବଜାଇ  ( ବାଦ୍ୟକାରଙ୍କ ହସ୍ତେ ବାଦ୍ୟ ବଜାଇ) ବୁଲେ (ସୈନ୍ୟ ମଧ୍ୟରେ ବୁଲୁଅଛି ) । ସେହ୍ୱଠାର (ସେଠାରେ) "ସେ ଦୁଇ କପି ଶୁକସାରଣ ମନ୍ତ୍ରୀ ବୋଲି"  ଜଣାଗଲେ ( ଜଣା ପଡ଼ିଲେ ) । ସେହ୍ନ ( ବିଭୀଷଣ ) "ତାଙ୍କୁ" ବନ୍ଧାଇ  ରଖିଲା, ତହ୍ନିଁ  ( ସେ ସ୍ଥାନରେ ) ବାସର ( ଦିବସ ) ପ୍ରସର "ହେଲା" । "ରାତି ପାହିଗଲା" । ୩ ।

୪ର୍ଥ ପଦ—ଅରିକରୀ ( ଶତ୍ରୁରୂପ  ହସ୍ତି ପଲରେ ) ହରି ( ସିଂହରୂପୀ ରାମ ) ହସ୍ତାଗ୍ରେ (ସୁଗ୍ରୀବଙ୍କ ଉପରେ) ଶିର ଦେଇଣ  ( ମସ୍ତକ ଦେଇ ଆଉଜି) ବାଳିସୁତ ପର ( ଅଙ୍ଗଦ ଉପରେ )  କର  ( ହାତଭରି ଦେଇ )  ସନ୍ଧି କରି

ହେ, ବଶିଖ ସଳଖେ ଲକ୍ଷ୍ମଣ ଚରମେ ବନ୍ଧରେ ଦତ୍ତ ଈକ୍ଷଣ ।
ବାଣେ ଦେଖାନ୍ତି ରାବଣ ବଧ ଏମନ୍ତ କର୍ଣ୍ଣେ କହେ ବିଭୀଷଣ ସେ
ବୈଦେହୀ ସମୀପେ ମନ । ବ୍ଧାନ ଅଷ୍ଟାବଧାନ । ୫ ।
ହେ ବଧ ନ କରି ବରଦ ହେଲେ ବେଗ ରଚନ ରାମ ବଚନ ।
ବିଭୀଷଣ ସଙ୍ଗେ ରଙ୍ଗେ ମନ୍ତ୍ରିପଣେ ବେନି ଜନେ ହର ଧନ ସେ
ବନ୍ଧନମୁକ୍ତେ ଓଳଗେ । ବାହୁଡ଼େ ଲଙ୍କାକୁ ବେଗେ । ୬ ।

ବକେ "ହୋଇଛନ୍ତି" । ହନୁମାନ୍ କରେ ( ହସ୍ତରେ ) ପଦ୍ମର ( ରାମଙ୍କ ଚରଣ ଦୁଇ ) ମର୍ଦ୍ଦନ କରେ । ଭଲ୍ଲମନ୍ତ୍ରୀ ( ଜାମ୍ବୁବାନ୍ ) ଭଳି ( ଉତ୍ତମ ) ବେଳ ( ସମସ୍ତ ) "ବୋଲ" ବ୍ୟବସ୍ଥିତରେ ( ବୁଝିକରି ) କହନ୍ତି । ୪ ।

୫ମ ପଦ—ଚରମେ ( ପିଠ ଆଡ଼ରେ ବସି ) ଲକ୍ଷ୍ମଣ ବଶିଖ ( ବାଣ ) ସଲଖେ ( ସଲଖୁଛନ୍ତି ) । ବନ୍ଧରେ ( ବନ୍ଧରେ ଥିବା ଶୁକସାରଙ୍କ ଉପରେ ) ଈକ୍ଷଣ ( ଦୃଷ୍ଟି ) ଦତ୍ତ ( ଦେଇଛନ୍ତି ) । ବାଣେ ( ଏହି ବାଣରେ ) ରାବଣ ବଧ ହେବ "ଏମନ୍ତ କହି" ଦେଖାନ୍ତି ( ଏଣେ ବିଭୀଷଣ କର୍ଣ୍ଣେ କହେ ( କାନରେ କହନ୍ତି ) । ବୈଦେହୀ ସମୀପେ ( ସୀତାଙ୍କ ପାଖରେ ) ମନ "ଅଛି" ।
ଅଷ୍ଟାବଧାନ ବିଧାନ ( ଏରୂପେ ଅଷ୍ଟାବଧାନୀ ହୋଇଅଛନ୍ତି । ୫ ।

୬ଷ୍ଠ ପଦ—"ଶୁକସାରଣ"ଙ୍କୁ ବଧ ନ କରି ବେଗ ( ଶୀଘ୍ର ) ବରଦ ହେଲେ ( ବର ଦେଲେ ) । ରାମ ବଚନ ରଚନ ( ବ୍ରମ କହିଲେ ) ରଙ୍ଗେ (ଆନନ୍ଦରେ) ବିଭୀଷଣ ସଙ୍ଗେ ମନ୍ତ୍ରୀପଣେ ବେନିଜନେ ଧନ ହର । "ଲଙ୍କାରେ ବିଭୀଷଣ ରାଜା ହେଲେ ତୁମ୍ଭେ ଦୁହେଁ ମନ୍ତ୍ରୀ ହେବ ଏହି ବର ଦେଲେ ଏ ଭାବାର୍ଥ" । ବନ୍ଧନ ମୁକ୍ତେ ( ବନ୍ଧନରୁ ମୁକ୍ତ ହୁଅନ୍ତେ ) "ସେ ଦୁଇମନ୍ତ୍ରୀ" ଓଳଗେ ( ରାମଙ୍କୁ ପ୍ରଣାମ କରି ) ବେଗେ ( ଶୀଘ୍ର ) ଲଙ୍କାକୁ ବାହୁଡ଼େ ( ଫେରିଗଲେ ) । ୬ ।

*—ସୁଗ୍ରୀବୋଽପି ପୃଷ୍ଠମଂଘ୍ରିକମଳଂ ବାତାତ୍ମଜୋ ବାଳକେ ।
ଶ୍ରୀହସ୍ତଂ ପୁରତୋଽପି ଦୃଷ୍ଟି ମନୁଜେ ନେତ୍ରାଞ୍ଚଳଂ ଲକ୍ଷଣେ ।
କର୍ଣ୍ଣେ ବିକ୍ଷସ ଋକ୍ଷରାଜବଚନେ ଦତ୍ତୈକକାଳଂ ବସନ୍ ।
ବୈଦେହ୍ୟାଞ୍ଚ ରାଜତେ ରଘୁପତିଃ ସଂସେବ୍ୟତାଂ ସାଧବଃ । ୧ ।

ବିହି, ବୃଥା କଲା ଦଶମଥା ତାଙ୍କ କଥା ଭଲ୍ଲି ସେହି ଭଲ ହେଲା ।
ବ୍ୟଥାନ୍ତୁଦସ୍ତ୍ର ହୃଦୟରେ ବହିଲା ଶାର୍ଦ୍ଦୂଳଙ୍କୁ ବରଗିଲା ସେ ।
ବ୍ରହ୍ମଅଞ୍ଜନ ଘେନିଲା । ବରଣେ ଉଠି ଗୃହିଁଲା । ୭ ।
ବିହି, ବିଲୋକନ କରି ବାହୁଡ଼ି କହିଲା ଭୂଲୋକ ବ୍ୟାପିତ କପି ।
ବୋଇଲା ରାବଣ ଇନ୍ଦ୍ରଜାଲ ମାୟା ଶିକ୍ଷା କରିଥିବ ତପୀ ସେ ।
ବଚନେ ଭାଙ୍ଗି ଦୂତ । ବଟେ ମିଥ୍ୟା ନୁହେ ସତ । ୮ ।
ବିହି, ବୀରତରୁ ସମ ସାମାନ୍ୟ ବାନର ଗିରିଷମ ଗିରି ସମ ।
ବଡ଼ ବଡ଼ ତହିଁ ଯୂଥପତି ସେହି କୋପ-ଅନଳ ଜନମ ସେ ।
ବୋଲେ ଦଶାସ୍ୟ ତୁ କବ । ବଷୋରୁହେ ମେରୁ ଭାବ ।

୭ମ ପଦ—ଦଶମଥା ( ରାବଣ ) ତାଙ୍କ ( ସେ ଦୁଇମନ୍ତ୍ରିଙ୍କ କହିବା ) କଥା ବୃଥା କଲା ( ମିଥ୍ୟା ବୋଲି ମନେ କଲା ) ପ୍ରକୃତରେ ସେହି ( କଥା ) ଭଲ ( ଉତ୍ତମ ବା ଠିକ୍ ) "କିନ୍ତୁ ରାବଣଙ୍କୁ" ଭଲ୍ଲି ( ଭାଲ ଅସ୍ତ୍ରପରି ) ହେଲା । ହୃଦୟରେ ( ରାବଣର ମନରେ ) ବ୍ୟଥା ଉଦସ୍ତ୍ର ବହିଲା ( ପୀଡ଼ା ଜନ୍ମାଇଲା ) । "ତେଣୁ" ଶାର୍ଦ୍ଦୂଳଙ୍କୁ ( ଶାର୍ଦ୍ଦୂଳ ନାମା ରାକ୍ଷସକୁ ) ବରଗିଲା ( ପଠାଇଲା ) । ସେ ( ଶାର୍ଦ୍ଦୂଳ ) ବ୍ରହ୍ମ ଅଞ୍ଜନ ( ବ୍ରହ୍ମଦତ୍ତ ଅଞ୍ଜନକୁ ) "ନେତ୍ରରେ" ଘେନିଲା । ବରଣେ ( ପାଚେରୀରେ ) ଉଠି ଗୃହିଁଲା । "ସେ ଅଞ୍ଜନ ଆଖିରେ ଦେଲେ ଚଉଦ ଭୁବନ ଦିଶେ" । ୭ ।

୮ମ ପଦ—"ସେ ଶାର୍ଦ୍ଦୂଳ" ବିଲୋକନ କରି ( ରାମ ସୈନ୍ୟ ଦେଖି ) ବାହୁଡ଼ି ( ଫେରିଯାଇ ) କହିଲା, କପି ଭୂଲୋକ ବ୍ୟାପିତ ( ମର୍ତ୍ତ୍ୟଲୋକ ବ୍ୟାପି ରହିଛନ୍ତି ) । ରାବଣ ବୋଇଲା ତପୀ ( ଜଟାଧାରୀ ) ସେ "ଏଣୁ" ଇନ୍ଦ୍ରଜାଲ ମାୟା ଶିକ୍ଷା କରିଥିବ । ଦୂତ, ବଟେ ମିଥ୍ୟା ନୁହେ "ଏହା" ସତ "ଏମନ୍ତ କହି" ବଚନେ ( କଥାରେ ) ଭାଙ୍ଗି ( ମୀମାଂସା କରିଦେଲା ) । ୮ ।

୯ମ ପଦ—ସାମାନ୍ୟ (ମଧ୍ୟଭଳି) ବାନର ୧ବୀରତରୁ (ଅର୍ଜ୍ଜୁନବୃକ୍ଷ) ସମ (ସମାନ) "ତାଙ୍କ ମଧ୍ୟରେ" ଗିରି (ପର୍ବତ) ସମ ( ତୁଲ୍ୟ ) ଯେହି (ଯେମାନେ) ବଡ଼ ବଡ଼ କପି ସେହି ଯୂଥପତି, "ଅଟନ୍ତି" "ତାଙ୍କଠାରୁ ଗିରିଷମ ଗିରିସମ

୧—ନଦୀସର୍ଜ୍ଜୋ ବୀରତରୁରିନ୍ଦ୍ରଦ୍ରୁଃ କକୁଭୋଽର୍ଜ୍ଜୁନଃ ଇତ୍ୟମରଃ ।

ଦେହ, ବଢ଼ଭି ହୃଦେ ଜନିତ ବ୍ୟାଜଦମ୍ଭ ବଢ଼ଭି ଯାଇ ଆରୋହି ।
କିମ୍ବା ଚନ୍ଦ୍ରବିମ୍ବ କାଚଶୀ ଯହିଁରେ ନେଇଠବଦନରେ ଗୃହିଁ ଦେହ ।
ବାରିଯନ୍ତ୍ର ପରି ଯହିଁ । ବସୃତଗଙ୍ଗାହିଁ ବହି । ୧୦ ।
ଦେହ, ବିତାନ ମୋତିର ତାରପନ୍ତି ତାର ଉଦୟୁ ଯା ମଧ୍ୟପୁରେ ।
କହ୍ଲୀବସୁ ଘେର ଗତି କରି ମେରୁ ପ୍ରଦକ୍ଷିଣ ପରକାରେ ସେ ।
ବସି ତହିଁ ଅନାଇଲା । ବେଗେ ଦୃଷ୍ଟି ମନୀଇଲା । ୧୧ ।

---

ଗ୍ରୀଷ୍ମକାଳୀନ ପର୍ବତରୁ ଅନଳ ଜନ୍ମେଇ ପର" ଲୋପ ଅନଳ ଜନ୍ମ ଅଛି । "ତାହା ଶୁଣି" ଦଶାସ୍ୟ ( ରାବଣ ) ବୋଲେ ଭୁ କବ ( ଭୁ ତ ଗୋଟାଏ କବ ) "କଳ୍ପମାନେ" ବକ୍ଷୋରୁହେ ( ସ୍ତନକୁ ) ମେରୁ ଖ୍ୟାତ ( ମେରୁ ପର୍ବତ ତୁଲ୍ୟ ବର୍ଣ୍ଣନା କଲାପରି କହୁଛୁ ) ।

୧୦ମ ପଦ—ବଢ଼ଭି ( ବଢ଼ଭସ୍ଥ ) ହୃଦେ ( ସ୍ୱବଣ ମନରେ ) ଜନିତ ( ଜାତହେଲ ) ବ୍ୟାଜ ଦମ୍ଭ ( କପଟ ଧୈର୍ଯ୍ୟ ) "ଦେଖାଇ" ୨ ବଢ଼ଭି ( ଚନ୍ଦ୍ରଶାଳା କୁଠରୀକୁ ) ଯାଇ ଅରୋହି ( ଆରୋହିଲା ) । ଯହିଁରେ ( ଯେଉଁ-ଚନ୍ଦ୍ରଶାଳା କୁଠରୀରେ ) ଚନ୍ଦ୍ରବିମ୍ବ ( ଚନ୍ଦ୍ରମଣ୍ଡଳକୁ ) ବିମ୍ବ କରଣ ( ଦର୍ପଣ-ପ୍ରାୟ କରି ) ହେଠ ବଦନରେ ( ଅଧୋମୁଖରେ ) ଗୃ ( ଗୃହାନ୍ତ ) * ଯହିଁ ( ଯହିଁରେ ) ବାମୃତ ଗଙ୍ଗ ( ସ୍ୱର୍ଗଙ୍ଗା ) ହି ( ନିଶ୍ଚୟ ) ବାରିଯନ୍ତ୍ର ( କଳଯନ୍ତ୍ର ) ପରି ବହି "ଯାଏ" "ଏହାଦ୍ୱାରା ଚନ୍ଦ୍ରଶାଳାପୁରର ଉଚ୍ଚତା ସୂଚିତ ହେଲା" । ୧୦ ।

୧୧ଶ ପଦ—ଯାମଧ୍ୟପୁରେ ( ଯେଉଁ ଚନ୍ଦ୍ରଶାଳା ଗୃହ ମଧ୍ୟପୁରରେ ) ୧ ତାରପନ୍ତି ( ନକ୍ଷତ୍ର ମାଳା ) ତାର (ଯାହାର) ଉଦୟ ଅଭ୍ୟୁଦୟ) ବିତାନ-ମୋତି (ଚାନ୍ଦୁଆ ମୌକ୍ତିକ ଶ୍ରେଣୀ) "ପରି ଦିଶେ" । "ପୁରମଧ୍ୟ ଆକାଶରେ ଉଜ୍ଜ୍ୱଳ ତାରାବଳି ଚାନ୍ଦୁଆ ମୋତିମାଳା ପ୍ରାୟ ଦିଶିଲେ ଏ ତାତ୍ପର୍ଯ୍ୟାର୍ଥ" । ମେରୁ ପ୍ରଦକ୍ଷିଣ ପରକାରେ ( ମେରୁ ପ୍ରଦକ୍ଷିଣ କଲାପରି ) କହ୍ଲୀବସୁ ( ସୂର୍ଯ୍ୟ )

---

୧—ସ୍ୱାନ୍ତେଽପି ସାଧ୍ୱସଂ ଭସ୍ମମିତ୍ୟମରଃ ।

୨—ବଢ଼ଭିଚନ୍ଦ୍ରଶାଳକାଙ୍କ୍ଷ ଇତି ତ୍ରିକାଣ୍ଡଶେଷଃ ।

* —ପ୍ରତ୍ୟାସନ୍ନ ସୁଧାଂଶୁବିମ୍ବମୁକୁରେ ସଲକ୍ଷ୍ୟମାନାନନା ଇତି ରତ୍ନାକରେ ।

୧—ତାରେ ଦାନବଭେଦେସ୍ୟାଦ୍ଦୀପ୍ତି ନକ୍ଷତ୍ରପଂକ୍ତିଷୁ ।

ନେଇ, ବିଶ୍ୱସୃକ ବିଶ୍ୱଯୋଜ ଏକ ପଟ୍ଟ କରି କି କଲା ଚିତ୍ରିତ ।
ବଦନ କଳା ଧଳା ରଙ୍ଗେ ରଞ୍ଜିତ ବାନରେ ଦେଖ ପୂରିତ ଯେ ।
ବିସ୍ମୟେ ନିଃଶ୍ୱାସ ସାନ୍ଦ୍ର । ବିଚାରେ ରାକ୍ଷସ-ଇନ୍ଦ୍ର । ୧୨ ।
ଏନେ, ବୋଲି ଉତ୍ତରଦ୍ୱାର ସେମାର; ପଶ୍ଚିମେ ରଖିଲା ଇନ୍ଦ୍ରଜିତକୁ ।
ବଜ୍ରଦଂଷ୍ଟ୍ରକୁ ନିବେଶିଲା ପୂର୍ବରେ; ଦକ୍ଷିଣରେ ପ୍ରହସ୍ତକୁ ସେ ।
ବାଛୁ ଯେ ଯାହାର ପ୍ରୀତି । ବାନ୍ଧି ନେଲେ ସୈନ୍ୟପନ୍ତି । ୧୩ ।

---

ସେଇ ( ଅଙ୍ଗୁଳି ଛଡ଼ା ଦେହରୁ ରଥ ଲାଗିବା ଭୟରେ ଦୂଳଦର ) ଗଢ଼ କରି (ଗମନ କରନ୍ତୁ) । ତହିଁ (ସେ ପୁରରେ) ବସି ଅନାଇଲା ବେଗେ (ବେଗରେ) ୧ ଦୃଷ୍ଟି ( ସୈନ୍ୟ ଉପରେ ଦୃଷ୍ଟି ରଖି ) "ଆପଣା ମନକୁ" ମନାଇଲା ।୧୧।

୧୨ଶ ପଦ—ବିଶ୍ୱସୃକ୍ ( ବିଧାତା ) ବିଶ୍ୱଯୋଜ ( ସଂସାରଯୋଜକ ) ଏକ ପଟ୍ଟ (ଗୋଟିଏ ପଟ୍ଟ) କରି ଚିତ୍ରିତ କଲା କି ? "ଦେଖ" ସେ (ସମସ୍ତଙ୍କର) କଳା ଧଳା ରଙ୍ଗେ ('କଳା ଧଳା ଓ ରଙ୍ଗବର୍ଣ୍ଣରେ ) ରଞ୍ଜିତ ( ଶୋଭିତ ) ବଦନ ( ମୁଖ ) ବାନରେ ( ବାନରଙ୍କ ଦ୍ୱାରା ) ପୂରିତ ( ପୂର୍ଣ୍ଣ ହୋଇଛି ) ରାକ୍ଷସ ଇନ୍ଦ୍ର ( ରାବଣ ) ବିଚାରେ ( ଏମନ୍ତ ବିଚାର କଲା ପରେ ) ବିସ୍ମୟେ (ଚମତ୍କାରରେ) ନିଃଶ୍ୱାସ ସାନ୍ଦ୍ର ହେଲା ( କି ଉପାୟ ବୋଲି ଘନ ଘନ ନିଃଶ୍ୱାସ ଛାଡ଼ିଲା ) । ୧୨ ।

୧୩ଶ ପଦ—"ସେଠାରୁ ଆସି" ବୋଲି ( କହିଲା ) ଉତ୍ତର ଦ୍ୱାର ସେମାର "ହେଲି" । ପଶ୍ଚିମେ (ପଶ୍ଚିମଦ୍ୱାରରେ) ଇନ୍ଦ୍ରଜିତକୁ ରଖିଲା । ପୂର୍ବରେ ( ପୂର୍ବଦ୍ୱାରରେ ) ବଜ୍ରଦଂଷ୍ଟ୍ରକୁ ନିବେଶିଲା ( ସ୍ଥାପିଲା ) । ଦକ୍ଷିଣରେ ( ଦକ୍ଷିଣ-ଦ୍ୱାରରେ ) ପ୍ରହସ୍ତକୁ "ରଖାଇଲା" । ଯେ ଯେ ଦ୍ୱାରେ ପ୍ରୀତି ( ଯେ ଯାହାର ପ୍ରିୟଲୋକ ) ସେ ତାଙ୍କୁ ବାଛି "କରି ନେଲେ" ଏବଂ ସୈନ୍ୟପନ୍ତି ( ସୈନ୍ୟ ସମୂହ ) ବାନ୍ଧି (ଭାଗ କରି ) ନେଲେ । ୧୩ ।

---

୧—ଦୃଷ୍ଟିଃ ସ୍ତ୍ରିୟାଂ ଜ୍ଞାନେ ଲୋଚନେ ଦର୍ଶନେଽପି ଚ ଇତି ମେଦିନୀ ।

ଦେହ, ବାଜୀ ରଥ ଗଜ ସାଜ ଆରୋହିଲେ ମନକୁ ହୃଷ୍ଟ କୁମରେ ।
ବାଣ ଶରାସନ ଖଡ୍‌ଗ ଚକ୍ର ଗଦା ତ୍ରିଶୂଳ ପରିଘ କରେ ସେ ।
ବଳନ୍ଧକୁ ଉପର । କରିବା କରି ବଗ୍ୱର । ୧୪ ।
ଦେହ, ବାହାର ଧନ୍ୟ ହୋଇଣ ଋକ୍ଷ-ସୈନ୍ୟ ଯାଇ ପୁଣ୍ୟଜନପୁର ।
ବେଢ଼ି ଏ ସମୟେ ଯଥା ହିମାଳୟ ଅଧୋଭାଗେ ଜଳଧର ସେ ।
ବିରବ ପ୍ଲବଗ କରେ । ବଦ୍ୟ ଘନ ଉପଳରେ । ୧୫ ।

---

୧୪ଶ ପଦ—କୁମରେ ( ରାବଣର ପୁତ୍ରମାନେ ) ହୃଷ୍ଟ ହୋଇ ମନକୁ ଇଚ୍ଛାନୁସାରେ ବାଜୀ ( ଘୋଡ଼ା ) ରଥ ଗଜ ସାଜ ଆରୋହିଲେ । ସେ ( ପୁଣି ସେମାନେ ) ବାଣ ଶରାସନ ( ଧନୁ ) ଖଡ୍‌ଗ ଚକ୍ର ଗଦା ତ୍ରିଶୂଳ ପରିଘ କରେ "ଧରି" ବଳ ଧକୁ ( ସୈନ୍ୟଥିବା ଦିଗକୁ ) ଉପର କରିବା ( ପ୍ରବୃତ୍ତ ହୋଇ ) "ଏମନ୍ତ" ବଗ୍ୱର କରି ବାହାରିଲେ ଅଥବା "ବଳନ୍ଧକୁ" ଏପରି ପାଠ ହେଲେ ବଳନ୍ଧକୁ ( ପାତାଳକୁ ) ଉପର ( ଉପରକୁ କରିବା ) ଅର୍ଥାତ୍ ପୃଥିବୀକି ଓଲଟାଇ ପକାଇବା ବୋଲି ରାବଣ ପୁତ୍ରମାନେ ବଗ୍ୱର "କଲେ" । ୧୪ ।

୧୫ଶ ପଦ—ଏ ସମୟେ ( ଏ ସମୟରେ ଧନ୍ୟ ( ପ୍ରଶଂସ୍ୟ ) ଋକ୍ଷ ସୈନ୍ୟ ( ଭଲ୍ଲୁକ ବଳ ) ବାହାର ହୋଇଣ ( ବାହାର ହୋଇ ) ଯାଇ ପୁଣ୍ୟ ଜନପୁର ( ଲଙ୍କାକୁ ) ଜଳଧରେ *( ମେଘମାଳା ) ହିମାଳୟ ଅଧୋଭାଗେ (ହିମଗିରି କଟି ପ୍ରଦେଶରେ) ବେଢ଼ି ଯଥା (ବେଢ଼ିଲା ପ୍ରାୟ) "ବେଢ଼ିଲେ" "ମେଘ ହେଲେ" ୧ ପ୍ଲବଗ ( ବେଙ୍ଗ ) ବିରବ ( ବିଶେଷରେ ଧ୍ୱନି ) କରେ "ପୁଣି" ୨ ଘନ ଉପଳରେ ( କୁଆପଥରରେ ) ବଦ୍ୟ ( ବଦ୍ୟମାନ ହୋଇ ଥାଏ ) ! "ଏଠାରେ" ପ୍ଲବଗ ( କପିଅାଟ ) ବିରବ ( ବିଶେଷରେ ଧ୍ୱନି କରେ) "ପୁଣି" ଘନ ( ଗାଢ଼ ) ଉପଳରେ ( ପଥରରେ ) ବଦ୍ୟ (ବଦ୍ୟମାନ ହୋଇଅଛି) । ୧୫ ।

---

*—ଆମେଖଳଂ ସଞ୍ଚରତାଂ ଘନାନାଂ ଛାୟାମଧଃ ସାନୁଗତାଂ ନିଷେବ୍ୟ ।
ଇତି କୁମାରସମ୍ଭବେ ।

୧—ପ୍ଲବଗୋ ବାନରେ ଭେକେ ସାରଥୌ ଶ୍ଳେଷ୍ମଦାରୁଣି ଇତିମେଦିନୀ ।
୨—ବର୍ଷୋପଳସ୍ତୁ କରକା ଇତ୍ୟମରଃ ।

ଯହିଁ, ବାତଜ ପ୍ରଖର ଅତ୍ୟନ୍ତ ରାଜେନ୍ଦ୍ର-କୋଦଣ୍ଡ ଉଦିତ ଯହିଁ ।
ବିଭୀଷଣ ଡାକ ଚଞ୍ଚଳା ଗଢ଼ରେ ସୁମନା ପ୍ରଫୁଲ୍ଲ ତହିଁ ଯେ ।
ବିବେକ କର ବିବୁଧ । ବିଜନ୍ୟ ରୂପକ ଶ୍ଳେଷ । ୧୬ ।
ଯହିଁ, ବରଗି ସୁଗ୍ରୀବ ଦକ୍ଷିଣେ; ଅଙ୍ଗଦ ପୂର୍ବେ; ମାରୁତ ପଶ୍ଚିମେ ।
ବିଜେ ଉତ୍ତରେ ଆପଣେ; ଯୂଥପତି ବାଣ୍ଟି ହେଲେ ଏହି କ୍ରମେ ଯେ ।
ବିମାନ ଚଢ଼ି ରାଘବ । ବିହାୟସରେ ଭ୍ରମଣ । ୧୭ ।

୧୬ଶ ପଦ—ଯହିଁ ( ଯେଉଁ ବର୍ଷାକାଳରେ ) ବାତ ଅତ୍ୟନ୍ତ ପ୍ରଖର ହୋଇ ଜ ( ଜାତହୁଏ ) । ରାଜେନ୍ଦ୍ରକୋଦଣ୍ଡ ( ଇନ୍ଦ୍ରଧନୁ ) ଉଦିତ ( ଉଦୟ ହୁଏ ) । ତହିଁ ( ଯେଉଁ ଘନକାଳରେ ) ବିଭୀଷଣ ( ଭୟଙ୍କର ) ଡାକ ( ମେଘ ଗର୍ଜନ ) "ଏବଂ" ଚଞ୍ଚଳା ( ବିଜୁଳି ) ଗଢ଼ରେ ( ଘର-ରରେ ) ସୁମନା ( ମାଳତୀ ଫୁଲ ) ପ୍ରଫୁଲ୍ଲ ( ଫୁଟଇ ) । ଯହିଁ ( ଯେଉଁ ସୈନ୍ୟରେ ) ବାତଜ ( ହନୁମାନ୍ ) ଅତ୍ୟନ୍ତ ପ୍ରଖର ( ଚଞ୍ଚଳ ) "ହୋଇ-ଅଛି" । ରାଜେନ୍ଦ୍ର ( ରାମଚନ୍ଦ୍ରଙ୍କର ) କୋଦଣ୍ଡ (ଧନୁ) ଉଦିତ "ହୋଇ-ଅଛି" । ବିଭୀଷଣ ( ବିଭୀଷଣର ) ଡାକ "ଆଉ" ଚଞ୍ଚଳା ଗିର (ଚଞ୍ଚଳ ଗୃହ) ତହିଁ ( ତହିଁରେ ) ସୁମନା ( ଦେବତାମାନେ ) ପ୍ରଫୁଲ୍ଲ ( ଆନନ୍ଦ ) "ହୋଇ-ଅଛନ୍ତି" । ବିବୁଧ ( ପଣ୍ଡିତମାନେ ) ବିଚାର କର "ଏଥିରେ" *ରୂପକ ଶ୍ଳେଷ "ଏ ଦୁଇ" ବିଜନ୍ୟ ( ଜାତ ହୋଇଛି ) । ୧୬ ।

୧୭ଶ ପଦ—"ଶ୍ରୀରାମ" ସୁଗ୍ରୀବ ( ସୁଗ୍ରୀବଙ୍କୁ ) ଦକ୍ଷିଣେ ( ଦକ୍ଷିଣ ଦ୍ୱାରକୁ ) ବରଗି ( ପଠାଇଲେ ) । ପୂର୍ବେ ( ପୂର୍ବ ଦ୍ୱାରକୁ ) ଅଙ୍ଗଦ ( ଅଙ୍ଗଦକୁ ) ପଠାଇଲେ । ପଶ୍ଚିମେ ( ପଶ୍ଚିମ ଦ୍ୱାରକୁ ) ମାରୁତ ( ହନୂମାନଙ୍କୁ ) ପଠାଇଲେ । ଆପଣେ (ଆପେ) ଉତ୍ତରେ ( ଉତ୍ତର ଦ୍ୱାରରେ ) ବିଜେ କଲେ ଏହିକ୍ରମେ ଯୂଥପତି ବାଣ୍ଟି ହେଲେ ( ଏହି କ୍ରମରେ ଯୂଥପତି-ମାନେ ଚାରିଦ୍ୱାରକୁ ବାଣ୍ଟି ହୋଇ ଗଲେ ) । ସେ ରାଘବ "ଏକାଳେ" ବିମାନ ଚଢ଼ି ବିହାୟସରେ ( ଆକାଶରେ ) ଭ୍ରମଣ "କଲେ" । ୧୭ ।

---

*—ଶ୍ଳିଷ୍ଟରୂପକଂ । ରାଜହଂସୋପଶ୍ଳେଷାର୍ଥଂ ।

ହେ, ବିଶେଷରେ ମଲ୍ଲି ସ୍ଫୁଟ ହୋଇଗଲା ମନ୍ଦା ସନ୍ତାପ ସଞ୍ଚରି ।
ବିଲୀନ ଜୀବନ କରିବ ପରା ଏ ତପ-ଆଚରଣ-ଧାରୀ ହେ ।
ବକ୍ଷରେ ଯେ ମଣି ସ୍ଥିତ । ବିହ୍ୱଳେ ଏ ପଞ୍ଚକୃତ । ୧୮ ।
ହେ ବିଚାରେ ଅଶେଷ ସୈନ୍ୟ ସଞ୍ଚୟୁଙ୍କୁ ଏକାଠାରେ ବନ୍ଧ ବାନ୍ଧି ।
ବୋଲନ୍ତି ଶାଖାମୃଗ ମୃଗ ସ୍ୱଭାବେ ମୃଗପ୍ରାୟ ହୋଇ ମୋହିତ ଯେ
ବାରି ମରୀଚିକା ଦୃଶ୍ୟ । ବିଅର୍ଥ ମନୁଷ୍ୟବର୍ଗ । ୧୯ ।

---

୧୮ଶ ପଦ—ବିହ୍ୱଳେ ( ବିହ୍ୱଳ ହୋଇ ) ଏ ( ଏମନ୍ତ ) ପାଞ୍ଚକୃତ ( ବିଚାର କଲ ) । ତପ ଆଚରଣ ( ତପସ୍ୟା ଆଚରଣ ) ଧାରୀ ଏ ଗ୍ରୀଷ୍ମ ୧ ତପ ପରା ( ଗ୍ରୀଷ୍ମକାଳ ପ୍ରାୟ ) "ଆଚରଣକୁ ଧରି" ଜୀବନ ( ମୋ ପ୍ରାଣକୁ ) "ଗ୍ରୀଷ୍ମ" ଜୀବନ ( ଜଳକୁ ) ବିଲୀନ ( ଶୁଷ୍କ ଜଳପ୍ରାୟ ) ବିଲୀନ କରିବ "ଏମନ୍ତ" ସନ୍ତାପ ସଞ୍ଚରି ( ସଞ୍ଚରିଲ ); ମଲ୍ଲି "ଏଥିରେ ଏମନ୍ତ" ସ୍ଫୁଟ ( ପ୍ରକାଶ ) ହୋଇ ଗଲା । ବିଶେଷରେ ଗ୍ରୀଷ୍ମକାଳରେ ତ ମଲ୍ଲି "ଫୁଲ" ସ୍ଫୁଟ ( ଫୁଟଇ ) । ବକ୍ଷରେ ( ଲକ୍ଷ୍ମଣ ବକ୍ଷସ୍ଥଳରେ ) ସ୍ଥିତ ( ଥିବ ) ଯେ ( ଯେଉଁ ମଣି ( ଅମୋଘ ମଣି ) ତହିଁରେ ଦୃଷ୍ଟି ପଡ଼ିବା ଯୋଗୁଁ ଏମନ୍ତ ପଞ୍ଚିଲ । ୧୮ ।

୧୯ଶ ପଦ—କିଚାରେ ( କଥଣ ପାଞ୍ଚିଲ ) ? ଅଶେଷ ( ଅସଂଖ୍ୟ ) ସୈନ୍ୟ ସଞ୍ଚୟଙ୍କୁ ( ସୈନ୍ୟ ସମୂହକୁ ) ବାନ୍ଧି ( ବିଧାତା ) ଏକଠାରେ ବନ୍ଧୁ ( ବନ୍ଧିଲ ) "ଏ କପିମାନେ" ଶାଖା ମୃଗ "ତ" ବୋଲନ୍ତି ଏ ୧ ମୃଗ ( ମୂର୍ଖ ) ସ୍ୱଭାବେ ( ସ୍ୱଭାବ ଯୋଗୁଁ ) ମୃଗ ( କୁରଙ୍ଗ ) ପ୍ରାୟ ମୋହି ( ମୋହିତ ) ହୋଇ ଅଛନ୍ତି । "ମୃଗ ସ୍ୱରୂପ" ୨ ମରୀଚିକା । (ମୃଗତୃଷ୍ଣାକୁ) ବାରି ( ଜଳ ମନେ କରି ) "ଗୋଡ଼ାଇ ଯାଏ" ତଦ୍ରୂପ ଏମାନେ ଦୃଶ୍ୟ ( ପ୍ରଭୂତୁଲ୍ୟ ସୁନ୍ଦର ) ମନୁଷ୍ୟ ( ମାନବଠାରେ ) ବିଅର୍ଥ ( ବ୍ୟର୍ଥରେ ) "ବଶ ହୋଇ ଗୋଡ଼ାଇ ଅଛନ୍ତି" । ୧୯ ।

---

୧—ନିଦାଘଉଷ୍ଣୋପଗମସ୍ତପ ଇତ୍ୟମରଃ ।
୧—ମୃଗଶୀର୍ଷେ ଧ୍ୱାଙ୍କ୍ଷେ ପଡ଼ୌ ମୃଗଃ ପଶୁକୁରଙ୍ଗୟୋ ଇତିରଭସଃ ।
୨—ମୃଗତୃଷ୍ଣା ମରୀଚିକା ଇତ୍ୟମରଃ ।

ଦେଖ, ବେଭାରବୁଡ଼ା ଅନୁଜ ମୋ ମନୁଜ ଶରଣ ମାରିବ ଆଗ ।
ବହନ ବହିବା ଗନ୍ଧବହ ଗଦା ହସ୍ତରୁ କଲା ପ୍ରୟୋଗ ସେ ।
ବିପତିତ ଉଲ୍‌କାପରି । ବାୟୁପୁତ୍ର ନେଲା ଧରି । ୨୦ ।
ଦେଖ, ବୋଲନ୍ତି ଜନାଭିରାମ ରାମଚନ୍ଦ୍ର ଚନ୍ଦ୍ରହାସପ୍ତ ଜନ୍ମାଇ ।
ବଳାହକ ବିନା ବିନାଶନପ୍ରଭା ଭାନୁ-ଭାନୁ କାହିଁପାଇଁ ସେ ।
ବିଚକ୍ଷଣ ବିଷେକ୍ଷଣ । ବିଳସେ ନଭେ ରାବଣ । ୨୧ ।
ଦେଖ, ବିମଳ ଲକ୍ଷ ଶ୍ୱେତଛତ୍ର ଚାମର ଏହି ପ୍ରମାଣରେ ଜାଣ ।
ବିରୋଧୀ ହୋଇଛି ଆଦିତ୍ୟ ପ୍ରଭାର ଲକ୍ଷ ଶଙ୍ଖ ଶବ୍ଦ ଶୁଣ ସେ ।
ବୀରେନ୍ଦ୍ର ପ୍ରହାରି କାଣ୍ଡ । ବିଚ୍ଛେଦିଲେ ଛତ୍ରଦଣ୍ଡ । ୨୨ ।

---

୨୦ଶ ପଦ—ବେଭାରବୁଡ଼ା (ମହତ୍ତ୍ୱବୁଡ଼ା) ମୋ ଅନୁଜ (ମୋ ସାନଭାଇ ମନୁଜ (ମାନବ ପାଦରେ) ଶରଣ "ପଶିଲା" "ଏଣୁ ତାକୁ" ଆଗ ମାରିବ। "ଏମନ୍ତ ବିଚାରି" ବହିବା (ଧରିଥିବା) ଗନ୍ଧବହ (ପବନ-ଦେବା) ଗଦା ବହନ (ବେଗରେ) ହସ୍ତରୁ ପ୍ରୟୋଗ କଲା (ଫୋପାଡ଼ିଲା) ସେ (ଗଦା) ଉଲ୍‌କାପରି (ନକ୍ଷତ୍ର ଖସିଲା ପ୍ରାୟ କମ୍ବା ଅଗ୍ନି ହୁଳା ପ୍ରାୟ) ବିପତିତ (ପଡ଼ିବା ଦେଖି) ବାୟୁପୁତ୍ର (ହନୁ) "ଶୂନ୍ୟରୁ" ଧରିନେଲା। ୨୦।

୨୧ଶ ପଦ—ଜନାଭିରାମ (ଜନ ମନୋହର) ରାମଚନ୍ଦ୍ର ଚନ୍ଦ୍ରହାସକୁ ଜନ୍ମାଇ (ଚନ୍ଦ୍ରତୁଲ୍ୟ ସୁନ୍ଦର ହାସ୍ୟ କରି) ବୋଲନ୍ତି ବଳାହକ (ମେଘ) ବିନା ଭାନୁ ଭାନୁ (ରବି କିରଣ) କାହିଁପାଇଁ ବିନାଶନ (ବିଶେଷରେ ନଷ୍ଟ ହେଲା)। "ତାହା ଶୁଣି" ବିଷେକ୍ଷଣ ବିଚକ୍ଷଣ (କହିଲେ) "ଦେଖ" ରାବଣ ନଭେ (ଆକାଶରେ) ବିଳସେ (ବିହାର କରୁଅଛି)। ୨୧ !

୨୨ଶ ପଦ—ବିମଳ (ନିର୍ମଳ) ଲକ୍ଷ (ଏକ ଲକ୍ଷ) ଶ୍ୱେତ ଛତ୍ର ଏହି ପ୍ରମାଣରେ (ଏକ ଲକ୍ଷ) ଶ୍ୱେତ ଚାମର "ଅଛି" ଜାଣ । "ଏଣୁ" ଆଦିତ୍ୟ ପ୍ରଭାର (ସୂର୍ଯ୍ୟ କିରଣର) ବିରୋଧୀ ହୋଇଛି (ଖରା ପଡ଼ୁନାହିଁ)। ଲକ୍ଷ (ଏକ ଲକ୍ଷ) ଶଙ୍ଖ ଶବ୍ଦ (ଶଙ୍ଖର ଧ୍ୱନି) ଶୁଣ । "ଶୁଣି" ବୀରେନ୍ଦ୍ର (ରାମ) କାଣ୍ଡ ପ୍ରହାରି ଛତ୍ରଦଣ୍ଡ ବିଚ୍ଛେଦିଲେ (କାଟି ପକାଇଲେ)। ୨୨।

ହେ, ବସର ବସର ଚକ୍ରାଙ୍ଗ କି ଚକ୍ରଗତି କରି ଶୂନ୍ୟ ଖସି ।
ବଧ ହେବା ଶଙ୍କା ଲଙ୍କାପତି ଲଭି ବାହୁଡ଼ି ସଭାରେ ବସି ସେ
ବେଢ଼ି କଉଣପେ ତହିଁ । ବିବିଧ ପ୍ରତିଜ୍ଞା କହି । ୨୩ ।
ହେ, ବିବସ୍ୱାନବଂଶୀ ଆଦେଶେ ଏକାଳେ ଆସି ମୁଁ ଅଙ୍ଗଦ ଭଣି ।
ବୈଦେହୀ ସମର୍ପ ଜବେ ଥିଲେ ଆଶ ମୁଠା-ଆଜ୍ଞା ଅଛି ଆଣି ମୁଁ ।
ବୋଲେ ଲଙ୍କେଶ ଏ ପଦ । ବିଳମ୍ବ ହେବୁ ଅଙ୍ଗଦ । ୨୪ ।

---

୨୩ଶ ପଦ—"ହେ ଚକ୍ରାଙ୍ଗ ସବୁ" ବସର ବସର (ସମୂହ ସମୂହ ହୋଇ) ଶୂନ୍ୟ ଖସି (ଖସିବାରେ) "ଏମନ୍ତ ଦଣ୍ଡିଲେ" ୧ ଚକ୍ରାଙ୍ଗ (ହଂସମାନେ) ଚକ୍ରଗତି କରି ଶୂନ୍ୟରୁ ଖସି ପଡ଼ିଲେ କି । "ତା ଦେଖି" ଲଙ୍କାପତି (ରାବଣ) ବଧ ହେବା ଶଙ୍କା (ଭୟ) ଲଭି (ପାଇ) ବାହୁଡ଼ି (ସେଠାରୁ ଆସି) ସଭାରେ ବସି (ବସିଲା) । ତହିଁ (ସେ ସଭାରେ) କଉଣପେ (ରାକ୍ଷସମାନେ) ବେଢ଼ି ବିବିଧ (ନାନାପ୍ରକାର) ପ୍ରତିଜ୍ଞା କହି (କଲେ) । ୨୩ ।

୨୪ଶ ପଦ—ଏକାଳେ ଅଙ୍ଗଦ ବିବସ୍ୱାନବଂଶୀ (ରାମଚନ୍ଦ୍ରଙ୍କ) ଆଦେଶେ (ଆଜ୍ଞାରେ) ମୁଁ ଆସି (ଆସିଲି) "ଏମନ୍ତ" ଭଣି (ରାବଣ ଆଗରେ କହିଲେ) । ଜବେ (ତୋ ପ୍ରାଣର) ଆଶ (ଆଶା) ଥିଲେ ବୈଦେହୀ (ସୀତାଙ୍କୁ) ସମର୍ପ (ସମର୍ପଣ କର) । "ମୁଁ" ମୁଠା ଆଜ୍ଞା (ମୁଦ୍ରିତ ଆଜ୍ଞାପତ୍ର) ଆଣିଅଛି । "ଏହା ଶୁଣି" ଲଙ୍କେଶ (ରାବଣ) ଏ ପଦ ବୋଲେ (ଏ ପଦକ କଥା ବୋଇଲା) । "ତୁ ଶୀଘ୍ର ପଳା" ବିଳମ୍ବେ ବିଳମ୍ବ କଲେ) ୧ ଅଙ୍ଗଦ ହେବୁ (ଅଙ୍ଗକୁ ଦେବୁ) "ମରିବୁ ଏହିଭାବ" । ୨୪ ।

---

୧—ଚକ୍ରାଙ୍ଗଃ ସାରସୋହଂସ ଇତି ।
ଚକ୍ରାଙ୍ଗୀରଥସଖଶତାଙ୍ଗସ୍ୟ ପକ୍ଷବାତ ହଂସଦୂତେ ।
୧—ଅଙ୍ଗଂ ଦଦାତୀତି ଅଙ୍ଗଦଃ ।

୨୫. ବ୍ୟାଖ୍ୟାନ କଲା ଯୁବରାଜ ନ ଚହ୍ନୁ ମୋତେ ବଂଶଚକ୍ଷୁ ଥାଇ
ଅନ୍ଧ ମୁଁ ଏ ଘେନ ତୁ କେଉଁ ରାବଣ ରାବଣ କରନ୍ତୁ ମୁହିଁ ସେ ।
ବଧା ପ୍ରହାର ଏକ୍ଷଣି । ବଭ୍ରୁ ଆଜ୍ଞା ନାହିଁ ଶୁଣି । ୨୫ ।
୨୬, ବଇଶ୍ରବଣ ବୋଲେ କେତେ ରାବଣ ଜାଣୁ ଶୁଣିମା ସେ କହ ।
ବାଳି ଅର୍ଜୁନ ଭବଗିରି ପୀଡ଼ାରେ ରାବକୁ ଥିଲେ ଯେ ବନ୍ଧ ସେ ।
ବାମାଙ୍ଗୁଳେରେ ଅଚ୍ଛି ମୁଖ୍ୟ । ବିବେକ କରନ୍ତ କେ ତୁ । ୨୬ ।
୨୭, ବେଢ଼ାଉଁ ଯେ ମଲ୍ଲଜାଳକୁ ଚାଳକୁଁ ବଧି ଜଗଷ୍ଟିରୁଳକୁ
ବନ୍ଧି ଚଟଚଟ୍ଟେ ରାମେ ଯାଇ କହିଲା ସେ ସନ୍ଦେଶ ସକଳକୁ ଯେ ।
ବନମାଳୀ ଏ ସମୟେ । ବଞ୍ଜୁଳବନକୁ ଯାଏ । ୨୭ ।

---

୨୫ଶ ପଦ—"ଏଭ୍ରାଶ୍ରୁଣି ଅଙ୍ଗଦ" ବ୍ୟାଖ୍ୟାନ କଲା (କହିଲା) "ମୁଁ କାର୍ତ୍ତବୀର୍ଯ୍ୟାପୁର' ଯୁବରାଜ ମୋତେ ନ ଚହ୍ନୁ (ଚହ୍ନିପାରୁ ନାହୁଁ) । ବଂଶ ଚକ୍ଷୁ (କୋଡ଼ଏଠା ଆଖି) ଥାଇଁ "ଅନ୍ଧ ପ୍ରାୟ କହୁଅଛୁ" "ଏ ଘେନ" ମୁଁ ବଣା 'ହେଉଅଛୁ" । ତୁ କେଉଁ ରାବଣ "ଜାଣିଲେ" ଏକ୍ଷଣି ବଧା ପ୍ରହାର 'ତେତେ" ୧ ରାବଣ (ରାବଣଙ୍କୁ) କରନ୍ତୁ "କିନ୍ତୁ" ବଭ୍ରୁ (ରାମଙ୍କ) ଆଜ୍ଞା ଶୁଣି ନାହିଁ "ତେଣୁ ବିଳମ୍ବ ହେଉଅଛୁ" । ୨୫ ।

୨୬ଶ ପଦ—"ଅଙ୍ଗଦ କଥା ଶୁଣି" ବଇଶ୍ରବଣ (ରାବଣ) ବୋଲେ "ତୁ" କେତେ ରାବଣ ଜାଣୁ ସେ "କଥା" କହ (କହିଲେ) ଶୁଣିମା । "ଅଙ୍ଗଦ କହିଲା" ବାଳି (ବାନରାଧିପ) ଅର୍ଜୁନ (ସହସ୍ରାର୍ଜୁନ) ଭବ-ଗିରି (କୈଳାସ ପର୍ବତ) "ଏମାନଙ୍କ" ପୀଡ଼ାରେ ଯେ (ଯେଉଁ ରାବଣ) ରାବକୁ ବନ୍ଧି ଥିଲା (ରାବ କରିଥିଲା) ବାମାଙ୍ଗୁଳରେ (ନାଖଗ୍ରେର ଏକ ରାବଣ) "ଏମନ୍ତେ ଚାରିରାବଣ ଏହାଙ୍କ ମଧ୍ୟରେ ନାଖ ଚୋରକୁ" ମୁଖ୍ୟ ଅଚ୍ଛୁ । କେ (କେଉଁ) ରାବଣ ତୁ ବିବେକ କରନ୍ତ (ବିଚାର କର) । ୨୬ ।

୨୭ଶ ପଦ—ଚାଳକୁଁ (ଅଙ୍ଗଦ ଏପରି ଚାଳିକ କରି କହିବାରୁ) ଯେ (ରାବଣ) ମଲ୍ଲ ୧ ଜାଳକୁ (ମାଲିମାନଙ୍କୁ ଜାଲପ୍ରାପ୍ତ କରି) ବେଢ଼ାଉଁ

---

୧—ରାବଣୋରବ ଦୈତ୍ୟେସ୍ୟାଦ୍ଦଶବଦମାଳା ।
୧—ଜାଲଂ ଗବାକ୍ଷ ଆନାୟେ କ୍ଷାରକେ କପଟେ ଗଣେ ଇତି ବୈଜୟନ୍ତୀ ।

ଏହି, ଭୁଜାଲେ ମାୟାଶିର ବେନି ଅସିର ଛେଦନ ପରା ସେକ୍ଷଣି ।
ବହିଲ ରୁଧିର-ଧାର ବସୁଧାରି ସୁତାକୁ ଦେଖାଇ ଭଣି ସେ ।
ବଧିଲି ଦେବର ବର । ବରରୋହା ମୋତେ ବର ।୨୮।
ଏହି, ବୋଲୁଁ ଦେଖିଲେ ଗୃହିଁ ଫୁଲ୍ଲ ପଦ୍ମ ଦୁଇ ଜାତ ସରସ୍ୱତୀ ନୀର
ବିକଷ ଜରଜର ହୋଇଲା ପରାପ୍ତେ ମୁଖ ଗଳ ମନୋହର ସେ ।
ବିଦେହଜା ଶୋଭ-ବନ । ବହିଲା ସେହି ବିଧାନ ସେ ।୨୯।

---

( ବେଢ଼ାଇ ଥଅନ୍ତେ ) ସେ ( ଅଙ୍ଗଦ ) ବାନ୍ଧି ( ମଲ୍ଲଜାଳକୁ ନାଶ ) ଜଗତ୍ କୂଳକୁ ନୃତ୍ୟ ( ଯେମନ୍ତ ) ଗଗନେ ( ଗଗନ ମାର୍ଗରେ ) ଯାଇ ରାମେ ( ରାମଙ୍କ ଆଗରେ ) ସନ୍ଦେଶ ସକଳକୁ ( ସକଳ ସନ୍ଦେଶ ) କହିଲା । ବକ୍ତ୍ରମାଳୀ ( ରାବଣ ) ଏ ସମୟେ ବଞ୍ଜୁଲବନ ( ଅଶୋକବନକୁ ) ଗଲା । ୨୭ ।

୨୮ଶ ପଦ—ସେକ୍ଷଣି ଅସିର ( ଖଡ୍ଗରେ ) ଛେଦନ ପରା । (ଛେଦନ ହେଲା ପ୍ରାୟ ) ମାୟାଶିର ( ମାୟାମୁଣ୍ଡ ) ବେନି ( ଦୁଇଗୋଟି ) ଭୁଜାଇ ( ଲୋକ ହାତରେ ଧରାଇ ) "ତହିଁରୁ" ରୁଧିର ଧାର ବହଇ ( ଝରଇ ) ବସୁଧାର ସୁତାକୁ ( ସୀତାଙ୍କୁ ) ଦେଖାଇ ଭଣି ( କହିଲା ) ଦେବର ବର ( ଦେଖ ତୋ ବର ଦିଅରଙ୍କୁ ) ବଧିଲି ରେ ବରରୋହା "ଏବେ" ମୋତେ "ତୁ" ବର ( ବରଣ କର ) । ୨୮ ।

୨୯ଶ ପଦ—ବୋଲୁଁ ( ରାବଣ ଏମନ୍ତ କହନ୍ତେ ) 'ସୀତା" ଗୃହିଁ ଦେଲେ ଫୁଲ୍ଲ ( ଫୁଟିଲ ) ପଦ୍ମ ଦୁଇ "ଗୋଟି" ସରସ୍ୱତୀ "ନଦୀ" ନୀର ( ଜଳରୁ ) ଜାତ "ହୋଇ" ବିକ୍ଷେ ( ମୃଣାଳରେ ) ଜର ଜର ହୋଇଲା ପରାପ୍ତେ ( ପ୍ରାପ୍ତ ) ମୁଖ ଗଳ ( ଗଳଦେଶ ) "ଏ ଦୁହେଁ" ମନୋହର "ଦଶାନ୍ତ" । "ତା ଦେଖି" ବିଦେହଜା (ସୀତାଙ୍କ) ଶୋଭବନ ( ଶୋଭରାଶି ) ସେହି ବିଧାନ ବହିଲା । ସରସ୍ୱତୀ ନୀରତୁଲ୍ୟ ଈଷତ୍ ରକ୍ତବର୍ଣ୍ଣ ରୁଧିରାକ୍ତ ନାଡ଼ିଯୁକ୍ତ ଗଳଦେଶ ବିଚ୍ଛିନ୍ନ ମୁଖପଦ୍ମ ଦୁଇଟିକି ଅଶୋଭ ଦେଖି ସୀତା ଅଶୋଭ ହସିଲେ ଏହି ତାତ୍ପର୍ଯ୍ୟାର୍ଥ । ୨୯ ।

ଦେଖ, ବିରାଜିତ ହୋଇଥିଲେ କୁନ୍ଦଦନ୍ତୀ ହୋଇଥାଇ ଚନ୍ଦନ ଆଣି ।
ବୁହାଇଲା ଜଳ ମାତୁଳଙ୍ଗ ସ୍ଥଳ ଶୋକ-ପରିବାର ପୁଣି ସେ ।
ମରେ ମାର କପି ଡାକ । ବିତର୍କି ଜାନକୀ ଏ କା । ୩୦ ।
ଦେଖ, ବାହୁଜବର ଆଦେଶେ ହନୁମାନ ସୁଗ୍ରୀବ ଅଙ୍ଗଦ ଦ୍ୱେଷେ ।
ବାଟ ନ ପାଇ କପାଟ ଆଣ୍ଟ ଘେନ ପ୍ରାକାରେ ଉଠିଲେ କପିଶେ ସେ ।
କଂଶବାହୁ ପାଶେ ଗୃର । ବାରତା କହୁଁ ସତ୍ୱର । ୩୧ ।

---

୩୦ଶ ଛନ୍ଦ—କୁନ୍ଦଦନ୍ତୀ ( ସୀତା ) ବିରାଜିତ ( ଅଶୋଭିତ ) ହୋଇଥିଲେ । "ମାସ୍ୱାମ୍ମୁଣ୍ଡ ତାଙ୍କ" ଶ୍ରେଦନୀ ଅଣି ( ଶ୍ରେଦନ ଅଭ୍ର-ମ୍ବରକୁ ) ଶ୍ରେପାଇ ( ଶ୍ରେପଣ କରାଇଲ ) ଶୋକ ପରିବାର ମାତୁଳଙ୍ଗ ( ଟଭ୍ରଫଳ ତୁଲ୍ୟ ସ୍ତନ ପ୍ରଦେଶରେ ) ଜଳ ( ଅଶ୍ରୁଜଳ ) ବୁହାଇଲ । ପୁଣି ( ମାସ୍ୱାମ୍ମଣ୍ଡ ଅଶ୍ରୁ ବୁହାଇ ଥିଲ ଏ ବୁହାଇଲ । "ଶୋଭବନରେ ମଧ୍ୟ କୁନ୍ଦ "ଲତା" ଦନ୍ତୀ "ବୃକ୍ଷ" ବି ( ପକ୍ଷୀମାନଙ୍କରେ ବିରାଜିତ ( ଶୋଭିତ ) ହୋଇଥାନ୍ତି । ପରିବାର ( ସେବକମାନେ ) ୧ ଶ୍ରେଦନୀ ( ଦୁର୍ବାଲତା ଲତାକୁ ) ଆଣି ଶ୍ରେପାଇ ( ଶ୍ରେପିତ କରି ) ୨ ମାତୁଳଙ୍ଗ ସ୍ଥଳ ( ଟଙ୍ଗମୂଳକୁ ) ଜଳ "ବୁହାନ୍ତି" । "ଏ ସମୟେ" କପି ( କପିମାନେ ) ମାରମାର ( ମାର ମାର ଡାକକୁ ) ଡାକ ( ଡାକଲେ ) । ଜାନକୀ ଏ କା ( ଏ କା ଶବ୍ଦ ଏମନ୍ତ ବୋଲି ) ବିତର୍କି ( ରାମ, ଲକ୍ଷ୍ମଣ ନ ଥିଲେ କପିମାନେ କାହିଁକି ଡାକନ୍ତେ ଅତଏବ ଏ ମାସ୍ୱାମୁଣ୍ଡ ଭାବିଚକଲେ ) ॥

୩୧-୩୨ଶ ପଦ—୧ବାହୁଜବର ( ରାମଙ୍କ ) ଆଦେଶେ ( ଆଜ୍ଞାରେ ) ହନୁମାନ୍, ସୁଗ୍ରୀବ ଓ ଅଙ୍ଗଦ ଦ୍ୱେଷେ ( କହିବାରେ ) କପାଟ ( କବାଟ ) ଆଣ୍ଟ ଘେନ ( ଆଣ୍ଟରେ କବାଟ କିଳା ହୋଇଥିବାରୁ ଗଡ଼ଭିତରକୁ ) ବାଟ ନ ପାଇ କାରଣେ, କପିମାନେ ପ୍ରାକାରେ ( ପାଚେରି ଉପରେ ) ଉଠିଲେ ।

---

୧—ଶ୍ରେଦନୀ କଚ୍ଛୁରାନନ୍ତା ସମୁଦ୍ରାନ୍ତାଦୁର୍ବାଲତ୍ସ୍ୱ ଇତ୍ୟମରଃ ।
୨—ଫଳପୂରେ ବୀଜପୂରେ ରୁଚିକୋ ମାତୁଳଙ୍ଗକେ ଇତ୍ୟମରଃ ।
୧—ବାହୁଜଃ କ୍ଷତ୍ରିୟେ ବିରାଟ୍ ଇତ୍ୟମରଃ ।

ନେ, ବର୍ତ୍ମେ ପକାଇ ଦଆଇ ମାୟାମୃଣ୍ଡ ଲଜ୍ଜିତେ ଗଲା ବାହୁଡ଼ି ।
ବିଭାବସୁର ପ୍ରକାଶ କେତେବେଳ ଆଚ୍ଛାଦପାରେ କୁହୁଡ଼ି ସେ ।
ବସନ୍ତେ ବଦନପଦ୍ମ । ବିକାଶ ହରଷ-ସଦ୍ମ ।୩୨।
ହେ, ବିନାଶ ଅଶ୍ରୁ ତୁଷାର ବୃଷ୍ଟି ହେଲା ପ୍ରକଟ କୋକିଳ ବାଣୀ ।
ବୋଇଲେ ନିକଟାକୁ ଏତେ କପଟ ରଜନୀ ହେଲେ ଜାଣି ସେ ।
ବଶ୍ୟ ଜନ୍ମ କେତେ ମାନ । ବହୁଳାଇ ମୋର ଚିତ୍ତ ।୩୩।

---

ଘୂର ସତ୍ୱର ( ଶୀଘ୍ର ) ବାରତା ( ଏ କଥା ) ବଂଶବାହୁ ପାଶେ ( ରାବଣ ଆଗରେ ) କହୁଁ ( କହନ୍ତେ ) "ରାବଣ" ମାୟାମୃଣ୍ଡ ବର୍ତ୍ମେ ( ବାଟରେ ) ପକାଇ ଦଆଇ ଲଜ୍ଜିତ ( ଲଜପାଇ ) ବାହୁଡ଼ି ଗଲା । ବିଭାବସୁର ( ସୂର୍ଯ୍ୟର ) ପ୍ରକାଶ ( କିରଣକୁ ) କୁହୁଡ଼ି କେତେବେଳ ଆଚ୍ଛାଦ ପାରେ ( ଅଳ୍ପ ସମୟ ଆଚ୍ଛାଦଇ ତଦ୍ରୂପ ରାବଣର ମାୟା ଅଳ୍ପକେ ଗଲା ) । ବସନ୍ତେ ( ସୀତା ସୁସ୍ଥ ହୋଇ ବସିବା ରୂପ ବସନ୍ତ କାଳରେ ) ବଦନପଦ୍ମ ( ସୀତାଙ୍କ ମୁଖରୂପ ପଦ୍ମ ) ବିକାଶ "ପାଇ" ହର୍ଷ ( ଆନନ୍ଦର ) ସଦ୍ମ ( ସ୍ଥାନ ) ହେଲା । ବସନ୍ତରେ ପଦ୍ମ ଫୁଟେ ।୩୧।୩୨।

୩୩ଶ ପଦ—"ସୀତାଙ୍କ" ଅଶ୍ରୁ ( ଲୋତକ ) "ରୂପ" ତୁଷାର ବୃଷ୍ଟି ବିନାଶ ହେଲା । କୋକିଳ ବାଣୀ "ରୂପ" "ବାଣୀ" ପ୍ରକଟ ( ପ୍ରକାଶ ପାଇଲା ) । "ବସନ୍ତରେ ତୁଷାର ନଷ୍ଟ ହୁଏ କୋକିଳର ସ୍ୱର ବିଶୁଦ୍ଧ ହୁଏ ।" ନିକଟାକୁ ବୋଇଲେ ଏତେ କପଟ [1]ରଜନୀଚର ( ରଜନୀଚର ) ହେଲେ କାଣି ( ରାକ୍ଷସେ ଏତେ କପଟ ଜାଣନ୍ତି ) । "ଏମାନଙ୍କର" ବଶ୍ୟ ( ସଂସାରର ) ଜନ୍ମ କେତେମାତ୍ର ମୋର ଚିତ୍ତ ବହୁଳାଇ ( ମୋ ମନକୁ ଏ ବହୁଳ କଲାଇଲା ଅନ୍ୟଲୋକଙ୍କୁ କଅଣ ନ କରିବ ) ।୩୩।

---

୧—ମଟଧାତୋଃ ଖଶ ପ୍ରତ୍ୟୟଃ ।

ହେ, ବୀର ମହାବୀର ଏହି ସମୟରେ ସେନା ସେନାପତି ସଙ୍ଗେ ।
ବାହାରିଲେ ରଣରଙ୍ଗରେ ରାକ୍ଷସ ଋକ୍ଷ କପି ମିଶି ରଙ୍ଗେ ଯେ ।
ବ୍ୟବସ୍ଥିତେ ଦଶଶିର । ବନ ଜଗାଇ ସୀତାର । ୩୪ ।
ହେ, ବିପତନ ଶୂଳ ମୁଦ୍‌ଗର, ପଥର ପଥର ସଙ୍ଗର ବଶେ ।
ବର୍ଷାକ୍ଷଣକର କରକା ପତନ ନୀରଦ ପରାୟେ ଦିଶେ ଯେ ।
ବିସ୍ମୟ ଭୟ ଉଭୟ । ବଳେ ନାହିଁ ବଳେ ଲୟ । ୩୫ ।

---

୩୪ଶ ପଦ—ଏହି ସମୟରେ ସେନା ( ସୈନ୍ୟ ) ସେନାପତି ସଙ୍ଗେ ବୀର ମହାବୀର "ମାନେ" ଓ "ଅନ୍ୟାନ୍ୟ" ରାକ୍ଷସ 'ମାନଙ୍କ" 'ସଙ୍ଗେ" ଋକ୍ଷ ( ଭଲ୍ଲୁକ ) କପି ମିଶି ୧ ରଙ୍ଗେ ( ରଣକ୍ଷେତ୍ରରେ ) ରଣ ରଙ୍ଗେ ( ରଣ କେଳିରେ ) ବାହାରିଲେ। ଦଶଶିର ( ରାବଣ ) "ସୀତା ନେଇଯିବା ଭୟରେ" ସୀତାର ବନ ( ଅଶୋକବନକୁ ) ବ୍ୟବସ୍ଥିତେ ( ନିୟମିତରୂପେ ) ଜଗାଇ ( ଜଗାଇଲା ) । ୩୪ ।

୩୫ଶ ପଦ—ପଥର ( ବାଟରେ ) ସଙ୍ଗର (ଯୁଦ୍ଧ) ବଶେ (ବଶରେ) ଶୂଳ ମୁଦ୍‌ଗର ପଥର ବିପତନ ( ବିଶେଷରୂପେ ପଡ଼ିବାରୁ ) ୧ କରକା ( କୁଆପଥର ) ୦ନିକର ( ସମୂହ ) "ବୃଷ୍ଟି କରୁଥିବା" ବର୍ଷାକ୍ଷଣକର ( ଅତି ଭୟଙ୍କର ) ନୀରଦ ପରାୟେ ( ମେଘପ୍ରାୟ ) ଦିଶେ । ଉଭୟ ବଳେ ( ଦୁଇଦଳ ମଧ୍ୟରେ ) ୨ ବିସ୍ମୟ ( ଆଶ୍ଚର୍ଯ୍ୟ ବା ) ଭୟ ( ଭୀତ ) ନାହିଁ "କେବଳ" ବଳେ ( ସାମର୍ଥ୍ୟ ଉପରେ ) ଲୟ ( ଭରସା ) "ଅଛି" । "ମେଘ-ତୁଲ୍ୟ କୃଷ୍ଣ ଶୁକ୍ଳ ଋକ୍ଷ ରାକ୍ଷସ କପି ମିଶିଯିବାରୁ କରକା ତୁଲ୍ୟ ଶୂଳ ମୁଦ୍‌ଗର ପଥର ପଡ଼ିବାରୁ ଅତିଭୟଙ୍କର ହେଲା ଏହିଭାବ" । ୩୫ ।

---

୧—ରଙ୍ଗୋ ରାଗେ ନୃପେ ଯୁଦ୍ଧ-ସ୍ଥାନେ ନୃତ୍ୟେ ସ୍ୱରାନ୍ତରେ ଇତି କୁମୁଦାକରଃ ।
୧—ବର୍ଷୋପଲସ୍ତୁ କରକା ଇତ୍ୟମରଃ ।
୨—ବିସ୍ମୟୋଽଦ୍ଭୁତମାଶ୍ଚର୍ଯ୍ୟ ମିତ୍ୟମରଃ ।

ହେ, ବିଚ୍ଛେଦିଲେ କେ କରବାଳ ଯୋଗରେ କେହି କଲେ କରବାଳ
ବଦାରି ଯୂଥପତିଙ୍କି ସେନାପତି ଦୈତ୍ୟେ ଭଲ୍ଲି ଭୂଷି ଭଲ୍ଲକ ।
ବିନ୍ଧାଣିମଲ୍ଲ ମଲ୍ଲରେ । ବୋଲିବୋଲି ସେ ମଲ ରେ । ୩୬ ।
ବାଜୀ ବାଜି ତହିଁ କେତେକ କେତକ ଛବି ସମ୍ଭବି ଯେ ତଳି ।
ବଧି ବାଜୀ-ରାଜି ରାଜିଲେ କେ ବନ୍ଧି ସତ୍ୱରେ ମହିଷ ଝଳି ସେ ।
ବର୍ଷାର କାଳିକ ପରି । ବନ୍ଦେ କାଳିକ ସଞ୍ଚରି । ୩୭ ।

୩୬ଶ ପଦ—କେ ( କେହି ) କରବାଳ ( ଖଡ୍ଗ ) ଯୋଗରେ (ଧରି) ବିଚ୍ଛେଦିଲେ ( ହାଣିଲେ ) । କେହି କର ବାଳ କଲେ ( କରରେ ବାଳକୁ ଧଇଲେ ) । ୧ ଯୂଥପତି ( ସଜାତୀୟପତି ) ଯୂଥପତିଙ୍କ ( ସଜାତୀୟ ପତିଙ୍କୁ ) ବଦାରି ( ବିଦାରିଲେ ) । ଦୈତ୍ୟେ ( ଦୈତ୍ୟମାନେ ) ଭଲ୍ଲି ( ଭଲ୍ଲ ଅସ୍ତ୍ର-ଧରି ) ଭଲ୍ଲି ( ଭଲ୍ଲୁକମାନଙ୍କୁ ) ଭୂଷି ( ଭୂଷିଲେ ) । ମଲ୍ଲ ମଲ୍ଲରେ ( ମାଲଙ୍କ ସଙ୍ଗେ ମାଲଙ୍କର ) ବିନ୍ଧାଣ ହେଲା ( ମୁଣ୍ଡରେ ମୁଣ୍ଡ, ବାହାରେ ବାହା, ଗୋଡରେ ଗୋଡ, ମରାମରି ହେଲେ ) । ସେ ( ମଲ୍ଲମାନେ ) ମଲରେ ଏମନ୍ତ ବୋଲିବୋଲି ହେଲେ । ୩୬ ।

୩୭ଶ ପଦ—ତହିଁ (ସେ ରଣଭୂମିରେ) କେତେକ (କେତେକ ଲୋକ) ବାଜୀ ( ଶର ) ବାଜି ତଳି "ପଡ଼ିବାରୁ" ୧ କେତକ ( କେତକୀ ଫୁଲ ) ଛବି ସମ୍ଭବି ( ସମ୍ଭବିଲା ) "ଯେରୂପ କେତକୀ ଫୁଲ ଅଧୋମୁଖରେ ଥାଏ ସେରୂପ ତଳିଲେ ଏହି ତାତ୍ପର୍ଯ୍ୟାର୍ଥ" । କେ ( କେହି ) ବାଜୀରାଜି (ଅଶ୍ୱ-ସମୂହ ) ବଧି ( ବଧ କରି ) ସତ୍ୱରେ ( ଶୀଘ୍ର ) ୨ ମହିଷ ( ମଇଁଷି ) ଝଳି ( ଶୋଭକୁ ) ବନ୍ଧି ( ଧାରଣ କରି ) ରାଜିଲେ ( ଶୋଭା ପାଇଲେ ) ।

୧—ସଜାତୀୟୈଃ କୁଳଂ ଯୂଥ ମିତ୍ୟମରଃ ।
୧—ମଲ୍ଲି ପୁଷ୍ପୋକମ୍ବୁକଣ୍ଟି କେତକୋହିସ୍ୱକଚ୍ଛଦ ନୀଳ ରତ୍ନକୋଷଃ ।
ବର୍ଷାସୁ ଯା ଶୁକ୍ଳପୁଷ୍ପା ଅଧିକ ସୌରଭଭବତି ଶାଖା ଇତି ପ୍ରସିଦ୍ଧା ।
ସା କେତକ୍ୟୁଚ୍ୟତେ ।
୨—ଲୁଲ ପୋ ମହିଷୋ ବାହ ଦ୍ୱିଷତ୍କାସର ସୈରିଭ ଇତ୍ୟମରଃ ।

ତହିଁ, ବିଖ୍ୟାତକ ମାର ସମସ୍ତେ ଦର୍ପକ ଅନଙ୍ଗ ହୋଇଲେ କେତେ
ବିଦ୍ଧ ହୋଇଲା ମକରକେତନ ଲକ୍ଷିତ ସକଳମତେ ।
ବ୍ୟକ୍ତ କାମଭବ ଜୟେ । ବିରୋଧ ସ୍ମର ପର୍ଯାୟେ । ୩୮ ।
ତହିଁ, ବ୍ୟାଘ୍ରପରି ରଣେ ବଜ୍ରଦଂଷ୍ଟ୍ର ଧନୁ ପ୍ରଶସ୍ତ ପ୍ରଶସ୍ତ ଦିଶି ।
ବୃକପରି ବେଢ଼ି ସେନାପତିମାନେ ବୃକୋଦରପୁରେ ପେଷି ।
ବିଲୋକି କୁରଙ୍ଗ ହେଲେ । ବଳୀ ଯେତେ ଋକ୍ଷ ଥିଲେ । ୩୯ ।

---

"ଯୋଦ୍ଧା ଯୁଧିଷ୍ଠିର ଶତ୍ରୁ" । ୩ କୀଲାଳ ( ରକ୍ତ ) ସଞ୍ଚର ( ଝର ) ବର୍ଷାର ( ବର୍ଷାକାଳ ) କୀଲାଳ ( ଜଳ ) ପରି ବହେ ( ବହିଲା ) । ୩୭ ।

୩୮ଶ ପଦ—"ତହିଁରେ" ସମସ୍ତେ ଦର୍ପକ ( ଗର୍ବବନ୍ତ ହୋଇ ) ମାର "ବୋଲି" ବିଖ୍ୟାତକ ( କହିଲେ ) । କେତେ ( କେତେକାଂଶରେ ) ଅନଙ୍ଗ ହୋଇଲେ ( ମଲେ ) । ସକଳମତେ ( ହସ୍ତି ପ୍ରଭୃତିଙ୍କ ମତରେ ) ମକର-କେତନ ଲକ୍ଷିତ ( ସମୁଦ୍ର ନିଦର୍ଶନ ତ ) ବିଦ୍ଧ ( ଅନ୍ତସ୍ଥ ) ହୋଇଲା । ଜୟେ ( ଜୟ ବିଷୟରେ ) କାମ ( ମନୋରଥ ) ଭବ ( ଜାତ ) ବ୍ୟକ୍ତ "ହୋଇଅଛି" । "ଏହା" ସ୍ମର ପର୍ଯାୟେ ( ସ୍ମର ପର୍ଯାୟରେ ) ବିରୋଧ ( ଦ୍ୱନ୍ଦ ) ହେଲା । ସ୍ମର ପର୍ଯାୟ—କ ମାର ଦର୍ପକ ଅନଙ୍ଗ ମକରକେତନ ଏମନ୍ତ ବିରୋଧ ଘଟିଲା । ୩୮ ।

୩୯ଶ ପଦ—ରଣେ ବଜ୍ରଦଂଷ୍ଟ୍ର ଧନୁ ପ୍ରଶସ୍ତ ( ପ୍ରଶସ୍ତ ଧନୁର୍ଦ୍ଧର ) ପ୍ରଶସ୍ତ "ଏ ଦୁଇ ସେନାପତିଙ୍କି" ବ୍ୟାଘ୍ର ପରି ଦିଶି ( ଦେଖାଗଲେ ) "କପି" ସେନାପତିମାନେ ବୃକପରି ( ବ୍ୟାଘ୍ରକୁ ବଳିଆ କୁକୁର ବେଢ଼ିଲାପରି ) "ତାଙ୍କୁ" ବେଢ଼ି ବୃକୋଦର ( ଯମ )ପୁରେ ପେଷି ( ପଠାଇ ଦେଲେ ) । ବଳୀ ( ବଳିଷ୍ଠ ) "ଆଉ" ଯେତେ ଋକ୍ଷ (ଋକ୍ଷସମାନେ) ଥିଲେ "ସେମାନେ" ବିଲୋକି ( ଦେଖି ) କୁରଙ୍ଗ ହେଲେ ( କୁତ୍ସିତ କ୍ରୀଡ଼ାକାରୀ ମୃଗପରି ପଳାଇଲେ ) । ୩୯ ।

---

୩—କୀଲାଳଂ ରୁଧିରେ ତୋୟେ ଇତ୍ୟମେଦିନୀ ।

ଚନ୍ଦ୍ର, ବୀରଚନ୍ଦ୍ର ଇନ୍ଦ୍ର ଅଗ୍ରଜଙ୍କ ଧନୁଭଗନେ ଏ କଡ଼ଆଇଁ ।
ବଚନ ନୋହେଙ୍କ କୁମ୍ଭସ୍ଥାନେ ରଖିଥାନ୍ତେ ରାହୁଭୁକ୍ତ ଦେଇ ।
ବିନାଶ ହୋଇଲେ ଯେତେ । ବୁଝିବେ ତା ଶନିଗୁପ୍ତେ ।୪୦।
ଚନ୍ଦ୍ର, ବାତପୋତତରୁ ସ୍ଫୁଟପ୍ରାପ୍ତ ସଙ୍ଗେ ଏକାଳେ ରଘୁନନ୍ଦନ ।
ବେଳାସ୍ତ ଅନାଇଁ ଦ୍ୱିବଦଙ୍କୁ ପେଷି ବାହୁଡ଼ାଇଁ ନେଲେ ସୈନ୍ୟ ।
ବାଜୁଅଛୁ ରାମ ତାଳ । ବେଗେ ସୁବେଳକୁ ମିଳ ।୪୧।

---

୪୦ଶ ପଦ—ଏ ( ପୂର୍ବୋକ୍ତ ସେନାପତିମାନେ ) କଡ଼ଆଇଁ ( ପାର୍ଶ୍ୱଭାଗରୁ ସନ୍ତ୍ରୁଖରୁ ନୁହେଁ ) ଧନୁ ଭଗନେ ( ଧନୁକୁ ନେଇ ଭଗ୍ନକଲି ) ବୀରଚନ୍ଦ୍ର ( ବୀର ଶ୍ରେଷ୍ଠ ) ଇନ୍ଦ୍ର ଅଗ୍ରଜଙ୍କ ( ଇନ୍ଦ୍ରଜିତଙ୍କୁ ) କୁମ୍ଭସ୍ଥାନେ ( କୁମ୍ଭୀ-ଗଜ-ସ୍କନ୍ଧପରେ ) ରଖି ( ରଖିଲେ ) "ଏହା" ବଚନ ନୋହେ ଙ୍କ ( ବଚନ ) । "ନୋହିଲେ" ରାହୁଭୁକ୍ତ ଦେଇଥାନ୍ତେ ( ରାହୁକୁ ଦୁଇଖଣ୍ଡ କଲାପରି କରି ଥାନ୍ତେ) କିମ୍ବା ଇନ୍ଦ୍ର ଅଗ୍ରଜ ( ଇନ୍ଦ୍ରଜିତ ) * ବୀରଚନ୍ଦ୍ର (ବ୍ୟତ୍ରଗାମୀ ଚନ୍ଦ୍ର) "ହେଲ" ତାଙ୍କ ଧନୁ ଭଗନେ ( ଧନୁରାଶିରୁ ଭଗ୍ନକଲ ) ଏକ ( ମକର ରାଶିକୁ ) ଛଡ଼ାଇଁ କୁମ୍ଭସ୍ଥାନରେ ରଖିଲେ । "ଚନ୍ଦ୍ରଙ୍କୁ ଧନୁ ରାଶିରୁ ନେଇ ମକର ରାଶିକି ଛଡ଼ାଇ କୁମ୍ଭ ରାଶିରେ ରଖିଲେ ଏଥି ବଚନ ହେଲ" । "ଧନୁକୁ ମକର ଦ୍ୱିତୀୟ, ମକରକୁ ଧନୁ ଦ୍ୱାଦଶ ହୋଇଥାଆନ୍ତି" ଏଥି ରାହୁଭୁକ୍ତ ଦେଇଥାନ୍ତେ, ସେ ନୋହିଲ † । ଯେତେ ( ସୈନ୍ୟ ) ବିନାଶ ହୋଇଲେ ତା ( ତାହା ) ଚିତ୍ରଗୁପ୍ତ ( ଯମର କରଣମାନେ ) ବୁଝିବେ ( ଲେଖି ଜାଣିବେ ଅନ୍ୟ କଳି ପାରିବେ ନାହିଁ ) । ୪୦ ।

୪୧ଶ ପଦ—୧ ବାତପୋତତରୁ ( ପଳାଶବୃକ୍ଷ ) ସ୍ଫୁଟ ପ୍ରାପ୍ତ (ଫୁଟିଲା-ପତ୍ର ) ସଙ୍ଗେ ( ସମସ୍ତେ ) "ରକ୍ତସ୍ରବାରୁ ରକ୍ତବର୍ଣ୍ଣ ଦିଶୁଅଛନ୍ତି" । ରଘୁ-

---

*—ବିଶେଷଣ ଇତର ଚନ୍ଦ୍ରତାରି ବୀରଃ ସଗ୍ରସୌମ୍ୟଚେନ୍ଦ୍ର ଶ୍ରେଷ୍ଠ ବୀରଚନ୍ଦ୍ରଃ ।

† ଯଦୁକ୍ତଂ—ଦ୍ୱି ଦ୍ୱାଦଶେ ବା ସମସପ୍ତକେ ବା ଷଡଷ୍ଟକେ ବା ଯଦି ଚୈକରାଶୌ । ଜ୍ୟୋତିର୍ବିଦୈଶ୍ଚାପି ବିଚାରଣୀୟଃ ପକ୍ଷାନ୍ତରେ ରାହୁରବନ୍ଦ୍ୟ-ଯୋଗଃ । ଇତି ।

୧—ପଲାଶେ କିଂଶୁକଃ ପର୍ଣ୍ଣୋ ବାତପୋତ ଇତ୍ୟମରଃ ।

ତିହ, ବଢ଼ାଇଲେ ଦେବନଘାଟରେ ସମସ୍ତେ ସ୍ନାନ କଲେ ଫଳାଶନ ।
ବୈଶ୍ରବଣ ଶ୍ରବଣ କରି ସେନାପତିଙ୍କ ନାଶ ବମନ ।
ବୋଲିଲ ଭଞ୍ଜ ଉପେନ୍ଦ୍ର । ବୟାଳିଶପଦେ ଗୁନ୍ଦ । ୪୨ ।

—॥୦॥—

## ଦ୍ୱିଚତ୍ୱାରିଂଶ ଛାନ୍ଦ

### ରାଗ—କୌଶିକ

ବୁଝ ବୁଧ ଯୁଦ୍ଧ ନ ପାଇଲା ଜନ ପ୍ରତିଙ୍କାରେ ଉଠେ ଜଳି ।
ବର୍ତ୍ତିନ୍ତେ ଆଜକ କପିଗଣ ରଣ ମଧ୍ୟେ ଆମ୍ଭେ ଥିଲେ ମିଳି ସେ ।
ବୋଲେ । ବୀରମାନ ରାଜା ନାଶକଲେ ସେ । ବେଢ଼ି ଗଡ଼େ ଯାହା ଛି
ରଖିଲେ ସେ । ୧ ।

---

ନନ୍ଦନ ଏକାଳେ ବେଳାସ୍ତ ଅନାଇ ( ବେଳା ଅସ୍ତ ହେବା ଦେଖି ) ଦ୍ୱିବଦକୁ
( ଦ୍ୱିବଦ କପିଙ୍କ ) ପେଷି ( ପଠାଇ ) ସୈନ୍ୟ ବାହୁଡ଼ାଇ ନେଲେ । ରାମ-
ଭାଳ ବାଜୁଅଛୁ । ବେଗେ "ଯାଇଁ" ସୁବେଳରେ ( ସୁବେଳ ପର୍ବତରେ ) ମିଳି
( ପ୍ରବେଶିଲେ ) ।୪୧ ।

୪୨ଶ ପଦ—ସମସ୍ତେ ଦେବନଘାଟରେ ସ୍ନାନ ହୋଇ ଫଳାଶନ ( ଫଳା-
ହାର ) କଲେ । ବୈଶ୍ରବଣ ( ରାବଣ ) ସେନାପତିଙ୍କ ନାଶ ( ମୃତ୍ୟୁ ) ଶ୍ରବଣ
କରି ବମନ ( ବିରସମନା ହେଲ ) । ଉପେନ୍ଦ୍ର ଭଞ୍ଜ ( ଉପେନ୍ଦ୍ର ଭଞ୍ଜ କବି )
ଏ ଗୁନ୍ଦ ବୟାଳିଶ ପଦେ ( ବୟାଳିଶ ଛନ୍ଦରେ ) ବୋଲେ ( ରଚିଲେ ) ।୪୨।

—॥—

## ଦ୍ୱିଚତ୍ୱାରିଂଶ ଗୁନ୍ଦ

୧ମ ପଦ—ବୁଧ ( ପଣ୍ଡିତମାନେ ) ବୁଝ ଯୁଦ୍ଧ ନ ପାଇଲା ଜନ ( ଯୁଦ୍ଧ
ନ ପାଇଥିବା ଜନ) ପ୍ରତିଙ୍କାରେ ଜଳି ଉଠେ । ବୋଲେ ରଣମଧ୍ୟେ ଆମ୍ଭେ
ମିଳିଥିଲେ କପିଗଣ ଆଜ ବର୍ତ୍ତିନ୍ତେ କି ( ମରିଥାନ୍ତେ ) । ବୋଲେ ( ଯୁଦ୍ଧରେ

ବାଜୀ ଧପଟକୁ ଗଜ ଚହଟରୁ ସ୍ଥାନ ନୋହି ଜନ୍ୟା ଜନ୍ତୁ । ବୁଲିନ
ନାହିଁତ ହସ୍ତଶସ୍ତ୍ରମାନ ଏ ଘେନ ଯେତେକ ହତ ସେ । ବୋଲେ ।
ବଂଶଲୋଚନ ରବ ପାହିଲେ । ବଜେ କରିବେ ବସ୍ତାର ସ୍ଥଳେ ସେ । ୨ ।

ଅନନ୍ଦେ ମୋଦେ ବଷାଦେ ନଶା ନେଲେ ଉଷାରୁ ସମରେ
ସାଜେ । ବଦନଚନ୍ଦ୍ରେ ମଦନ-ସୁନ୍ଦର ପ୍ରସନ୍ନ ଶ୍ୱସନାତ୍ମଜେ ସେ ।
ବୋଲେ । ବଜମ ତୁ ଲଙ୍କା ଆଉବେଳେ । ବୃହ୍ନିଶର ନଅ କରତଳେ ॥

---

ନ ଥିବା ଲୋକେ ଏମନ୍ତ ବୋଲିବାକୁ ଥିବା ଲୋକେ ବୋଲନ୍ତି ) ରାଜା "ଆପେ ଆପେ" ବୀରମାନ ( ବୀରମାନଙ୍କୁ ) ନାଶ କଲେ "ଜଣି ମାରି ନାହାନ୍ତି" । ଯାହାକି ( ଯେଣୁ ସେ ) ଗଡ଼େ (ଗଡ଼ମଧ୍ୟରେ) ବେଢ଼େ (ବେଢ଼ରେ ପକାଇ ) ରଖିଲେ "ତେଣୁ ଅନ୍ତର ଅଜୟ ହେଲ" । ୧ ।

୨ୟ ପଦ—ବାଜୀ ( ଘୋଡ଼ାମାନେ ) ଧପଟକୁ ( ଧପଟ କରିବାକୁ ) ଗଜଚହଟକୁ ( ଗଜମାନେ ଚହଟିବାକୁ ) ସ୍ଥାନ ନୋହି ( ନ ହେବାରୁ ) ଜନ୍ୟାଜନ୍ତୁ "ହୋଇ ରହିଲେ" । "ପୁଣି ବୀରଙ୍କର" ହସ୍ତ ଶସ୍ତ୍ରମାନ (ହସ୍ତରେ ଥିବା ଖଡ଼୍ଗାଦି ଶସ୍ତ୍ରସବୁ ) ବୁଲିଲ ନାହିଁ । ଏହି ଘେନ ଯେତେ ହତ (ଘେନଯାହା ମରିବାର ମଲେ ) । ବୋଲେ ( ଏହା ଶୁଣି ଲଙ୍କାରେ ନ ଥିବା ଜଣେ ବୋଇଲେ ) "ରବ ପାହିଲେ" ବଂଶଲୋଚନ ( ରାବଣ ) ବସ୍ତାର ( ବିସ୍ତୃତ-ରଣ ) ସ୍ଥଳରେ ବିଜେ କରିବେ "ଦେଖିବା" । ୨ ।

୩ୟ ପଦ—"ଏରୂପେ କଥାବାର୍ତ୍ତା ହୋଇ" ଅନନ୍ଦେ ( ଅନନ୍ଦରେ ) ମୋଦେ ( ଆନନ୍ଦରେ ) ବିଷାଦେ ( ଚିନ୍ତାରେ ) ନଶା ( ରାତି ) ନେଲେ ( କଟାଇଲେ ) । "ଯେଉଁମାନେ ଚିନ୍ତା କରୁଥିବା ଲୋକଙ୍କର ଆନନ୍ଦଯୋଗୁଁ ଓ ଚିନ୍ତା କରୁଥିବା ଲୋକଙ୍କର ଚିନ୍ତାଯୋଗୁଁ ନିଦ ମାଡ଼ିଲ ନାହିଁ ଏହି ତାତ୍ପର୍ଯ୍ୟାର୍ଥ" । ଉଷାରୁ ( ଉଷ କାଳରୁ ) "ରାବଣ" ସମର "ନିମିତ୍ତ ସୈନ୍ୟ" ସାଜେ ( ସାଜିଲ ) । ବଦନ ଚନ୍ଦ୍ରେ ( ରାବଣସୈନ୍ୟ ସାଜିବା ମୁହୂର୍ତ୍ତରେ ) ମଦନସୁନ୍ଦର ( ରାମ ) ଶ୍ୱସନାତ୍ମଜେ ( ହନୁମାନଙ୍କୁ ) ପ୍ରସନ୍ନ "ହୋଇ" ବୋଲେ ( ବୋଇଲେ ) ତୁ ଆଉ ବେଳେ ( ଥରେ ) ଲଙ୍କା ( ଲଙ୍କାକୁ ) ବଜମ ( ଯାଅ ) ବୃହ୍ନିଶର କରତଳେ ( ହାତରେ ) ନଅ । ୩ ।

ସ୍ୱଧାନ କରାଇ କରୁଣାନିଧାନ ସୁଚେଷ୍ଟେଣ ଚିଠାଉଁ ଦେଲେ ।
ବସିଛନ୍ତି ଜଗତୀ ଉପରେ ରାବଣ ହନୁମାନ ଯାଇ ମିଳେ ସେ । ବୀର ।
ବୋଲେ ଉଠ ଉଠ ବଂଶକର । ବଭ୍ରୁ ଆଜ୍ଞାଚ୍ଛଦନ ଲଗା ଶିର ସେ ।୪।

ବୈଦେହୀଙ୍କୁ ନ ସମର୍ପିଲେ ମୃତ୍ୟୁ ଏଥି ଚହ୍ନିଥା ମାର୍ଗଣ ଏହି ।
ବୋଲେ ରାବଣ ମାର୍ଗଣ ବୋଲି ତାକୁ ଆଗୁଁ ଚହ୍ନି ଚହ୍ନି ଦେଇରେ ।
ବାଇ । ବୋଲି ହେଜିପାରି ନାହୁଁ ତୁହି ରେ ବେଳେବେଳେ ମାଗି
ପଠିଆଇ ରେ ।୫।

ବାର୍ତ୍ତା ଯା ଲେଖିଛୁ ଆଜ୍ଞାପତ୍ର ନୋହେ ଜଣାଣ ସେ ହୋଇଥିବ ।
ବ୍ରହ୍ମାନପ୍ତା ସୁତ କୁବେର ମୋ ଭ୍ରାତ ସ୍ନେହ ଜାଣିଛୁ ବାସବରେ । ବାଳ ।
ବନବାସୀ ସେ ତୁ ଦୂତ ହୋଇ । ବାରେ ଶୁଣିମା ପତ୍ର ଶୁଣାଇରେ ।୬।

---

୪ର୍ଥ ପଦ—କରୁଣାନିଧାନ ( ରାମ ) ସୁଚେଷ୍ଟେଣ ( ସୁଚେଷ୍ଟେଣ କପିଦ୍ୱାରା ) ଚିଠାଉ ସ୍ୱଧାନ କରାଇ ( ଲେଖାଇ ) "ହନୁମାନକୁ" ଦେଲେ । ହନୁମାନ୍ "ବ୍ରହ୍ମଶର ଓ ଚିଠାଉ ଦେନ" ଯାଇ ରାବଣ ଜଗତୀ ଉପରେ ବସିଛୁ "ଏମନ୍ତବେଳେ" ମିଳେ । ସେ ବୀର ( ହନୁମାନ୍ ) ବୋଲେ ହେ ବଂଶକର [1]ଉଠ ଉଠ । ବଭ୍ରୁ ( ପ୍ରଭୁ ) ଆଜ୍ଞା "କରେ" ଦେନ ଶିର ( ମସ୍ତକରେ ) ଲଗା । ୪ ।

୫ମ ପଦ—"ପୁଣି କହେ" ବୈଦେହୀଙ୍କୁ ନ ସମର୍ପିଲେ ଏ [2]ମାର୍ଗଣ ( ଶରକୁ ) ଚହ୍ନିଥା, ଏଥି ( ଏଥିରେ ) "ତୋହର" ବଧ "ହେବ" । ହି ( ନିଶ୍ଚୟ ଏଥିରେ ସଂଶୟ ନାହିଁ ) । "ଏହା ଶୁଣି" ରାବଣ ବୋଲେ ଆଗୁଁ ( ଆଗରୁ ) ତାକୁ ମାର୍ଗଣ ( ମାଗୁଣି ଲୋକ ) ବୋଲି ଚହ୍ନିଦେଇ ଚହ୍ନିଛୁ । ତୁହି ବାଇ ( ବାତୁଳ ) ବୋଲି "ସେ କଥାକୁ" ହେଜି ପାରୁନାହୁଁ । ବେଳେ ବେଳେ ( ଥରକୁ ଥର ) ମାଗି ପଠାଇ ( ପଠାଉଛୁ) । ୫ ।

୬ଷ୍ଠ ପଦ—ଯା ( ଯାହା ସେ ) ବାର୍ତ୍ତା ଲେଖିଛୁ "ତୁ ତାକୁ" ଆଜ୍ଞା-ପତ୍ର "ବୋଲି କହୁ" "କହୁ ହେ" ଆଜ୍ଞାପତ୍ର ନୋହେ, ଜଣାଣ "ପତ୍ରିକା"

---

୧—ବେଗାର୍ଥେ ଦ୍ୱିପଦା ।
୨—ମାର୍ଗଣଂ ପ୍ରାର୍ଥନେଽନ୍ୱେଷେ ମାର୍ଗଣୋ ଯାଚକେ ଶରେ ଇତିବିଶ୍ୱଃ ।

ବସେ ସମାନେ ଲାଙ୍ଗୁଳଚନ୍ଦ୍ରାକୃତେ ପଠନ ଶ୍ଳେଷ ବଚନ ।
ବପୁବନ୍ତନାମେ ରାମ ବୋଲାଉଛୁଁ ରାଜରାଜପ୍ରଭ ଘେନ ସେ । ବଳି ।
ବିମର୍ଦ୍ଦନେ ଆମ୍ଭେ ଗୁଣଶାଳୀ । ବଧିପୂର୍ବେ ଦରନାଶେ ଝଳି ସେ ।୭।

ଦେଇଥିବ "କାହିଁକି" ? ବ୍ରହ୍ମାନପ୍ତା ସୁତ ( ବ୍ରହ୍ମାଙ୍କ ନାତି ବିଶ୍ରାବାଋଷିଙ୍କ ପୁଅ ମୁଁ ) କୁବେର ମୋ ଭ୍ରାତ ( ମୋହର ବଡ଼ଭାଇ ); ପୁତ୍ର "ମୋହର ମେଘନାଦ" ବାସବ ( ଇନ୍ଦ୍ରଙ୍କୁ ) ଜିଣିଛି । "ଏମନ୍ତ ବଡ଼ଲୋକ ମୁଁ "ଅରେ ବାଇ ( ବାତୁଳ ) ସେ "ତ" ବନଚାରୀ ରୁ ଦୂତ ହୋଇ "ଆସିଛୁ" । ବାରେ ( ଅରେ ) ଶୁଖାଇ ପଢ଼ ଶୁଣିମା ।୬।

୭ମ ପଦ—"ରାବଣ କଥା ଶୁଣି ହନୁମାନ୍ ବଢ଼ାଇଲା ଏ ଲାଙ୍ଗୁଳ ଉପରେ ବସିଥିବା ମୁଁ ତଳେ ଥାଇ ପ୍ରଭୁଙ୍କ ଆଜ୍ଞାପତ୍ରକୁ କିରୂପେ ପଢ଼ିବ ଏମନ୍ତ ଭାଳି" ଲାଙ୍ଗୁଳଚନ୍ଦ୍ରାକୃତେ ( ଆପଣା ଲାଙ୍ଗୁଳକୁ ଚନ୍ଦ୍ରାକୃତି କରି ) ବସେ ( ତା ଉପରେ ରାବଣ ବସିବା ସମାନରେ ବସି ) ଶ୍ଳେଷ ବଚନ ( ଶ୍ଳେଷାର୍ଥ ବାକ୍ୟ-ଲିଖିତ ପତ୍ରକୁ ) ପଠନ ( ପଢ଼ିଲା ) । "ରେ ରାବଣ" ବପୁବନ୍ତେ ( ଅମ୍ଭେ ଦେହବନ୍ତ ହୋଇ ) ରାମ ( ରମଣୀପ୍ରିୟ ) ନାମେ ( ନାମରେ ) ରାମ (ବୋଲାଉଛୁଁ ) । "ଆମ୍ଭଠାରେ" ରାଜରାଜ ପ୍ରଭ ( ଚନ୍ଦ୍ରପ୍ରଭ ) "ଅଛି ଏମନ୍ତ" ଘେନ "ଆମ୍ଭେ ବିଷ୍ଣୁ ନାଶ, *ଏବେ ଏ ନର ଦେହରେ ୧ରାଜରାଜପ୍ରଭ ( ସାର୍ବଭୌମ—ମଣ୍ଡଳେଶ୍ୱର ପ୍ରଭ ) ଅଛି ଘେନ" । ବଳି ( ବଳି ଦୈତ୍ୟ ) ବିମର୍ଦ୍ଦନେ ଆମ୍ଭେ ଗୁଣଶାଳୀ ( ଗୁଣବନ୍ତ ) "ହୋଇଥିଲୁଁ, କିନ୍ତୁ, ସ୍ୱୟଂ ନିର୍ଗୁଣ, କେବଳ ଅବତାର ବଶରେ ଗୁଣବନ୍ତ" । ଏବେ ଏ ନର ଦେହରେ-ବଳି ( ବଳିଷ୍ଠମାନଙ୍କ ) ବିମର୍ଦ୍ଦନେ ( ବିମର୍ଦ୍ଦନ କରିବାପାଇଁ ) ଗୁଣଶାଳୀ ( ଶୌର୍ଯ୍ୟାଦି ଗୁଣରେ ଭୂଷିତ ) "ହୋଇ ଅଛୁଁ" । ବଧି ( ବଧରେ ) ପୂର୍ବେ ( ପୂର୍ବକାଳରେ ) ୨ଦର ( ଶଙ୍ଖାସୁର ) ନାଶେ ( ବିନାଶରେ ) ଝଳି

* —ଶୁକ୍ଲାମ୍ବରଧରଂ ବିଷ୍ଣୁଂ ଶଶିବର୍ଣ୍ଣଂ ଚତୁର୍ଭୁଜଂ ।

୧—ରାଜରାଜଃ କୁବେରେଽପି ସାର୍ବଭୌମେ ସୁଧାକରେ ଇତି ମେଦିନୀ ।

୨— ଦରୋଽସ୍ତ୍ରୀ ଶୃଭଭୟଯୋଃଶଙ୍ଖେଽଲ୍ପାର୍ଥେ ସ୍ତ୍ରିୟାଂ ପୁନଃ ।
କନ୍ଦରାୟାଂ ମନାଗର୍ଥେ ଦରଶବ୍ଦୋଽପ୍ୟନବ୍ୟୟଃ ଇତି ଧରଣିଃ ।

ବନ୍ଦନ୍ତି ତ୍ରିପୁରବିଜୟୀ ଆମ୍ଭଙ୍କୁ ନରସିଂହ ତେବେ ଏବେ ।
ବସୁନ୍ଧରା-ଶିଖା ସୀତା-ରମ୍ୟପ୍ରେମରସରେ ବଶ ହୁଅନ୍ତେ ସେ । ବଦେ ।
ବଡ଼ ଲଜ ରାବଣର ପଦେ ସେ । ବେନିଅର୍ଥ ଯେଣୁ ନ ସମ୍ପାଦେ ସେ ।୮।
ବୋଲିଲା ରାବଣ ଜାଣିଲି ଜଟିଳ ହୋଇଛି ପ୍ରକାଶେ ତାହା ।
ବିଜୟୀ ରଣେ ମୁଁ ବିଜୟ କରିଛି ଆଜ ଥାଉ ସଜ ହୋଇ ତା ।
ବୋଲେ । ଉବେଗ ବନ୍ଦିମି ନଭୋମଣ୍ଡଳେ ତେ । ବସୁପୁନ ରାମପାଶେ
ମିଳେ ସେ ।୯।

---

"ହୋଇଥିଲୁ" ।; "ଏବେ" ଧର (ଭୟ) ନାଶେ (ନାଶ କରିବାରେ) ଝଙ୍କା (ଶୋଭିତ) "ହୋଇଅଛୁ" । "ଏହାଦ୍ୱାରା ବାମନ ମତ୍ସ୍ୟାବତାର ସୂଚିତ ହେଲା" ।୭।

୮ମ ପଦ—ତ୍ରିପୁରବିଜୟୀ (ମହାଦେବ) ଆମ୍ଭଙ୍କୁ ବନ୍ଦନ୍ତି (ସ୍ତୁତି କରନ୍ତି) । ତେବେ (ହିରଣ୍ୟକଶିପୁ ବଧାରମ୍ଭ କାଳରେ) ନରସିଂହ (ନୃସିଂହ ରୂପରେ ଅବତୀର୍ଣ୍ଣ ହୋଇଥିଲୁଁ) । ଏବେ (ବର୍ତ୍ତମାନ) ତ୍ରିପୁର-ବିଜୟୀ (ତ୍ରିଭୁବନ ବିଜୟୀ) "ବୋଲି" ଆମ୍ଭଙ୍କୁ ବନ୍ଦନ୍ତି (ସ୍ତୁତିବାକ୍ୟରେ କହନ୍ତି) । ତ୍ରିପୁରବିଜୟୀ ଥିଲା ଥିଲୁ ଏ ଅନାୟାସରେ ଥିଲେ ଏଣୁ ଏ ତ୍ରିପୁରବିଜୟୀ ୧ ନରସିଂହ (ନରଶ୍ରେଷ୍ଠ) । ତେବେ ବସୁନ୍ଧରା (ଭୂଦେବୀଙ୍କ) ଓ ଶିଖା (ଲକ୍ଷ୍ମୀଙ୍କର) ସୀତା (ଶର୍କରାତୁଲ୍ୟ) ରମ୍ୟ (ମନୋରମ) ପ୍ରେମ-ରସରେ ସ୍ୱଭାବେ (ସ୍ୱାଭାବିକ) ବଶ "ହୋଇଥିଲୁଁ" ; ଏବେ ବସୁନ୍ଧରା (ପୃଥ୍ୱୀର) ଶିଖା (ଶୋଭା) ସୀତା (ସୀତାଦେବୀଙ୍କ) ରମ୍ୟ ପ୍ରେମରସରେ ବଶ "ହୋଇଅଛୁଁ" । ବଦେ (କହୁଅଛି) "ମୁଁ ତୋତେ ମାରିଲେ" ରାବଣର "ବୋଲିବା", ପଦେ (ପଦ୍ୟରେ) ବଡ଼ ଲଜ "ହେବ" ଯେଣୁ "ସେ ପଦ" ବେନି ଅର୍ଥ (ଦୁଇ ଅର୍ଥକୁ) ନ ସମ୍ପାଦେ (ନ ବୁଝାଇ ଏକ ଅର୍ଥକୁ ବୁଝାଇଲା) ।୮।

୯ମ ପଦ—"ହନୁର ଚଟାଉ ପାତ କରିବା ଶୁଣି" ରାବଣ ବକ୍ତବ୍ୟ (ବୋଇଲା), ଜାଣିଲି ଏବେ ଜଟିଳ (କଷ୍ଟାନୁଭୂତ) ହୋଇଛୁ ତେଣୁ ତାହା

---

୧—ସିଂହଶାର୍ଦ୍ଦୂଳ ନାଗାଦ୍ୟାଃ ପୁଂସି ଶ୍ରେଷ୍ଠାର୍ଥବାଚକାଃ ଇତ୍ୟମରଃ ।

ବିଗ୍ରହ ବଚନମାନଙ୍କୁ କହନ୍ତେ ସୁଗ୍ରୀବ ସୈନ୍ୟ ସଜାଇ । ବାଜ-
ଣିଆବଳ ଲଙ୍କାରୁ ବାହାର ଏକାଳେ ବାଦ୍ୟ ବଜାଇ ସେ । ବ୍ୟାପେ ।
ବଳ ସାଜି କି ମେଘକଳାପେ । ବ୍ୟକ୍ତ ଥିଲେ ଦୁର୍ଗନଗାଧିପେ ସେ ।୧୦।
ବଇଜୟନ୍ତୀ ପୀତ ଶ୍ୱେତ ବିଦ୍ୟୁତ ବକ ପ୍ରକଟ ସେ ସଙ୍ଗେ ।
ବରହିଣଗଣ ନୃତ୍ୟକଳ ପ୍ରାପ୍ୟେ ଆସନ୍ତି ପଦାତି ରଙ୍ଗେ ସେ । ବାଜେ ।
ନିଦ୍ୟ ଘଣ୍ଟୀ ଶାମୁକ ସମାଜେ ସେ । ବଦାଉ କି ପକ୍ଷକମ୍ପ ସାଜେ ।୧୧।

---

( ସେହି ଜଟିଳ କଥା ପ୍ରକାଶ କରୁଛୁ ) । ମୁଁ ରଣେ ବିଜୟୀ ( ବିଜୟବନ୍ତ-
ଅଟେ ) । ଆଜ ବିଜୟ କରୁଛୁ ( ଚକ୍ରୁ ରଣରେ ବିଶେଷରେ ଜୟ କରୁଛୁ )
ସେ ସବୁ ହୋଇଥାଉ । ତା ବୋଲେ ( ତା କଥାରେ ) ବାୟୁପୁତ୍ର ( ହନୁ-
ମାନ୍ ) ନଭମଣ୍ଡଳେ ( ଆକାଶ ମଣ୍ଡଳରେ ) ବେଗେ ବିଜମି "ଯାଇ" ରାମ-
ପାଶେ ( ରାମଙ୍କ ନିକଟରେ ) ମିଳେ । ୯ ।

୧୦ମ ପଦ—ହନୁମାନ୍ ବିଗ୍ରହ ବଚନମାନଙ୍କୁ ( ରାବଣ ଯୁଦ୍ଧ କରି-
ବାକୁ ଆସୁଛି ଏମନ୍ତ ) କହନ୍ତେ ସୁଗ୍ରୀବ ( ବାନରରାଜା ) ସୈନ୍ୟ ସଜାଇ
( ସଜାଇଲେ ) । ଏକାଳେ ଲଙ୍କାରୁ ବାଜଣିଆ ( ବାଦ୍ୟକାର ) ବଳ
( ସୈନ୍ୟ ) ବାଦ୍ୟ ବଜାଇ ବାହାର "ହୋଇ" ମେଘକଳାପେ ( ମେଘ-
ସମୂହ ) ଦୁର୍ଗ ନାଗାଧିପେ ( ଲଙ୍କାଗଡ଼ ତ୍ରିକୂଟ ମେରୁ ପର୍ବତରେ ଥିଲା ପ୍ରାୟ
ଥିଲେ ) ବ୍ୟକ୍ତ "ହୋଇ ଆସି" ବ୍ୟାପେ ( ବ୍ୟାପିଲେ ) । ୧୦ ।

୧୧ଶ ପଦ—ସେ ସଙ୍ଗେ ( ମେଘପରି ବ୍ୟାପିଥିବା ସୈନ୍ୟଙ୍କ ସଙ୍ଗରେ)
ପୀତ ଶ୍ୱେତ "ବର୍ଣ୍ଣର" ବୈଜୟନ୍ତୀ ( ପତାକା ) ବିଦ୍ୟୁତ ( ବିଜୁଳି ) ବକ
( ବଳାକପରି ) ପ୍ରକଟ "ହୋଇଅଛନ୍ତି" । ବରହିଣଗଣ ( ମୟୂରଗଣ )
ନୃତ୍ୟ କଳପ୍ରାପ୍ୟେ ପଦାତି ( ପାଇକମାନେ ) ରଙ୍ଗେ ( ନାଚି ନାଚି ) ଆସନ୍ତି ।
ନିଦ୍ୟ ( ପ୍ରଶସ୍ତ ହୋଇ ) ବାଜେ ( ବାଜୁଥିବା ) ଘଣ୍ଟୀ ( ଘାଗୁଡିମାଳ )
ଶାମୁକସମାଜେ (ଶାମୁକାମାଳର ଶବ୍ଦପରି ଶୁଭିଲା) । ବଦାଉ (ବଦାଉମାନେ )
କି ( କଅଣ ) ପକ୍ଷକମ୍ପ ( ପକ୍ଷର କମ୍ପକୁ ) ସାଜେ ( ସାଜିଲେ ) । "ଘନ-
କାଳରେ ମୟୂରମାନେ ପକ୍ଷ କମ୍ପାଇ ନାଚନ୍ତି" । ୧୧ ।

ବାର୍ଦ୍ଧିଏ ଏମନ୍ତ ବୁଦ୍ଧି ପ୍ରକଟିତ ସ୍ୟନ୍ଦନ କୁମ୍ଭୀ ତୁରଙ୍ଗେ । ବହିତ୍ର କୁମ୍ଭୀର ମହାମୀନମାନ ଗତି କରନ୍ତି କି ରଙ୍ଗେ ସେ । ବାଜୀ । ବାର ସାଦ ସଦୃଶ ବିରାଜେ ସେ । ବାସ ଉଷ୍ଣୀଷ ଡିଣ୍ଡୀର ସାଜେ ସେ । ୧୨ ।

ବାରିବ୍ୟାଳଜାଳ କଚ୍ଛପ ମଞ୍ଜୁଳ ସାଟବେଳୀ ଆଡ଼ଣୀ ବହି । ବ୍ୟୂତ-ପତ୍ତି ହୁଏ ଭ୍ରମେ ଚକ୍ରାକୃତି ପୁଚ୍ଛନ୍ତି ଶ୍ରୀରାମ ଚମୂହିଁ ଏ । ବ୍ୟୂହ । ବିଧା-ନରେ ଶ୍ରେଷ୍ଠ କେ କେ କହ ସେ । ବିରାଜନ୍ତି ଯଥା ମହାଗ୍ରହ ସେ ।୧୩।

---

୧୨ଶ ପଦ—"ରାବଣର ଚତୁରଙ୍ଗ ବଳ ଦେଖି" ଏମନ୍ତ ବୁଦ୍ଧି ପ୍ରକଟିତ "ହେଲା" । ବାର୍ଦ୍ଧି ( ସମୁଦ୍ର ) ଏ । "ସମୁଦ୍ରରେ" ବହିତ୍ର ( ବୋଇତ ) କୁମ୍ଭୀର ମହାମୀନ ( ରାଘବାଦି ) ମାନ ( ଏମାନେ ) "ଗତି କଲାପ୍ରାୟ" "ସେ ସୈନ୍ୟରେ" ସ୍ୟନ୍ଦନ ( ରଥମାନେ ) କୁମ୍ଭୀ ( ଗଜମାନେ ) ତୁରଙ୍ଗେ ( ଅଶ୍ୱମାନେ ) ରଙ୍ଗେ ଗତି (ଗମନ) କରନ୍ତି କି ? । ୧ ବାଜୀବାର (ପକ୍ଷୀ-ସମୂହ ) ୨ ସାଦ ( ଅଶ୍ୱାରୋହ ) ସଦୃଶ ବିରାଜେ ( ବିରାଜୁ ଅଛନ୍ତି ) । ବାସ ଉଷ୍ଣୀଷ ( ପାଗ ) ୩ ଡିଣ୍ଡୀର ( ଫେଣ ତୁଲ୍ୟ ) ସାଜେ ( ସାଜିଛି ) । ୧୨ ।

୧୩ଶ ପଦ—ବାରିବ୍ୟାଳଜାଳ ( ଜଳବ୍ୟାଳଗଣ ) "ଓ" କଚ୍ଛପ "ପ୍ରାୟ" ମଞ୍ଜୁଳ ( ସୁନ୍ଦର ) ସାଟବେଳୀ ଆଡ଼ଣୀ (ଢାଲ) ବହି ( ଧାରଣ କରି ) ଚକ୍ରାକୃତି ( ତାହାଙ୍କ ଚକ୍ରଗତିରେ ) ୧ ଭ୍ରମେ (ଜଳ ଭଉଁରିରେ) ବ୍ୟୂତପତ୍ତି ହୁଏ ( ବୁଦ୍ଧିକଟନ୍ତି ) ଚମୂହିଁ ( ସେ ସୈନ୍ୟ ସମୁଦ୍ରକୁ ଚାହିଁ ) ଶ୍ରୀରାମ "ବିଭୀ-ଷଣକୁ" ପୁଚ୍ଛନ୍ତି ( ପଚାରନ୍ତି ) । ଏ ବ୍ୟୂହ ବିଧାନରେ ( ସୈନ୍ୟ ସମୂହ ସ୍ଥାପନା ବିଧିରେ ) କେ କେ ଶ୍ରେଷ୍ଠ ( କିଏ କିଏ ବଡ଼ ) "ତାହା ମୋତେ" କହ "ଏମାନେତ" ମହାଗ୍ରହ ଯଥା ( ପ୍ରାୟ ) ବିରାଜନ୍ତି । ୧୩ ।

---

୧—ବାଜୀବାଣାଶ୍ୱପକ୍ଷିଷୁ ବାର ସଂଘାତ ସଚୟୌ ଇତ୍ୟମରଃ ।

୨—ଅଶ୍ୱାରୋହାଶ୍ଚସାଦିନ ଇତ୍ୟମରଃ ।

୩—ଡିଣ୍ଡୀରୋଽବ୍ଧି କଫଂ ଫେନ ଇତ୍ୟମରଃ ।

୧—ସ୍ୟାଦାବର୍ତ୍ତୋଽମ୍ଭସାଂ ଭ୍ରମ ଇତ୍ୟମରଃ ।

ବକ୍ଷପଣ ଭଣି ଶୁଣ ରକ୍ଷମଣି କାହାକୁ କହିବି ତୁଚ୍ଛ । ବ୍ରହ୍ମାଣ୍ଡ ଏକେ ଏକେ ଜିଣିପାରନ୍ତି ଅଷ୍ଟାଦଶଗଣ୍ଡା ବସ୍ତ୍ର ହେ । ବୀରଣ ବଜ୍ରିଜିତ ପ୍ରଥମ କୁମର ହେ । ବାରିଦରୁ ଜନ୍ମି ରଡ଼ି ଘୋର ହେ । ୧୪ ।

ବୋଲଇ ଯେ ଅତିକାୟ ସେ ଅମରେ ସମରେ ନାଗରେ ନାହିଁ । ବିବୁଧେ ମହାପାରୁଶ୍ୱ ପାରୁଶରେ ନ ବସନ୍ତି ଭୟ ବହି ହେ । ବୀର । ବଡ଼ ଦରଦାତା ମହୋଦର । ବାମେ ଟେକି ପାରଇ ମନ୍ଦର । ୧୫

ବୟରୁ ବଡ଼ମ ସ୍ଥୂଳଜଙ୍ଘ-ତର ଧାଇଁବେ ହର ହୋଇଲେ ବିଶ୍ୱ ଧୂମ୍ରାକ୍ଷ ଧୂମ୍ରମଣ୍ଡୁ କହିବ ଧାନୁକ ଏକା ବାନ୍ଧିଲେ ହେ । ବୀର ବଡ଼େ ମିତ୍ରଘ୍ନନାମ ଯେ ସାର । ବିଘ୍ନକରେ ମିତ୍ର ତାରତର ହେ ।୧୬।

---

୧୪ଶ ପଦ—"ଏମନ୍ତ ରାମ ପଦ୍ମନେତ୍ରେ" ବକ୍ଷାପଣ ଭଣି ( କହୁଛି ହେ ରକ୍ଷମଣି ଶୁଣ ଏଥିରେ କାହାକୁ ତୁଚ୍ଛ କହିବି, ଏକେ ଏକେ ( ଜଣେ ଜଣେ ) ବ୍ରହ୍ମାଣ୍ଡ ଜିଣି ପାରନ୍ତି "ଏମନ୍ତେ ଏ" ଅଷ୍ଟାଦଶ ଗଣ୍ଡା ( ବାଅସ୍ତରି ; ବସ୍ତ୍ର ( କୁମର ) । ହେ ବୀର ( ରାମ ) ପ୍ରଥମ କୁମର ବଜ୍ରିଜିତ ( ଇନ୍ଦ୍ରଜିତ ) ଜନ୍ମ "ସମୟରେ" ରଡ଼ି (ଯେଉଁ ରଡ଼ି ଦେଲା ସେ) ବାରିଦରୁ (ମେଘ ରଡ଼ିରୁ) ଘୋର ( ଭୟଙ୍କର ) ଅଟେ "ଏଣୁ ତା ନାମ ମେଘନାଦ ହେଲା" । ୧୪ ।

୧୫ଶ ପଦ—ଯେ ଅତିକାୟ ବୋଲଇ ସେ ସମୟରେ (ଯୁଦ୍ଧରେ ତା ତୁଲ୍ୟ) ଅମରେ ( ଦେବ ଲୋକରେ ) ନାଗରେ ( ନାଗ ଲୋକରେ ) "କେହି ନାହିଁ" । ମହାପାରୁଶ (ମହାପାର୍ଶ୍ୱନାମା କୁମର) ପାରୁଶରେ (ପାଖରେ) ବିବୁଧେ (ଦେବତାମାନେ) ଭୟ ବହି ( ଡରି ) ନ ବସନ୍ତି । ହେ ବୀର ! ମହୋଦର "ନାମା ପୁତ୍ର" ବଡ଼ ଦର ( ଭୟ ) ଦାତା ସେ ବାମେ ( ବାମ ହସ୍ତରେ ) ମନ୍ଦର "ପର୍ବତକୁ" ଟେକି ପାରଇ । ୧୫ ।

୧୬ଶ ପଦ—ସ୍ଥୂଳଜଂଘ "ନାମା ପୁତ୍ର"ର ତାର ବୟସରୁ ବଡ଼ମ ଅଟେ, ହର ହୋଇଲେ ଧାଇବେ * ( ତା ଶିରଘାତେ ଗରଳଭକ୍ଷ ମହାଦେବ ମଧ୍ୟ

---

*—ଯଃ କ୍ଷୀରାବ୍ଧେର୍ମନ୍ଦରାଦୁତ୍କାତୋଦ୍ଭୂତ ନାମ ଲୀ କାଳକୂଟୋଽତିଭୀମଃ ।
ତଂ ଯେ ଭୁଂକ୍ତେ କେଽପରୋଽଭୂନ୍ମହେଶ ଦ୍ୱୟକ୍ତ 'ଲୋକେ କୃଷ୍ଣିତ' ମାପଦ୍ୱିଷ୍ଟୁଃ ।।

ବାଜୁଁ କାଳଘଣ୍ଟ ଯମଘଣ୍ଟ ଘଣ୍ଟି ଯମ ଉପଯମ ଭାବ । ବଜ୍ରଦଂଷ୍ଟ୍ରା
ଦନ୍ତରଗଡ଼କୁ ଏକା ଲକ୍ଷ ହୋଇଅଛୁ ପବ୍ଭ ହେ । ବୀର । ବ୍ୟକ୍ତ
ମହାରାବଣ ନାମର ହେ । ବାଜେ ମହୁମ ବସ୍ତୁ ଉପର ହେ । ୧୭ ।

ବୋଲୁଁ ଦୈତ୍ୟବଳ ଅନିଳ ଗଡରେ ମୀନଠଣା ବେଢ଼ ଦେଲେ ।
ବାଣାସନେ ଗୁଣ ଧନ୍ୱୀ ତିନିଜଣ ଦେଇ ରଣକୁ ଧାଇଁଲେ ଯେ । ବୃକ୍ଷେ ।
ବସିଥିଲେ ତହିଁ କପିମୁଖ୍ୟେ । ବେଗେ ଉପାଡ଼ି ଧାଇଁ ତା ଦକ୍ଷେ ।୧୮।

---

ଛିଲ ପଡ଼ନ୍ତେ’ ଏଣୁ ବିଷରୁ ବିଷମ ) ଧୂମ୍ରାକ୍ଷ “ନାମା ପୁତ୍ର” ଏକ ସାୟକ ( ବାଣ ) ବିନ୍ଧିଲେ ବିଶ୍ୱ ( ସଂସାରକୁ ) ୧ ଧୂମମୟ କରିବ । ହେ ବୀର ! ଯେ “ପୁତ୍ର” ୨ ମିତ୍ରଘ୍ନ ନାମ ବହେ “ଯେ ନାମ ତାହାର” ୩ ସାର “ଅଟେ” “ ଯେଣୁ” ମିତ୍ର ( ସୂର୍ଯ୍ୟଙ୍କର ) ତାରତର ( ଅଧିକ ) ବଧ୍ନ କରେ ( ନାଶ କରେ ) “ସୂର୍ଯ୍ୟ ତାଙ୍କୁ ଦେଖି ଭୟରେ ତେଜହୀନ ହୁଏ ଏହି ଭାବ” । ୧୭ ।

୧୭ଶ ପଦ—କାଳଘଣ୍ଟ “ନାମା” ଯମଘଣ୍ଟ “ନାମା ପୁତ୍ରର” ଘଣ୍ଟି ( ଘାଗୁଡ଼ି ) ବାଜୁଁ ( ବାଜନ୍ତେ ) ଯମ ( କୃତାନ୍ତ ) “ଶୁଣି” ଭାବ ( ଭାବଇ ) “ଏ ଦୁହେଁ ମୋହର” ଉପଯମ (ବିନାଶ କର୍ତ୍ତା କବା ଯମୋପାଧିକ ହେବେ ) । ବଜ୍ରଦଂଷ୍ଟ୍ର “ନାମା ପୁତ୍ରର” ଦନ୍ତ ଗଡ଼କୁ ପବି ( ବଜ୍ର ) ଏକା ଲକ୍ଷ ହୋଇଅଛୁ । ହେ ବୀର ! ବ୍ୟକ୍ତ ମହାରାବଣ ନାମର ( ମହାରାବଣ ନାମା ପୁତ୍ର ) ବସ୍ତୁ ଉପର ( ବସ୍ତୁ ଉପରକୁ )୧ ମହୁମ ( ଯୁଦ୍ଧ ଯାତ୍ରା ) ବାଜେ । ୧୭ ।

୧୮ଶ ପଦ—ବୋଲୁଁ ( ବିଭୀଷଣ ଏମନ୍ତ ବୋଲନ୍ତେ ) ଦୈତ୍ୟବଳ ଅନିଳ ( ପବନ ) ଗଡରେ ମୀନ ( ମୀନ ସେନାଗଡର ) ଠଣା ( ଶିବିରକୁ ) ବେଢ଼ ଦେଲେ ( ବେଢ଼ରେ ପକାଇଲେ ) “ତା ଦେଖି” ଧନ୍ୱୀ ( ଧନୁର୍ଦ୍ଧାରୀ ) ତିନିଜଣ ( ରାମ, ଲକ୍ଷ୍ମଣ ଓ ବିଭୀଷଣ ) ବାଣାସନେ ( ଧନୁରେ ) ଗୁଣ ଦେଇ ରଣକୁ ଧାଇଁଲେ । ତହିଁ ( ସେଠାରେ ) କପିମୁଖ୍ୟେ ( କପିଶ୍ରେଷ୍ଠମାନେ )

---

୧—ପ୍ରଚୁରାର୍ଥେ ମୟଟ୍ ।

୨—ମିତ୍ରଂ ହନ୍ତୀତି ମିତ୍ରଘ୍ନଃ ।

୩—ସାର-ଯଥାର୍ଥନାମା ।

୧—ମହୁମ ପ୍ରୟାଣ-ଯତ୍ରେଚନାଭିଗମନମରୌ ତଦଭିଷେଣନ ଇତ୍ୟମରଃ

ବେନସୈନ୍ୟ ଭେଟ ଅଟବୀ ସମାନ କଣ୍ଟକଗ୍ରବେ ଅଗମ୍ୟ । ବହରେ କେଶରୀ ସିଂହ ବେନି ବନେ ବହନ୍ତ ଏତର୍କେ ସମ ଲେ । ବନେ । ବଭ୍ରାଜିତଗବୟ ଗମନେ । ବନେ ଶାର୍ଦ୍ଦୂଳ କ୍ରୀଡ଼ାକୁ ଘେନେ ॥

ବନେ ଲେ ତାଳମ୍ବ ଜାମ୍ବବ ପନସ ଚନ୍ଦନହିଁ ମନୋରମ । ବନ-କରେ ମେଘନାଦ ଶୁକ କଙ୍କ ମଣ୍ଡଳୀ ଯେ ହୁଏ ରମ୍ୟ ଲେ । ବନେ । ବିପତନ ଶାଖା ଅବିକ୍ରାନ୍ତେ । ବନେ ଖଡ୍ଗ ଆଜ୍ୟାତ ଘନେ ସେ ।୨୦

---

ବୃକ୍ଷେ ( ଯେଉଁ ବୃକ୍ଷରେ ) ବସିଥିଲେ ତା ) ସେ ବୃକ୍ଷକୁ ) ଉପାଡ଼ି ଦକ୍ଷେ (ଦକ୍ଷିଣ ହସ୍ତରେ ଧରି) ବେଗେ ଧାଇଁଲେ । କମ୍ବା ଦକ୍ଷେ (କୁଶଳରେ) । ୧୮ ।

୧୯ଶ ପଦ—ବେନ ସୈନ୍ୟ ( ରାମ ରାବଣ ସୈନ୍ୟର ) ଭେଟ ଅଟବୀ ( ବନ ) ସମାନ "ହେଲା" "ଅରଣ୍ୟ" ୧ କଣ୍ଟକ ଗ୍ରବେ ( କଣ୍ଟା ଥିବାରେ ) ଅଗମ୍ୟ ( ଦୁର୍ଗମ ) ଏ "ବେନ ସୈନ୍ୟ" କଣ୍ଟକଗ୍ରବେ ( ଶତ୍ରୁ ଗ୍ରବରେ ) ଅଗମ୍ୟ ( ଦୁର୍ଗମ ) ବେନ ବନେ ( ଦୁଇ ସୈନ୍ୟ ବନରେ ) କେଶରୀ "ନାମା କପି" ସିଂହ "ନାମା ଦୈତ୍ୟ" ବହରେ ଏତର୍କେ ( ଏମନ୍ତ ତର୍କରେ ) ସମ ( ସମାନ ଗ୍ରବରେ ) ବହନ୍ତ । ସେ ବନେ ( ରାମସୈନ୍ୟ ବନରେ ) ଗବୟ "ନାମା ସେନାପତିର" ଗମନେ ( ଗମନରେ ) ବିଭାଜିତ ( ଉଜ୍ଜ୍ୱଳ ) ବନେ ( ରାବଣ ସୈନ୍ୟବନରେ ) ଶାର୍ଦ୍ଦୂଳ ନାମା ଦୈତ୍ୟର କ୍ରୀଡ଼ାକୁ ଘେନେ ( ଘେନା କରେ ) । ୧୯ ।

୨୦ଶ ପଦ—ଲେ ବନେ ( ରାମ ସୈନ୍ୟବନରେ ) ଜାମ୍ବବ "ନାମା ଋକ୍ଷରାଜ" ଜାମ୍ବୁ ଗଛ ତୁଲ୍ୟ, ତାଳମ୍ବ "ନାମା କପି" ତାଳମ୍ବଗଛ, ପନସ କପି ପଣସ ଗଛ, ଚନ୍ଦନ "ନାମା କପି" ଚନ୍ଦନ ବୃକ୍ଷ "ହେବାରୁ ସେ" ମନୋରମ । ବନକରେ ( ଅପର ରାବଣ ସୈନ୍ୟବନରେ ) ୧ ମେଘନାଦ ( ଇନ୍ଦ୍ରଜିତ ) ମୟୂର ତୁଲ୍ୟ ୨ ଶୁକ ( ରାବଣ ମନ୍ତ୍ରୀ ) ଶୁକପକ୍ଷୀ, କଙ୍କ "ନାମା ଦୈତ୍ୟ" କଙ୍କପକ୍ଷୀ ଏହାଙ୍କ ମଣ୍ଡଳୀରେ ସେ ରମ୍ୟ "ହୋଇଅଛି"

---

୧—ଶତ୍ରୁଗ୍ରେକ୍ଷୁଦ୍ରପଦଯୋଃ ରୋମହର୍ଷେ ଚ କଣ୍ଟକଃ ଇତ୍ୟମରୋମାଙ୍କେ ଚ ଦ୍ରୁମାଙ୍ଗେ ଚେତ୍ୟଶ୍ୱଃ ।

୧—ମେଘେ ନଦତି ନୃତ୍ୟତି କଲୋପତ ମେଘନାଦୋ ମୟୂରଃ ।

୨—ଶୁକୋ ବ୍ୟାସସୁତେ କୀରେ ଇତି ମେଦିନୀ ।

ବାରିଦେ ବାରିଦେ ମେଳ ହେଲା ପ୍ରାୟେ ଯୁଦ୍ଧ ରାକ୍ଷସଙ୍କ ଦ୍ୱନ୍ଦ୍ୱ ।
ବରଷେ କେ ତହିଁ ଉପଳ କେ କରେ ଆୟୁଧ କୁଳିଶ ଭେଦ ସେ ।
ବେନି । ବିଜୁଳି ଶକ୍ତି ତହିଁ ଘୋରଧ୍ୱନି । ବିଗ୍ରହରୁ ଜଳଧାର ଦାମି ॥
ବିଶେଷେ ଚଞ୍ଚଳା ଗତି ଟେକେ ଯେଣେ ଅଚଳାଲିଙ୍ଗନ କେତେ ।
ବହିବାରୁ ତହିଁ କୀଲାଳ ସରିତ ପ୍ରକଟ କବନ୍ଧ ନୃତ୍ୟ ସେ । ବାରେ ।
ବିଲୋକନକୁ ଆନ ନ କରେ । ବଦ୍ୟ ତରଣି ଯୁକ୍ତ ବାସରେ ସେ ।୨୨।

---

ବନେ ( ରାମ୍ଚସୈନ୍ୟବନରେ ) ଶାଖା ( ବୃକ୍ଷ ଡାଳ ) ଅବିଚ୍ଛିନ୍ନେ ( ଅନବରତ ) ବିପତନ ( ପଡ଼ୁଛନ୍ତି ) ବନେ ( ରାବଣ ସୈନ୍ୟବନରେ ) ୩ଖଣ୍ଡ୍ଗ ( ଖଣ୍ଡା ରୂପ ଗଣ୍ଡା ପଶୁମାନେ ) ଘନେ ( ନିବିଡ଼ରେ ) ଅତ ଯାତ "ହୋଇ ଅଛନ୍ତି" । ୨୦ ।

୨୧ଶ ପଦ—ବାରିଦେ ( ମେଘ ମଣ୍ଡଳରେ ) ବାରିଦେ ( ମେଘମାଳ ) ମେଳ ହେଲା ପ୍ରାୟ ୧ ରାକ୍ଷ ରାକ୍ଷସଙ୍କ ଦ୍ୱନ୍ଦ୍ୱ ( ଯୁଦ୍ଧ ହେଲା ) । ତହିଁ ( ସେ ଯୁଦ୍ଧରେ ) କେ ( କେହି ) ଉପଳ ( ପଥର କୁଅପଥର ତୁଲ୍ୟ ) ବରଷେ ( ବୃଷ୍ଟି କରେ ) କେ ( କେହି ) ଆୟୁଧ କୁଳିଶ ( ଶସ୍ତ୍ର ରୂପ ବଜ୍ରରେ ) ଭେଦ କରେ । ବେନି ( ସେ ଦୁଇଥାଟ ) ତହିଁ ( ଯୁଦ୍ଧ ଭୂମିରେ ) ଘୋର ଧ୍ୱନି ( ଭୟଙ୍କର ଶବ୍ଦ ) ବିକାଶନ୍ତି ( କରନ୍ତି ) ବିଗ୍ରହରୁ ( ଦେହରୁ ) ଜଳଧାର ଦାମି । ( ଜଳଧାର ପ୍ରାୟ କାଳ ହେଲା ) । ୨୧ ।

୨୨ଶ ପଦ—ମେଘପକ୍ଷେ—ବିଶେଷେ ( ବିଶେଷରେ ) ଚଞ୍ଚଳା ବିଜୁଳିର ) ଗତିକି ଯେଣନ୍ତି । କେତେ ( କେତେକ ମେଘ ) ଅଚଳାଲିଙ୍ଗନ ( ପର୍ବତ ଆଲିଙ୍ଗନ କରନ୍ତି ) ତହିଁ ( ସେହି ଘନକାଳରେ ) କୀଲାଳ ( ଜଳ ) ବହିବାରୁ ସରିତ । ( ନଦୀ ) କବନ୍ଧି ନୃତ୍ୟେ ( ଜଳର ତରଙ୍ଗମାନେ ) ପ୍ରକଟ "ହେଉଥାନ୍ତି" । ବାରେ ( ସେହି ବଡ଼ ଜଳରେ ) ନ କରେ ନକ୍ରେ ( କୁମ୍ଭୀରମାନେ ) ବିଲୋକନକୁ ଅନ ( ଦେଖା ନ ଯାନ୍ତି ) ତରଣି ( ନୌକା

---

୩—ଗଣ୍ଡକେ ଖଡ଼୍ଗ ଖଡ଼୍ଗିନା ଇତ୍ୟମରଃ ।
୧—ରକ୍ଷାକ୍ଷତଭଲ୍ଲଭଲ୍ଲୁକା ଇତ୍ୟମରଃ ।

ବାଦୀ ଅଷ୍ଟସେନା ଯୂଥପତି ସଙ୍ଗେ ରାଜପୁତ୍ର ଏକ ଏକ ।
ବାହିନୀମାନେ ଜଗଜ୍ଜେଠିମାନଙ୍କେ ଏ ବିଧି ରଣରେ ଚକ ସେ । ବଳୀ ।
ବ୍ୟାଘ୍ର ବ୍ୟାଘ୍ର କି କରନ୍ତି କଳି । ବୃଷ ବୃଷ କି ବିରୋଧୀ ମିଳି । ୨୩।

---

ଥିବୁ ) ବାସରେ ( ଗୃହରେ ) ଯୁକ୍ତ "ହୋଇ" ବଦ୍ୟ ( ବିଦ୍ୟମାନ ଥାନ୍ତି ) । ଯୁଦ୍ଧ ପକ୍ଷେ—ବୀର "ବୀରମାନେ" ବିଶେଷ ( ବିଶେଷରେ ଚଞ୍ଚଳା ଗତି (ଚାଞ୍ଚଲ୍ୟଗମନକୁ ) ଯେନନ୍ତି (ଯେନିଅଛନ୍ତି) କେତେ (କେତେକ ବୀର) ଅଚଳାଲିଙ୍ଗନ ( ପର୍ବତ ଧରିଛନ୍ତି ) । କାହ୍ନା କେତେ "ମତ" ଅତଳାଲିଙ୍ଗନ ( ଭୂମିରେ ପଡ଼ିଛନ୍ତି ) ଜଳଲସିତ ( ରକ୍ତନଦୀ ) ବଢ଼ିଲ୍ଲାରୁ ୧କବନ୍ଧ ( ଛିନ୍ନମସ୍ତକ ) ନୃତ୍ୟ ପ୍ରକଟ ( ନୃତ୍ୟରେ ପ୍ରକଟ ହେଲା ) ବିଦ୍ୟମାନ ହୋଇ ୨ତରଣି ( ସୂର୍ଯ୍ୟ ) ଯୁକ୍ତ ଥିବା ବାସରେ ( ଗୃହରେ ) ବାରେ ( ଥରେ ) ବିଲୋକନକୁ ଆନ କେହି କରୁନାହିଁ । ( ହେ କବେ ନୃତ୍ୟକୁ କେହି ଥରେ ଦେଖୁ ନାହିଁ କେବଳ ଯୁଦ୍ଧରେ ଲିପ୍ତ ଅଛି ) କାହ୍ନା ବିଲୋକନକୁ ଆନକରୁ ନାହିଁ ଏକ ଦୃଷ୍ଟିରେ ଅଛି । ୨୨ ।

୨୩ଶ ପଦ—ଅଷ୍ଟ ୧ସେନା ଯୂଥପତି ସଙ୍ଗେ ( ଅଷ୍ଟସେନା ଏବଂ ପଞ୍ଚଶ ଯୂଥପତିଙ୍କ ସଙ୍ଗରେ ) ରାଜପୁତ୍ର ( ସ୍ୱର୍ଗରେ ପୁତ୍ର ନାତିମାନେ ) ଏକ ଏକ ( ଜଣେ ଜଣେ ) ବାଦୀ ( ବିବାଦୀ ହେଲେ ) । ବାହିନୀ ( ସେନାମାନେ ) ଜଗଜ୍ଜେଠୀମାନଙ୍କେ ( ଜଗଜ୍ଜ୍ୟେଷ୍ଠମାନଙ୍କ ସଙ୍ଗରେ ) ଏ ବିଧି ରଣେଚକ ( ଏହି ବିଧିରେ ଯୁଦ୍ଧ କଲେ ) । ବଳୀ ( ବଳିଷ୍ଠମାନେ ) ବ୍ୟାଘ୍ର ବ୍ୟାଘ୍ର କଳି କରନ୍ତି କି ( ବ୍ୟାଘ୍ର ସଙ୍ଗେ ବ୍ୟାଘ୍ର କଳି କଲାପରି ) ୨ବୃଷ କି ବୃଷ ବିରୋଧୀ ମିଳି ( ବୃଷ ସଙ୍ଗେ ବୃଷ ବିରୋଧ କଲାପରି ) "ଯୁଦ୍ଧ କଲେ" ॥

---

୧—କବନ୍ଧଂ ସଲିଲେ ପ୍ରୋକ୍ତମପମୂର୍ଦ୍ଧକଳେବରେ ଇତିବିଶ୍ୱଃ ।
ନାଗନାମୟୁତଂ ତୁରଙ୍ଗନିୟୁତଂ ସାର୍ଦ୍ଧଂ ରଥାନାଂ ଶତଂ ।
ପତ୍ତୀନାଂ ଦଶକୋଟି ସନ୍ନିପତନେ ନୃତ୍ୟତ୍କବନ୍ଧୋରଣେ ଇତି ମହାନାଟକେ ।
୨—ତରଣିର୍ଦ୍ୟୁମଣୌ ପୁଂସି କୁମାର୍ଯ୍ୟାନୌକୟୋଃ ସ୍ତ୍ରିୟାମିତି ମେଦିନୀ ।
୧—ସେନାସୈନ୍ୟପ୍ରଭେଦୟୋଃ ଇତି ମେଦିନୀ ।
୨—ବୃଷଭେ ବୃଷଭେ ବୃଷ ଇତ୍ୟମରଃ ।

ବିଭୀଷଣ ମିତ୍ରଘନ ରବିସୁତ ମହୋଦର କଲେ ଦ୍ୱନ୍ଦ୍ୱ । ବାଳି-
ତନୟ ଅତିକାୟ ମାରୁତି ମହାପାର୍ଶ୍ୱରେ ବାଦ ସେ । ଦୁଷ୍ଟ । ବହ୍ନିସୁତ
ସ୍ଥୂଳଜଙ୍ଘ ଦୁଷ୍ଟ । ବଜ୍ରଦଂଷ୍ଟ୍ର ନଳ ରଣମାଡ଼ି । ୨୪ ।

ବେଢ଼ି ଶକ୍ରପରପନ୍ଥି ଆଦି ଅଷ୍ଟରଥୀ ଦିଗଦନ୍ତି ସମ । ବିରାଜେ
ତହିଁମଧ୍ୟରେ ଦାଶରଥି ଶୋଭି ମେରୁଶାନୁ ରମ୍ୟ ସେ । ବେଳେ ।
ବିବସ୍ୱାନ ପ୍ରଭା ନ ଛାଡ଼ିଲେ । ବିବୁଧଙ୍କ ହିତ ସବୁକାଳେ । ୨୫ ।

ବିପକ୍ଷ(ତ୍ରି) ଇନ୍ଦ୍ରଜିତଲକ୍ଷ୍ମଣ ରାବଣେ ଯାମି କାଳୀ-ପ୍ରଭା ଲଭି । ବିକ୍ର

---

୨୪ଶ ପଦ—ବିଭୀଷଣ ମିତ୍ରଘନ ( ମିତ୍ରଘ୍ନ ) ରବିସୁତ (ସୁଗ୍ରୀବ) ମହୋ-ଦର [୧]ଦ୍ୱନ୍ଦ୍ୱ ( କଳହ ) କଲେ । ବାଳିତନୟ ( ଅଙ୍ଗଦ ) ଅତିକାୟ ମାରୁତି ( ହନୁମାନ୍ ) ମହାପାର୍ଶ୍ୱରେ ( ମହାପାର୍ଶ୍ୱ ସଙ୍ଗରେ ) ବାଦ ( ବିବାଦ ) କଲେ । "ହେ ସାଧୁଜନେ" ଦୁଷ୍ଟ ବହ୍ନିସୁତ ( ନୀଳ ) ସ୍ଥୂଳଜଂଘ "ଏ ଦୁହିଁ-ଙ୍କର" ଦୁଷ୍ଟ ( ଯୁଦ୍ଧ ) "ହେଲା" ବଜ୍ରଦଂଷ୍ଟ୍ର ନଳ "ଏ ଦୁହିଁଙ୍କର"[୨] ରଣମାଡ଼ି ( ମଧ୍ୟରେ ରଣ ହେଲା ) । ୨୪ ।

୨୫ଶ ପଦ—ଶକ୍ରପରପନ୍ଥି ( ଇନ୍ଦ୍ରଜିତ ) ଆଦି ଦିଗଦନ୍ତୀ (ଦିଗ୍‌ଗଜ) ସମ ( ସମାନ ) ଅଷ୍ଟରଥୀ ବେଢ଼ି ( ବେଢ଼ିଲେ ) । ତହିଁ ମଧ୍ୟରେ ( ତାହାଙ୍କ-ମଧ୍ୟରେ ) ଦାଶରଥି ( ରାମ ) [୧]ମେରୁସାନୁ ( ମେରୁପର୍ବତର ) ରମ୍ୟ ( ରମଣୀୟତାକୁ ) ବହି ( ଧାରଣକରି ) ବିରାଜେ ( ବିରାଜିଲେ ) । ସେ ( ରାମ ) ବେଳେ ( ଥରେ ) ବିବସ୍ୱାନ ( ସୂର୍ଯ୍ୟ ) ପ୍ରଭା ( ଦ୍ୟୁତିକି ) ନ ଛାଡ଼ିଲେ । ବିବୁଧଙ୍କ ( ଦେବତାଙ୍କ ) ହିତ ସବୁକାଳକେ "ବାଞ୍ଛନ୍ତି" । "ମେରୁ ମଧ୍ୟ ସୂର୍ଯ୍ୟ ପ୍ରଭାକୁ ନ ଛାଡ଼ଇ ବିବୁଧମାନଙ୍କର ହିତକର ଅଟେ" । ୨୫ ।

୨୬ଶ ପଦ—[୧]ଯେଣୁ କଞ୍ଚୁକରେ ( ସାଞ୍ଜୁରେ ) ଶୋଭି ( ଶୋଭିତ ) [୨]ଯୋଗିବରେ ( ଶ୍ରେଷ୍ଠ ଯୋଗୀଙ୍କ ମଧ୍ୟରେ ) ଜ୍ୟେଷ୍ଠ ( ପ୍ରଥମ ) ବନ୍ୟ [୩]ମାଳୀ

---

୧—ଦ୍ୱନ୍ଦ୍ୱଂ କଳହ ଯୁଗ୍ମୟୋ ଇତ୍ୟମରଃ ।

୨—ମାଡ଼ି ଗୌଡ଼ଆଭାଷା । ହ୍ରଦଯୁଦ୍ଧକନ୍ଦରମାଟେ ଇତି ପ୍ରୟୋଗଃ ।

୧—ସ୍ନୁସାନୁଃ ପ୍ରସ୍ଥଲସ୍ଥ ଇତ୍ୟମରଃ ।

୧—କଞ୍ଚୁକୋ ବାରବାଣେ ସ୍ୟାନ୍ନିର୍ମୋକେ କବଚେଽପି ଚେତି ମେଦିନୀ ।

୨—ଯୋଗଃ ସୁଖେ ଧନେ ବୃଦ୍ଧୌ ଶଙ୍ଖରେ କୈକୋଽୟୁଃ ।

୩—ମାଳା ସ୍ରକ୍ ପଂକ୍ତିକାନନେ ଇତି ଶବ୍ଦମାଳା ।

ମାଳୀ ଭୋଗିବର-ଜ୍ୟେଷ୍ଠ ପୂର୍ଣ କଞ୍ଚୁକରେ ଯେଣୁ ଶୋଭି ସେ । ବନ୍ଧା।
ବେଗେ ମନ୍ତ୍ର କଙ୍କପତ୍ର ସନ୍ଧି । ବିପକ୍ଷପ୍ରତିଜ୍ଞା ଝାଡ଼ିଲେ ଶୋଧି । ୨୬ ।

ବାଟେର ବାରେ କଲ ଯେତେକ ପ୍ରୟୋଗ ନ ବାଜୁଁ କ୍ଷତ ଦିଲେ ଗାତ୍ରେ । ବାରଣୀ ଜାଣଇ ଯନ୍ତ ବୋଲି ଗୁଣି ହୋଇଲା ତାହାର ଚିତ୍ତେ ସେ । ବୀର । ବ୍ୟାକୁଳରେ ଗୁଡ଼ ରଡ଼ି ଘୋର । ବ୍ରଣ ପୂରିଲା ଯହୁଁ ଶରୀର । ୨୭ ।

ବପ୍ତାରୁ ପଞ୍ଚତ୍ୱ ଏହିକ୍ଷଣି ହେବ ପଞ୍ଚମନେ ଏହା ଚିନ୍ତି । ବାମେ ଥାଇ ବାମ ହୋଇ ଇନ୍ଦ୍ରଜିତ ପ୍ରହାରେ ଅମୋଘଶକ୍ତି ସେ । ବେଗେ । ବସୋଇଲା ଯେ ଲକ୍ଷ୍ମଣ ଅଙ୍ଗେ । ବଜ୍ରାନ ସେ ଯଥା କ୍ରୁଦ୍ଧ ନାଗେ ॥

---

( ବହୁମୂଖ ) କାଳୀପ୍ରଭ ( କାଳୀୟ ସର୍ପର କାଳିମା ପ୍ରଭାକୁ ) ଲଭି "ଥିବା" ରାବଣେ ( ରାବଣଠାରେ ) ଲକ୍ଷ୍ମଣ ବିପକ୍ଷ ( ଶତ୍ରୁତୁଲ୍ୟ ) ବିପତ୍ତି ( ବିପଦକୁ ) ଇଚ୍ଛିତ ( ଇଚ୍ଛାକରି ) ଝାମ୍ପି ( ତା ଉପରକୁ ଝାମ୍ପିଲେ ) । "ପୁଣି ଧନୁରେ" କଙ୍କପତ୍ର ( ବାଣ ) ମନ୍ତ୍ର ( ଗାରେଡ଼ି ମନ୍ତ୍ର ହେଲା ) "ତାକୁ" ବେଗେ ବିପକ୍ଷ ପ୍ରତିଜ୍ଞା ( ପ୍ରତିଜ୍ଞା ବିପକ୍ଷ ) ଶୋଧି ( ଶୋଧନକରି ) ଝାଡ଼ିଲେ । କାଳୀୟ-ସର୍ପ କଞ୍ଚୁକରେ ( କାତରେ ) ଶୋଭିତ, ବକ୍ରମାଳୀ ( ବହୁମୁଖବିଶିଷ୍ଟ—ସହସ୍ରଫଣା) ଭୋଗିବରେ ( ସର୍ପଙ୍କ ମଧ୍ୟରେ ) ଜ୍ୟେଷ୍ଠ (ଶ୍ରେଷ୍ଠ) 'ଅଛେ' ।୨୬।

୨୭ଶ ପଦ—"ସେ ରାବଣ" ବାରେବାରେ (ପୁନଃ ପୁନଃ) ଯେତେକ ବାଣ ପ୍ରୟୋଗ କଲା ଗାତ୍ରେ ( ଦେହରେ ) ନ ବାଜୁଁ "ଲକ୍ଷ୍ମଣ ତାହାର ସବୁ" ଛେଦିଲେ । "ତା ଦେଖି" ତାହାର ( ସେହି ରାବଣର ) ଚିତ୍ତେ ( ମନରେ ) ଏ ଯନ୍ତ ବାରଣୀ ( ବାଣ-ବାରଣୀ ) ଜାଣଇ ବୋଲି ଗୁଣି ହୋଇଲା । "ନୋହିଲେ କିପାଁ ବାଣ ନ ବାଜନ୍ତା" । ସେ ବୀର ( ରାବଣ ) ଶରୀର ଯହୁଁ ବ୍ରଣ ( କ୍ଷତରେ ) ପୂରିଲା "ତହୁଁ" ବ୍ୟାକୁଳରେ ( ଆତଙ୍କରେ ) ଘୋର ରଡ଼ି ଗୁଡ଼ି ( ଗୁଡ଼ିଲା ) । ୨୭ ।

୨୮ଶ ପଦ—"ରାବଣେର ବ୍ୟାକୁଳ ରଡ଼ି ଶୁଣି" ଇନ୍ଦ୍ରଜିତ ୧ ବପ୍ତାର ( ବାପର ) ପଞ୍ଚତ୍ୱ ( ମୃତ୍ୟୁ ) ଏହିକ୍ଷଣି ହେବ ଏହା ପଞ୍ଚମନେ ଚିନ୍ତି ( ପଞ୍ଚ-

---

୪—କଙ୍କପତ୍ରଃ ଶିଲୀମୁଖ ଇତି ହିକାଣ୍ଡଶେଷଃ ।

୧—ବପ୍ତା ପିତରି ବାପକେ ଇତ୍ୟମରଃ ।

ବିଂଶାକ୍ଷ ଦେଖି ସୁଖୀ ରଥୁଁ ଓହ୍ଲାଇ ତୋଳୁଁ ନ ଚଳି ଲତାଏ ।
ବାସୁକିଂବିନା ଧରଣୀଧରଣକୁ କ୍ଷମ କି ମହ୍ଲଲତାଏ ସେ । ବଧା
କହୁଁ ମାରୁତି ହୋଇ ସକ୍ରୋଧା । ବାହୁଡ଼ିଲା ଗୁଡ଼ି ଦଶମୂର୍ଦ୍ଧା । ୨୯ ।
ବିନୟତରେ ଲଘୁ ପବନତନୟ ଟେକି ଘେନଗଲା ବହୁ । ବାତ
ଉଡ଼ାଇଂକି ହିକୂଟରୁ ଏକ କୂଟକୁ ଏ ଲକ୍ଷ୍ୟ ବହୁ ସେ । ବାଞ୍ଛି ।
ବାମଦେବାଦ୍ରିରୁ ଗରୁ ଅଛ୍ଛି ସେ । ବଳ ଏଡ଼େ ତା କପି ନେଉଛି ସେ ॥

---

ମନରେ ଘ୍ରକି ) ବାମେ ( ବାମ ଭାଗରେ ) ଥାଇ ବାମ ( ପ୍ରତିକୂଳ ) ହୋଇ
ଅମୋଘ ( ସଫଳ ) ଶକ୍ତି "ପ୍ରହାରିଲା" । "ସେ ଶକ୍ତି" ବେଗେ "ଯାଇ"
ଲକ୍ଷ୍ମଣ ଅଙ୍ଗେ ବସୋଇଲା ( ବାଜିଲା ) । ନାଗେ ( ସର୍ପମାନେ )' ଛୁଇଁ ଯଥା
( ଦଂଶିଲା ପରି ) ସେ ( ଲକ୍ଷ୍ମଣ ) ଅଜ୍ଞାନ ( ହତଜ୍ଞାନ ) ହେଲେ । ୨୮ ।

୨୯ଶ ପଦ—"ଲକ୍ଷ୍ମଣ ମୋହ ଗିବା" ଦେଖି ବିଂଶାକ୍ଷ ( ରାବଣ ) ସୁଖୀ "ହୋଇ" ରଥୁଁ ( ରଥ ଉପରୁଁ ) ଓହ୍ଲାଇ ତୋଳୁଁ ( ଲକ୍ଷ୍ମଣଙ୍କୁ ନେବା ମାନସେ ତୋଳନ୍ତେ ) ଲତାଏ ( ତଳେମାନ ) ନ ଚଳି ( ନ ଚଳିଲେ ) । ଧରଣୀ ଧରଣକୁ ( ପୃଥ୍ୱୀ ବହିବାକୁ ) ବାସୁକି ( ନାଗରାଜ ) ବିନା ୧ ମହ୍ଲଲତାଏ ( କିଆସବୁ ) କ୍ଷମ ( ସମର୍ଥ ) କି ? । "ତା ଦେଖି" ମାରୁତି ( ହନୁମାନ ) ସକ୍ରୋଧା ( କ୍ରୋଧଯୁକ୍ତ ହୋଇ ) ବଧା ବହୁ ( ମାରିବାରୁ ) ଦଶମୂର୍ଦ୍ଧା ( ରାବଣ ) ଗୁଡ଼ି ବାହୁଡ଼ିଲା ( ପଳାଇଲା ) । ୨୯ ।

୩୦ଶ ପଦ—ପବନତନୟ ( ହନୁମାନ ) ବିନୟରେ ଲଘୁ ( ସ୍ତୁତି-କରି ) ଟେକି ବହୁ "ଲକ୍ଷ୍ମଣଙ୍କୁ" ଘେନିଗଲା । ବାତ ( ପବନ ) ହିକୂଟର ( ହିକୂଟ ପର୍ବତର ) ଏକ କୂଟକୁ ( ଶୃଙ୍ଗକୁ ) ଉଡ଼ାଇ "ନେଉଛୁ କି ?" ଏ ଲକ୍ଷ୍ୟ ବହୁ ( ଏମନ୍ତ ତୁଳନାକୁ ବହିଲେ ) । "ତା ଦେଖି ରାବଣ" ବାଞ୍ଛି ( ବିଚାରିଲେ ) । ବାମଦେବାଦ୍ରିରୁ ( କୈଳାସ ପର୍ବତରୁ ) ଗରୁଅଛି ( ଗରିଷ୍ଠ ) ତା ( ଏ ଲକ୍ଷ୍ମଣକୁ ) କପି (ମାଙ୍କଡ଼ଟାର) ଏଡ଼େ ବଳ "ଟେକି ନେଉଛି" ।୩୦।

---

୧—ଅଥ ମହ୍ଲଲତା ଗଣ୍ଡୂପଦଃ କିଞ୍ଚୁଲିକ ଇତ୍ୟମରଃ ।

ବାଳିଅନୁଜ ବିଭୀଷଣ ସୁଷେଣ ଜାମ୍ବବ ଲକ୍ଷ୍ମଣ ଭୁଲେ । ବାଟେ ଯାଉଁ ସେ ସୁବେଳକୁ ଚେତନା ପାଇ ଯୁଦ୍ଧକାମ କଲେ ସେ । ବୀର । ବୋଧି କପିରାଜଙ୍କଲେ ଧୀରସେ । ବ୍ୟାପେ କୋପ ରଘୁନାୟକର ଯେ ॥

ବରଷିବ ନାହିଁ ଯେତେ ନୀର ଘନ ଶର ପ୍ରହାରିଲେ ଯେତେ । ବାଦାଗାଦାଗକୁ କୁଜନ୍ତି ଝଟିତି ଯୋଡ଼ାଇ ନାହିଁ ଯେମନ୍ତେ ସେ । ବୈରି । ବଳଯାକ କାଣ୍ଡପୂର୍ଣ୍ଣ କରି ସେ । ବରଜିଲେ ସେ ଶ୍ୱାବିଭୁ ପରି ସେ ॥

ବରକ୍ତେ ରକ୍ତେ ଜରଜର କବଚ ଭିନ୍ନ ବଚ ନ ସ୍ଫୁରିତ । ବିଦ୍ରାବଣ କଉଣପଗଣ ହେଲେ ଚରମେ ଜନିତ ଘାତ ୮୪ । ବାମ । ବିଚ୍ଛେଦନ କଲେ ଧ୍ୱଜସ୍ତୋମ ସେ । ବେପଥୁ ଗାତ୍ରରେ ଜନମ ସେ । ୩୩ ।

---

୩୧ଶ ପଦ—ବାଳି ଅନୁଜ ( ସୁଗ୍ରୀବ ) ବିଭୀଷଣ ସୁଷେଣ ଜାମ୍ବବ "ଏ ସମସ୍ତେ" ଲକ୍ଷ୍ମଣ ଭୁଲେ ( ସଙ୍ଗେ ) "ଗଲେ" । ସେ ( ଲକ୍ଷ୍ମଣ ) ସୁବେଳକୁ ( ସୁବେଳ ପର୍ବତକୁ ) ଯାଉଁ ବାଟେ ( ବାଟରେ ) ଚେତନା ପାଇ ଯୁଦ୍ଧ କାମ ( ଯୁଦ୍ଧକୁ ଇଚ୍ଛା ) କଲେ । ସେ ବୀର ( ଲକ୍ଷ୍ମଣଙ୍କୁ ) କପିରାଜ ( ସୁଗ୍ରୀବ ) ବୋଧି ( ବୋଧଦେଇ ) ଧୀର ( ସ୍ଥିର ) କଲେ । "ଇନ୍ଦ୍ରଜିତ ଲକ୍ଷ୍ମଣଙ୍କୁ ଶକ୍ତି ମାରିବା ଜାଣି" ରଘୁନାୟକର ( ରାମଙ୍କର ) କୋପ ( କ୍ରୋଧ ) ବ୍ୟାପେ ( ବଢ଼ିଲା ) ।୩୧ ।

୩୨ଶ ପଦ—"ରାମ" ଯେତେ ଶର ପ୍ରହାରିଲେ ତେତେ ନୀର (ଜଳ) ଘନ ( ମେଘ ) ବରଷିବ ନାହିଁ । ବାଦଗ ଦାଗକୁ ( ସବୁ ଆଡ଼କୁ ) କୁଜନ୍ତି ( କୂଜୁଛି ) ଯେମନ୍ତେ ( ଯେପରି ) ଝଟିତି ( ଶୀଘ୍ର ) ଯୋଡ଼ାଇ ନାହିଁ । ସେ ( ରାମ ) ବୈରି ( ଶତ୍ରୁ ) ବଳଯାକ କାଣ୍ଡ ପୂର୍ଣ୍ଣ କରି "ଦେଲେ" । ସେ ( ବୈରିବଳ ) ୧ ଶ୍ୱାବିଭୁ ( ଟିଙ୍କପକ୍ଷୀ ) ପରି ବରଜିଲେ । ୩୨ ।

୩୩ଶ ପଦ—କବଚ ( ସାଞ୍ଜୁ ) ଭିନ୍ନ ( ଛିଣ୍ଣଗଲା ) "ତେଣୁ" ରକ୍ତେ ( ରୁଧିରରେ ) ଜର ଜର ( ଜର୍ଜର ହୋଇ ) ବଚ ( ବାକ୍ୟ ) ନ ସ୍ଫୁରିତ ( ନ ସ୍ଫୁରିଲା ) ବିରକ୍ତରେ ( ବିରକ୍ତହୋଇ ) କଉଣପଗଣ ( ରାକ୍ଷସବଳ )

---

୧—ଶ୍ୱାବିଭୁଃ ଶଲ୍ୟାସ୍ତ୍ରଲୋମ୍ନି ଶଲଲୀତ୍ୟମରଃ ।

ବଢ଼ିଲା ନଦୀ ଭେଳକରେ ମେଳକ ହୋଇଣ ନସ୍ତେଜ ଯଥା ।
ବୃଷ୍ଣିକ କର୍କଟ ଭ୍ରମି ଯାଉଥାନ୍ତି ରଥେ ଲଙ୍କପ୍ରତି ତଥା ସେ । ବକ ।
ବ୍ୟୂହ ବସିଥିଲା ଲକ୍ଷ୍ୟ ତର୍କ ସେ । ବାସବାରିଆଢ଼ ରଥୀଯାକ ସେ ।୩୪

ବାନରେ ଉପ୍ଲୃଦ ଭୂତପ୍ରାପ୍ତ ତହିଁ ଶାଖାପ୍ରସ୍ତର ପତନେ ।
ବଳାଇ ଦ୍ୱାର ବାହୁଚନ୍ଦ୍ର ରାମଚନ୍ଦ୍ର ବନ୍ଦେଜ ସୁବେଳରେ ଘନେ ସେ ।
ବୀର । ବର ଲକ୍ଷ୍ମଣ ନମେ ପଦ୍ମର ସେ । ବଡ଼ ଆଶଙ୍କା ମାନସୁଁ
ଦୂର ସେ । ୩୫ ।

---

ଖଦାବଣ ହେଲେ ( ପଳାଇଲେ ) । "ତେଣୁ" ଚରମେ ( ପିଠିରେ ) ଘାତ ( ବାଣାଘାତ ) ଜନତ ( ଜାତ ହେଲା ) । ବାମ ( ପ୍ରତିକୂଳ ରାମ ), ୧ ଧ୍ୱଜ ୨ ପ୍ରୋମ ( ପତାକା ସମୂହ ) ବିଚ୍ଛେଦନ କଲେ ( ବାଣରେ କାଟି ପକାଇଲେ ) । ଗାତ୍ରରେ ବେପଥୁ ( କମ୍ପ ) ଜନମ "ହେଲା" "ଭୟରେ ରାକ୍ଷସମାନେ ଥରିଲେ ଏହି ଭାବ" । ୩୩ ।

୩୪ ଶ ପଦ—ବଢ଼ିଲା ( ବଢ଼ିଥିବା ) ନଦୀ ( ନଈର ) ଭେଳ କରେ ( ଭେଳାରେ ) ମେଳକ ( ମେଳ ) ହୋଇଣ ( ହୋଇ ) ଯଥା ( ଯେରୂପ ) ନସ୍ତେଜ ( ତେଜହୀନ ହୋଇ ) ବୃଷ୍ଣିକ ( ବିଛା ) କର୍କଟ ( କଙ୍କଡ଼ା ) ଭ୍ରମି ଯାଉଥାନ୍ତି ତଥା ( ସେହିପରି ) ରଥେ ( ରଥ ଉପରେ ) ଲଙ୍କପତି ( ରାବଣ ) "ଦିଶିଲା" । ବାସବାରି ( ଇନ୍ଦ୍ରଜିତ ) ଆଦ୍ୟ ରଥୀଯାକ ବକବ୍ୟୂହ ( ବକ ସମୂହ ) ବସିଥିଲା ଲକ୍ଷ୍ୟ ( ପ୍ରାପ୍ତ ) ତର୍କ ( ତର୍କକୁ ବହିଲା ) । "ଯୁଦ୍ଧ ଛାଡ଼ି ରଥରେ ବକପଂକ୍ତି ବସିଲାପରି ଦିଶିଲେ ଏହିଭାବ" । ୩୪ ।

୩୫ଶ ପଦ—ତହିଁ ( ସେ କାଳରେ ) ବାନରେ ( କପିମାନେ ) ଶାଖା ପ୍ରସ୍ତର ପତନେ ( ଡାଳ ପଥର ପକାଇବାରେ ) ଭୂତ ପ୍ରାପ୍ତ "ରାକ୍ଷସଙ୍କର" ଉପ୍ଲୃଦ ( ଉପ୍ଲୃପ୍ରଦ ) "ହେଲେ" । "ଅସୁରବଳକୁ ଲଙ୍କାଗଡ଼" ଦ୍ୱାର ବଳାଇ "ଦେଇ" ରାମଚନ୍ଦ୍ର, ବାହୁଚନ୍ଦ୍ରେ, ଘନେ ( ଶୀଘ୍ର ) ସୁବେଳରେ ( ସୁବେଳ ପର୍ବତରେ ) ବିଜେ "କଲେ" । ବୀରବର ଲକ୍ଷ୍ମଣ ପଦ୍ମର

---

୧—କେବଳଂ ଧ୍ୱଜମସ୍ତିସ୍ତ୍ରୀ ମିତ୍ୟମରଃ ।

୨—ସ୍ତ୍ରୋମୌଘନିକର ବ୍ରାତବାର ସଙ୍ଘାତସଞ୍ଚୟା ଇତ୍ୟମରଃ ।

ବୋଲନ୍ତି ଶ୍ରୀରାମ ଅଟନ୍ତି ଉତ୍ତମ ଭୁଜଙ୍ଗ ଭୂମୂଳେ ସେ ଦୁଇ । ବିଭୀଷଣରେ ତୋତେ ଯେ ଶକ୍ତି ମାଇଲା ଲକ୍ଷ୍ମଣେ ଯେ ଶକ୍ତିବନ୍ଧ ହେ । ବୀର । ବଞ୍ଚାଇଲୁ ତୁ ଖଗପ୍ରକାର ହେ । ବାଜ ଅନୁଜ ମୋହ ମୋହରହେ ॥

ବୋଇଲେ ଲକ୍ଷ୍ମଣ ଶୁଣି ତା ତତ୍କ୍ଷଣ ପାର୍ଶ୍ୱ ପ୍ରହାର ଅଜାଗେ । ବାଣାସନ ଛୁଇଁ ନପୂମ କରୁଛି ତାହା-ସମର ମୋ ଭାଗେ ସେ । ବୀର । ବୋଲୁଁ କୋପେ କମ୍ପେ କଳେବର ସେ । ବଜେ ଯାଇଁ ଶିଖରଶିଖର ସେ । ୩୭ ।

---

( ରାମଙ୍କ ପାଦରେ ) ନମେ ( ନମସ୍କାର କଲେ ) । "ତାଙ୍କୁ ଦେଖି" ମାନସୁଁ ( ରାମଙ୍କ ମନରୁ ) ବଡ଼ ଆଶଙ୍କା ( ଭୟଙ୍କର ଭୟ ) ଦୂର ହେଲା ॥

୩୬ଶ ପଦ—ଶ୍ରୀରାମ ବୋଲନ୍ତି ହେ ବିଭୀଷଣ ତୋତେ ଯେ ଶକ୍ତି ମାରିଲା ଯେ "ପୁଣି" ଲକ୍ଷ୍ମଣେ ( ଲକ୍ଷ୍ମଣଙ୍କୁ ) ଶକ୍ତିବନ୍ଧ ( ମାରିଲା ) ସେ ଦୁଇ "ଜଣ" ଭୁଜଙ୍ଗ ( ବଡ଼ ) ୧ ଭୂମୂଳେ ( ରଣ ସଙ୍କୁଳରେ ) ଉତ୍ତମ ( ପ୍ରଧାନ ) ଅଟନ୍ତି । ହେ ବୀର "ବିଭୀଷଣ" ତୁ ଖଗପ୍ରକାର ( ପକ୍ଷୀପ୍ରାୟ ) "ଶୂନ୍ୟକୁ ଉଡ଼ିଯାଇ" ବଞ୍ଚାଇଲୁ । ମୋହର ଅନୁଜ ( ଲକ୍ଷ୍ମଣ ) "ଦେହରେ ଶକ୍ତି ବାଜିବାରୁ" ମୋହ "ଗଲେ" । ୩୬ ।

୩୭ଶ ପଦ—ତା ଶୁଣି ଲକ୍ଷ୍ମଣ ତତ୍କ୍ଷଣେ ବୋଇଲେ ଅଜାଗେ ( ଅସାବଧାନତାରୁ ) ପାର୍ଶ୍ୱ ( ପାର୍ଶ୍ୱ ଭାଗରୁ ) ପ୍ରହାର ( ଶକ୍ତି ମାରିବାରୁ ) "ଜବାଣ ହୋଇଲି" । "ଏବେ" ବାଣାସନ ( ଧନୁ ) ଛୁଇଁ ନପୂମ କରୁଛି ତା ସମର ( ତା ଯୁଦ୍ଧ ) ମୋ ଭାଗେ ( ମୋ ଭାଗରେ ) "ରହିଲା" । ବୀର ( ଲକ୍ଷ୍ମଣ ) ବୋଲୁଁ ( ଏମନ୍ତ ବୋଲନ୍ତେ ) କୋପେ ( କ୍ରୋଧହେତୁ ) କଳେବର ( ଦେହଯଷ୍ଟି ) କମ୍ପେ ( ଥରିଲା ) । ଶିଖର ଶିଖର ( ସୁବେଲ ପର୍ବତ-ଶୃଙ୍ଗରେ ) ଯାଇ ବଜେ "କଡ଼ିଲା" । ୩୭ ।

---

୧—ଭୂମୂଳଂ ରଣସଙ୍କୁଳେ ଇତ୍ୟମରଃ ।

ବିରସେ ରଥୁଁ ଓହ୍ଲାଇ ସଖ୍ୟ କରି ବସି ରାବଣ ଭାଷିଲା । ଅଦ୍ଭୁତ
କାଳ ବୃଦ୍ଧେ ଅଛ ଅଛୁକି ଏ ଗୋଳଯୁଦ୍ଧ ଦେଖିଲ ଏ । ବଧି । ବେନି-
ଭ୍ରାତ ସମଧନ୍ୱୀ ଯୋଧୀ ଏ । ବଳବନ୍ତେ ଏକେ ଏକେ ସିଦ୍ଧି ଏ ।୩୮।

ବୋଲେ କେ ଥିଲି ତ୍ରିପୁର-ହର ରଣେ ବୋଲେ କେ
ତାରକାହବେ । ବୋଲେ କେ ଥିଲି ଚଣ୍ଡୀଯୁଦ୍ଧେ ନୋହିଛି ଏ ଦ୍ୱନ୍ଦ୍ୱ
ନୋହିବ କେବେ ହେ । ବୀର । ବୃଷଧ୍ୱଜ-ବଧୂ-ଦୁର୍ଗାଙ୍କର ହେ ।
ବିନ୍ଧିବାକୁ କାହିଁଛି ସତ୍ୱର ହେ । ୩୯ ।

---

୩୮ଶ ପଦ—ରାବଣ ବିରସେ ( ବିରସ ମନରେ ) ରଥୁଁ ( ରଥରୁ ) ଓହ୍ଲାଇ ସଖ୍ୟକରି ବସି ଭାଷିଲା ( କହିଲା ) । "ଏଠାରେ" ଅଦ୍ଭୁତ କାଳର ବୃଦ୍ଧେ ( ବୃଦ୍ଧଜନେ ) ଅଛ "ତୁମ୍ଭମାନଙ୍କର" ଏ ବଧି ( ଏ ବୟସରେ ) ଗୋଳଯୁଦ୍ଧ ଦେଖିଲ ଅଛୁ କି ? "ଏରୂପ ଗୋଳଯୁଦ୍ଧ କାହିଁ ତୁମ୍ଭେମାନେ ଦେଖିଛ କି ଏହାଭାବ" । ବେନିଭ୍ରାତ ( ରାମ ଲକ୍ଷ୍ମଣ ଦୁହେଁ ) ସମ ( ସମାନ ) ଧନ୍ୱୀ ( ଧନୁର୍ଦ୍ଧର ) ଯୋଧୀ ( ଯୋଦ୍ଧା ) "ଅଟନ୍ତି" ଏକେ ଏକେ ( ଜଣେ ଜଣେ ) ବଳବନ୍ତେ ( ବଳବନ୍ତ ପଣରେ ) ସିଦ୍ଧି ଲାଭକରି ଅଛନ୍ତି । ୩୮ ।

୩୯ଶ ପଦ—"ରାବଣ ପଚାରିବାରୁ" କେ ( କେହି ବୃଦ୍ଧ ) ବୋଲେ ମୁଁ ତ୍ରିପୁର ହର ରଣେ ( ଶିବ ତ୍ରିପୁରାସୁରର ଯୁଦ୍ଧକାଳରେ ) ଥିଲି । କେ ( କେହି ବୃଦ୍ଧ ) ବୋଲେ ମୁଁ ତାରକାହବେ ( କାର୍ତ୍ତିକେୟ ତାରକାସୁର ଯୁଦ୍ଧ ସମୟରେ ) ଥିଲି । କେ ( କେହି ବୃଦ୍ଧ ) ବୋଲେ ମୁଁ ଚଣ୍ଡୀଯୁଦ୍ଧେ ( ଚଣ୍ଡୀ ମହିଷାସୁର ଯୁଦ୍ଧକାଳରେ ) ଥିଲି । ଏ ଦ୍ୱନ୍ଦ୍ୱ ( ଏରୂପ ଯୁଦ୍ଧ ) ନୋହିଛି କେବେ ନୋହିବ । ହେ ବୀର ( ରାବଣ ) ବୃଷଧ୍ୱଜ ( ମହାଦେବ ) ବଧୂ ଦୁର୍ଗାଙ୍କର "ହେ ଦୁଇଭାଇଙ୍କ ପରି" ସତ୍ୱର ( ଶୀଘ୍ର ) ଶର ବିନ୍ଧିବାକୁ ଆଉ କାହିଁଛି ( କାହାଠାରେ ନାହିଁ ) "ଏମନ୍ତ ବେଗରେ ଶର ବିନ୍ଧିବାର ଦେଖିନାହୁଁ ଏହାଭାବ" । ୩୯ ।

ବୃଷଭ ଖଗେନ୍ଦ୍ର ସିଂହ ଐରାବତେ କପିଙ୍କ ପ୍ରାକ୍ରମ ନାହିଁ ।
ବୋଲୁଁ ଇନ୍ଦ୍ରଜିତ ବୋଇଲା ଦଣ୍ଡେକ ନ ସହିଲ କାହିଁପାଇଁ ମୁଁ ।
ବଧି । ବୀର ସାନୁଜକୁ ଶକ୍ତି ସନ୍ଧି ମୁଁ । ବଡ଼ ଯତିକ ଆଣନ୍ତି ବାନ୍ଧି ମୁଁ ॥

ବାର୍ତ୍ତାବହେ ଆସି ଏସମୟେ ଭାଷି ଶକ୍ତି ଚର୍ମେ ନ ଫୁଟିଲା ।
ବାଜିବାବେଗରେ ତେଜରେ ମାନବ କ୍ଷଣେ ମୋହ ଯାଇଥିଲା ସେ ।
ବୀର । ବାଟେ ଚେତନା ହୋଇଲା ତାର ଧୈ । ବନ୍ଧ ପ୍ରତିଜ୍ଞା
କଲା ଅପାର ସେ । ୪୨ ।

ବଇଶ୍ରବଣ ପୁତ୍ରମୁଖ ଚାହାନ୍ତେ ବୋଇଲା କୃପାଣ କର୍ଷି । ବର୍ତ୍ତିବେ

---

୪୦ଶ ପଦ—ବୃଷଭ ( ହରବାହନ ) ଖଗେନ୍ଦ୍ର ( ବିଷ୍ଣୁ ବାହନ-ଗରୁଡ଼ ) ସିଂହ ( ଦୁର୍ଗାଙ୍କ ବାହନ ) ଐରାବତେ ( ଇନ୍ଦ୍ର ବାହନ ଗଜରାଜ ) "ଏମାନଙ୍କଠାରେ" କପିଙ୍କ ପ୍ରାକ୍ରମ ( କପିମାନଙ୍କ ପରାକ୍ରମ ) ନାହିଁ । ବୋଲୁଁ (ବୃକ୍ଷମାନେ ଏମନ୍ତ ବୋଲନ୍ତେ) ଇନ୍ଦ୍ରଜିତ ବୋଇଲା ଦଣ୍ଡେକ (ଦଣ୍ଡେ ମାତ୍ରକ ) କାହିଁପାଇଁ ନ ସହିଲ (ନ ରହିଲ) । ମୁଁ ବୀର ଅନୁଜକୁ (ଲକ୍ଷ୍ମଣଙ୍କୁ) ଶକ୍ତି "ଅସ୍ତ୍ର" ସନ୍ଧି ( ମାରି ) "ଥିଲି" । "କ୍ଷଣେ ରହିଥିଲେ ମୁଁ ସମସ୍ତଙ୍କୁ" ବଧି ( ମାରି ) ବଡ଼ ଯତିକ ( ରାମଙ୍କୁ ) ବାନ୍ଧି ଆଣନ୍ତି । ୪୦ ।

୪୧ଶ ପଦ—ଏ ସମୟେ ବାର୍ତ୍ତାବହେ ( ଏକ ଚର ) ଆସି ଭାଷି ( କହେ ) "ଇନ୍ଦ୍ରଜିତ ମାରିବା" ଶକ୍ତି ଚର୍ମେ ( ଲକ୍ଷ୍ମଣଙ୍କ ଚମରେ ) ନ ଫୁଟିଲା । ବାଜିବା ବେଗରେ ତେଜରେ ( ଶକ୍ତି ବାଜିବାର ବେଗ ଓ ତା ତେଜରେ ) କ୍ଷଣେ ମାନବ ମୋହ ଯାଇଥିଲା । ହେ ବୀର ତାର ( ସେ ଲକ୍ଷ୍ମଣର) ବାଟେ ଚେତନା ହୋଇଲା । ଅପାର ପ୍ରତିଜ୍ଞା ବନ୍ଧ (କନ୍ଧକାର) ଗଲା ( ଗିରିଶିଖକୁ ଗଲା ) । ୪୧ ।

୪୨ଶ ପଦ—ବଇଶ୍ରବଣ ( ରାବଣ ) "ଏମନ୍ତ ଶୁଣି" ପୁତ୍ର ମୁଖ ( ଇନ୍ଦ୍ରଜିତ ମୁଖକୁ ) ଚାହାନ୍ତେ "ତୋହର ଶକ୍ତିରେ ତାହାର କିଛି ନ ହେଲା ଏହୁଙ୍କ" । ଇନ୍ଦ୍ରଜିତ କୃପାଣ ( ଖଡ୍ଗ ) କର୍ଷି ( ଝମକାଇ ) ବୋଇଲା । ଏଥର ରଣେ ( ଏବାର ଯୁଦ୍ଧରେ ) ଏକ ( ଗୋଟିଏ ) ବର୍ତ୍ତିବେ ନାହିଁ; ସହ ( ସମ୍ଭାଳ ହୁଅ ) ନଶୀ ଶେଷ ହେଉ ( ଆଜିରାତ୍ରି ପାହୁ ) । "ହେ

ନାହିଁ ଏଥର ରତ୍ନ ଏକ ସବୁ ଶେଷହେଉ ନଶୀ ହେ । ବହେ ।
ଗୀରବର ଏ ରସସମୂହେ । ବସ୍ତୁାଳଙ୍କିପଦ ଚିତ୍ତ ମୋହେ ହେ ।୪୨।



## ଦ୍ୱିଚତ୍ୱାରିଂଶ ଛାନ୍ଦ

ରାଗ—ଖଣ୍ଡକାମୋଦ

( ଯଦୁସିଂହ ଚଉତିଶା ବାଣୀରେ )

ବଳାରାତିଅରାତି ଜାଗରେ ସାର ରାତି ବଳାଉଁ ହୋମେ ମତି ଯେ ।
ବପଣି ଉତ୍ପତ୍ତି ସେ ବିମାନ ମାନବନ୍ତେ ଦେବଦଳନଖ୍ୟାତି ଯେ ।
ବସି ତହିଁ । ବାହି ସୁତ ଚଞ୍ଚଳେ ଯେ ।
ବଇଜୟନ୍ତୀ ରମ୍ୟ ଦ୍ୱାଦଶବ୍ରଜ ନାମ ନଭେ ଲଭେ ପ୍ରଚଳେ ଯେ ।୧।

---

ସ୍ୱନକନେ'' ଚିତ୍ତ ମୋହେ ( ମନ ମୁଗ୍ଧକର ) ଏ ରସ ସମୂହରେ ବସ୍ତୁାଳଙ୍କି ପଦ "ଗୀତକୁ" ଗୀରବର ''ଉପେନ୍ଦ୍ର ଭଞ୍ଜ କବି'' ବହେ ( ରଚନାକଲେ ) ।୪୨।



## ଦ୍ୱିଚତ୍ୱାରିଂଶ ଛାନ୍ଦ

୧ମ ପଦ—ବଳାରାତି ଅରାତି ( ଇନ୍ଦ୍ରଜିତ ) ମାନିବଶେ ( ଅଭିମାନ-ବଶରେ ) ହୋମେ ମତି ( ମନ ) ବଳାଉଁ ( ବଳାନ୍ତେ ) ଜାଗରେ ( ଉଜାଗରରେ ) ରାତି ସାରି ( ପୁହାଇଲା ) । ବପଣି ( ଶବ୍ଦ ଦ୍ୱୈତୁକ-ବପଣି ) ଉତ୍ପତ୍ତି "ହେବାରୁ" ଦେବବୃନ୍ଦଳନ (ଦେବତାମାନଙ୍କର ଦଳନକାରୀ) ବିମାନ ( ରଥ ) ଖ୍ୟାତି ହେଲା ( ହୋମରୁ ପ୍ରକଟିଲା ) । ସେ ( ଇନ୍ଦ୍ରଜିତ ) ତହିଁ ( ସେ ରଥରେ ) ବସି ( ବସିଲା ) । [1]ସୁତ ( ସାରଥି ) ଚଞ୍ଚଳ ବାହିଲା । "ସେ ରଥ" [2]ବଇଜୟନ୍ତୀ ରମ୍ୟ ( ବୈଜୟନ୍ତୀ ପତାକାରେ-

---

୧—ସୁତଃ କ୍ଷତ୍ରା ସାରଥିରପି ।

୨—ପତାକା ବୈଜୟନ୍ତୀ ସ୍ୟାତ୍ କେତନଂ ଧ୍ୱଜମସ୍ତ୍ରିୟାମିତ୍ୟମରଃ ।

ବାହାର ପଦ୍ମ ପଦ୍ମ ପଦ୍ମୀ ନୋହେ ଏ ଛଦ୍ମ ସ୍ୟନ୍ଦନ କୋଟି କୋଟି ସେ।
ବିଭ୍ରମେ ଖର୍ବ ଖର୍ବ ଅର୍ବ ବଇରି ଗର୍ବ ଖର୍ବରେ ପରକଟି ସେ।

ସୁନ୍ଦର), ଧ୍ୱଜ ଦନ୍ଦ୍ୱନ ନାମ ଲଭେ (ଲଭ କରିଅଛି)। "ଏକ" ନଭେ (ଆକାଶରେ) ଚ୍ଚଳେ (ଗମନ କରେ)। କିମ୍ବା "ସେ ରଥରେ ଥିବା" ରମ୍ୟ (ସୁନ୍ଦର) ବୈଜୟନ୍ତୀ ପତାକା (ଧ୍ୱଜଦନ୍ଦ୍ୱନ ନାମକୁ ଲଭଇ)। "ସେ ପତାକା" ନଭେ (ଆକାଶରେ) ଚଳେ (ଚଳୁଅଛି)। ୮।

୨ୟ ପଦ—ଯୁଦ୍ଧକୁ ପଦ୍ମ ପଦ୍ମ ସଂଖ୍ୟକ ୧ ପଦ୍ମୀ (ହସ୍ତୀ) ବାହାର "ହେଲେ" ଏ ଛଦ୍ମ (କପଟ) ନୋହେ। "ପୁଣି" ସ୍ୟନ୍ଦନ (ରଥ) କୋଟି କୋଟି ସଂଖ୍ୟକ ହୋଇ "ବାହାରିଲେ"। ବଇରି (ଶତ୍ରୁମାନଙ୍କ) ଗର୍ବ ଖର୍ବରେ (ଖର୍ବ କରିବା ଅର୍ଥେ) ଖର୍ବ ଖର୍ବ ସଂଖ୍ୟକ ୨ ଅର୍ବ (ଘୋଟକ) ବିଭ୍ରମେ (ବିଳାସରେ) ପରକଟି (ପ୍ରକଟିଲେ)। ୩। ବାଦ୍ୟକ (ଚତୁର୍ବିଧ ବାଦ୍ୟକାର) ବଳ ହି (ମଧ୍ୟ) ଯନ୍ତ୍ର ପନ୍ତ (ଧାଡ଼ି ଧାଡ଼ି) "ହୋଇ ପ୍ରକଟିଲେ"। ଲେଖ (ଲେଖାକର୍ତ୍ତ) ଅଲେଖ (ଅସଂଖ୍ୟ) ୪ ପତ୍ତି (ପଦାତିକ ସୈନ୍ୟ) "ବାହାରିଲେ"। କିମ୍ବା * ଅଲେଖ ଅଲେଖ (ଅଗଣିତ) ପଦାତି ସୈନ୍ୟ ବାହାରିଲେ। "ଚତୁରଙ୍ଗ ବଳ ବାହାରିବା ଯୋଗୁଁ" ବସୁଧା (ପୃଥ୍ୱୀ) ମେରୁ "ପର୍ବତ" ସୁଦ୍ଧା "ସହିତ" ୫ ସୁଧା (ପାଷାଣମାନେ) ବି 'ମଧ୍ୟ'

୧—ଇଭଃ ସ୍ତମ୍ବେରମଃ ପଦ୍ମୀତ୍ୟମରଃ।
୨—ବାଜିବାହାର୍ବ ଗନ୍ଧର୍ବ ହୟସୈନ୍ଧବ ସପ୍ତୟଃ ଇତ୍ୟମରଃ।
୩—ଚତୁର୍ବିଧମିଦଂ ବାଦ୍ୟଂ ବାଦିତ୍ରାତୋଦ୍ୟନାମକମିତ୍ୟମରଃ।
୪—ପଦାତି ପତ୍ତି ପଦଗ ପାଦ ତିକ ପଦାତୟଃ ଇତ୍ୟମରଃ।
*—ବିଶୁଦ୍ଧା ଲେଖ—ବିଶୁଦ୍ଧଅଲେଖ ସନ୍ଧି।
୫—ସୁଧାସ୍ତ୍ରୀ ଲେପନେ ମୂର୍ବା ସ୍ନୁହ୍ୟଗଙ୍ଗେଷ୍ଟିକା ମୃତେ ଇତି କୋଷାନ୍ତରଂ।
ଗଙ୍ଗେଷ୍ଟିଃ—ପାଷାଣଃ

ଚତୁରଙ୍ଗବଳ—ହସ୍ତ୍ୟଶ୍ୱରଥପାଦାତଂ ସେନାଙ୍ଗଃ ସ୍ୟାଚ୍ଚତୁର୍ବିଧଂ ଇତ୍ୟମରଃ।
ଏକାଦିଗଣନା—ଏକଂ ଦଶଶତସହସ୍ରାୟୁତ ଲକ୍ଷନିୟୁତ କୋଟୟଃ କ୍ରମଶଃ।
ଅର୍ବୁଦମବ୍ଜଂ ଖର୍ବଂ ନିଖର୍ବଂ ମହାପଦ୍ମ ଶଙ୍ଖ ବରିସ୍ମାତ।
ଜଲଧିଶ୍ଚାନ୍ତ୍ୟଂ ମଧ୍ୟଂ ପରାର୍ଦ୍ଧ ମିତି ଦଶଗୁଣୋତ୍ତରସଂଜ୍ଞା।
ସଂଖ୍ୟାୟା ସ୍ଥାନାନାଂ ବ୍ୟବହାରାର୍ଥଂ କୃତାଃ ପୂର୍ବୈଃ ଇତି ପାଟିଗଣିତେ।

ବାଦସକ । ବଳ ଶ୍ରୀ ପନ୍ତ ପନ୍ତ ଯେ ।
ବସୁଧା ଓମରୁ ସୁଦ୍ଧା କମ୍ପମାନ ବ ସୁଧା ଲେଖ-ଅଲେଖ ପଡ଼ି ଯେ ।୨।
ବାହ୍ନମାଏ ସୁସମ ସମସ୍ତେ ନାହିଁ ସମ ସମରେ ଏକୁଁ ଏକ ସେ ।
ବାଛିବାଛି ନେଇଛି ରଣଜୟକୁ ଇଛି ହୋଇଛି ସେ ନିଃଶଙ୍କ ଯେ ।
ବେଗେ ଯାଇ । ବହ୍ନିନନ୍ଦନଠଣା ଯେ ।
ବାଜୁଁ ବାଜଣା ଜଣା ସୁଗ୍ରୀକେ ରଣାଙ୍ଗଣାସ୍ଥିତ ସୈନ୍ୟ ଅଗଣା ସେ ।୩।
ବଜେ ଦୂଷିଣୁଅର ଖ୍ୟଷଣଗଣମାଗ୍ରି ଲକ୍ଷ୍ମଣ ସହିତରେ ଯେ ।
ବାଣାସନଟଙ୍କାରେ ସେନାମ୍ନି ରେ‌ରେକାରେ ଧ୍ରୁବମଣ୍ଡଳ ପୂରେ ଯେ ।

---

କମ୍ପମାନ "ହେଲେ" । "ଚତୁରଙ୍ଗ ବଳରଥର ସହ ନ ପର୍ଶ• ପୃଥ୍ୱୀ ଭୟେ କମ୍ପିଲ" । ହସ୍ତିବଳ ବାହାରିବାରୁ ତଦ୍ଭେ ମେରୁ କମ୍ପିଲ କାଳେ ଦନ୍ତାଘାତରେ ମତେ ଚୂର୍ଣ୍ଣ କରିବେ । ଅଶ୍ୱଙ୍କ ଖୁରବିନ୍ୟାସରେ ଚୂର୍ଣ୍ଣହେବା ଭୟେ ପାଷାଣମାନେ କମ୍ପିଲେ । ୨ ।

୩ୟ ପଦ—ବାହ୍ନମାଏ (ସେନାମାନେ) ସମସ୍ତେ ସୁସମ ଅଟନ୍ତି । "ତାଙ୍କ ସମାନ" ନାହିଁ । ସମରେ (ଯୁଦ୍ଧରେ) ଏକୁଁ ଏକ ସମ (ସମାନ) ଆଉ ତାଙ୍କ ଦ୍ୱିତୀୟ ନାହିଁ । ରଣ ଜୟକୁ (ଯୁଦ୍ଧଜୟ କରିବାକୁ) ଇଚ୍ଛି ବାଛି ବାଛି "ବୀରମାନଙ୍କୁ" ନେଇଛି "ଏଣୁ" ସେ (ଇନ୍ଦ୍ରଜିତ) ନିଃଶଙ୍କ (ନିର୍ଭୟ) ବେଗେ ଯାଇ ବହ୍ନିନନ୍ଦନ (ନୀଳସେନାପତିର) ଠଣା (ରହିବାସ୍ଥାନରେ ମିଳିଲେ) । ବାଜଣା (ବାଜା) ବାଜୁଁ (ବାଜନ୍ତେ) ସୁଗ୍ରୀବେ (ସୁଗ୍ରୀବ-ରାଜାକୁ) ଜଣା "ହେଲା ଯେ" ଅଗଣା (ଅସଂଖ୍ୟ) ସୈନ୍ୟ "ଆସି" ରଣାଙ୍ଗଣାସ୍ଥିତ (ରଣାଙ୍ଗଣରେ ଆ-ସର୍ବତୋଭାବରେ ସ୍ଥିତ ହେଲେ) । ୩

୪ର୍ଥ ପଦ—ଖ୍ୟର୍ଷଣ ଗଣମାଗ୍ରି (ରାକ୍ଷସସମୂହ ବିନାଶକାରୀ) ଦୂଷଣ ଅରି (ଦୂଷଣନାମା ରାକ୍ଷସର ଶତ୍ରୁ) "ରାମ" ଲକ୍ଷ୍ମଣ ସହିତରେ "ଯୁଦ୍ଧକୁ ବଜେ-କଲେ" । ବାଣାସନ ଟଙ୍କାରେ (ଧନୁ ଟଙ୍କାର କରିବାରେ) ସେନାମ୍ନି (ସେନାପତିମାନେ) ରେ ରେ କାରେ (ରେ ରେ କାର କରିବାରେ) ଧ୍ରୁବମଣ୍ଡଳ ପୂରେ (ସେ ଶବ୍ଦ ଧ୍ରୁବଲୋକରେ ପୂର୍ଣ୍ଣ ହେଲା) । ବଡ଼ କୋର୍ପୀ

ବଜ୍ରକୋପୀ । ବୃଷାରି ଭ୍ରାତ ମେଳ ଯେ ।
ବାଣତୁଷାର ବୃଷ୍ଟି କପିସାରସ ତୁଟି ସଚର ନ ଭୂସ୍ଥଳ ଯୋ।୪।
ବୃଷ୍ଟି ଗଦା ମୁଦ୍‌ଗର ଭଲ୍ଲ ଶୂଳ ସଙ୍ଗର ନଗ ନଗରପାତ ଯେ ।
ବ୍ୟୋମପଥରେ ରଥ ଅଚଳମନୋରଥ ଥରେ ମିତ୍ରର ଗାତ୍ର ଯେ ।
ବସନ୍ତେ କ । ବିରଚିତ ଚର୍ଚ୍ଚରୀ ଯେ ।
ବରରଙ୍ଗ ଅବୀରେ ମେଳକା କରବୀରେ ବିଳାସ ଲାସ୍ୟ ଧରି ଯୋ।୫।

---

"ଅଟଇ ଏମନ୍ତ ଯେ ବୃଷାରି (ଇନ୍ଦ୍ରଜିତର) ଭ୍ରାତ ମେଳ (ଲକ୍ଷ୍ମଣଙ୍କ ସହିତ ମେଳ) "ହୋଇଗଲା"। "ଇନ୍ଦ୍ରଜିତ୍‌"ର ବାଣ "ରୂପ" ତୁଷାର (କାକର)' ବୃଷ୍ଟି "କରନ୍ତେ" କପି "ରୂପ" ସାରସ (ପଦ୍ମବନ) ତୁଟି (ବିନଷ୍ଟ ହୋଇ) ଭୂତଳ (ରଣ ସ୍ଥାନରେ) *ସଚର ନ "ହେଲେ" (ଶୋଇଲେ)।୪।

୫ମ ପଦ—ସଙ୍ଗର (ଯୁଦ୍ଧରେ) ଗଦା ମୁଦ୍‌ଗର ଭଲ୍ଲ ଶୂଳ (ଏସବୁ ଶସ୍ତ୍ର) ବୃଷ୍ଟି ହେଲା, ନଗର (ପର୍ବତର ଏବଂ ବୃକ୍ଷର) ପାତ (ପତନ) ହେଲା, ଅଚଳ (ଅଟଳ) ମନୋରଥ (ମନବାଞ୍ଛା ପୂର୍ତ୍ତିଲାଗି) ରଥ (ଦେବଦାନବ ରଥ) ବ୍ୟୋମ ପଥରେ (ଆକାଶ ମାର୍ଗରେ) "ସ୍ଥିତ ହୁଅନ୍ତେ" ମିତ୍ରର (ସୂର୍ଯ୍ୟଙ୍କ) ଗାତ୍ର (ଦେହ) ଥରେ (କମ୍ପିଲା) "ସେ ସୂର୍ଯ୍ୟଙ୍କଠାରୁ ଅଧିକ ତେଜସ୍ୱୀ ଏହି ହେବ"। "ଅଥବା ମୋତେ ମାରିବ ଏମନ୍ତ ଭୟରୁ"। ବସନ୍ତେ (ବସନ୍ତ କାଳରେ) ଚର୍ଚ୍ଚରୀ (ଗୃତେଶ୍ୱରଖେଳ—ବସନ୍ତୋତ୍ସବ) ବିରଚିତ ହେଲା। ବସନ୍ତୋତ୍ସବରେ—ଲାସ୍ୟ (ନୃତ୍ୟର) ବିଳାସ (ବିଭୂଷଣକୁ) ଧରି ୧ କରବୀରେ (କରବୀର ପୁଷ୍ପଙ୍କ ପ୍ରାୟ) ମେଳକା

---

*—ସଚରନ୍ ମଧୁରକଙ୍କିଣୀରବଃ ସନ୍ତତଂ ମମ ତନୋତୁ ମଙ୍ଗଳଂ ।
ଇତି ପ୍ରୟୋଗଃ ।

୧—କରବୀରଃ କୃପାଣେ ସ୍ୟାଦ୍ଦୈତ୍ୟ ଭେଦାଶ୍ୱମାରୟୋଃ କୋଷାନ୍ତରଂ ।
ପୁଷ୍ପଭେଦେ କରବୀରେତ୍ୟମରଃ ।

ବ୍ୟକତ କେତେ ଗାତ୍ର ରକତ ଅର୍ଦ୍ଧଗାତ୍ର ଜର୍ଜ୍ଜର ଅଶକତ ଯେ ।
ବିଳାସ ¹କୃକଳାସ ସଦୃଶ ବନ୍ଧ ଲାସ୍ୟ କୃତ୍ତଶିରଂ ଏମନ୍ତ ଯେ ।
ବିଚ୍ଛେଦିତ । ବପୁ ମସ୍ତକ କେତେ ଯେ ।
ବିଧୁନ୍ତୁଦ କେତୁ କି ବିଧୁଗ୍ରାସରେ ତର୍କି ଭ୍ରମେ ପ୍ରବର୍ତ୍ତି ନୃତ୍ୟେ ଯେ ।୬।

---

( ସମସ୍ତଙ୍କର ମେଳ ହୋଇ ) ଅଖାଡ଼ାରେ ( ଫଗୁ ଖେଳରେ ) ବର ରଙ୍ଗ ( ଅତି ରଙ୍ଗବର୍ଣ୍ଣ ) ହୁଅନ୍ତି । ଏ ଯୁଦ୍ଧରେ—କରଖାରେ ( ଦୈତ୍ୟମାନେ ) ²ଅଖାଡ଼ାରେ (ଏ ଯେ ରାମରୂପୀ ବିଷ୍ଣୁଙ୍କ ବୀରମାନେ) ମେଳକା (ମେଳ ହୋଇ) ଲାସ୍ୟ ( କ୍ରୀଡ଼ାର ) ବିଳାସ ( ରୂପୁଷ୍ଟିକ ) ଧରି ବରରଙ୍ଗ ( ମହାଯୁଦ୍ଧ ) କଲେ । ୫ ।

୬ଷ୍ଠ ପଦ—କେତେ "ଲୋକଙ୍କ" ଗାତ୍ର ( ଶରୀରରେ ) ରକ୍ତ ( ରୁଧିର ) ବ୍ୟକ୍ତ ( ଫୁଟି ବାହାରୁଛି ) । କେତେ "ଲୋକଙ୍କର" ଅର୍ଦ୍ଧ-ଗାତ୍ରରେ ( ଅଧେକ ଶରୀର ) ରକତ ( ରୁଧିରରେ ) ଜର୍ଜର "ହେବାରୁ" ଅଶକ୍ତ ( ଅକ୍ଷମ ) "ହୋଇଅଛନ୍ତି" । କୃତ୍ତଶିର ( ଛିନ୍ନମସ୍ତକ କଳେବର—କବନ୍ଧ ) ¹ କୃକଳାସ ( ଏଣ୍ଡୁଅର ) ସଦୃଶ ( ସମାନ ) ଲାସ୍ୟ ( କ୍ରୀଡ଼ା ) ବିଳାସ ( ଗୃରୁଷ୍ଟିକ୍ତ ) ବନ୍ଧ ( ବନ୍ଧିଲା ) । ଏମନ୍ତ ( ଏଣ୍ଡୁଅ ମୁଣ୍ଡଟେକା ପକାଇଲା ପ୍ରାୟ ମୁଣ୍ଡ ଛିଡ଼ିଯିବା ଗଣ୍ଡି ଉଠେ ପଡ଼େ ଏହି ଭାବ ) । କେତେ ( ଲୋକଙ୍କର ) ବପୁ ମସ୍ତକ ( ଗଣ୍ଡି ମୁଣ୍ଡ ) ବିଚ୍ଛିନ୍ନିତ "ହେଲା" । ବିଧୁନ୍ତୁଦ ( ରାହୁ ) କେତୁ କି "ସେ ଦୁହେଁ" । ବିଧୁ ( ବିଷ୍ଣୁ—ରାମ ) ବିଧୁ ( ଚନ୍ଦ୍ର ) ହେଲେ ତାଙ୍କୁ ଗ୍ରାସିବାକୁ ନୃତ୍ୟରେ ପ୍ରବର୍ତ୍ତି ଭ୍ରମୁଅଛନ୍ତି କି ଏମନ୍ତ ତର୍କଣା-କରେ । ଏହାଦ୍ୱାରା କବନ୍ଧ ନୃତ୍ୟ ସୂଚିତ ହେଲା । ୬ ।

---

୧—ବିଷ୍ଣୁ ରାମସ୍ତୋରଭେଦଃ ।
୨—ସରଟଃ କୃକଳାସଃସ୍ୟାଦିତ୍ୟମରଃ ।

ବହି ଭୁଜଗଖଣ୍ଡ ଭୁଜ ଗଡ଼ୁ ଅଛନ୍ତି କ୍ଷତଜ ସରିତରେ ଯେ ।
ବିଶାଖୀତରୁପରି ଶବ ଶବଦ କରି ଚଳନ୍ତି ନିରନ୍ତରେ ଯେ ।
ବ୍ୟାକୁଳ କେ । ବିଖଣ୍ଡି ପଦ ପଡ଼ି ଯେ ।
ବିଲକ୍ଷ୍ୟ ଅଜଗରେ ପଡ଼େ ଭୂମିଭାଗରେ ଜନେ ଗମନ୍ତି ମାଡ଼ି ଯେ ।୭।
ବେଳୁଁ ବେଳୁଁ ସେ ରଣ ଅଧିକ ପ୍ରସରଣ ପ୍ରଭା କରିଣ ହାନି ଯେ ।
ବୀରଚନ୍ଦ୍ର ସେ ଇନ୍ଦ୍ରଜିତ ପ୍ରଭାତସାନ୍ଦ୍ର ଲକ୍ଷଣଶରମାନ ଯେ ।
ବିଭାବରୀ । ବିଭବଜ୍ୟୋତି ବଶ ଯେ ।
ବୋଲାଇ ସେହି ନିଶାଚର ମାୟୀମନୀଷୀ ହେଲା ମହା ତମସ ଯେ ।୮।

---

୭ମ ପଦ—କ୍ଷତଜ ସରିତରେ ( ରକ୍ତ ନଦୀରେ ) ଭୁଜ ( ଭୁଜମାନେ ଛିଡ଼ି ) ଭୁଜଗଖଣ୍ଡ ( ସର୍ପଖଣ୍ଡକ ) ବହି ଗଡ଼ୁ ଅଛନ୍ତି । ବିଶାଖୀତରୁ ( ଲଣ୍ଡାବୃକ୍ଷ ) ପରି ଶବ ( ଶବସବୁ ) ଶବଦ ( ଶବ୍ଦ ) କରି ନିରନ୍ତରେ ( ସର୍ବଦା ) ଚଳନ୍ତି ( ଚଳି ପଡ଼ୁଛନ୍ତି ) । କେ ( କେଉଁ ଲୋକର ) ପଦ ( ପାଦ ) ବିଖଣ୍ଡି ( ଛେଦହେବାରୁ ) "ଭୂମିରେ" ପଡ଼ି ବ୍ୟାକୁଳ "ହୁଏ" । "ସେହିଲୋକ" ଅଜଗରେ (ଅଜଗର ସାପର) ବିଲକ୍ଷ୍ୟ ସମାନ ) "ହୋଇ" ଭୂମି ଭାଗରେ ପଡ଼େ ତାକୁ ମାଡ଼ି "ଦେଇ" ଜନେ ( ଅନ୍ୟ ଲୋକମାନେ ) ଗମନ୍ତି ( ଗୁଳିଯାନ୍ତି ) । ୭ ।

୮ମ ପଦ—ବେଳୁଁ ବେଳୁଁ ( ବେଳକୁ ବେଳ ) ସେ ରଣ ( ଯୁଦ୍ଧ ) ଅଧିକ "ହୋଇ" ପ୍ରସରଣ ହେଲା ( ପ୍ରସରିଲା ) । ସାନ୍ଦ୍ର ( ନିବିଡ଼ ) ଲକ୍ଷ୍ମଣ ( ଲକ୍ଷ୍ମଣଙ୍କ ) ଶରମାନ ( ଶରସବୁ ) ପ୍ରଭାତ ( ପ୍ରଭାତକାଳ ) "ସ୍ୱରୂପ ହୋଇରେ" ଇନ୍ଦ୍ରଜିତ ବୀର ଚନ୍ଦ୍ର "ତାହାର" ପ୍ରଭା ( କିରଣ ) "ନ ହେଲା କାହିଁକି" "ଲକ୍ଷ୍ମଣଙ୍କ ଶରଘାତ" ହାନି କରିଣ ( ନଷ୍ଟ କରି ) ଦେଲା । "ତେଣୁ" ଇନ୍ଦ୍ରଜିତ ବିଭାବରୀବିଭବ ( ଅନ୍ଧକାର ) ଜ୍ୟୋତି ବଶ ( ଜ୍ୟୋତିରେ ବଶ ହେଲା ) । ସେହି ( ଇନ୍ଦ୍ରଜିତ ) ନିଶାଚର ( ରାତ୍ରିଚର ) ବୋଲାଇ, "ତେଣୁ" ମାୟୀମନୀଷୀ ( ମାୟାବୁଦ୍ଧି ) ହେଲା ମହାତମସ ( ମହାକ୍ରୋଧ—ମହାନ୍ଧକାର ) ହେଲା । ୮ ।

ବନଧବ ଯୋଖର ଖର ଶର ନଖର ଯୂଥପତିଙ୍କି ଦଳ ସେ ।
ବସ୍ୱର କଲା ଆଗ ବେଗେ ପ୍ଲବଗବର୍ଗ ଶରଦଛବ ଝିଲ ଯେ ।
ବନ୍ଧ ଅକ୍ଷ । ବନୋଦ ତଦୁଖ୍ରେ ଯେ ।
ବପତିତ କାଠିକ କରି ଦୃଢ଼ ମୁଷ୍ଟିକ ପ୍ରହାର ସାର ସାରେ ସେ । ୯ ।

୯ମ ପଦ—ବନଧବ ( ସୁନ୍ଦର ) ଯୋଖ ( ସମାନ ) "ଇନ୍ଦ୍ରଜିତ"ର ଖର ( ତୀକ୍ଷ୍ଣ ) ଶର (ଶରସବୁ ) ନଖର ( ନଖ ) "ହେଲେ" । "ତଦ୍ୱାର" ଯୂଥପତ (କପିଯୂଥପତି ) ଯୂଥପତି ( ହସ୍ତୀ ) "ହେଲେ" ତାଙ୍କ ଦଳ ( ବଦାରଲ ) । "ପୁଣି ସେ ଇନ୍ଦ୍ରଜିତ" ଶରଦ ( ଶରତ୍କାଳ ) ଛବ ( ଶୋଭାପ୍ରାପ୍ତ ) ଝିଲ ( ଦଶିଲ ) । "ଶରତ୍କାଳ" ଆଗ ( ପ୍ରଥମ ) ବେଗେ ୧ପ୍ଲବଗବର୍ଗ ( ମଣ୍ଡୁକ ବୃନ୍ଦକୁ ) ବସ୍ୱର ( ସ୍ୱରଭଙ୍ଗ ) କରେ, "ତଦ୍ରୂପ ଇନ୍ଦ୍ରଜିତ" ପ୍ଲବଗବର୍ଗ ( ମର୍କଟଥାଟକୁ ) ଆଗ ( ପ୍ରଥମ ) ବେଗେ ବସ୍ୱର ( ସ୍ୱରଭଙ୍ଗ ) କଲା । ତଦ୍ୱାରେ ( ତପୂରେ ) ଅକ୍ଷ ( ପଶା ) ବନୋଦ ( ଖେଳ ) ବନ୍ଧ ( ବନ୍ଧିଲ ) । "ପଶାଖେଳ"ରେ ମୁଷ୍ଟିକ ଦୃଢ଼କରି ( ଭିଡ଼କରି ) କାଠି ( ପଶାକାଠିକ ) ବପତିତ ( ପକାଇ ) ସାର ( ପଶାସାରକୁ ) ସାରେ ( ପଶାସାରରେ ) ପ୍ରହାର ( ପ୍ରହାର କରନ୍ତି ), "ତଦ୍ରୂପ" ଇନ୍ଦ୍ରଜିତ ଧନୁରେ ମୁଷ୍ଟିକ ଦୃଢ଼କରି ୨ କାଠିକ ( କାଠିସଂଖ୍ୟକ ସୈନ୍ୟକୁ ) ବପତିତ କଲ ( ମାଇଲ ) । ସାରେସାର ( ଅତି ଶ୍ରେଷ୍ଠ ) "ଶରସବୁ ବାଛି" ପ୍ରହାର ( ପ୍ରହାରିଲ ) । ଜମ୍ବା ସାରେସାର ( ଶ୍ରେଷ୍ଠ ଶ୍ରେଷ୍ଠ ) "କପି ସବୁ ବାଛି" ପ୍ରହାରିଲ । ୯ ।

୧—ପ୍ଲବଗଃ ସ୍ୟାତ୍ କପୌ ଭେକେ ରେବନ୍ତେ ଚ ପ୍ଲବେ କ୍ୱଚିଦପି କୁମୁଦାକରେ
୨—ଏକଂ ଦଶଂ ଶତଂ ଚୈବ ସହସ୍ରମଯୁତଂ ଭବେତ୍
ଲକ୍ଷଂ ଚ ନିଯୁତଂ କୋଟି ମର୍ବୁଦୋ ମେବଚ ସ୍ତଥା ।
ବୃନ୍ଦଂ ଖର୍ବଂ ନିଖର୍ବଞ୍ଚ ଶଙ୍ଖଂ ପଦ୍ମମନନ୍ତକଃ ।
ସାଗରେ ମଧ୍ୟ ପାରାର୍ଦ୍ଧୌ କ୍ଷୋଣୀ ରକ୍ଷୌହିଣୀ ତଥା ।
ଅଙ୍କୁଶଂ କୁଣ୍ଡଳଂ ଚୈବ ଧ୍ୱଜଂ କାଠି ବକୀଠି ଚ ।
ଇତ୍ୟେତାନ୍ୟଙ୍କମାନାନି ଜ୍ଞାତବ୍ୟାନି ବୁଧୈଃ ସଦା ଇତି ଲୀଳାବତ୍ୟାଂ ।

ବଧିବଶେ ଅସୁର ସୁରସଭାରେ ତାର ନାଗବରେ ଭରିତ ସେ ।
ବେଢାଇ ରଣଅବ୍ଧି ମନ୍ଥନାଚଳେ ସିଦ୍ଧି ଯଶ ପୀୟୂଷ ଜାତ ସେ ।
ବିଷ ଜନ୍ମ ! ବଧୂ କ ନ ଚଳନ୍ତ ସେ ।
ବେଗରେ ଶିଦ୍ରୋହୀ ମଧୂମତ୍ତରେ ହୋଇ ଉଳବାର ଗୃହୀଲ ସେ ।୧୦
ବଜାଇଁ କମ୍ବୁବର ବାହୁଡ଼େ ତରତର ତରଳ ଚଉଁ ନାଶି ସେ ।
ବିଧାନ ସଭାପର କହିବାରେ କୁମର ପାମର ଶୁଣି ହସି ସେ ।
ବଂଶପାଣି । ବଚନକୁ ରଚିଲ ସେ ।
ବରେ ଅମର ମରଣରେ କେହିସତ୍ତ୍ୱର ପିତୃବ୍ୟ ତୋର ହେଲ ଯେ ।୧୧

---

୧୦ମ ପଦ—ବିଧିବଶରେ ( ଦୈବବଶରେ ) ଅସୁର ଶୂର ସଭା (ଅସୁର ବୀର ସମୂହ) ଅସୁର ସୁର ସଭା (ଅସୁର ଦେବସମୂହ) ହେଲ । ତହିଁରେ ତାର ( ଇନ୍ଦ୍ରଜିତର ) ନାଗବର ( ନାଗପାଶ ଶର ) ନାଗବର ( ବାସୁକି ) ହେଲ । ତଦ୍ୱାରା ରଣ ( ରଣଭୂମି ) ଅବ୍ଧି ( ସମୁଦ୍ର ) ହେଲ । ତହିଁରେ ମନ୍ଥନାଚଳ ( ମନ୍ଦର ପର୍ବତର ) ସନ୍ଧି, ଦ୍ୱାରା ସିଦ୍ଧି ଯାହାର ଏପରି ରାମ ଲକ୍ଷ୍ମଣଙ୍କୁ ତ୍ୱରିତ ( ଶୀଘ୍ର ) ବେଢ଼ାଇ ( ଗୁଡ଼ାଇ ) ମନ୍ଥି ଯଶରୂପ ପୀୟୂଷ ( ଅମୃତ ) ଜାତ କଲ । ସେ ( ନାଗପାଶ ) ବଧୂ କ ( ବିଷ୍ଟୁ ଏ ) ଏମନ୍ତ ନ ଚଳନ୍ତ, ବିଷ ଜନ୍ମ ( ଜାତକଲ ) । ସେ ( ଇନ୍ଦ୍ରଜିତ ) ମଧୂମତ୍ତରେ ( ମଦ୍ୟ ପାନ ମତ୍ତରେ ) ହୋଇ "ହୋଇ" ମଧୂ ( ମଧୁ ଦୈତ୍ୟ ) ମତ୍ତରେ ( ଗର୍ବରେ ) ଶ୍ରୀ ( ଲକ୍ଷ୍ମୀଠାରେ ) ଦ୍ରୋହୀ "ହେଲ ପ୍ରାୟ ହୋଇ" ବେଗରେ "ରାମ ଲକ୍ଷ୍ମଣ" ଉଳବାର ଗୃହୀଲ ( ଦେଖିଲ ) । ୧୦ ।

୧୧ଶ ପଦ—"ରାମ ଲକ୍ଷ୍ମଣ ଉଳବାର ଦେଖି" କୁମର "ଇନ୍ଦ୍ରଜିତ" କମ୍ବୁବର ( ଜୟ ଶଙ୍ଖ ) ବଜାଇ ତର ତର ହୋଇ ଚଉଁ, ( ମନରୁ ) ତରଳ ( ଚଞ୍ଚଳତା ) ନାଶି ବାହୁଡ଼େ । ସଭାପର ( ସଭାରେ ରାବଣ ଆଗରେ ) ବିଧାନ ( ଯୁଦ୍ଧବିଧି ) କହିବାରେ ପାମର ବଂଶପାଣି ଶୁଣି ହସି ( ହସିଲ ) । ବଚନକୁ ରଚିଲ (କହିଲ) ତୋର ପିତୃବ୍ୟ (ଖୁଡ୍ଡୁତା ବିଭୀଷଣ) ବରେ (ବ୍ରହ୍ମାଙ୍କ ବରରେ) ଅମର । କେହି (କେମନ୍ତେ) ମରଣରେ ସତ୍ତ୍ୱର ହେଲ (ମଲ) ।୧୧

ବଧ ହୁଏ ଏ ସିଦ୍ଧ ଧରି ବଧିଲେ ସିଦ୍ଧ ବୋଧ ଦେଇଣ ଗତ ଯେ ।
ବୋଲେ ତାଙ୍କ ନିଜଠା ବିନାଶ ହେଲା ଜଟାଧାରୀ ଜଟାୟୁମତ ଯେ ।
ବିମାନରେ । ବୈଦେହୀ ନେଇ ଦେଖା ଯେ ।
ବିଶାଖା-ପତିମୁଖୀ ନ ଭକ୍ତି କହି ମୁହିଁ ଶିଖା ଜଳେ ମୋ ଶିଖା ଯେ । ୨
ବାରତାରୁଣ ମୁଖ ନିରତାମ୍ଳାନମୁଖ ନୀର ତା ନେତ୍ରୁଁ ବହେ ଯେ ।
ବିଜେ ପୁଷ୍ପକଯାନ ଜାନକୀ ଛନ୍ନମନ ଗମନ ନଭ ଶୋଚନ୍ତେ ଯେ ।
ବିମାନର । ବିବେକତ୍ୱ ଏମାନ ଯେ ।
ବହୁଥିଲା ଦୁଷ୍କୃତି ଆଜଠାରୁ ନିଷ୍କୃତି ସୁକୃତ ଉତପନ ଯେ । ୧୩ ।

୧୨ଶ ପଦ—"ଇନ୍ଦ୍ରଜିତ ପ୍ରଭୃତିଙ୍କ କାଳ" ସିଦ୍ଧ ( ସିଦ୍ଧପୁରୁଷଙ୍କୁ ) ଧରି ( ବଳ ପୂର୍ବକଧରି ) ବଧିଲେ ( ମାରିଲେ ) ବଧ ହୁଏ ( ମରେ ) ଏ ( ଏକଥା ) ସିଦ୍ଧ ( ପ୍ରସିଦ୍ଧ ) । ବୋଧ ଦେଇଣ ( ଏରୂପେ ବୋଧଦେଇ ) ଗତ ( ଗଲା ) । "ରାବଣ" ନିଜଠା ( ନିଜଠା ଅଗ୍ରଗାମୀ ) ତାଙ୍କ ବୋଲେ ଜଟାଧାରୀ ( ରାମ ଲକ୍ଷ୍ମଣ ) ଜଟାୟୁମତ ( ଜଟାୟୁପକ୍ଷି ପରି ) ବିନାଶହେଲା । ବୈଦେହୀ ( ସୀତାଙ୍କୁ ) ବିମାନରେ ନେଇ ଦେଖା । ବିଶାଖା ପତି୧ ମୁଖୀ ( ଚନ୍ଦ୍ରମୁଖୀ ସୀତା ) ନ ଭକ୍ତି "ତାଙ୍କୁ" କହି ମୁହିଁ "ତାହାର ପତ୍ନି ଅଛି" ମୋ ଶିଖା "ସମସ୍ତଙ୍କ ଉପରେ" ଜଳେ "ଏମନ୍ତ" ଶିଖା ( ଶିକ୍ଷା ଦିଅ ) ॥

୧୩ଶ ପଦ—ନିରତ ( ସର୍ବଦା ) ଅମ୍ଳାନ ମୁଖ "ରାମ ଲକ୍ଷ୍ମଣାଦିଙ୍କ" ବାରତା ( ବାର୍ତ୍ତା ) "ଶ୍ରବଣ କରି" "ସୀତାଙ୍କ" ମୁଖ ଅରୁଣ ( ରଙ୍ଗବର୍ଣ୍ଣ ) "ଦିଶିଲା" । କିମ୍ବା ନିରତ ( ସର୍ବଦା ) ଅମ୍ଳାନ "ସୀତା"ଙ୍କ ୧ ମୁଖ "ରାମ ଲକ୍ଷ୍ମଣାଦିଙ୍କ ବିନାଶବାର୍ତ୍ତା ଶୁଣି" ମୁଖ ( ଆଦ୍ୟରେ ) ଅରୁଣ ( ରଙ୍ଗବର୍ଣ୍ଣ ) ଦିଶିଲା । "ପୁଣି" ନୀର ( ନିଳତକ ) ତାଂ ( ସୀତାଙ୍କ ) ନେତ୍ରୁ ବହେ । "ଏରୂପ" ଜାନକୀ ( ସୀତା ) ପୁଷ୍ପକଯାନ ( ପୁଷ୍ପକ ବିମାନରେ ) ବିଜେ ( ବସିଲେ ) । ଛନ୍ନମନ ଗମନରେ ନଭ ( ଆକାଶ ) ଶୋଚନ୍ତେ ( ଶୋଚ ପାଇଲ ) । "ସୀତାଙ୍କୁ ବହିବାରୁ" ବିମାନର ଏମାନ ( ଏରୂପ )

୧—ପୈଶାଚିକ ଭାଷା ।

୧—ମୁଖଂ ନିଃସରଣେ ବକ୍ତ୍ରେ ପ୍ରାରମ୍ଭୋପାୟୟୋରପୀତି ବିଶ୍ୱଃ ।

ବିଶେଷ କପି ଦୃଶ୍ୟ ଶେଷରେ ନୋହେ ଶେଷ ନ ଦିଶେ ମହୀପର ଯେ
ବୈଦେହୀ ଗୃହିଁ ଭାଳି କାହିଁଥିଲେ ସମ୍ଭାଳି ଅମ୍ଭାଳି ପ୍ରଳୟପୂର ସେ ।
ବୁଦ୍ଧିହୀନ । ବିଲୋକନେ ଦିଶନ୍ତି ସେ ।
ବିନାଶିବେ ଏ ରକ୍ଷସୃଷ୍ଟିକି ନାହିଁ ରୂଷ ଉଠୁଅଛନ୍ତି ଚେତି ଯେ ।୧୪।
ବର-ଦେବର ପର ପରମସାଧବୀର ଲୋଚନ ପାତ ହୋଇ ଯେ ।
ବିଜ୍ଞା ବିଜ୍ଞାମା ହେଲେ ଉଚ୍ଚଧ୍ୱନିକି କଲେ ଅଶ୍ରୁ ଧାର ବୁହାଇ ଯେ ।

ବିବେକତ୍ୱ ( ବିଚାର ) ହେଲା । ଦୁଷ୍କୃତ ( ରାକ୍ଷସଙ୍କୁ ) ବଧିଥିଲା ଆଜଠାରୁ "ସୀତାଙ୍କୁ ବଧିବାରୁ" ନିଷ୍କୃତ ( ନିର୍ମଳ ) ହେଲା "ମୋହର" ସୁକୃତ ( ପୁଣ୍ୟ ) ଉତପନ ( ଉପୁଜିଲା ) । ୧୩ ।

୧୪ଶ ପଦ—ବିଶେଷ ( ବିଶେଷରେ ) କପି ( କପିମାନେ ) ଦୃଶ୍ୟ "ହେଲେ" । "ଯେତେ କହିଲେ" ଶେଷରେ ( ଶେଷ ଦେବଙ୍କ ଦ୍ୱାରା ) ମଧ୍ୟ ଶେଷ ନୋହେ ( ଅକଳିତ ) "ସେମାନେ ପଡ଼ିଥିବାରୁ" ମହୀ ପର ( ମହୀର ଉପର ) ନ ଦିଶେ । ବୈଦେହୀ ଗୃହିଁ ଭାଳି ( ଭାଳିଲେ ) ପ୍ରଳୟପୂର ୧ ଅମ୍ଭାଳି ( ଜଳସମୂହ ) କାହିଁ ( କେଉଁଠାରେ ) ସମ୍ଭାଳି ଥିଲେ । ସାଗରତୁଲ୍ୟ ବ୍ୟାପକ ଏହି ଭାବ । ବିଲୋକନେ ( ଦେଖନ୍ତେ ) ବୁଦ୍ଧିହୀନ "ହେଲେ" । "ବିଚାରିଲେ" ଏବେ ରକ୍ଷସୃଷ୍ଟି ( ରାକ୍ଷସବଂଶ ) ବିନାଶ "କରିବାକୁ" ଆଉ ନାହିଁ "ଏହି ଏକା" ଦିଶନ୍ତି । ରୂଷ ( ଭଲ୍ଲୁକମାନେ ) ଚେତି ( ଚେତନା-ପାଇ ) ଉଠୁଅଛନ୍ତି ; "ଦେଖିଲେ" । ୧୪ ।

୧୫ଶ ପଦ—ପରମ ସାଧବୀର ( ମହାସତୀ ) ସୀତାଙ୍କର ବର ଦେବର ପର ( ରାମ ଲକ୍ଷ୍ମଣଙ୍କ ଉପରେ ) ଲୋଚନ ପାତହୋଇ ( ଦୃଷ୍ଟି ପଡ଼ିଲା ) । ବିଜ୍ଞା ( ପଣ୍ଡିତା ସୀତା ) ବିଜ୍ଞମା ( ଜ୍ଞାନଶୂନ୍ୟା ) ହେଲେ । ଅଶ୍ରୁ (ଲୋତକ) ଧାର ବୁହାଇ ( କାନ୍ଦି କାନ୍ଦି ) ବୋଇଲେ ହେ ବିଭୁ ( ହେ ପ୍ରଭୋ ) ବିଭୁ ( ମହାପ୍ରଭୁର ) ବିଭୂତ ( ଅଷ୍ଟୈଶ୍ୱର୍ଯ୍ୟଙ୍କୁ ) ବିବର୍ଦ୍ଧନ ( ବିଶେଷରେ )

୧—ଅମ୍ଭଶବ୍ଦ ସାନ୍ତ କିନ୍ତୁ ଏଠାରେ ଅଦନ୍ତ ହୋଇଅଛି
"ଅପବ୍ୟୈସାନ୍ତା ଅଦନ୍ତା ଇତି ବ୍ୟାକରଣ୍ଟସୂତ୍ର"
ଚ୍ଛନ୍ଦମ ଯାମିନୀ ଚମୀତ୍ୟମତଃ । ଅତଏବ ଦୋଷ ନାହିଁ ।

ବିଭୁ ବିଭୁ । ବିଭୂତି ବିବର୍ଦ୍ଧନ ହେ ।
ବିଳେଶୟଶୟନ ହେ ରାଜୀବନୟନ ଦର୍ଶନରେ ପ୍ରସନ୍ନ ହେ ।୧୫।
ବିଭୂଷଣ ସେ ସର୍ପ ଯେହ୍ନ କନ୍ଦର୍ପଦର୍ପଦଳନଙ୍କ ଆଶ୍ଚର୍ଯ୍ୟ ହେ ।
ବାଧ ଦେବରପୁରେ ସ୍ଥିତ ନିର୍ଜନପୁରେ ପ୍ରାୟେତ ନିଦ୍ରା ଭଜ ହେ ।
ବାଣୀ ଶୁଣି ବିସ୍ମୟରେ ରଘୁମଣି ସେ ।
ବୀଣାଙ୍କ ନାରଦଙ୍କୁ କେଳି ପ୍ରବୀଣାସ୍ୱର ଶୁଭୁଛି ପୁଣି ପୁଣି ଯେ ।୧୬।
ବୋଧେ ରହ ସମୟେ ବଚନେ ଏ ସମୟେ ସମର୍ପା ମଇଥିଳୀ ଯେ ।
ବିରହ ତୋହ ବଶେ ଜନ୍ମି ବୀର ବିରସେ ସାରସନାଭେ ଭଜ ସେ ।

---

ବଢେଇ ପାର । ହେ ରାଜୀବନୟନ ( ହେ ପଦ୍ମଲୋଚନ ) ବିଳେଶୟ ( ସର୍ପ ) ଶୟନ ଦର୍ଶନରେ ପ୍ରସନ୍ନ ( କ୍ଷୀରସିନ୍ଧୁ ଶେଷ ଶଯ୍ୟାକୁ ପ୍ରସନ୍ନ ହୋଇ ଏଠାରେ ଦେଖାଇ ଅଛ କି ? ) । ୧୫ ।

୧୬ଶ ପଦ— କନ୍ଦର୍ପଦର୍ପ ଦଳନ ( କାମଗର୍ବହାରୀ ) ଯେହ୍ନ ସେ ସର୍ପ ବିଭୂଷଣ ହେବାର ଆଶ୍ଚର୍ଯ୍ୟ କି ? ( ଆଶ୍ଚର୍ଯ୍ୟ ନୁହେ ) । "ଏହାଦ୍ୱାରା ରାମଙ୍କ କନ୍ଦର୍ପାଧିକ ଲାବଣ୍ୟତ୍ୱ ସୂଚିତ କଲେ" । "ଶବ୍ଦ ଶ୍ଳେଷଯୋଗୁଁ ମହାଦେବ ଆସିଲେ" । ମହାଦେବ ଯେରୂପ କାମଦର୍ପହାରୀ ସର୍ପ ବିଭୂଷଣ ଦେବରପୁରେ ( ଅସୁରଙ୍କଠାରେ ) ବାଧୀ ନିର୍ଜନପୁରେ ( ଏକାନ୍ତ ସ୍ଥାନରେ ) ସ୍ଥିତ, ତଦ୍ରୂପ ଆପଣ ଶୋଭି ସୁକୁମାରତ୍ୱଦ୍ୱାରା କାମଦର୍ପହାରୀ ଲକ୍ଷ୍ମଣ ସ୍ୱୟଂ ଶେଷାବତାର ଏଣୁ ସମ୍ପ୍ରତି ସର୍ପ ବିଭୂଷଣ, ଦେବରପୁରେ ( ଗ୍ରାମଠାରେ ) ବାଧୀ "ହୋଇ ଅଛ" ନିର୍ଜନପୁରେ ( ସମସ୍ତେ ମୂର୍ଚ୍ଛିତ ଥିବାରୁ ଜନଶୂନ୍ୟ ସ୍ଥାନରେ ) ସ୍ଥିତ ହୋଇ ନିଦ୍ରାଭଜ ( ଶୋଇଅଛ ) । ପ୍ରାୟ (ବାହୁଲ୍ୟରେ) ଏମନ୍ତେ ସୀତାଙ୍କ ରୋଦନ ବାଣୀ ଶୁଣି ରଘୁମଣି ( ରାମ ) ବିସ୍ମୟରେ ( ବିସ୍ମିତରେ ) । କେଳି ପ୍ରବୀଣାସ୍ୱର ( କେଳି ପ୍ରବୀଣାର ଯେଉଁ ରୋଦନ ସ୍ୱର ) ପୁଣି ପୁଣି ( ପୁନଃ ପୁନଃ ) ଶୁଭୁଛି ସେ ବୀଣାଙ୍କ ? ( ନାରଦଙ୍କ ବୀଣାସ୍ୱର କି ? ) । ୧୬ ।

୧୭ଶ ପଦ—ସମର୍ପା (ସମର୍ପା ନାମ୍ନୀ ରାକ୍ଷସୀ ) ମୈଥିଳୀ ( ସୀତାଙ୍କୁ ) ଏ ସମୟେ ବଚନେ ( କଥାରେ ) ବୋଧେ ( ବୋଧଦିଏ ) । ସମୟେ ରହ, ତୋହ ବଶେ ବିରହ ଜନ୍ମି ( ଜନ୍ମିବାରୁ ) ବିରସେ ବୀର ( ରାମ ) ସାରସ

ବୁଦ୍ଧି ଏହି । ବାନ୍ଧିଲା ବ୍ୟାଳ ପରି ଯେ ।
ବିଚେତନ ପତନଯୋଧା ଚେତୁଁ ପତ୍ତନ-ବାହୁଡ଼ାକୁ ଆଦର ଯେ ।୧୭।
ବିଶ୍ୱରଞ୍ଜନ ପାଶେ ଯାଇଁ ଦେଖିଲେ ପାଶେ ବନ୍ଧନ ହୋଇ ଅଛନ୍ତି ଯେ
ବ୍ୟଥିତ ଅକଥିତ ଅବ୍ଧିରେ ଯଥା ସ୍ଥିତ ନୀରଜ ପନ୍ତ ପନ୍ତ ଯେ ।
ବିସ୍ମୟରେ । ବିଭୀଷଣ ବିଚାରେ ସେ ।
ବିନାୟକପୂଜନ ହେଲେ ଏ ବେନିଜନ ସ୍ମରି ଆସିବ ଖରେ ଯେ ।୧୮।

---

ନାଳେ ( ପଦ୍ମନାଡ଼ରେ ) ତଳା ( ପଦ୍ମତ୍ତ ) "ଅଛନ୍ତି" । "ବିରହ ଶାନ୍ତି ନିମିତ୍ତ" ଏହି ବୁଦ୍ଧି "କଲେ" । ସେ ବ୍ୟାଳ ( ସର୍ପ ) ପରି ବାନ୍ଧି "ଅଛି" କି ? ବିଚେତନ ( ଅଚେତନ ହୋଇ ) ପତନ ( ପଡ଼ିଥିବା ) ଯୋଧା ( ଯୋଦ୍ଧାମାନେ ) ଚେତୁଁ ( ଚେତା ପାଆନ୍ତେ ) ୧ ପତ୍ତନ ( ପାଟଣା ଆପଣା ଆଶ୍ରମ ) ବହୁଡ଼ାକୁ ଆଦର ( ଆଦରିଲେ ) "ବିରହ ଯୋଗୁଁ ତାଙ୍କର ପଦ୍ମ ନାଳରେ ସର୍ପ ବୃଦ୍ଧି ହୋଇଅଛି ଏହି ଭାବ" । ୧୭ ।

୧୮ଶ ପଦ—ବିଶ୍ୱରଞ୍ଜନ ( ରାମଙ୍କ ) ପାଶେ ( ପାଖକୁ ) ଯାଇଁ ଦେଖିଲେ ସେ ପାଶେ ( ନାଗପାଶରେ ) ବନ୍ଧନ ହୋଇଛନ୍ତି । "ଦେଖି" ଅକଥିତ ( ଅକଥନୀୟ ) ବ୍ୟଥିତ ( ବ୍ୟଥା ଜାତହେଲା ) । ଯଥା ( ଯେରୂପ ) ନୀରଜ ( ପଦ୍ମମାନେ ) ଅବ୍ଧିରେ ( ସମୁଦ୍ରରେ ) ପନ୍ତ ପନ୍ତ ( ଧାଡ଼ି ଧାଡ଼ି ହୋଇ ) ସ୍ଥିତ ( ରହିଥାନ୍ତି ) "ତଦ୍ରୂପ ସୈନ୍ୟମାନେ ପଡ଼ି ରହିଛନ୍ତି" । "ଏମନ୍ତ ଦେଖି" ବିଭୀଷଣ ୧ ବିସ୍ମୟରେ ( ବିସ୍ମିତହୋଇ ) ବିଚାରେ ( ମନମଧ୍ୟରେ ବିଚାର କଲେ ) ଏ ବେନି ଜନ ( ରାମ ଲକ୍ଷ୍ମଣ ) ବିନାୟକ ( ଗରୁଡ଼ ) ପୂଜନ ( ନାରାୟଣ ) ହେଲେ ( ହୋଇଥିଲେ ) ସ୍ମରି ( ଗରୁଡ଼ଙ୍କୁ ସ୍ମରଣ କରନ୍ତେ ) ସେ ଖରେ ( ଶୀଘ୍ର ) ଆସିବ । "ନାରାୟଣ ନୋହିଥିଲେ ନ ଆସିବ ଏ ନଷ୍ଟସ୍ୱାର୍ଥ" । ୧୮ ।

---

୧—ପତ୍ତନଂ ପୁଟଭେଦନମିତ୍ୟମରଃ ।

୧—ବିସ୍ମୟଃ ସ୍ୟାଦାଶ୍ଚର୍ଯ୍ୟଦର୍ପୟୋଃ ପୁମାନିତି ମେଦିନୀ ।

ବିସ୍ତାର କରି କହି ତାରକ ଆନ ନାହିଁ ତାରକ୍ଷର ବାହାନ ଯେ ।
ବିନୟ ଲୟ ତହିଁ ନୟନ ବୁଜିଦେଇ ରାମ ଜାଣି ବିଜନ ଯେ
ବାହାରିଲା । ବିଭୁଦର୍ଶନ ମୋଦେ ଯେ ।
ବିସ୍ତାରି ପକ୍ଷ ପକ୍ଷପାତେ ଧବଳପକ୍ଷ ପୂର୍ଣ୍ଣଚନ୍ଦ୍ର କି ଉଦେ ଯେ ।୧୯।
ବାହାର ଗନ୍ଧବାହା ବାହାରେ ସର୍ବଂସହାଧରମାନେ କମ୍ପିଲେ ଯେ ।
ବକ୍ର ଚଞ୍ଚୁରେ ଚୂରର ହିଂସୁକ ଅପ୍ରତୂରର ଶଙ୍କା ଜନମି ଗଲେ ଯେ ।

୧୯ଶ ପଦ—"ବିଭୀଷଣ ଏମନ୍ତ ଭଣି" ବିସ୍ତାର କରି କହି (କହିଲେ) । ତା'ରକ୍ଷର (ତାର୍କ୍ଷ୍ୟର—ଗରୁଡ଼ର) ବାହାନ ( ବିନା ) ତାରକ ( ଉଦ୍ଧାର କର୍ତ୍ତା ) ଆନ ( ଆଉକେହି ) ନାହିଁ । "ବିଭୀଷଣର କହିବା କଥା" ରାମ ( ରାମଚନ୍ଦ୍ର ) "ଶୁଣି" ନୟନ ବୁଜି ଦେଇ ତହିଁ ( ସେ ଗରୁଡ଼ଠାରେ ) ବିନୟ ( ବିନୟ ଭାବରେ ) ଲୟ "କଲେ" । ଜାଣି ( ରାମରୂପୀ ବିଷ୍ଣୁ ସ୍ମରଣ କରୁଛନ୍ତି ଏମନ୍ତ ଜାଣିପାରି ) ବିଜନ ( ଗରୁଡ଼ ) ବିଭୁଦର୍ଶନ ମୋଦେ ( ପ୍ରଭୁଙ୍କୁ ଦର୍ଶନ କରିବା ଏମନ୍ତ ଆନନ୍ଦରେ ) ବାହାରିଲା । "ରାମଙ୍କ" ପକ୍ଷପାତେ ( ପକ୍ଷପାତୀ ହୋଇ ) ପକ୍ଷ ( ଡେଣା ) ବିସ୍ତାରି "ବାହାରନ୍ତେ" ତାହାର ଧବଳପକ୍ଷ ( ଶୁକ୍ଳପକ୍ଷ ) ପୂର୍ଣ୍ଣଚନ୍ଦ୍ର ଉଦେ କି ? (ଏଣୁ ପୂର୍ଣ୍ଣଚନ୍ଦ୍ର ଉଦେ ହେଲା ପ୍ରାୟ ଦିଶିଲେ) * ।୧୯।

୨୦ଶ ପଦ—ବାହାର ( ଭୂକରୁ ) ଗନ୍ଧବାହ (ଯେଉଁ ପବନ) ବାହାର ( ବାହାରିଲା ) "ତଦ୍ଦ୍ୱାରା" ସର୍ବଂସହାଧରମାନେ ( ପର୍ବତମାନେ ) ଅଃ ( ସର୍ବତୋଭାବରେ ) କମ୍ପିଲେ । "କାହିଁକି ? ଗରୁଡ଼ର ପକ୍ଷ ଜାତ

*—ଉଦୟଚନ୍ଦ୍ର ଆରକ୍ତବର୍ଣ୍ଣ ବର୍ଣ୍ଣିତ ହୁଏ ଯଥା—ଅଳଙ୍କାର ଶେଖରେ—
ପ୍ରଥମ ମରୁଣଚ୍ଛାୟାଭିସ୍ତାବତ୍ପ୍ରତପ୍ତକନକ ପ୍ରଭସ୍ତଦନୁ ବିରହାକ୍ରାମ୍ୟତ୍ତନ୍ୱୀ-
କପୋଳତଳଦ୍ୟୁତିଃ । ଉଦୟତି ତତୋଧ୍ୱାନ୍ତଧ୍ୱଂସକ୍ଷମଃ କ୍ଷଣଦାମୁଖେ
ସରସବିସିନୀ କନ୍ଦଚ୍ଛେଦ ଚ୍ଛବିମୃଗଲାଞ୍ଛନଃ । ଗରୁଡ଼ସୁବର୍ଣ୍ଣପ୍ରଭ
ଯଥା—ଗରୁଡ଼ୋପନିଷଦ—କପିଲାକ୍ଷଂ ଗରୁତ୍ମନ୍ତଂ ସୁବର୍ଣ୍ଣ ସଦୃଶପ୍ରଭଂ ।
ଦୀର୍ଘବାହୁଂ ବୃହତ୍ସ୍କନ୍ଧଂ ବନ୍ଦେନାଗାଙ୍ଗଭୂଷଣଂ ।।
ସୁବର୍ଣ୍ଣ ପୀତଲୋହିତବର୍ଣ୍ଣ ଯଥା—କବିକଳ୍ପଲତାୟାଂ—
ପୀତଲୋହିତୟୋଃ ସ୍ୱର୍ଣ୍ଣପଦ୍ମାଗାଗ୍ନିଶିଖାଦଷ ଇତି

ବ୍ୟାଳପାଶ । ବେଗେ ଶ୍ୱାସେ ପଳାଇ ଯେ ।
ବଳେ ଫଣି ପାତାଳେ, ମିଳେ ନାଗଙ୍କ ମେଳେ ରାଜ ତର୍ଜନା ପାଇଣେ ॥
ବିଷମବିଷଧର ଗୁରୁତର ଅନ୍ତର ଗରୁଡ଼ର ପ୍ରବେଶେ ଯେ ।
ବିରାଧ ବିରୋଧିରେ ଧୀରଗିର ବିଧିରେ କରକୋରକେ ଭାଷେ ଯେ ।
ବିଭୋ ମୋର । ବିଘ୍ନ ସେବା ଦର୍ଶନ ଯେ ।
ବିଶ୍ୱମ୍ଭର ଏ ଅବତାରେ ଅବନୀ ଅବତୀର୍ଣ୍ଣେ ମୋ ମନ କ୍ଷୁଣ୍ଣ ଯେ ।୨୧
ବିଭୃ ଭୃତ୍ୟବତ୍ସଳ ଅଯଶେ ନାହିଁ ନିଜ ଅନ୍ତର୍ଗତ ଜାଣିଲ ହେ ।
ବିଦ୍ଧା ସହିସ୍ଥିତରେ ହୋଇ ଏ ସ୍ୱରୂପରେ ଆଣି ଦର୍ଶନ ଦେଲ ହେ ।

---

ପର୍ବନରେ ଉଡ଼ିଯିବା ଭୟରେ" । "ଧ୍ୱଣି ତାଙ୍କର" ଶଙ୍କା ଜନ୍ମିଗଲେ
ନଫୁଣେ ( କେତେବେଳେ ) ଅପ୍ରଚୁରେ ( ଅବନ୍ଧୁଳକ୍ଷିବରେ ) ବଜ୍ର ଚଞ୍ଚୁରେ
( ବଜ୍ରତୁଲ୍ୟ ଚଞ୍ଚୁରେ ) ଚୂର୍ଣ୍ଣ ( ଚୂର୍ଣ୍ଣ କରିପକାଏ ) । ବ୍ୟାଳପାଶ (ନାଗପାଶ)
ଶ୍ୱାସେ ( ଭୟରେ ) ବେଗେ ପଳାଇ ବଳେ ( ଗାତରେ ) ଫଣି ପାତାଳେ
(ପାତାଳରେ) ନାଗଙ୍କ ମେଳେ ( ସର୍ପଙ୍କ ସଙ୍ଗରେ ) ମିଳେ (ମିଳିଲା) । ରାଜେ
( ନାଗରାଜାଙ୍କଠାରୁ ) ତର୍ଜନା ( ଭର୍ତ୍ସନା ) ପାଇ ( ପାଇଲା ) । ୨୦ ।

୨୧ଶ ପଦ—ବିଷମ-ଗୁରୁତର (ଅତି ଦୁର୍ଭର) ବିଷଧର ( ନାଗପାଶ )
ଗରୁଡ଼ର ପ୍ରବେଶେ ଗରୁଡ଼ ( ପ୍ରବେଶ ହୁଅନ୍ତେ ) ଅନ୍ତର "ହେଲା" ।
ବିରାଧ ବିରୋଧିରେ ( ରାମଙ୍କଠାରେ ) ଧୀର ଗିର ବିଧିରେ ( ସ୍ତୁତି ବାକ୍ୟରେ )
କରକୋରକେ ( କରଯୋଡ଼ି ) ଭାଷେ ( କହିଲା ) ହେ ବିଭୋ ! ଅବନୀରେ
ଅବତୀର୍ଣ୍ଣ ଏ ଅବତାରେ ( ଏହି ରାମାବତାରରେ ) ମୋର ସେବା, ଦର୍ଶନ
"ଏ ଦୁଇ ବିଘ୍ନ ହେଲା" । ହେ ବିଶ୍ୱମ୍ଭର ! ଏଣୁ ମୋ ମନ କ୍ଷୁଣ୍ଣ ହେଲା । ୨୧ ।

୨୨ଶ ପଦ—"ଆପଣ" ବିଭୃ ଭୃତ୍ୟ ୧ ବତ୍ସଳ (ଭୃତ୍ୟସ୍ନେହୀ) 'ଅଟ' ।
ଅଯଶେ ( ଶୌର୍ଯ୍ୟାଦି ପ୍ରଭାବହୀନ ମୋଠାରେ ) "ସେବା ନ କରିବା" ଛଳ
"ତୁମ୍ଭର" ନାହିଁ । ଅନ୍ତର୍ଗତ ( ମୋ ମନକୁ ) ଜାଣିଲ । ଏ ସ୍ୱରୂପରେ

---

*—ପର୍ବନରେ ପର୍ବତ ଉଡ଼ିଯାଏ ଯଥା—
ଏତନ୍ମୁକ୍ତା ଯେନ ବିପାଟିତେନ ସୁମେରୁଶୃଙ୍ଗେଣ ବଭୂବ ଲଙ୍କା । ଇତି ।
୧—ଶ୍ରୀମାନ୍ ସ୍ତ୍ରିଗ୍ଧସ୍ତୁ ବିଶ୍ରୁଳ ଇତ୍ୟମରଃ ।

ବାସୁଦେବ । ବର୍ତ୍ତ୍ମରେ ଶ୍ରୁଣି ଭେଟ ଯେ ।
ବଧିବ ବନ୍ଧୁଅରି ଅଟେରେ ବୋଲିକରି ଗମିଲା ପକ୍ଷିରାଟ ଯେ । ୨୨ ।
ବୁଧେ ଏ ପଦ ବେନ ବଖ୍ୟାତ ହେବ ତିନିଠାରେ ସୁଖ ଦୁଃଖଦ ଯେ ।
ବଳ ଯେ ଦେଖି ଶୁଣି ରାବଣ ଦୂତେ ଜାଣି ସୀତା ସଖୀ ସମ୍ବାଦ ଯେ ।
ବ୍ୟଗ୍ରବନ୍ତେ । ବାର ସେନାପତିଏ ଯେ ।
କାହାର ଯେନ ମାନ କରି ଗୁମାନମାନ ଦେଖି ଦେବଙ୍କ ଭୟେ ଯେ ॥
ବୃଷଭେ ଦେବାନ୍ତକ ବାଜିରେ ନରାନ୍ତକ ସ୍ୟନ୍ଦନ ଭୟଙ୍କର ଯେ ।
ବରାହେ ନିକୁମ୍ଭ ଛାଗେ ସିଂହପୃଷ୍ଠେ ଶତାଙ୍ଗ ସାଜି ହସ୍ତେ ନିକୁମ୍ଭ ମହୋଦର ଯେ ।

---

( ଏହା ରାମରୂପରେ ) ସର୍ପରୂପରେ ( ନାଗପାଶରେ ) ବନ୍ଧା "ହୋଇଥିଲେ"
ଆଣି ଦର୍ଶନ ଦେଲେ । ପୁଣି ବାସୁଦେବ ବର୍ତ୍ତ୍ମରେ ( ଶ୍ରୀକୃଷ୍ଣରୂପରେ )
"କାଳିନ୍ଦୀରେ କାଳୀୟ ପାଦପଦ୍ମେ ଦଂଶିବା କାଳେ" ଭେଟ "ହେବ" ।
ଅଟରେ ( ଚନ୍ଦ୍ରହାସ ) ବନ୍ଧୁଅରି ( ବନ୍ଧୁଘାତକ ) ବଧିବ 'ଏମନ୍ତ" ବୋଲିକରି
ପକ୍ଷିରାଟ ( ଗରୁଡ଼ ) ଗମିଲା ( ଗଲା ) । ୨୨ ।

୨୩ଶ ପଦ—ବୁଧେ ( ହେ ବୁଧଜନମାନେ ) ଏ ବେନ ପଦ ( ଏ
ଯେଉଁ ପୂର୍ବ ବେନପଦ) ତିନିଠାରେ ସୁଖ ଦୁଃଖଦ ହେବ (ସୁଖ ଓ ଦୁଃଖ ଦେବ) ।
ବଳ ଯେ ( ରାମ ସୈନ୍ୟ ସେ ) "ଗରୁଡ଼ ଆସିବା ରାମ ଲକ୍ଷ୍ମଣ ମୁକ୍ତହେବା"
ଦେଖି "ସୁଖୀ ହେଲେ" । ଦୂତେ ( ଦୂତମୁଖରୁ ଏ କଥା ) ରାବଣ ଶୁଣି
"ଦୁଃଖୀ ହେଲା" । ସୀତା ସଖୀ ସମ୍ବାଦ ( କଥାବାର୍ତ୍ତାକାଳରେ ) "ଏହା"
ଜାଣି "ସୁଖୀ ହେଲେ" । ବାରସେନାପତିଏ (ରାବଣର ବାରଗୋଟି ସେନାପତି)
ବ୍ୟଗ୍ରବନ୍ତେ ( ଚଞ୍ଚଳହୋଇ ) ମାନ ( ଅଭିମାନ ଯେନ ) ଗୁମାନମାନ କରି
( ପ୍ରତିଜ୍ଞା ଦେଖାଇ ) କାହାର "ହେଲେ" । ଦେଖି "ତାଙ୍କୁ" ଦେବଙ୍କ
( ଦେବତାମାନଙ୍କର ) ଭୟେ ( ଭୟ ଜନ୍ମିଲା ) । ୨୩ ।

୨୪ଶ ପଦ—ଦେବାନ୍ତକ ( ଅସୁର ) ବୃଷଭେ ( ଷଣ୍ଢ ଯୋଚା )
ନରାନ୍ତକ ( ଅସୁର ) ବାଜିରେ ( ଘୋଡ଼ା ଯୋଚା ) ସ୍ୟନ୍ଦନ ( ରଥ )
ସାଜିବାରୁ ଭୟଙ୍କର ଦିଶିଲେ । ନିକୁମ୍ଭ ( ଅସୁର ) ବରାହେ (ବାରହାଯୋଚା)

ବୃଲ୍ଲିଇଣ । ବଟଛି ଅସି ଚକ୍ର ଯେ ।
ବାଣାସନେ ତତ୍ପର ପୁରେଇଁ ଥୋଇ ଶର ମୋଚଆଉଁସୁଛନ୍ତି ଯେ ।୨୪
ବଶିଷ୍ଟକ ଧୂ ମ୍ରାକ୍ଷ ନାହିଁ ଲକ୍ଷକ ଲକ୍ଷ ଲୁଲ୍ପ ରଥେ ଯୋଚ ଯେ ।
ବ୍ୟାଘ୍ରଓଘରେ ଶ୍ଲାଘ୍ୟ ହୋଧନ ରଥ, ଶୀଘ୍ର ପଟ୍ଟେଘ ବନ୍ଧ ଚୁଚ ଯେ ।
ବଜ୍ରଦଂଷ୍ଟ୍ରା ବମାନେ କ୍ରୋଷ୍ଟୁ କୋଟି ଯେ ।
ବମାନେ ଗୃଧ୍ର ଯୋଚ ଚକିଣିରେ ରାଜନ୍ତି ଅକମ୍ପନ ନାହିଁ ଯୋଚିଯେ ॥

---

ମହୋଦର ( ଅସୁର ) ୧ ଲୋହପୃଷ୍ଠେ ( ଚଢ଼ିଅଛନ୍ତି ଯୋଚ ) ଶତାଙ୍ଗ ( ରଥଟକ ) ହସ୍ତେ ( ଆନନ୍ଦରେ ) ସାଜି ବଟଛି ( ବର୍ଛା ) ଅସି ( ଖଡ୍ଗ ) ଶକ୍ତ "ଅସ୍ତ୍ର" ବୁଲଇଣ ବାଣାସନେ ( ଧନୁରେ ) ଶର ( ବାଣ ) ପୁରେଇଁ ( ଯୋଚ ) ଥୋଇ ( ରଖି ) ତତ୍ପର ( ତଦନ୍ତେ ) ମୋଚ ( ଦାଢ଼ି ) "ଆଉ ମର୍ତ୍ତଗବେ" ଆଉଁସୁଛନ୍ତି । ୨୦ ।

୨୪ଶ ପଦ—ବଶିଷ୍ଟକ ( ପ୍ରଧାନ ) ଲକ୍ଷକ ( ସଦୃଶ ) ନାହିଁ । ପ୍ରଧାନ ଅତୁଳନୀୟ ସେନାପତି ଏହି ତାପୂର୍ବ ଧୂ ମ୍ରାକ୍ଷ ଲକ୍ଷ ୧ ଲୁଲ୍ପ ( ଏକଲକ୍ଷ ମଇଁଷି ) ରଥେ ( ରଥରେ ) ଯୋଚ ( ଯୋଚିଲେ ) । କ୍ରୋଧନ "ସେନାପତି" ରଥ ( ରଥକୁ ) ବ୍ୟାଘ୍ର ଓଘରେ ( ବ୍ୟାଘ୍ରସମୂହରେ ) ଶ୍ଲାଘ୍ୟ ( ପ୍ରଶଂସ୍ୟ ) "କରି" ଶୀଘ୍ର ( ବେଗରେ ) ପଟ୍ଟେଘ "ଅସ୍ତ୍ର" ବନ୍ଧ ( ଧରି ) ଚୁଚ ( ତେଜୋ-ବନ୍ତ ) "ହଶିଲେ" । ବଜ୍ରଦଂଷ୍ଟ୍ର "ସେନାପତି" ବମାନେ (ରଥରେ) ୨ କ୍ରୋଷ୍ଟୁ କୋଟି ( କୋଟିଏ ଶୃଗାଳ ) "ଯୋଚିଲେ" ବମାନେ ( ଅଭିମାନରେ ) ଅକମ୍ପନ "ସେନାପତି" ହିଁ ( ମଧ୍ୟ ) ୩ ଚକିଣିରେ ( ଚକ ଥିବା ରଥରେ ) ୪ ଗୃଧ୍ର ( ସାଗୁଣା ) ଯୋଚ ଯୋଚି ( ଯୁଦ୍ଧଭୂମିକି ଆଚ୍ଛାଦିଲେ ) । ୨୪ ।

---

୧—ଲୋହ ପୃଷ୍ଠସ୍ତୁ କଙ୍କଃସ୍ୟାଦିତ୍ୟମରଃ ।
୧—ଲୁଲ୍ପୋମହିଷ ଇତି କୋଷଃ ।
—କ୍ରୋଷ୍ଟୁ, ଫେରୁ ଫେରବ ଜମ୍ବୁକା ଇତ୍ୟମରଃ ।
୩—ଦାନେ ଚକିଣି ଯୁଦ୍ଧାର୍ଥେ ଶତାଙ୍ଗଃ ସ୍ୟନ୍ଦନୋରଥ ଇତ୍ୟମରଃ ।
୪—ଦାକ୍ଷ୍ୟଗୃଧ୍ରାବିତ୍ୟମରଃ ।

ବନ୍ଧନ ସ୍ୟନ୍ଦନରେ ନାଗବର୍ଗ ରାଗରେ ପ୍ରବରବାନ୍ଧ୍ବ ବସେ ଯେ ।
ବୃହାଇ ପିଶାଚକୁ ପିଶାଚ ତା ରଥକୁ ଭୟଦ ନାଦେ ଘୋଷେ ଯେ ।
ବଜ୍ରଅଙ୍ଗ ! ବଡାଳେ ରଥ ସାଜି ଯେ ।
ବାନ୍ଧିଅଛି ପ୍ରମତ୍ତ ପଞ୍ଚାସ୍ୟ ରଥେ ମତ୍ତ ଉନ୍ମତ୍ତ ଉଟ୍ଟ ରାଜ ଯେ ।୨୬।
ବାୟସ ଶତ ଶତ ବିରଳାକ୍ଷ ଯୋଚିତ ଉଲୂକ ରଥେ ଉଲୂକ ଯେ ।
ବହେ ଅସୁରପନ୍ତି ନିଶିରରଥେ ତହିଁ କୁମ୍ଭୀ ଯୋଚ କୁମ୍ଭକ ଯେ ।
ବେଗେ ଯାଇଁ । ବେଢ଼ି କବାଟ ଫେଇ ଯେ ।
ବଡ଼ ଅନ୍ଧାରିଁ ରାତି ନିଶାଚର ଅରାତି ମାୟାଯୁଦ୍ଧ ଭିଆଇଁ ଯେ ।୨୭।

---

୨୬ଶ ପଦ—ପ୍ରବରବାନ୍ଧବ "ସେନାପତି" ରାଗରେ (କ୍ରୋଧରେ) ନାଗବର୍ଗ (ହସ୍ତିସମୂହ) ସ୍ୟନ୍ଦନରେ (ରଥରେ) ବନ୍ଧନ "କରି" (ଯୋଚି) ବସେ (ବସିଲା)। ପିଶାଚ "ସେନାପତି" ତା ରଥକୁ ପିଶାଚକୁ (ପିଶାଚମାନଙ୍କ ଦ୍ୱାରା) ବୃହାଇ (ବୃହାଇଲା) "ଯେ ପିଶାଚମାନେ" ଭୟଦ ନାଦେ ଘୋଷେ (ଭୟଙ୍କର ନାଦକଲେ)। ବଜ୍ରଅଙ୍ଗ "କୈତ୍ୟ" ବଡ଼ାଳେ (ବରାହଯୋଚି) ରଥ ସାଜି (ସାଜିଲା)। ପ୍ରମତ୍ତ "ସେନାପତି" ମତ୍ତ ପଞ୍ଚାସ୍ୟ (ସିଂହ) ରଥେ (ରଥରେ) ବାନ୍ଧିଅଛି। ଉନ୍ମତ୍ତ ଉଷ୍ଟ୍ରେ (ଓଟଯୋଚି) "ରଥକୁ" ରାଜ (ଶୋଭିତ କଲା)। ୨୬।

୨୭ଶ ପଦ—ବିରଲାକ୍ଷ "ସେନାପତି" "ରଥରେ" ଶତିଶତ (ଶଏ ଶଏ) ବାୟସ (କାକ) ଉଲୂକ "ସେନାପତି" ୧ ଉଲୂକ (ପେଚା) ରଥେ (ରଥରେ) ଯୋଚିତ (ଯୋଚିଲା)। ନିଶିରରଥେ (ନିଶିରସେନାପତି ରଥକୁ) ଅସୁରପନ୍ତି (ଅସୁରବୃନ୍ଦ) ବହେ (ବହନ୍ତି)। କୁମ୍ଭକ "ସେନାପତି" ତହିଁ (ତା ରଥରେ) କୁମ୍ଭୀ (ହସ୍ତୀ) ଯୋଚ (ଯୋଚିଲା) "ଏରୂପେ" ବେଗେଯାଇ ବେଢ଼ି କବାଟ (ଗଡ଼ଦ୍ୱାର କବାଟକୁ) ଫେଇ (ଫିଟାଇ ଦେଲେ)। ଅରାତି (ଶତ୍ରୁସଙ୍ଗେ) ନିଶାଚର (ଅସୁରେ) ବଡ଼ ଅନ୍ଧାରରାତି "କରି" ମାୟାଯୁଦ୍ଧ ଭିଆଇ (କଲେ)। ୨୭।

---

୧—ଉଲୂକଃ କୌଶିକଃ ପେଚଃ କାକାରିରୂ ନିଶାଚର ଇତି ମଧୁମାଧବଃ। )

ବାହାର ଚଣ୍ଡୀ କେତେ ଡାକିନୀ ଅପ୍ରମିତେ ପଶୁଏ ନାନାରୂପୀ ଯେ ।
ବୁଲଇ ଜିହ୍ୱା ଉଲ୍‌କା ଦେଖାଇ ଉତ୍ତ ଶଙ୍କା ଜନ୍ମାଇଁ ଗଲେ ବ୍ୟାପି ସେ ।
ବିଭୀଷଣେ । ବେଢ଼ିଲେ ଅଷ୍ଟରଥୀ ଯେ ।
ବିଚ୍ଛନ୍ଦ ମାରଣରେ ବଣା ହେଲେ ରଣରେ ରାମ ଲକ୍ଷ୍ମଣ ତହିଁ ଯେ ॥
ବାନରଯୂଥପତି ଭିନ୍ନ ଭିନ୍ନ ହୁଅନ୍ତି ପାଶଜନ ନ ଦିଶି ଯେ ।
ବୃନ୍ଦ ବୃନ୍ଦ ହୋଇଣ ରାକ୍ଷସରେ ବେଷ୍ଟନ ଭଲ୍ଲୁକ କପିରାଶି ଯେ ।
ବାତାତ୍ମଜ । ବିଶ୍ରାମି ଦ୍ୱାରପାଶେ ଯେ ।
ବିକେ ଅଙ୍ଗଦସ୍କନ୍ଧେ ଲକ୍ଷ୍ମଣ ଚିହ୍ନି ବୋଧେ ସୁଗ୍ରୀବ ମାର ଘୋଷେ ଯେ ॥

---

୨୮ଶ ପଦ—କେତେ ( ବହୁତ ) ଚଣ୍ଡୀ ( ରୁଦ୍ରପ୍ରିୟା ଦେବୀ ) ଅପ୍ରମିତେ ( ଅପ୍ରମିତ ) ଡାକିନୀ ( ଡାଆଣୀ ) ବାହାର ( ବାହାରିଲେ ) । ନାନାରୂପୀ ପଶୁଏ ( ଶ୍ୱାନ ଶୃଗାଳାଦି ) ଜିହ୍ୱା ବୁଲାଇ ( ଜିଭ ଲହଲହକରି ) ଉଲ୍‌କା ( ଡାଆଣୀନିଆ ) ଦେଖାଇ "ଉତ୍ତ" "ଦେଇ" ଶଙ୍କା ( ଭୟ ) ଜନ୍ମାଇଁ "ଶ୍ମଶାନତୁଲ୍ୟ ରଣଭୂମି" ବ୍ୟାପିଗଲେ । ବିଭୀଷଣେ ( ବିଭୀଷଣଙ୍କୁ ) ଅଷ୍ଟରଥୀ ( ଆଠଗୋଟି ରଥୀ ) ବେଢ଼ିଲେ । ତହିଁ ( ସେଠାରେ ) ରଣରେ "ରାକ୍ଷସଙ୍କ" ବିଚ୍ଛନ୍ଦ ( କପଟ ) ମାରଣରେ ରାମ ଲକ୍ଷ୍ମଣ ବଣା ହେଲେ । ୨୮

୨୯ଶ ପଦ—"ସେହି ରାକ୍ଷସଙ୍କ ମାୟାଯୁଦ୍ଧରେ" ବାନର ଯୂଥପତି ( କପି ଯୂଥପତିମାନେ ) ଭିନ୍ନ ଭିନ୍ନ ( ଅଲଗା ଅଲଗା ) ହୁଅନ୍ତି । "ଅନ୍ଧକାରଯୋଗୁଁ" ପାଶଜନ ନ ଦିଶି ( ପାଖଲୋକଙ୍କୁ ଚିହ୍ନି ନ ପାରନ୍ତି ) । ଭଲ୍ଲୁକ କପିରାଶି ( ଋକ୍ଷ କପିଗଣ ) ବୃନ୍ଦ ବୃନ୍ଦ ହୋଇଣ ( ପଞ୍ଝା ପଞ୍ଝା ହୋଇ ) ରାକ୍ଷସରେ ( ରାକ୍ଷସଙ୍କ ) ବେଷ୍ଟନ ( ବେଢ଼ରେ ପଡ଼ିଲେ ) । ବାତାତ୍ମଜ ( ହନୁମାନ୍ ) ଦ୍ୱାରପାଶେ ( ଦ୍ୱାରର ଏକପାଖରେ ) ବିଶ୍ରାମି ( ରହି ) ଅଙ୍ଗଦସ୍କନ୍ଧେ ( ଅଙ୍ଗଦ କାନ୍ଧରେ ) ଲକ୍ଷ୍ମଣ ବିକେ "କରିଥିବା" ଚିହ୍ନି ( ଚିହ୍ନିପାରି ) ସୁଗ୍ରୀବ ମାର ଘୋଷେ ( ମାର ମାର ଶବ୍ଦରେ ) ବୋଧେ ( କପିଙ୍କ ବୋଧକରେ ) "ଏମନ୍ତ ଜାଣିଲି" । ୨୯ ।

ବାରଣରେ ବାରଣ ସ୍ୟନ୍ଦନରେ ସ୍ୟନ୍ଦନ ହୟେ ହୟ କରୁଣ୍ଡି ସେ ।
ବନୌକାପତି ଗତି ତଦ୍‌ବତ ସେନାପତି ପଦଗ ପଦେ ଛାଡ଼ି ସେ ।
ବିନ୍ଧି ଦଶ । ବାଣ ଶ୍ରୀରାମ ନାଶି ସେ ।
ବାନକୋଟି କୁଞ୍ଜର ନିକୋଟି ରଥୀସାର ତୁରଙ୍ଗ ଖର୍ବ ଅଶୀ ସେ ॥
ବିଂଶପରାର୍ଦ୍ଧ ତହିଁ ପଦାତି ଖଣ୍ଡି ହୋଇ ବହୁବାର ପ୍ରୟୋଗେ ସେ ।
ବିନାଶ କଲେ କେତେ ଲକ୍ଷ୍ମଣ ଏହିମତେ ପ୍ରବର୍ତ୍ତି ରଣରଙ୍ଗେ ସେ ।
ବିଶ୍ୱବସୁ । ବିଦିତେ ସର୍ବେ ଦିଶି ସେ ।
ବରଣ ପାଶେ ଥିଲା ଛେଦା ଶିର ଗୃହିଁଲା ଏ ଦିଶେ ପ୍ରଭୁ ଘୋଷି ସେ ॥

---

୩୦ଶ ପଦ—ବାରଣରେ (ହସ୍ତି ଉପରେ) ବାରଣ (ହସ୍ତୀକି) ସ୍ୟନ୍ଦନରେ (ରଥରେ) ସ୍ୟନ୍ଦନ (ରଥ) ହୟେ (ଅଶ୍ୱ ଉପରେ) ହୟ (ଅଶ୍ୱ) କରୁଣ୍ଡି (କରୁଣ୍ଡିଲା)। ବନୌକାପତି (ସୁଗ୍ରୀବ) ଗତି "କରି" ତଦ୍‌ବତ (ସେହିପରି) ସେନାପତି (ଅଷ୍ଟସେନାପତି) ପଦଗ (ପାଇକମାନେ) ପଦେ (ପାଦରେ) ଛାଡ଼ି (ପଳାଇଲେ)। ଶ୍ରୀରାମ ଦଶ ବାଣ ବିନ୍ଧି ବାନକୋଟି କୁଞ୍ଜର (ହସ୍ତୀ) ନିକୋଟି (ତିନି କୋଟି) ରଥୀସାର (ରଥୀ ଶ୍ରେଷ୍ଠ) ଅଶୀଖର୍ବ ତୁରଙ୍ଗ (ଘୋଡ଼ା) ନାଶି (ମାରିଲେ)। ୩୦।

୩୧ଶ ପଦ—ସେ (ଦାଶରଥି) ତହିଁ (ସେହି ଯୁଦ୍ଧରେ) "ବାଣ" ବହୁବାର (ଅନେକଥର) ପ୍ରୟୋଗେ (ମାରିବାରେ) ବିଂଶପରାର୍ଦ୍ଧ ପଦାତି (ପଦାତିକ ସୈନ୍ୟ) ଖଣ୍ଡିହୋଇ (ହାଣି ହୋଇଗଲେ)। ଏହି ମତେ (ଏହିପରି) ଲକ୍ଷ୍ମଣ ରଣରଙ୍ଗେ ପ୍ରବର୍ତ୍ତି କେତେ (ଅସଂଖ୍ୟ) ବିନାଶ କଲେ। ବିଶ୍ୱବସୁ (ସୂର୍ଯ୍ୟ) ବିଦିତେ (ଉଦୟ ହୁଅନ୍ତେ) ସର୍ବେ (ସମସ୍ତେ) ଦିଶି (ଦେଖାଗଲେ) ବରଣ (ଲଙ୍କା ପାଚେରି) ପାଶେ ପାଶେ ଥିଲା "ହନୁମାନ୍" ଛେଦା (ହଣା ହୋଇଥିବା) ଶିର (ମୁଣ୍ଡମାନଙ୍କୁ) ଗୃହିଁଲା ଘୋଷି (ଗଣ୍ଠି ଘୋଷଣା ଦେଲା) ଏ ଦିଶେ (ଏ ଦଗେ) ପ୍ରଭୁ ଥିବାର ଦିଶେ (ଜଣାଯାଏ)। ୩୧।

ବିବାଦ ବିବର୍ଦ୍ଧନ ଶ୍ରୀରାମେ ଅକମ୍ପନ ଦେଖି ପାବନି ଧାମେ ଯେ ।
ବାଜ ଝାମ୍ପି କପୋତ ମାଡିବସିଲାବତ ବଳି ବାହୁ ସଂଗ୍ରାମେ ଯେ ।
ବଧି ତାକୁ । ବନ୍ଦି ଓଳଗ ବନ୍ଧି ଯେ ।
ବିନ୍ଧୁ ପିଶାଚ ନଳେ ସରଥେ ଚୂରୁଁ ଶୈଳେ ଧୂମ୍ରାକ୍ଷ ରୁନ୍ଧି ଧାଇଁ ଯେ ॥
ବ୍ରହ୍ମାଣ୍ଡ ଯା ଉଦରେ ତାଙ୍କୁ ଧରି ସ୍କନ୍ଧରେ ପବନୁଁ ଜବ କରି ଯେ ।
ବାଳି ଧରଣି ନେଇ ବସୁଧାରେ ପକାଇ ପାଦପ୍ରହାରେ ମାରି ସେ ।
ବିବୁଧାଦି । ବୋଇଲେ ଧନ୍ୟ ଧନ୍ୟ ଯେ ।
ବଜ୍ରଦଂଷ୍ଟ୍ରର ଗ୍ରୀବ ଛିନ୍ନାଇଲା ସୁଗ୍ରୀବ ଫିଙ୍ଗିଲା କେ ସମାନ ଯେ ।୩୩।

---

୩୨ଶ ପଦ—ଶ୍ରୀରାମେ ( ରାମଙ୍କ ସଙ୍ଗେ ) ଅକମ୍ପନ ବିବାଦ ବିବର୍ଦ୍ଧନ (କଳହ ବଢ଼ାଉ ଥିବାର) ପାବନି ( ହନୁମାନ୍ ) ଦେଖି ଧାମ୍ନେ ( ଧାଇଁଯାଇ ) ବାଜ ( ସଞ୍ଚାଣପକ୍ଷୀ ) କପୋତ ( କାପ୍ତା ପକ୍ଷୀକି ଝାମ୍ପି ) ମାଡି ବସିଲା ବତ ( ପ୍ରାୟ ) "ଅକମ୍ପନକୁ ମାଡିବସି" ବାହୁ ସଂଗ୍ରାମେ ( ବାହୁ ଯୁଦ୍ଧରେ ) ବଳି "ଯାଇଁ" ତାକୁବଧି "ରାମଚନ୍ଦ୍ରଙ୍କୁ" ଓଳଗବନ୍ଧି ( ନମସ୍କାର କରି ) "ଚରଣରେ ରାମଙ୍କ" ବନ୍ଦି ( ବନ୍ଦନାକରି ) । ପିଶାଚ "ଅସୁର" ନଳେ ( ନଳ ସେନାପତିଙ୍କ ) ବିନ୍ଧୁ ( ବାଣ ବିନ୍ଧନ୍ତେ ) "ନଳ ତାହାକୁ" ଶୈଳେ ( ପଥରରେ ) ସରଥେ ( ରଥ ସହିତ ) ଚୂରୁଁ ( ଚୂରିନ୍ତେ ) ଧୂମ୍ରାକ୍ଷ ଅସୁର ରୁନ୍ଧି ଧାଇଁ (ଧାଇଁଲା) ॥

୩୩ଶ ପଦ—ଯା ଉଦରେ (ଯାହାଙ୍କ ଗର୍ଭରେ) ବ୍ରହ୍ମାଣ୍ଡ "ଅଛି" ତାଙ୍କୁ ସ୍କନ୍ଧରେ ଧରି "ପାବନି" ପବନୁଁ (ପବନଠାରୁ) ଜବକରି ( ବେଗରେ ଧୂମ୍ରାକ୍ଷକୁ ) ବାଳ ଧରଣି (ଧରି) ନେଇ ବସୁଧାରେ (ଭୂମିରେ) ପକାଇ ପାଦପ୍ରହାରେ ( ଗୋଇଠାରେ ) ମାରି "ପକାଇଲେ" । "ତା'ଦେଖି" ବିବୁଧାଦି ( ଦେବତାମାନେ ) ଧନ୍ୟ ଧନ୍ୟ ବୋଇଲେ । ସୁଗ୍ରୀବ ବଜ୍ରଦଂଷ୍ଟ୍ରର ( ବଜ୍ରଦଂଷ୍ଟ୍ର ନାମକ ଅସୁରର ) ଗ୍ରୀବ (କଣ୍ଠ) ଛିନ୍ନାଇଲା । "ପୁଣି ତାକୁ" ଫିଙ୍ଗିଲା ( ଫୋପାଡ଼ିଦେଲା ) "ଏମନ୍ତ ବୀର ଯେ ସୁଗ୍ରୀବ ତାଙ୍କୁ" କେ ( କେଉଁସେ ) ସମାନ ହେବ ( କେହି ହେବେ ନାହିଁ ) । ୩୩ ।

ବଧ ଚମୂଚତୁର ଆତ୍ମମାନେ ଆତୁର ସଦ୍ରାବ ପୃଷ୍ଠ ଦେଇ ଯେ ।
ବିଳେ ଗରୁଡ଼ଉଡ଼ରେ ସର୍ପର ପରକାରେ ଗଡ଼ି ପଶିଲେ ଯାଇ ଯେ ।
ବଳଯାକ । ବିଖଣ୍ଡିତ ଚରମ ଯେ ।
ବ୍ୟାଧସଙ୍ଗ ଭୂପତି ଘଉଡ଼ି ମୃଗପନ୍ତ ଗିରି ପ୍ରବେଶେ ରମ୍ୟ ଯେ ।୩୪।
ବନ୍ଧି ଏହି ଉପମ କପିସୈନ୍ୟ ଶ୍ରୀରାମ ବାହନ ଯା ମାରୁତି ଯେ ।
ବିହମି ରାଜଦାଣ୍ଡେ ରହିଁ କାମିନୀରୁଣ୍ଡେ ଚକ୍ଷୁ ନ ପିଛୁଡ଼ନ୍ତି ଯେ ।

---

୩୪ଶ ପଦ—ଚତୁର ୧ ଚମୂ ( ଚତୁରଙ୍ଗବଳ ) ବଧ "ହୁଅନ୍ତେ" ଆତ୍ମମାନେ ଆତୁର "ହୋଇ" ପୃଷ୍ଠ ( ପିଠି ) ଦେଇ ୨ ସଦ୍ରାବ ( ପଳାଇଲେ ) । ଗରୁଡ଼ ଉଡରେ ବିଳେ ( ଗର୍ତ୍ତରେ ) ସର୍ପର ପରକାରେ ( ସର୍ପ-ପଶିଲା ପ୍ରକାରେ ) ଯାଇ ଗଡ଼ି ପଶିଲେ । ବଳଯାକ ( ସବୁ ସୈନ୍ୟଙ୍କର ) ଚରମ ( ପିଠି ) ବିଖଣ୍ଡିତ ( କ୍ଷତବିକ୍ଷତ ) "ହୋଇ ଯାଇଅଛି" । ବ୍ୟାଧସଙ୍ଗ ( ବ୍ୟାଧଙ୍କ ସଙ୍ଗେ ଘେନି ) ଭୂପତି ( ରାଜାମାନେ ) ମୃଗପନ୍ତ ( ମୃଗପଲକୁ ) ଘଉଡ଼ି "ଦଅନ୍ତେ" ସେ ଗିରି ପ୍ରବେଶେ ( ପର୍ବତରେ ପଶିଲେ ) ଯେରୂପ ରମ୍ୟ ( ସୁନ୍ଦର ) ସେହିପରି ଦିଶିଲା । "ମୃଗୟା ବିନୋଦରେ ରାଜା ମୃଗପଲ ଅଡ଼େଇ ନେଇ ପର୍ବତରେ ଗୁଡ଼ାଇଲା ପ୍ରାୟ ରାମ ରାକ୍ଷସବଳ ଅଡ଼େଇ ନେଇ ଲଙ୍କାରେ ଗୁଡ଼ାଇଲେ ଏହି ଫଳିତାର୍ଥ" । ୩୪ ।

୩୫ଶ ପଦ—କପିସୈନ୍ୟ ଏହି ଉପମ ( ଉପମାକୁ ) ବନ୍ଧି ( ପୂର୍ବ-ପଦରେ କରିଥିବା ଉପମାକୁ ବନ୍ଧିଲେ ) । ମାରୁତି ( ହନୁମାନ୍ ) ଯା ( ଯାହାର ) ବାହନ "ଏମନ୍ତ ଯେ" ଶ୍ରୀରାମ ରାଜଦାଣ୍ଡେ ( ଲଙ୍କା ରାଜଦାଣ୍ଡରେ ) ବିହମି "ଯାଉନ୍ତେ" କାମିନୀ ( ଲଙ୍କାର ଅସୁରୀଏ ) ରୁଣ୍ଡେ ( ରୁଣ୍ଡ ହୋଇ ) ରହିଁ ( ରାମଙ୍କୁ ଦେଖି ) ଚକ୍ଷୁ ନ ପିଛୁଡ଼ନ୍ତି ( ପଲକ ନ ପକାଇ ରହି ରହିଲେ ) । ବୋଲନ୍ତି ବୋଲି "ହେଲେ" ହେ ବନ୍ଧୁ ( ଗୋ ସଖି ) ଏ ( ପୁରୁଷ ) କି ସୁନ୍ଦର ଗୋ ? ( ବଚନରେ କହି ନୁହେ ଗୋ ) "ଜଣାଯାଏ" ବିଦେହ ( କନ୍ଦର୍ପ ) ଦେହି-ବନ୍ତ ( ମୂର୍ତ୍ତିମନ୍ତ ) ହୋଇଁ ଫଗୁଖେଳ ରଚିତ ( ରଚି ଅଛନ୍ତି ) । ଏଥୁ

ବୋଲେ ବୋଲେ । କହ୍ନୁ ଏ କି ସୁନ୍ଦର ଗୋ ।
ବିଦେହ ଦେହବନ୍ତ ସଂଗୁଣେକ ରଚିତ ଏଥୁଁ ଆନ ନ କର ଗୋ ।୩୫।
ବୋଲେ କେ ରତି ଧ୍ୟାଇ ଆକାଂକ୍ଷାବନ୍ତ ତହୁଁ ସମ୍ବରପୁର ହେଜ ଗୋ।
ବୁଲିଆସିଅଛନ୍ତି ହୋଇଥାଇଟି ରତି ଜାନକୀ ଶୋଭାରାଜ ଗୋ ।
ବୋଲେ କେହୁ । ଶ୍ରବଣଂଶାକ୍ଷ ଆସୁଁ ଧର ଗୋ ।
ବାମାରମ୍ଭ ଦେଖିଛୁ ମୋର ମନେ ଯୋଖିଛୁ ରତି ରତିଏ ସର ଯେ ॥
ବୋଲେ କେ ଅଦର୍ଶନୁ ସୁନ୍ଦରେ ଫୁଲଧନୁ ଲକ୍ଷ୍ୟକୁ ଦେଉଁଥାଇଁ ଗୋ ।
ବହଇ ସେହି ନାମ ସଂସାରେ ଏହି ରାମ ଚିତ୍ତକୁ ହରି ନେଇ ଗୋ ।

---

( ଏହଥାରୁ ) ଆନ ( ଅନ୍ୟ ) "ବିଗ୍ରହ" ନ କର ୧ ଗୋ । "ଶ୍ରୀରାମଙ୍କ ଶ୍ରୀ ଅଙ୍ଗରେ ଚକ୍ର ଜର୍ଜର ହେବାରୁ ଏହି ଭାବ" । ୩୫ ।

୩୬ଶ ପଦ—କେ ( କେହି କାମିନୀ ) ବୋଲେ "ଏ ଅନଙ୍ଗ ସତ" ରତି ଧ୍ୟାଇ ( ରତିକି ଧ୍ୟାନକରି ) "ତାଠାରେ" ଆକାଂକ୍ଷାବନ୍ତ (କାମନାବନ୍ତ) ହୋଇ ସମ୍ବର ( ଶ୍ରେଷ୍ଠ ) ପୁରୀ ( ଏହି ଲଙ୍କା ) ସମ୍ବରପୁରୀ ( ସମ୍ବରପୁର-ପୁରୀ ) ହେଲି ହେଜ ( ଏମନ୍ତ ବିଗ୍ରହ ) ତହିଁ ( ସେ ପୁରୀକୁ ) ବୁଲି-ଆସିଅଛନ୍ତି । ଶୋଭାରାଜ ( ଶୋଭା ପୁଞ୍ଜ ) ଜାନକୀ ରତି ହୋଇଥାଇଟି ( ଅବା ) । କେହି ( ଅନ୍ୟ ) "କାମିନୀ" ବୋଲେ ଶ୍ରବଣଂଶାକ୍ଷ ( ରାବଣ ) ବାମ ରମ୍ଭ ( ନାରୀମାନଙ୍କୁ ) ଧରି ଆସୁଁ ( ଆସିବାବେଳେ ) "ମୁଁ" ଦେଖିଛି "ମୋର" ମନେ ( ମନ ମଧ୍ୟରେ ) ଯୋଖିଛୁ ରତି ( ସୁରପ୍ରିୟା ) ତାଙ୍କ ରତିଏ "ମାତ୍ର" ସରି ( ସମାନ ) ହେବ । ୩୬ ।

୩୭ଶ ପଦ—କେ (କେହି କାମିନୀ) ବୋଲେ ଫୁଲଧନୁ ( କନ୍ଦର୍ପକୁ ) ଅଦର୍ଶନୁ ( ନଦେଖିବାରୁ ) ସୁନ୍ଦରେ ( ସୁନ୍ଦରପୁରୁଷଙ୍କୁ ) "ଦେଖି କନ୍ଦର୍ପ ପ୍ରାୟ ସୁନ୍ଦର ବୋଲି" ଲକ୍ଷ୍ୟକୁ ( ଉପମା ) ଦେଉଥାଇଁ । ସଂସାରେ ( ସଂସାରରେ ) "ଏ ଯେଉଁ" ରାମ ଏହି ସେହି ( କନ୍ଦର୍ପ ) ନାମ ବହଇ "ଏଣୁ ସମସ୍ତଙ୍କ" ଚିତ୍ତକୁ ହରି ନେଇ ( ମୋହିତ କରଇ ) । "ସାକ୍ଷାତରେ ମନ୍ମଥ ଏ ଏହିଭାବ"

---

୧—ଗୋ ଶବ୍ଦ ସ୍ତ୍ରୀମାନଙ୍କର ସ୍ୱଭାବୋକ୍ତି ।

ବୋଲେ କେହ୍ନ । ବଧୂ ଲକ୍ଷିବା ନୋହ୍ନ ଟେ୍ରା ।
ବ୍ରଶୁଦ୍ଧ ନାମ ସେହ୍ନ ଏ ନାମ ପଚ୍ଛେ ଥାଇ କଷ୍ଟସ୍ତ୍ର ବଧୂ ଏହ୍ନ ଗୋ ।୩୭
ବୋଲେ କେ କହ୍ନବାର ପ୍ରମାଣ ସଖି ତୋର ସୁରଙ୍ଗ ପଦ୍ମପାଣି ଏ ।
ବକାଶେ ସୁଦର୍ଶନ ପ୍ରଭ୍ର ଆନବଧାନ ଅଛୁ ହୃଦପ୍ରମଣି ଗୋ ।
ବୋଲେ କେହ୍ନ । ବସନ୍ତବାସଧର ଯେ ।
ବଜେ ଛଦ୍ମ ବିହଙ୍ଗ କଂଶପରି ବଡଶମୂର୍ତ୍ତିରେ ଏ ମଧୁର ଯେ । ୩୮ ।

---

କେହ୍ନ ( ଅନ୍ୟ ସ୍ତ୍ରୀ ) ବୋଲେ ବଧୂ ( ଚନ୍ଦ୍ରସଙ୍ଗେ ) ଲକ୍ଷିବା ( ଲକ୍ଷ କରିବା ) ନୋହ୍ନ ( ସେ ବଧୂ ଲକ୍ଷ୍ୟ ନୋହେ ) । କାହିଁକି ? ଏ ଗ୍ରମ ନାମ ବଶୁଦ୍ଧ ସେହ୍ନ ନାମ ( ଚନ୍ଦ୍ରନାମ ଅଶୁଦ୍ଧ ନହେବାରୁ ) ପଚ୍ଛେ ( ପଛରେ ) ଥାଇ "ଗ୍ରମଚନ୍ଦ୍ର ବୋଲିବାରେ ଗ୍ରମ ନାମ ଆଦ୍ୟରେ ଚନ୍ଦ୍ରନାମ ପଛରେ ରହିଲା ଏଣୁ ଚନ୍ଦ୍ର ନୋହେ," କଷ୍ଟସ୍ତ୍ର ବଧୂ ( ବଷ୍ଣୁ ) ଏହ୍ନ । ୩୭ ।

୩୮ଶ ପଦ—କେ ( କେହ୍ନ ) ବୋଲେ ଗୋ ସଖି ! ତୋର କହ୍ନବାର ( କହ୍ନବାକଥା ) ପ୍ରମାଣ ( ସତ ) ଏ ସୁରଙ୍ଗ ପଦ୍ମପାଣି ( ଏହାଙ୍କ ହସ୍ତ ପଦ କେଡ଼େ ରଙ୍ଗ ଦିଶୁଅଛୁ ) ସୁଦର୍ଶନ ( ସୁଦର୍ଶନ ଚକ୍ର ) ପ୍ରଭ୍ର ( ଦୀପ୍ତି ) ଆନ ବଧାନରେ ( ଧନୁଶର ରୂପରେ ) ବକାଶେ ( ବକାଶୁଛୁ ) । ହୃଦସ୍ତମଣି ( ସୀତାଙ୍କ ମଥାମଣି ) "କୌସ୍ତୁଭମଣି ତୁଲ୍ୟ ବରଜୁଛୁ" । କେହ୍ନ ( ଆଉ-କଣେ ) ବୋଲେ ବସନ୍ତବାସଧର ( ପୀତାମ୍ବର ଧାରୀ ) କଂଶପର ( ହନୁ-ମାନର ପୃଷ୍ଠରେ ) ବଜେ "କରିବା" ଛଦ୍ମ ( କପଟ ) ୨ ବିହଙ୍ଗ ( ଗରୁଡ଼ ) ଏ, "ଏହା ଉପରେ ବଜେ କରଅଛନ୍ତି" । "ଏଣୁ ବଷ୍ଣୁ କଷ୍ଟସ୍ତ୍ର ଏ" । ବଡଶ ମୂର୍ତ୍ତିରେ * ( ବଡଶ ଲୀଳାବତାରମାନଙ୍କ ମଧ୍ୟରେ ) ମଧୁର "ମୂର୍ତ୍ତି ଏ" ।୩୮।

---

୧—ମର୍କଟୋ ବାନରଃ କଂଶୋ ବନୌକା ଇତ୍ୟମରଃ ।

୨—ବି-ପକ୍ଷୀ-ଈଶ ( ପ୍ରଭୁ ) ଗରୁଡ଼ ॥

*—ଶ୍ରୀମଦ୍ଭାଗବତେ ଲୀଳାବତାରାଃ—ଚତୁଃସନକ ନାରଦ ବରାହ ମତ୍ସ୍ୟ ଯଜ୍ଞ ନରନାରାୟଣ କପିଲ ଦତ୍ତ ହୟଗ୍ରୀବ ହଂସ ପୃଶ୍ନିଗର୍ଭ ଋଷଭ ପୃଥୁ ନୃସିଂହ କୂର୍ମ ଧନ୍ୱନ୍ତରି ଧର୍ମ ଧ୍ରୁବ ହରି ମୋହିନୀ ବାମନ ପରଶୁରାମ ରଘୁନାଥ ବ୍ୟାସ ବଳଭଦ୍ର କୃଷ୍ଣ ବୁଦ୍ଧ କଲ୍କି ପ୍ରଭୃତୟଃ ।

ବିରଚି ହୁଳହୁଳି ଶଙ୍କାକୁ ଦେଇଣ ଜାଳି ଲଙ୍କାକାମିନୀ ପୁଚ୍ଛେ ଯେ ।
ବଇରି ଶତ ଶତ ଉସତ୍ତ ଯହିଁ ସତ ରାମ ବାହୁଡ଼ା ବିଜେ ଯେ ।
ବିଳସିତ । ବେଗରେ ସୁବଳୟେ ଯେ ।
ବାରଣଅରି ଦ୍ୱାର ସମୀପେ ଦଶଶିର ଦେଖେ ସେନାନୀ ଭୟେ ଯେ ॥
ବାତେ କଦଳୀପତ୍ର ପ୍ରାୟେ କଦଳି ନେତ୍ର ମୋଚମର୍ଦ୍ଦ ପାସୋରି ଯେ ।
ବିଷୟୁ ଏ କିଂଭୂତ ବିଂଶକର ପୃଚ୍ଛିତ ସ୍ୱରଭଙ୍ଗହିଁ ଗିର ଯେ ।
ବୋଲନ୍ତି ସେ । ବିରାବେ ଭୟବଶେ ଯେ ।
ବଢ଼ାଇଛନ୍ତି କୋପ ସୁଗ୍ରୀ ହନୂ ଅମାପ ଲକ୍ଷ୍ୟ ଦେଇ କି ଶାସେ ଯେ ॥

---

୩୯ଶ ପଦ—ଲଙ୍କାକାମିନୀ ପୁଚ୍ଛେ ( ଲଙ୍କାସ୍ତ୍ରୀମାନେ ) "ଆମ୍ଭେ ରାମଙ୍କୁ ଦେଖି ହୁଳହୁଳି ଦେଲେ ରାବଣ ଆମ୍ଭଙ୍କୁ କୋପିବ ଏମନ୍ତ" ଶଙ୍କାକୁ ( ଭୟ ) ଜାଳି ( ପୋଡ଼ି ) ଦେଇ ହୁଳହୁଳି ବିରଚି ( ଦେଲେ ) । ରାମ ବାହୁଡ଼ା ବିଜେ ଯହିଁ ଶତଶତ ବଇରି ( ରାକ୍ଷସ ଶତ୍ରୁ ) ଉସତ ( ଉଲ୍ଲସିତ ) ହେଲେ "ଏହା" ସତ ( ମିଥ୍ୟା ନୁହେ ) । "ସେ ବିମର୍ଦ୍ଦନେ" ବେଗରେ ( ଶୀଘ୍ର ) "ଯାଇ" ସୁବଳୟେ ( ସୁବେଳ ପର୍ବତରେ ) ବିଳସିତ ( ଶୋଭା ପାଇଲେ ) ବା ବିହରିଲେ । ବାରଣ ଅରି ( ସିଂହ ) ଦ୍ୱାର ସମୀପେ ( ନିକଟରେ ) ଦଶଶିର ( ରାବଣ ) ଭୟେ ( ଭୟରେ ) ସେନାନୀ ( ସୈନ୍ୟପତିଙ୍କୁ ) ଦେଖେ ( ଦେଖଇ ) । ୩୯ ।

୪୦ଶ ପଦ—"ରାବଣରେଗାଥ" ବାତେ ( ପବନରେ ) କଦଳୀପତ୍ର ପ୍ରାୟେ "କମ୍ପିଲା" । କଦଳି ( ମୃଗ ) ନେତ୍ର "ପ୍ରାୟ" ନେତ୍ର "ଚଞ୍ଚଳ ହେଲା" । ମୋଚମର୍ଦ୍ଦ ( ଦାଢ଼ିମୋଞ୍ଛା ) ପାସୋରି "ଗଲା" । "ଏରୂପେ" ବିଂଶକର ( ରାବଣ ) ପୃଚ୍ଛିତ ( ଦୂତଙ୍କୁ ପଚାରିଲା ) । କିଂଭୂତ ବିଷୟୁ ଏ ( ଏ କି କଥା ) ? ସେ ( ଦୂତମାନେ ) ଭୟବଶେ ବିରାବେ ( ନିଃଶବ୍ଦରେ ) ସ୍ୱରଭଙ୍ଗ ( ସ୍ୱରଭଙ୍ଗରେ ମଧ୍ୟ ) ଗିର ( କଥା ) ବୋଲନ୍ତି ( କହନ୍ତି ) । ସୁଗ୍ରୀ ହନୂ "ଦୁହେଁ" ଅମାପ କୋପ ବଢ଼ାଇଛନ୍ତି । ଶାସେ ( ଭୟ ସମ୍ବନ୍ଧରେ ) କି ଲକ୍ଷ୍ୟ ( ଉପମା ) ଦେଇ ( ଦେବା ) "ସ୍ୱରଭଙ୍ଗ ହେତୁରୁ ସୁଗ୍ରୀବ, ହନୂମାନ୍ ନ କହିପାରି ସୁଗ୍ରୀ, ହନୂ କହିଲା ଏହି ତାତ୍ପର୍ଯ୍ୟାର୍ଥ । ୪୦ ।

ବଜ୍ରଦଂଷ୍ଟ୍ର ଧୂମ୍ରାକ୍ଷ ଅକମ୍ପନ ପିଶାଚ ସେନାପତି ଏ କାହିଁ ଯେ ।
ବୋଲନ୍ତେ ଦଶଶିର ଚର ଯୋଡ଼ିଶ କର ବୋଇଲେ ନାଶ ସେହି ଯେ ।
ବସ୍ତୁପୁରେ । ବେଗେ ତେଜି ନିଶ୍ୱାସ ସେ ।
ବୃନ୍ଦାରିଜିତ ପ୍ରବେଶ ସଙ୍ଗେ ଭ୍ରାତୃବିଶେଷ ବୋଲେ ତାଙ୍କୁ ଏ ଭାଷ ସେ ॥
ବ୍ୟାଘ୍ର କୋଡ଼ରେ ଅଜ ପ୍ରବେଶ ହେଲା ଆଜ ନ ପାରିଲ ବିନାଶି ଯେ
ବୀର ବୋଲାଅ ସର୍ବେ ପ୍ରତିଜ୍ଞା କହି ଗର୍ବେ ବ୍ୟର୍ଥେ ଅସିକି କଷି ହେ ।
ବସୁଧାକୁ । ବଦନମାନ କଲେ ସେ ।
ବୟାଳିଶପଦରେ ଏ ଛାନ୍ଦ ମନୋହରରେ ବୀରବର ରଚିଲେ ଯେ ।୪୨।

— ॥✲॥ —

୪୧ଶ ପଦ—ବଜ୍ରଦଂଷ୍ଟ୍ର ଧୂମ୍ରାକ୍ଷ ଅକମ୍ପନ ପିଶାଚ ଏ "ଆଦି" ସେନାପତି କାହିଁ ( କାହାନ୍ତି ) "ଏମନ୍ତ" ଦଶଶିର ( ରାବଣ ) ବୋଲନ୍ତେ ଚର ( ଦୂତ ) କର (ହାତ) ଯୋଡିଣ (ଯୋଡ଼ି) ବୋଇଲେ ସେହି (ସେମାନେ) ନାଶ "ହେଲେ" । "ଶୁଣି ରାବଣ" ବସ୍ତୁପୁରେ ବେଗେ ନିଶ୍ୱାସ ତେଜି ( ତେଜିଲା ) "ଏ ସମୟରେ" ବୃନ୍ଦାରିଜିତ ( ଇନ୍ଦ୍ରଜିତ ) ପ୍ରବେଶ "ହେଲା" । ସଙ୍ଗେ ( ତା ସଙ୍ଗରେ ) ବିଶେଷ ଭ୍ରାତ ( ଭାଇମାନେ ) "ଥିଲେ" ତାଙ୍କୁ "ରାବଣ" ଏ ଭାଷ ( ଏ କଥା ) ବୋଲେ ( କହିଲା ) । ୪୧ ।

୪୨ଶ ପଦ—ବ୍ୟାଘ୍ର କୋଡ଼ରେ ( ବାଘ କୋଳରେ ) ଆଜ ଅଜ ( ଛେଳି ) ପ୍ରବେଶ ହେଲା ( ହୋଇଥିଲା ) ବିନାଶି ନ ପାରିଲ ( ମାରି-ପାରିଲ ନାହିଁ ) ସର୍ବେ ( ସମସ୍ତେ ) ବୀର ବୋଲାଅ ( ବୋଲାଉଅଛ ) ଗର୍ବେ ( ଗର୍ବକରି ) ଅସିକି ( ଖଣ୍ଡା ) କଷି ( ଝମକାଇ ) ବ୍ୟର୍ଥେ ( ବ୍ୟର୍ଥରେ ) ପ୍ରତିଜ୍ଞା କହି ( କରି ) "ଏମନ୍ତ ରାବଣ କହିବାର ଶୁଣି ଲଙ୍କାରେ ସମସ୍ତେ" ବସୁଧାକୁ ( ତଳକୁ ) ବଦନମାନ ( ମୁଖ ) କଲେ । ବୟାଳିଶ ପଦରେ ମନୋହର ଏ ଛାନ୍ଦ ବୀରବର ( ଉପେନ୍ଦ୍ର ଭଞ୍ଜ କବି ) ରଚିଲେ । ୪୨ ।

—✲—

## ଚତୁଶ୍ଚତ୍ୱାରିଂଶ ଛାନ୍ଦ

ରାଗ—କାମୋଦୀ

( ହଂସଦୂତ ବାଣୀରେ )

ବିଭାବରୀ ବିନାଶ ବିଭାବସୁ ପ୍ରକାଶ ବିଭାଷ ପ୍ରକଟ ଅଶେଷ ।
ବିଷମବାମେ ହାସ ବିଂଶନେତ୍ର ନିଶ୍ୱାସ ତେଜି ବୋଇଲା ଉଚ୍ଚ ଭାଷ ସେ
ବଂଶଧ୍ୱଂସ । ବ୍ୟର୍ଥ ଆନରେ କରି ଆଶ । ବୋଧି ମୋ ଭ୍ରାତ୍ରୁ ଘେନିଆସ
ବିନିଦ୍ରରେ ରଭସ ବିନଶ୍ୟନ୍ତି ଅବଶ୍ୟ କରିବ ବଇରି ସାହସ ସେ ।୧
ବାରିଧି କୁମ୍ଭନୀର ଗ୍ରାସେ କୁମ୍ଭସୁତର ସମ୍ଭବ ନୁହଇ ଆନର ।
ବାନର ନିର୍ବଳ ବେନି ଜାତ ରୁଧିର ପାନ ହେବ କୁମ୍ଭକର୍ଣ୍ଣର ସେ ।

---

### ଚତୁଶ୍ଚତ୍ୱାରିଂଶ ଗୁଢ଼

୧ମ ପଦ—ବିଭାବରୀ ( ରାତ୍ରି ) ବିନାଶ "ହେଲା" ବିଭାବସୁ ( ସୂର୍ଯ୍ୟ ) ପ୍ରକାଶ "ହେଲେ" । ବି-ଭାଷ ( ପକ୍ଷୀଙ୍କ ଭାଷା ) ଅଶେଷ ( ଅଶେଷରୂପେ ) ପ୍ରକଟ "ହେଲା" । "ଏଦ୍ୱାରା ପ୍ରଭାତକାଳ ସୂଚିତ ହେଲା" । ବିଷମ ବାମେ ( ଶତ୍ରୁ ଠାରେ ) ହାସ ( ଭୟ ) ପାଇ ନିଶ୍ୱାସ ( ଦୀର୍ଘ ନିଶ୍ୱାସ ) ତେଜି ( ଛାଡ଼ି ) ବିଂଶନେତ୍ର ( ରାବଣ ) ଉଚ୍ଚଭାଷ ( ଉଚ୍ଚରେ ଏହିକଥା ) ବୋଇଲା । ଆନରେ ( ଅନ୍ୟବୀରଠାରେ ) ଆଶା କରି ( ଆଶା ରଖି ) ବ୍ୟର୍ଥ ( ବ୍ୟର୍ଥରେ ) ବଂଶ ( ମୋ ବଂଶ ) ଧ୍ୱଂସ ହେଲା । ମୋ ଭ୍ରାତ ( ମୋ ଭାଇ କୁମ୍ଭକର୍ଣ୍ଣଙ୍କୁ ) ବୋଧି ( ନିଦ୍ରାରୁ ଉଠାଇ ) ଘେନି ଆସ । ବିନିଦ୍ରରେ ( ଅନିଦ୍ରା ହୁଅନ୍ତେ ) ରଭସ ( ବେଗେ ) ଅବଶ୍ୟ ବଇରି ସାହସ ( ବୈରି-ମାନଙ୍କ ସାହାସକୁ ) ବିନଶ୍ୟନ୍ତି ( ବିନାଶ ) କରିବ । ଅଥବା ବଇରି ( ରାମଙ୍କ ) ସାହସ "କରି" ବିନାଶ କରିବ । ୧ ।

୨ୟ ପଦ—କୁମ୍ଭନୀର ( ଘଟିଜଳପ୍ରାୟ ) ବାରିଧି ( ସମୁଦ୍ର ) ଗ୍ରାସେ ( ପାନକରିବା ସାମର୍ଥ୍ୟ ) କୁମ୍ଭସୁତର ( ଅଗସ୍ତ୍ୟମୁନିର ) ସମ୍ଭବ ( ଅଛି ) । ଆନର ନୁହଇ । ବାନର ନର ବଳ ବେନି "ହେବାରୁ" ଜାତ "ହେବା" ରୁଧିର

ବାରବାର । ବାରଜୀବଙ୍କ ପରକାର । ବର୍ଜିବ ମୃତଶରୀର । ବଞ୍ଚକ ଗୃଧ୍ର ଚିରକ୍ଷୁଧା ହୋଇବ ଦୂର ଭଜିବ ଲଙ୍କାପୁରୀ ସ୍ଥିର ସେ ।୨।

ବୋଲନ୍ତେ ମହୋଦରେ ଗୃହ୍ନିଁ ଜମ୍ବୁପାକ୍ଷରେ ଯାଇଁ ସେ ସତ୍ୱରେ ଚତ୍ୱରେ । ବେଶ୍ମବର ଭିତରେ ପଶିଣ ତଦୁତ୍ତରେ ଦେଖିଲେ ପଲ୍ୟଙ୍କ ଉପରେ ସେ । ବିନ୍ଧ୍ୟଧରେ । ବପୁ ତାର ଉପମା ଧରେ । ବତାସ ଲକ୍ଷ୍ୟ ନିଶ୍ୱାସରେ । ବସେ ନିଜ ସ୍ଥାନରେ ଗଡ଼ି କରି ଊର୍ଦ୍ଧ୍ୱରେ ମନ୍ଦିରଚାଳ ନିରନ୍ତରେ ସେ । ୩ ।

ଢୋଳ ଚନ୍ଦନ ଫାଇଁ ଉଚ୍ଚରେ ଡାକ ଦେଇ ବହୁତଲୋକ ରୁଣ୍ଡ ହୋଇ । ବଚେଷ୍ଟା ନ ଯାଜଇ ଶ୍ରୁତିପାଶେ ଲୁହାଇ ବବାଧ ବାଦ୍ୟକୁ

---

କୁମ୍ଭକର୍ଣ୍ଣର ପାନ ହେବ । ବାରବାର ( ବାରଂବାର ) ବାର ( ଜଳ ) ଜୀବଙ୍କ ପରକାର ( ପ୍ରକାରେ ) ମୃତ ଶରୀର ( ଶବ ) ବର୍ଜିବ । ବଞ୍ଚକ ( ଶୃଗାଳ ) ଗୃଧ୍ର ( ଶାଗୁଣାମାନଙ୍କର ) ଚିରକାଳ କ୍ଷୁଧା ଦୂର ହୋଇବ । ଲଙ୍କାପୁର "ଶତ୍ରୁଶୂନ୍ୟ ଯୋଗୁଁ" ସ୍ଥିର ଭଜିବ ( ସୁସ୍ଥ ହେବ ) । ୨ ।

୩ୟ ପଦ—ଜମ୍ବୁପାକ୍ଷରେ ( ଜମ୍ବୁପାକ୍ଷ ଅସୁରକୁ ) ତାହିଁ ମହୋଦରେ ( ମହୋଦର ଅସୁରକୁ ) ବୋଲନ୍ତେ ସେ ( ଦୁହେଁ ) ସତ୍ୱରେ ( ଶୀଘ୍ର ) ଯାଇ ଚତ୍ୱରେ ( କୁମ୍ଭକର୍ଣ୍ଣ ଅଗଣାରେ ) "ମିଳିଲେ" । ତଦୁତ୍ତରେ ବେଶ୍ମ-ବର ( ସେହି ଶ୍ରେଷ୍ଠ ଗୃହ ) ଭିତରେ ପଶିଣ ( ପଶି କରି ) ଦେଖିଲେ ପଲ୍ୟଙ୍କ ଉପରେ "ଶୋଇଛି" । ତାର ( ସେହି କୁମ୍ଭକର୍ଣ୍ଣର ) ବପୁ ( ଶରୀର ) ବିନ୍ଧ୍ୟ-ଧରେ ( ବିନ୍ଧ୍ୟ ପର୍ବତଠାରେ ) ଉପମା ଧରେ ( ବିନ୍ଧ୍ୟ ଗିରିପ୍ରାୟ ତା ଦେହ ଦିଶେ ) । ତାର ନିଃଶ୍ୱାସରେ ( ନିଃଶ୍ୱାସକୁ ) ବତାସ ଲକ୍ଷ୍ୟ ହୁଅଇ "ବତାସ ବହିଲପ୍ରାୟ ତା ନିଶ୍ୱାସ ବହଇ" । ନିରନ୍ତରେ ( ସର୍ବଦା ) "ନିଶ୍ୱାସ ଗ୍ରହଣ-ବାରେ" ମନ୍ଦିର ଚାଳ ଊର୍ଦ୍ଧ୍ୱରେ ଗଡ଼ି କରି ନିଜ ସ୍ଥାନରେ ବସେ ( କୁମ୍ଭ-କର୍ଣ୍ଣର ନିଃଶ୍ୱାସ ପବନରେ ଘରର ଚାଳ ଉଠୁଛି ପଡ଼ୁଛି ) । ୩ ।

୪ର୍ଥ ପଦ—ଚନ୍ଦନ ଫାଇଁ ( ବହୁତ ଚନ୍ଦନ ) ବୋଲି ( କୁମ୍ଭକର୍ଣ୍ଣ ଅଙ୍ଗରେ ବୋଳିଲେ ) । ବହୁତ ଲୋକ ରୁଣ୍ଡ ( ଏକାଠି ) ହୋଇ ଉଚ୍ଚରେ

ବଜାଇ ସେ । ବାଜୀ ନେଇ । ବିସ୍ତାର ଅଙ୍କରେ ଧୂଆଇ । ବାରଣ-
ଦନ୍ତରେ ମରାଇ । ବସିଲା ଚେତା ପାଇ ବହୁ ଆହାର ଖାଇ ଦୁଧ ମଦ
ରକତ ପିଇ ସେ ।୪।

ବାହାତ ଶତ ଶତ ଆହାର ହୋଇ ଦୈତ୍ୟ ବାହାରି କରେ
ଶୂଳଧୃତ । ବିବୁଧାଚଳେ ସ୍ଥିତ କଳ୍ପପାଦପବତ ପ୍ରାକାର ଜିଣି ଦିଶେ
ସତ ସେ । ବଳବନ୍ତ । ବଢ଼େ ଅଭ୍ରମୁପତି ଭୀତ । ବାରବାର ଆଉଁଶେ
ଦନ୍ତ । ବିମଳଜ୍ୟୋତି ହତ ଆଦିତ୍ୟ ସନ୍ତପତ ତୁରଙ୍ଗ ରଙ୍ଗ
ବିଳମ୍ବିତ ସେ ।୫।

---

ଡାକ ଦେଇ ( ଦେଲେ ) । ଚେଷ୍ଟା ( ତାହାର ଇଚ୍ଛା ) ନ ଭାଜଇ ( ନ ଭାଙ୍ଗିଲା ) । ଶ୍ରୁତିପାଶେ ( କାନ ପାଖରେ ) ବିବିଧ ( ନାନାପ୍ରକାର ) ବାଦ୍ୟ ଭୂଦାଇ ( ଘନଘନ ) ବଜାଇ ( ବଜାଇଲେ ) । ବାଜୀ ( ଘୋଡ଼ାକୁ ) ନେଇ "ତାହାର" ବିସ୍ତାର ଅଙ୍କରେ ( ପୋଷଣିଆ କୋଡରେ ) ଧୂଆଇଲେ ( ଦଉଡ଼ାଇଲେ ) । ବାରଣ ଦନ୍ତରେ ( ହାତୀକି ନେଇ ତା ଦନ୍ତ ) ମରାଇ (ମରାଇଲେ) । "ଏମନ୍ତ କରନ୍ତେ ସେ" ଚେତାପାଇ ବସିଲା । ବହୁ ଆହାର ଖାଇ ( ବହୁତ ଖାଦ୍ୟ ଖାଇଲା ) "ପୁଣି" ଦୁଧ ରକତ ମଦ ପିଇ (ପିଇଲା) ।।

୫ମ ପଦ—ଦୈତ୍ୟ (କୁମ୍ଭକର୍ଣ୍ଣ) ଶତ ଶତ ବାହାତ (ମଇଁଷି) ଆହାର ହୋଇ ( ଖାଇ ) କରେ ( ହାତରେ ) ଶୂଳଧୃତ (ଶୂଳଧର) ବାହାରି (ବାହାରିଲା) । ସେ ବିବୁଧାଚଳେ ( ମେରୁଗିରିରେ ) କଳ୍ପପାଦପବତ ସ୍ଥିତ ( କଳ୍ପବୃକ୍ଷ ସ୍ଥିତ ହେଲା ପ୍ରାୟ ) ପ୍ରାକାର ( ଲଙ୍କାପାଚେରି ) ଜିଣି ଦିଶେ ( ଦେଖାଗଲା ) "ଏହା" ସତ ( ମିଛ ନୋହେ ) । "ମେରୁ ତୁଲ୍ୟ କୁମ୍ଭକର୍ଣ୍ଣ, କଳ୍ପବୃକ୍ଷସମ ଶୂଳ, ଏହି ତାତ୍ପର୍ଯ୍ୟାର୍ଥ" । ସେ ବଳବନ୍ତ ( ବଳିଷ୍ଠ ) "ଉଠନ୍ତେ" ଅଭ୍ରମୁପତି ( ଐରାବତ ହସ୍ତୀ ) ଭୀତ (ଭୟ) "ପାଇ" ବାରବାର ( ବାରମ୍ବାର ) ଦନ୍ତ ( ଦାନ୍ତକୁ ) ଆଉଁଶେ "କୁମ୍ଭକର୍ଣ୍ଣ ପୂର୍ବରେ ତା ଦାନ୍ତ ଉପାଡ଼ିଥିବାରୁ ଏହିଭାବ" । ଆଦିତ୍ୟ ( ସୂର୍ଯ୍ୟ ) ସନ୍ତପତ ( ସନ୍ତପ୍ତ ) ହେଲେ, ତୁରଙ୍ଗ ( ତାଙ୍କ ରଥର ଘୋଡ଼ାଙ୍କର ) ରଙ୍ଗ ( ଗମନକ୍ରୀଡ଼ା ) ବିଳମ୍ବିତ (ବିଳମ୍ବ ହେବା ଯୋଗ୍ୟ ) ବିମଳ ଜ୍ୟୋତି ( ତାଙ୍କର ନିର୍ମଳ ଜ୍ୟୋତି ) ହତ ହେଲା । ୫ ।

ବାସୁକି ଅଶକତ ଆସୁଁ ପୃଥ୍ୱୀ ଲମ୍ବିତ ଉମାଗୁରୁ ଗୁରୁ କମ୍ପିତ ।
ବଣାରୁ ଦନ୍ତବ୍ରାତ ଠଣାରୁ ପଳାୟିତ ଅସର କପି ଇତସ୍ତତ ଯେ ।
ବିଲୋକିତ । ବୋଇଲେ ଏକି ଅଦଭୁତ । ବିଭୀଷଣଙ୍କୁ ରଘୁସୁତ ।
ବିଭାବରୀରେ ଜାତ ଗଇରିକ ପର୍ବତ ଉନ୍ନତ ଛୁଉଁଛି ଅନନ୍ତ ସେ ।୬।
ବିଭୀଷଣ ଭାଷଣ ନୁହଇ ଗୋତ୍ର ପୁଣ ଉଠିଲା ସେ ଘଟଶ୍ରବଣ ।
ବିଭୀତକ ନୋହନ୍ତି ବ୍ରହ୍ମାଣ୍ଡେ ଏକଜଣ ନାହାନ୍ତି ଏହାକୁ ପ୍ରମାଣ ସେ ।
ବୀରପଣ । ବନ୍ଧେ ଦର୍ପକପର ଠାଣ ବେଗରେ ଯୋଗୀନ୍ଦ୍ର ଆପଣ ।
ବିହ ନାଶ ତକ୍ଷଣ ପଞ୍ଚଲକ୍ଷି ଈକ୍ଷଣ ହୁଅ ସୁକୀର୍ତ୍ତି ବିଚକ୍ଷଣ ସେ ।୭।

---

୬ଷ୍ଠ ପଦ—ଆସୁଁ (କୁମ୍ଭକର୍ଣ୍ଣ ଗୁଳିବାରେ) ବାସୁକି (ସର୍ପରାଜ) ଅଶକତ (ଅସମର୍ଥ) "ହେଲେ"। ପୃଥ୍ୱୀ ଲମ୍ବିତ (ଲମ୍ବିଗଲା)। ଉମାଗୁରୁ (ହିମାଳୟ) ଗୁରୁ (ବିଶେଷରେ) କମ୍ପିତ (କମ୍ପିଲେ)। "ସ୍ଥୈର୍ଯ୍ୟ ରଖି ନ ପାରିଲେ ଏହି ଭାବ" ✻। ଦନ୍ତବ୍ରାତ (ଧୈର୍ଯ୍ୟସମୂହ) ବଣାରୁ (ବଣା ହେବାରୁ) ଅସର (ଅନେକ) କପି ଠଣାରୁ ପଳାୟିତ (ଠଣା ଛାଡ଼ି ପଳାଇଲେ)। ବିଲୋକିତ (ଦେଖି କରି) ରଘୁସୁତ (ରାମ) ବିଭୀଷଣଙ୍କୁ ବୋଇଲେ ଏ କି ଅଦଭୁତ (ଅଦ୍ଭୁତ)? ✻ ବିଭାବରୀରେ (ଏକ-ରାତ୍ରିକରେ) ଗଇରିକ ପର୍ବତ (ଗୋଟାଏ ଗୈରିକପର୍ବତ) ଜାତ "ହେଲା"। ଉନ୍ନତ (ଉଚ୍ଚତାରେ) ଅନନ୍ତ (ଆକାଶକୁ) ଛୁଉଁଛି ।୬।

୭ମ ପଦ—"ରାମ ପଚାରିବାରୁ" ବିଭୀଷଣ ଭାଷଣ (କହିଲେ) ସେ ପୁଣ ଗୋତ୍ର (ପର୍ବତ) ନୁହଇ ଘଟଶ୍ରବଣ (କୁମ୍ଭକର୍ଣ୍ଣ) ଉଠିଲା। ଏହାକୁ ବିଭୀତକ (ନ ଡରି) ବ୍ରହ୍ମାଣ୍ଡେ (ବ୍ରହ୍ମାଣ୍ଡ ମଧ୍ୟରେ) ଏକଜଣ ନାହାନ୍ତି (ସମସ୍ତେ ଭୟ କରନ୍ତି) "ଏ କଥା" ପ୍ରମାଣ (ସତ୍ୟ)। ଦର୍ପକପର (ବୀରପଣରେ କନ୍ଦର୍ପପ୍ରାୟ) ଠାଣ ବନ୍ଧେ (ବହଳ)। ବେଗରେ (ବଧିଲେତ) ଆପଣ ଯୋଗୀନ୍ଦ୍ର (ଯୋଗୀଶ୍ରେଷ୍ଠ—ମହାଦେବ ତୁଲ୍ୟ) "ଶିବଙ୍କ ଈକ୍ଷଣ (ଦୃଷ୍ଟି) ପଞ୍ଚଲକ୍ଷି କନ୍ଦର୍ପ ଭସ୍ମ ହେଲାପ୍ରାୟ" "ଆପଣଙ୍କ" ଈକ୍ଷଣ

---

✻—ସମୁଦ୍ରଇବ ଗାମ୍ଭୀର୍ଯ୍ୟେ ସ୍ଥୈର୍ଯ୍ୟେ ଚ ହିମବାନିବ ଇତି ରାମାୟଣେ ॥

ବହୁ ପଥେ ରାକ୍ଷସ ନଷ୍ଟ ଦେଖିଲା ଦେଶ ଜୁଲୁପାକ୍ଷେ ପାଇ ସନ୍ଦେଶ । ବିନୟଭାବେ ବଶ ବସି ଲଙ୍କେଶପାଶ ପୃଚ୍ଛନ୍ତେ କଲା ସେ ପ୍ରକାଶ ସେ । ବୀରଈଶ । ବିପଦବ୍ୟାଧିରେ ମୁଁ କ୍ଳିଶ । ବୈଦ୍ୟ ହୋଇ ଆତୁର ନାଶ । ବିଦିତ ଏଥି ଦଶରଥିଜ ବେଢିଣ ଜଣ ଜନ୍ୟାବେ ରଚେ ଦଶାଦଶ ସେ । ୮ ।

ବୋଲଇ କୁମ୍ଭଶ୍ରୁତି କାହିଁକି ସେ ଅଶ୍ରୁତି ଜନନେ ବାନର ସଙ୍ଗତି । ବୋଇଲା ଲଙ୍କାପତି ଯାଇଁ ମାରୀଚକତି କରାଇ ତାକୁ ମାୟା-

---

(ବୃଷ୍ଟି) ପଙ୍କଳକ୍ଷଣି ତକ୍ଷଣ (ବେଗେ) ନାଶ କଲ (କର) । ସୁକୀର୍ତ୍ତି ବିଦେଶ ହୁଅ (ଲୋକରେ କୀର୍ତ୍ତି ବିଖ୍ୟାତ କର) । ୭ ।

୮ମ ପଦ—ରାକ୍ଷସ (କୁମ୍ଭକର୍ଣ୍ଣ) ପଥେ (ବାଟରେ) ଦେଶ (ଦେଶର) ବହୁ (ବହୁତ) ନଷ୍ଟ ଦେଖିଲା ଜୁଲୁପାକ୍ଷେ (ଜୁଲୁପାକ୍ଷଠାରୁ) ସନ୍ଦେଶ ପାଇ ଲଙ୍କେଶ ପାଶ (ରାବଣ ପାଖରେ) ବସି ବିନୟଭାବେ ବଶ ହୋଇ ପୃଚ୍ଛନ୍ତେ (ପଚାରନ୍ତେ) ସେ (ରାବଣ) ପ୍ରକାଶ କଲା (କହିଲା) ବୀରଈଶ (ହେ ବୀରଶ୍ରେଷ୍ଠ) ବିପଦ ବ୍ୟାଧିରେ (ବିପତ୍ତିରୂପ ରୋଗରେ) ମୁଁ କ୍ଳିଶ (ହରୁ) ହେଉଅଛି ତୁ ବୈଦ୍ୟ ହୋଇ "ମୋର ସେହି ରୋଗରୂପ" ଆତୁର ନାଶ । ଏଥି (ଏଠାରେ) ଦଶରଥିଜ (ଦଶରଥ ରାଜାର ପୁଅ ରାମ) ବିଦିତ (ପ୍ରବେଶ) ହୋଇ ଜଣ (କପିଙ୍କ ସଙ୍ଗେ ଯେନ) ଜନ୍ୟାବେ (ରାକ୍ଷସଙ୍କଠାରେ) ୧ ଦଶମ ଦଶା (ଦଶମଦଶା—ମରଣ) ରଚେ (ଦିଏ) । ୮ ।

୯ମ ପଦ—କୁମ୍ଭଶ୍ରୁତି (କୁମ୍ଭକର୍ଣ୍ଣ) ବୋଲଇ ସେ (ଦଶରଥସୁତ) କାହିଁକି ଅଶ୍ରୁତି (ଶତ୍ରୁ) ହେଲା, ଜନନର ସଙ୍ଗତି (କପିଙ୍କ ସଙ୍ଗେ ମିଳନ) "ତାହାର କେମନ୍ତେ "ହେଲା" । ଲଙ୍କପତି (ରାବଣ) ବୋଇଲା ମୁଁ ମାରୀଚ କତି (ମାରୀଚ ରାକ୍ଷସ ପାଖକୁ) ଯାଇ ତାକୁ ମାୟାମୂର୍ତ୍ତି (ମାୟାମୃଗ-ମୂର୍ତ୍ତି) କରାଇ (କରାଇଲି) । ସେ ବେନି ଯତି (ରାମ ଲକ୍ଷ୍ମଣ) ତାକୁ

---

୧—ଦୃଙ୍‌ମନଃ ସଙ୍ଗଃ ସଙ୍କଳ୍ପୋଜାଗରଃ କୃଶତାରତିଃ ।
ହ୍ରୀତ୍ୟାଗୋନ୍ମାଦସମ୍ମୋହୋ ମରଣଂ ଚ ଦଶା ଦଶ ॥ ଇତ୍ୟଲଙ୍କାରଶାସ୍ତ୍ରେ

ମୂର୍ତ୍ତି ସେ । ବେନ ପତି । ବନ୍ଧ ଯାଉଁ ତାକୁ ଝଟିତି । ବଳେ ଆଣିଲ ତା ଯୁବତି । ବନେ ସୁଗ୍ରୀବେ ପ୍ରୀତି ବାଳକ କରି ହତି ଶୈଳେ ସାଗରେ ସେତୁ କୃତ ସେ । ୯ ।

ବୋଲେ କଲୁ କ ବୁଦ୍ଧି ନାଗଚତୁର ସିଦ୍ଧି ମାତର ହୋଇଲା ପ୍ରସିଦ୍ଧି । ବାଳକ ଯେହୁ ବଧି ତାରେ ପୁଣି ବିରୋଧୀ ନ ଯେନ ବନ୍ଧେ ତରେ ବାର୍ଦ୍ଧି ସେ । ବଡ଼ଯୋଧୀ ! ବିଶ୍ୱରେ ପାରିବ କେ ସାଧି । ବିଂଶାକ୍ଷ କହେ କହୁଁ ବୋଧି । ବିଭୀଷଣ ସମୃଦ୍ଧିଆଶେ କଲା ଅବଧି ପଳା ତୁ ହେଲୁଣି ଭୀତଧୀ ସେ । ୧୦ ।

---

( ସେହି ମାୟାମୃଗକୁ ) ବନ୍ଧ ( ବନ୍ଧିବା ନିମିତ୍ତ ) ଝଟିତି ( ବେଗେ ), ଯାଉଁ ( ଯାଉନ୍ତେ ) ବଳେ ( ବଳପୂର୍ବକ ) ତା ଯୁବତି ( ରାମ ନାରୀକୁ ) ଆଣିଲ । "ସେ ରାମ ଲକ୍ଷ୍ମଣ" ବନେ ( ବନ ମଧ୍ୟରେ ) ସୁଗ୍ରୀବେ ( ସୁଗ୍ରୀବ ସଙ୍ଗେ ) ପ୍ରୀତି "କରି" ବାଳକ ( ବାଳିରାଜାକୁ ) ହତି ( ବଧ ) କରି ସାଗର ( ସମୁଦ୍ରରେ ) ଶୈଳେ ( ପର୍ବତ ପକାଇ ) ୧ସେତୁ ( ବନ୍ଧ ) କୃତ ( କଲେ ) ।୯।

୧୦ମ ପଦ—ବୋଲେ ( କୁମ୍ଭକର୍ଣ୍ଣ କହିଲା ) କ ବୁଦ୍ଧି କଲୁ (କ କୁତ୍ସିତ ବୁଦ୍ଧି କଲୁ ) ନାଗ ଚତୁର ସିଦ୍ଧି ମାତର ପ୍ରସିଦ୍ଧି ହୋଇଲା ( ନାଗରେର ବୋଲି ଲୋକେ କହିବେ ) । ଯେହୁ ବାଳକ ବଧି ( ଯେ ବାଳକ ମାରିଲା ) ତାରେ ପୁଣି ବିରୋଧୀ ( ତୁ ପୁଣି ତାହାର ବିରୋଧୀ ହେଲୁ ), ବନ୍ଧେ ବାର୍ଦ୍ଧି ତରେ ( ପୁଣି ବନ୍ଧବାନ୍ଧି ସମୁଦ୍ର ତରିଲା ), ବଡ଼ ଯୋଧୀ ନ ଯେନ (ଏତେକେ ବଡ଼ ଯୋଦ୍ଧା ବୋଲି ଜାଣିପାରିଲ ନାହିଁ ) । ବିଶ୍ୱରେ କେ ସାଧି ପାରିବ ( ତାକୁ ଏ ସଂସାରେ କେହି ଜିଣି ପାରିବେ ନାହିଁ ) । ବୋଧି କହୁଁ ( ଏରୂପେ କୁମ୍ଭକର୍ଣ୍ଣ ବୋଧକରି ଉଚିତ କହନ୍ତେ ) ବିଂଶାକ୍ଷ ( ରାବଣ ) କହେ ( କ୍ରୁଦ୍ଧ ହୋଇ କହିଲା ) । ବିଭୀଷଣ ସମୃଦ୍ଧି ( ସମ୍ପତ୍ତି ) ଆଶେ ( ଆଶାରେ ) ଅବଧି କଲା ( ଶତ୍ରୁପାଦରେ ଶରଣ ପଶିଲା ) । ତୁ ଭୀତଧୀ ( ଭୟବୁଦ୍ଧି ) ହେଲୁଣି ( ଧରିଲୁଣି ) ପଳା ( ପଳାଇଯାଇ ଶତ୍ରୁ ପାଦେ ଶରଣ ପଶ ) । ୧୦ ।

---

୧—ସେତୁରାଲୌ ସ୍ତ୍ରିୟାଂପୁମାନଲ୍ୟମରଃ ।

ବାଳକ ମେଘନାଦ ରଚୁଁ ପ୍ରଥମେ ବାଦ ଲକ୍ଷ୍ମଣେ କଲା ଶକ୍ତି-ଭେଦ । ବାରେକ ପୁଣି ଦ୍ୱନ୍ଦ୍ୱ ବନ୍ଧିଲା ଭ୍ରାତୃଦ୍ୱନ୍ଦ ଦନ୍ଦଶୂକ ପାଶରେ ନ୍ନଦ ସେ । ବଳେ ମନ୍ଦ। ତାର କି ବଡ଼ାଇ ସମ୍ବାଦ । ବ୍ୟାଘ୍ର ଆଗରେ ବଳୀବର୍ଦ୍ଦ । ବୋଲୁଁ କରି ସେ ନାଦ ହାହାର ହେଲା ମଦବହ୍ନିଳେ ବୃଦ୍ଧିକରି ମନ୍ଦ ସେ । ୧୧ ।

ବିଧାନ ଗରଜନ ଗର୍ଭସ୍ରାବ ସର୍ଜନ ବଧୀରପ୍ରାପ୍ତ ହେଲେ ଜନ । ବଜ୍ରେ ବଜ୍ର ଯେସନ ଘରଷଣ ତେସନ ଶୁଭେ ରଟମଟ ଦଶନ

୧୧ଶ ପଦ—"ପୁଣି ଶ୍ରବଣ କହେ" ବାଳକ (ପିଲା) ମେଘନାଦ ପ୍ରଥମେ (ଆଗ ଯାଇ) ବାଦ (ବିବାଦ) ରଚୁଁ (କରନ୍ତେ) ଲକ୍ଷ୍ମଣେ (ଲକ୍ଷ୍ମଣଙ୍କୁ) ଶକ୍ତି (ଶକ୍ତିରେ) ଭେଦ କଲା । ପୁଣି ବାରେକ (ଥରେ) ଦ୍ୱନ୍ଦ୍ୱ (ଯୁଦ୍ଧ) ବନ୍ଧିଲା (କଲା) । ଭ୍ରାତୃଦ୍ୱନ୍ଦ (ରାମ ଲକ୍ଷ୍ମଣ ଦୁହିଙ୍କୁ) ୧ ଦନ୍ଦଶୂକ ପାଶରେ (ନାଗପାଶରେ) ଛନ୍ଦ (ବାନ୍ଧିଲା) ; ବଳେ (ସେ ଦୁହେଁ ବଳରେ) ୨ ମନ୍ଦ (ଆମ୍ଭଠାରୁ ଅଳ୍ପ), ତାର (ତାହାଙ୍କର) ବଡ଼ାଇ (ବଳିଷ୍ଠ ବୋଲିବାର) ସମ୍ବାଦ କି (କଥା କଅଣ ଅଛି—କିଛି ନାହିଁ) । ବ୍ୟାଘ୍ର ଆଗରେ ବଳୀବର୍ଦ୍ଦ (ବଳଦର) "ବଡ଼ାଇ ଥାଏ କି ? ନ ଥାଏ ।" "ଏମନ୍ତ ଶ୍ରବଣ" ବୋଲୁଁ (କହନ୍ତେ) ସେ (କୁମ୍ଭକର୍ଣ୍ଣ) ନାଦକରି (ରଡ଼ି-ଛାଡ଼ି) ମଦବହ୍ନିଳେ (ମଦନିଶାରେ ମତ୍ତହୋଇ) ମନ୍ଦ (ଗର୍ବ) ବୃଦ୍ଧି କରି ହାହାର ହେଲା (ଯୁଦ୍ଧକୁ ଗଲା) । ୧ ।

୧୨ଶ ପଦ—ବିଧାନ (କୁମ୍ଭକର୍ଣ୍ଣ କଲା ଯେଉଁ) ଗରଜନ (ଗର୍ଜନ) ଗର୍ଭସ୍ରାବ ସର୍ଜନ (ତହିଁରେ ସ୍ତ୍ରୀମାନଙ୍କର ଗର୍ଭ ଖସିଗଲା) ଜନ (ଲୋକେ ଶୁଣି) ବଧିର (କାଲ ପ୍ରାପ୍ତ) ହେଲେ ; ବଜ୍ରେ (ବଜ୍ରରେ) ବଜ୍ର ଘରଷଣ (ଘଷିଲେ) ଯେସନ ଶୁଭେ ଦଶନ (ଦାନ୍ତ) ରଟମଟ (ରଗଡ଼ିବା) ତେସନ "ଶୁଭିଲା" । ତା ଘଘନନ ✻ (ତାହାର ଶରୀର) ଦେଖିଁ ଦେଖିଁ

୧—ଦନ୍ଦଶୂକୋ ବିଳେଶୟଃ ଇତ୍ୟମରଃ ।
୨—ମନ୍ଦାଲ୍ପାପଟୁନିର୍ଭାଗ୍ୟାମନ୍ଦାମୂଢ଼ା ଇତ୍ୟମରଃ ।
✻—ତା ଅପଘନ ପାଠାନ୍ତର ।

ଯେ । ବିବର୍ଜିନ । ବେନ୍ତୁ ବେନ୍ତୁ ଛା ଘନନ ! ବହଲ ନଧାନ୍ତୁ
ଜବନ । ବନଚର-ଷଇନ ଶ୍ୱାପନ୍ତ ସମାନ ଧରଣୀରେ କଲା ଯେ ମର୍ଦ୍ଦନ
ଯେ । ୧୨ ।

ବର୍ତ୍ମ ଶ୍ୱାସ ଲକ୍ଷ୍ମନଶୃଙ୍ଖଳଗୋପାନ୍ତୁ ଫ୍ଲାନ ଉଡ଼ିଲେ ଜଗଦ୍‌ଜ୍ୟୋତି-
ମାନ । ବର୍ତ୍ମେରେ ହନୂମାନ ଅଙ୍ଗଦ ଅଭିମାନ ଲଭି ବିରୋଧିଲେ
ବହନ ଯେ । ବଳବାନଂ। ଧାଇଁ ବେନି ସାନୁମାନ । ବାଜି ତନୁରେ
ଭିନ୍ନ ଭିନ୍ନ । ବାମପାଦ ଚାଳନ ଶୂଳପ୍ରହାରେ ଘନ ଯେ ବେନି ହୋଇଲେ
ଅଚେତନ ଯେ । ୧୩ ।

---

( ବେଳକୂଳବେଲ ) ବିବର୍ଜିନ ହୋଇ ( ବଢ଼ିଲ ) "ଯେ" ( କୁମ୍ଭକର୍ଣ୍ଣ )
ନଧାନ୍ତୁ ( ନଧାଠାରୁ ) ଜବନ ( ବେଗରେ ) ବହଇ ( ବହିଗଲା ପ୍ରାୟ
ଯାଇ ) ବନଚର ଷଇନ ( କପିସୈନ୍ୟଙ୍କୁ ) ଶ୍ୱାପନ୍ତ ( ପିମ୍ପୁଡ଼ିଧାଡ଼ି )
ସମାନ ( ପ୍ରାୟ ) ଧରଣୀରେ (ଯୁଦ୍ଧ ଭୂମିରେ) ମର୍ଦ୍ଦନ କଲା ( ମର୍ଦ୍ଦିଲା ) । ୧୨ ।

୧୩ଶ ପଦ—"କୁମ୍ଭକର୍ଣ୍ଣର" ଶ୍ୱାସ ( ନିଃଶ୍ୱାସ ) ବର୍ତ୍ମ ( ବହନ୍ତେ )
ଲକ୍ଷ୍ମନ ଶୃଙ୍ଖଳଗୋପାନ୍ତୁ ( ରଶ୍ମୀର ଶୃଙ୍ଖଳା ଚୋପାଠାରୁ ) ଫ୍ଲାନ "ହୋଇ"
ଜଗଦ୍‌ଜ୍ୟୋତିମାନ ( ନକ୍ଷତ୍ରମାନେ ) ଉଡ଼ିଲେ, ବର୍ତ୍ମେରେ ( ମାର୍ଗରେ ) ହନୁମାନ
ଅଙ୍ଗଦ ଅଭିମାନ ଲଭି ( ପାଇ ) ବହନ ( ବେଗେ ), ବିରୋଧିଲେ ( ବାଧା
ଜରୋଧିଲେ ) ବଳବାନ୍ ( ବଳବନ୍ତ ହନୁମାନ୍ ଅଙ୍ଗଦ ଦୁହେଁ ) ସାନୁମାନ
ବେନି ( ଦୁଇଗୋଟା ପର୍ବତ ) ଧାଇଁ ( ମାଇଲେ ) । ତନୁରେ ( କୁମ୍ଭକର୍ଣ୍ଣ
ଦେହରେ ) ବାଜି ଭିନ୍ନ ଭିନ୍ନ ( ଖଣ୍ଡ ଖଣ୍ଡ ହୋଇ ) କୁମ୍ଭକର୍ଣ୍ଣ ବାମପାଦ
ଚାଳନ "କରି" ଘନ ( ନିରନ୍ତରେ ) ଶୂଳ ପ୍ରହାରେ ( ଶୂଳ ମାରିବାରେ )
ଯେ ବେନି ( ହନୁମାନ୍ ଅଙ୍ଗଦ ଦୁହେଁ ) ଅଚେତନ୍ ହୋଇଲେ ( ମୂର୍ଚ୍ଛାଗଲେ ) ॥

---

୧—ଶ୍ୱାସପିପୀଲିକାଲକ୍ଷ୍ମୋଦ୍ଗତ ବର୍ଷ୍ମଃ ।

ବଳମନ୍ତେ କପର୍ଦ୍ଦୀ ପଞ୍ଚସେନା ଲମ୍ପଟୀ ତାଙ୍କୁ ବଧ୍ୱଂସି ଏକଯନ୍ତ୍ରି । ବାଟେ ସୁଗ୍ରୀବ ଭେଟି ପବେଧ ହ୍ରଦେ ପିଟି ଯହୁଁ ପଡ଼ିଲେ ମଲ୍ଲୋଟି ସେ । ବାଳଗୋଟି । ବଧିରେ ଧଇଲା ସାଉଁଟି । ବକ୍ଷରେ ଲଗାଇ ଲେଉଟି । ବେଗେ ପବନସୃଷ୍ଟି ସେ ମେଳରେ ପ୍ରକଟି ଗୋଳେ ସେନାଙ୍କ ମୂର୍ଚ୍ଛା ତୁଟି ସେ । ୧୪ ।

ବାହାରିଲେ ତା ପଛେ ତିମିକ କ୍ଷୁଦ୍ରମତ୍ସ୍ୟ ବେଷ୍ଟିତ ହେଲପରି ସ୍ୱଚ୍ଛେ । ବଧୃତ ଗଛେ ଗଛେ କେହ୍ନ ତାରିବା ବାଞ୍ଛେ ବାର୍ତ୍ତା ପ୍ରକଟେ

---

୧୪ଶ ପଦ—କପର୍ଦ୍ଦୀ ( ରଣକୌଶଳୀ ) ୧ଲମ୍ପଟୀ (ଯୁଦ୍ଧଲୋଭୀ) ପଞ୍ଚ-ସେନା ବଳମନ୍ତେ ( ବଳମିବା ଦେଖି କୁମ୍ଭକର୍ଣ୍ଣ ) ତାଙ୍କୁ ଏକଯନ୍ତ୍ରି ( ନିମିଷକେ ) ବଧ୍ୱଂସି ( ବିନାଶିଲା ) । ବାଟେ ( ବାଟରେ ) ସୁଗ୍ରୀବ ଭେଟି ( କୁମ୍ଭକର୍ଣ୍ଣଙ୍କୁ ଭେଟିଲେ ) । ହ୍ରଦେ ( ସୁଗ୍ରୀବ ହୃଦରେ ) ପବେଧ ପିଟି ( ଅସ୍ତ୍ର ପିଟିଲା ) । ସେ ( ସୁଗ୍ରୀବ ) ମଲ୍ଲୋଟି ପଡ଼ିଲେ । "ସୁଗ୍ରୀବ ମୂର୍ଚ୍ଛା ଯିବା ଦେଖି" ବାଳ ( ବାଳକଙ୍କୁ ) ଗୋଟି ( ଗୋଟାଇ ନେବା ) ବଧିରେ ( ପ୍ରକାରେ ) ସାଉଁଟି "ସୁଗ୍ରୀବଙ୍କୁ" ଧଇଲା । ବକ୍ଷରେ ( ଗୁଡରେ ) ଲଗାଇ ( ପକାଇ ) ଲେଉଟି ( ଲଙ୍କାକୁ ଲେଉଟିଲା ) । ବେଗେ ( କୁମ୍ଭକର୍ଣ୍ଣ ଯିବ ବେଗରେ ) "ଜାତହେବା" ପବନସୃଷ୍ଟି ସେ ମେଳରେ ( ସେହି କଟକପି ମେଳରେ ) ପ୍ରକଟି ( ପ୍ରକଟିବାରୁ ) ଗୋଳେ ( ସେନାଙ୍କ ମୁଖ ଗହ୍ୱରରେ ) ସେନାଙ୍କ ( ମୂର୍ଚ୍ଛିତ ସୈନ୍ୟଙ୍କର ) ମୂର୍ଚ୍ଛା ( ମୋହ ) ତୁଟି ( ତୁଟିଲା ) ।୧୪।

୧୫ଶ ପଦ—ତା ପଛେ ( କୁମ୍ଭକର୍ଣ୍ଣ ପଛରେ ) ତିମିକ ( ତିମିନାମକ ମାଛକୁ ) କ୍ଷୁଦ୍ରମତ୍ସ୍ୟ ( ଛୋଟ ଛୋଟ ମାଛ ) ବେଷ୍ଟିତି ହେଲପରି ( ବେଢ଼ିଲା ପ୍ରାୟ ) ସ୍ୱଚ୍ଛେ ( ସ୍ୱଚ୍ଛନ୍ଦରେ ) "କପିସୈନ୍ୟ" ବାହାରିଲେ । "ସେମାନେ" ଗଛେ ଗଛେ ବଧୃତ ( ଗୋଟା ଗୋଟା ବୃକ୍ଷ ଧରିଅଛନ୍ତି ) କେହ୍ନ ( କିରୂପେ ) ତାରିବା (ସୁଗ୍ରୀବଙ୍କୁ ଉଦ୍ଧାରିବା) ବାଞ୍ଛେ (ବାଞ୍ଛନ୍ତି) । ରଘୁ ୧ ବତ୍ସେ ( ରାମଙ୍କ

---

୧—ଲୋଲୁପଂ ଲୋଲୁଭଂ ଲୋଲଂ ଲମ୍ପଟଂ ଚ ଚଳାଚଳମିତ ରଭସଃ ।
୧—ବତ୍ସଃ ପୁତ୍ରାଦି ବତ୍ସସ୍ନେହେ ମେଦିନୀ ।

ରନ୍ଧ୍ରବନ୍ଧେ ଯେ । ବୀର ଇନ୍ଦ୍ରେ । ବିଜ୍ଞାନହତେ ଥାଇଁ ବପ୍ରେ । ବଳକ୍ଷ୍ଟେ
ଗଣିବେ ନିକୁନ୍ଧେ । ବିକୋଡ଼ ନାସା ଭୁକ୍ତେ ଶ୍ରୁତି ଛିନ୍ନାଇ ପଛେ
ଅନ୍ତରୀକ୍ଷରେ ଉତପିଞ୍ଜେ ସେ । ୧୫ ।

ବାହୁରେ ଢନକଶା ଚଞ୍ଚୁ ପଦ୍ବରେ ଧରି ଗଣ୍ଡଭେରଣ୍ଡ ସେ ମାଧୁରୀ ।
ବଲ୍ଗୁନ୍ତୁନ୍ତି ହରି ଘାତକ ହୋଇକରି ଆସିଲେ ପରାଏ ଉତ୍ତୁରି ସେ ।
ବଦୁଂପରି । ବାହୁ ପଣ୍ଡୁଚ୍ଛି ରକ୍ତ ଝରି । ବର୍ଷେ କି ଘନ ରକ୍ତବାରି ।
ବିଶୋଉଁ ଅନୁସରି ଯହିଁ କୋଦଣ୍ଡଧାରୀ ପ୍ରଶଂସି କୋଳକୁ ଆଦରି ସେ ॥

---

ନିକଟରେ ) ଯେ ବାର୍ତ୍ତା ( ସୁଗ୍ରୀବକୁ କୁମ୍ଭକର୍ଣ୍ଣ ନେବା ବାର୍ତ୍ତା ) ପ୍ରକଟେ ( ପ୍ରକଟ ହେଲା ) । ବୀର ( ସୁଗ୍ରୀବ ) ବିଜ୍ଞାନହତେ ( ଚେତନା ପାଆନ୍ତେ ) ବପ୍ରେ ( ଅସୁର ଗୃହରେ ) ଥାଇ ଇନ୍ଦ୍ରେ ( ବିଚାରଇ ) ବଳକ୍ଷ୍ଟେ ( ବୀର-ମାନେ ) ନିକୁନ୍ଧେ ( ନିକୃଷ୍ଟବୀର ମଧ୍ୟରେ ) ଗଣିବେ ( ଗଣନା କରିବେ ) । "ଏମନ୍ତ ଭାଳି ସୁଗ୍ରୀବ" ଭୁକ୍ତେ ( ଅଳଙ୍କରେ ) ନାସା ( କୁମ୍ଭକର୍ଣ୍ଣର ନାକକୁ ) ବିକୋଡ଼ ( ଦାନ୍ତରେ କାମୁଡ଼ି ) ଛିନ୍ନାଇ ( ଛିଣ୍ଡାଇ ) ପଛେ ( ତା ପରେ ) ଶ୍ରୁତି ( କୁମ୍ଭକର୍ଣ୍ଣର କାନ ) ଛିଣ୍ଡାଇ ଅନ୍ତରୀକ୍ଷରେ ( ଶୂନ୍ୟମାର୍ଗରେ ) ଉତ୍ପିଞ୍ଜେ ( ଉର୍ଦ୍ଧ୍ୱକୁ ଡେଇଁଗଲା ) । ୧୫ ।

୧୬ଶ ପଦ—ଗଣ୍ଡଭେରଣ୍ଡି "ପକ୍ଷୀ" ଚଞ୍ଚୁ ( ଥଣ୍ଟ ) ପଦେ ( ଦୁଇ ପାଦରେ ) ଢନକଶା ( ଢନଗୋଟା ହସ୍ତିକି ) ଧରି ବାହୁରେ ( ବାହୁରିବା ) ମାଧୁରୀ ( ମାଧୁରୀକି ) ସେ ( ସୁଗ୍ରୀବ ) "ଧରିଲା" । ହରି ( ମର୍କଟ-ମାନେ ) ବଲ୍ଗୁନ୍ତୁନ୍ତି ( ଦେଖି ବିଚାରନ୍ତି ) ଏ ( ସୁଗ୍ରୀବ ) ଘାତକ ( ଘାଉଆ ) ହୋଇ କରି ଉତୁରି ( ଉବୁରି ) ବଦୁଂପରି ( ବିଜୁଳିପରି ) ଆସିଲେ ପରା । "କାହିଁକି ନା" ? ରକ୍ତ ଝରି ବାହୁ ପଡ଼ୁଛି । ଘନ ( ମେଘ ) ରକ୍ତବାରି ( ରକ୍ତମିଶା ଜଳ ) ବର୍ଷେ ( ବୃଷ୍ଟି କରଇ ) କି ? "ସୁଗ୍ରୀବ" ଯହିଁ ( ଯେଉଁଠାରେ ) କୋଦଣ୍ଡଧାରୀ ( ରାମ ) "ଅଛନ୍ତି" "ସେହିସ୍ଥାନ" ଅନୁସରି ( ଖୋଜି ) ବିଶୋଉଁ ( ପାଦତଳେ ପଡ଼ି ଶୁଅନ୍ତେ ) "ରାମଚନ୍ଦ୍ର"

---

୧—ବସ୍ତ୍ର-ଅପଭ୍ରଂଶ ବାକ୍ଷଣବଦର ।

ବାହୁଡ଼ିଲା ଧନୁର୍ଦ୍ଧର ବହି ପ୍ରବଳଲଜ ବହି ପଡ଼ୁଅଛି କ୍ଷତଜ । ବଢ଼ାଇ ଦେଇ ଭୁଜ ଭୁଞ୍ଜେ କପିସମାଜ ନାସା କର୍ଣ୍ଣରନ୍ଧ୍ରରେ ତ୍ୟାଜ ସେ । ବୁଧେ ହେଜ । ବିଜନ୍ୟ ଇନ୍ଦ୍ରଗୋପପୁଞ୍ଜ । ବସୁଧାତଳୁଁ କି ବିରାଜ । ବିକୁକ୍ଷିବଂଶୀ-ରାଜ ଭେଟୁଁ ବନ୍ଧି ନାରାଜ ଛେଦିଦେଲେ ବାହୁ ପାଦ ତେଜ ସେ ।୧୭।

ବିଭୂତି ଯୋଗ ହେବ ଧରେ ସ୍ଥାଣୁବିଭବ ସ୍ମରବ ଭବ ଭଇରବ ବିଭୂଷା ଗତ ଜବ ମାତୃକାନ୍ତ ପ୍ରଭାବ ଗରାସି ଦେଉଅଛି ପ୍ଲବ ସେ ;

---

"ଧୀକ୍ତ" ପ୍ରଶଂସି ( ପ୍ରଶଂସାକରି ) ଆଦରି ( ଆଦର ପୂର୍ବକ ) କୋଳକୁ "ନେଲେ" ( କୋଳକଲେ ) । ୧୬ ।

୧୭ଶ ପଦ—ଧନୁର୍ଦ୍ଧର ( କୁମ୍ଭକର୍ଣ୍ଣ ପ୍ରବଳ ଲଜ ବହି ( ବିଶେଷ ଲଜ୍ଜାପାଇ ) ବାହୁଡ଼ିଲା ( ଫେରିଗଲା ) । ତା ( ତାହାର ) କ୍ଷତଜ ( ରୁଧିର ) ବହି ପଡ଼ୁଅଛି । ଭୁଜ ( ହସ୍ତ ) ବଢ଼ାଇ ଦେଇ କପିସମାଜ ( କପି ସମୂହଙ୍କୁ ) ଭୁଞ୍ଜେ (ଗଳାଇଦିଏ) । "ସେମାନେ" ନାସା କର୍ଣ୍ଣ ରନ୍ଧ୍ରରେ ( କୁମ୍ଭକର୍ଣ୍ଣର ନାକ କାନ ବାଟେ ) ତ୍ୟାଜ ( ବାହାରି ଆସନ୍ତି ) । ବୁଧେ ( ହେ ବୁଧଜନେ ) ହେଜ ( ବିଚାର କର ) ବସୁଧାତଳୁଁ ( ପୃଥିବୀରୁ ) ଇନ୍ଦ୍ରଗୋପପୁଞ୍ଜ (ସାଧବବୋଉ ପୋକ) ବିଜନ୍ୟ (ବହୁତ ଜାତ ହୋଇ) ବିରାଜ କି ( ବିରାଜୁଛନ୍ତି କି ) ? ୦* "କପିମାନେ ନାକ କାନ ରୁଧିରରେ ସ୍ନାନ କରି ବାହାରି ଆସିବାରୁ କବି ଏମନ୍ତ ଉତ୍ପ୍ରେକ୍ଷା କଲେ" । ବିକୁକ୍ଷି-ବଂଶୀରାଜ (ରାମ) ଭେଟୁଁ (ଭେଟନ୍ତେ) ନାରାଜ (ନାରାଚ) ବନ୍ଧି "ପ୍ରଥମେ" କୁମ୍ଭକର୍ଣ୍ଣର ବାହୁପାଦ "ଦୁଇ ଦୁଇ" "ତତ୍ପରେ" ତେଜ ( ଅହଂକାର ) ଛେଦିଦେଲେ । ୧୭ ।

୧୮ଶ ପଦ—"ବାହୁପାଦ ଛେଦିଣ ଛୁଣ୍ଡିବାରୁ" ୧ ସ୍ଥାଣୁ ବିଭବ ( ଲଣ୍ଡ ବୃକ୍ଷ ସମ୍ପତ୍ତି ) ସ୍ଥାଣୁବିଭବ ( ଈଶ୍ୱର ବିଭବକୁ ) ଧରେ ( ବହେ ) ।

---

*—ବିଶାଢ ନାସେଷୁ ବରରଜ୍ଜୁ ଭୂଷିତା: ବିରାଜନେଦ କ୍ଷିତିରିନ୍ଦ୍ରଗୋପକୈରିବ ରିରୁସହାରେ ॥

୧ ସ୍ଥାଣୁର୍ବାନାଧ୍ରୁବଃ ଶଙ୍କୁରିତ୍ୟମରଃ ।
ସ୍ଥାଣୁରୁଦ୍ର ଉମାପତିରିତ୍ୟପି ।

ବହ୍ନିଭବ । ବଦନ ମ୍ଳାନ ତେଜ ଭବ । ବୋଲଇ ମୁଁ ଆନ ଦାନବ । ବନ୍ଧି ବନ୍ଧି ରାଘବ ଯେତେ ତୋ ବାଣ ଥିବ ସେମାନେ ଭଜିବେ ଲାଘବ ସେ ।୧୮।

ବିରାଧ ବାଳୀ ଥିଲେ ଯେ ବନପଶୁ ଭଲେ ଖର ଖର ମୋତେ ଗୁହିଁଲେ । ବୋଲୁଁ ବାଛି ସନ୍ଧିଲେ ରାମ ଶର ବନ୍ଧିଲେ ଯେତେ

ଏଣୁ ୨ ବିଭୂତି ଖେଦ (ପଞ୍ଚାଂଶଭେଦ) ହେବ । ସ୍ୱରବ (ଆପଣାର ଯେଉଁ ରବ) ଭର୍ଗ (କଲା) "ଯେ" ଭବଭୈରବ (ମହାଦେବଙ୍କ ଭୈରବ ସ୍ୱର ପ୍ରାପ୍ତ ହେଲା) । ୩ ମାତୁଳାହ୍ୱ (ବୋଡ଼ାସାପର) ପ୍ରସବ "ପ୍ରାପ୍ତ" ଗତି (ଗମନକୁ) ଜବ (ବେଗରେ) ବିଭୂଷା ହେଲା "ବୋଡ଼ାସାପ ପ୍ରାପ୍ତ ଗତି କଲା ଏହିସବୁ" । ବୋଡ଼ାସାପ ପ୍ଲବ (ବେଙ୍ଗମାନଙ୍କୁ) ଗ୍ରାହକରେ "ଏ କୁମ୍ଭକର୍ଣ୍ଣ" ପ୍ଲବ (କପିଙ୍କି) ଗ୍ରାସି ଦେଉଅଛି (ଗ୍ରାସ କରୁଅଛି) । ବହ୍ନି-ଭବ (ଅଗ୍ନିପ୍ରାପ୍ତି) ତେଜ ଭବ (ତାହାର ଯେଉଁ ତେଜ ଜନ୍ମିଥିଲା ସେ) ବଦନ (ଶୀଘ୍ର) ମ୍ଳାନ (ମଳିନ) ପଡ଼ିଲା । ବୋଲଇ (ଏମନ୍ତ ହୋଇ ମଧ୍ୟ ସେ କୁମ୍ଭକର୍ଣ୍ଣ ରାମଙ୍କୁ ବୋଲଇ) ମୁଁ ଆନ ଦାନବ "ନୁହଇ" ହେ ରାଘବ ତୋ (ତୋହର) ଯେତେ ବାଣ ଥିବ "ତାହା ସବୁ" ବନ୍ଧି ବନ୍ଧି* "ଯେତେ ବାଣ ବନ୍ଧିବୁ ସେ ସବୁ ଲାଘବ (ଲଘୁତାକୁ) ଭଜିବେ । ୧୮ ।

୧୯ଶ ପଦ—"ପୂର୍ବେ କହିଲି" ବିରାଧ, ବାଳୀ "ଯେ" ଥିଲେ ସେ "ଦୁହେଁ" ବନପଶୁ ଭଲେ (ବଣପଶୁପ୍ରାୟ), "ଆଉ" ଖର (ଖରରାକ୍ଷସ) ମୋତେ ଗୁହିଁଲେ ଖର (ଗର୍ଦ୍ଦଭପରି) "ଏହାଙ୍କୁ ମାଜି ଗାରଗର୍ବ ନକର ଏହି ଭାବ" । ବୋଲୁଁ (କୁମ୍ଭକର୍ଣ୍ଣ ଏମନ୍ତ ବୋଲନ୍ତେ) ବାଛି (ବାଛିକରି) ଶର ସନ୍ଧିଲେ (ଧନୁରେ ଯୋଚିଲେ)। "ଏରୂପେ" ଯେତେ ଶର ବନ୍ଧିଲେ ତା ଶିର ନ ଛେଦିଲେ (କେହି ତାହାର ଶିର କାଟି ନ ପାରିଲେ) । "ସେ ଶର ସବୁ" ଶିଳେ (ପାଷାଣରେ) ଫୁଟିଲେ ବିଘାତ ଯଥା ତଥା ବିଭଜିଲେ

୨ ବିଭୂତି ଭସ୍ମ ସମ୍ପଦୋରପି ନାମମାଳା ।

୩ ମାଳୁଧାନୋ ମାତୁଳାହିର୍ଭ୍ୟମରଃ ।

* ଏଠାରେ ଉନ୍ନତାର୍ଥେ ବୀପ୍ସା ହେଲା ।

ତୀର ନ ଛେଦିଲେ ସେ । ବିଭଞ୍ଜିଲେ । ବିଘାତ ଶିଳେ ଯଥା ଫୁଟିଲେ । ବିସ୍ମୃ ମାନସ ହୋଇଲେ । ବିଷ୍ଟୁ ଅରି ଭଜିଲେ ଅର୍ଦ୍ଧଚନ୍ଦ୍ରର ଛିଳେ ଗୁପ୍ତ ହେକି ପ୍ରୟୋଗ କଲେ ସେ ।୧୯।

ବସିଲା ଗଳେ ଗୁଣ୍ଡ ଗଳିଗଲା ପ୍ରଚଣ୍ଡ ରବେ ବୁଲିଲା ଜାଣି ମୁଣ୍ଡ । ତାଙ୍କ ପୁଣି ସେ କାଣ୍ଡ କଲା ତାକୁ ଦ୍ୱିଖଣ୍ଡ ଫାଳେକ ପଡ଼ି ଭରତଖଣ୍ଡେ ସେ । ବାରିକୁଣ୍ଡ । ବିପକ୍ଷତଟରେ ଆରଖଣ୍ଡ । ବରଣ ନାମେ ମେଘଦଣ୍ଡ । ବହିଲା ତାରେ ଦଣ୍ଡ କହିଲେ ଗୁରୁ-ତୁଣ୍ଡ ଶୁଣି ବେଦନେ ଦଶମୁଣ୍ଡ ସେ ।୨୦।

ବାଚକ ଉଠି ମହାପାରୁଶ ଦେଖି ତାହା କିପାଇଁ ହେଉଛନ୍ତି ଉତ୍ସାହା । ବିଖନ ହେଲେ ସାହା ଲେଖନ ଥିବ ଯାହା ପୋଛୁ ମାରିବ ରଘୁନାହା ସେ । ବଂଶବାହା । ବୋଲେ ବୋଲିବ ମୁହଁ କାହା ।

---

(ଛଅଟିରେ ଫୁଲ ବାଜିଲେ ଯେପରି ଝଡ଼ିପଡ଼େ ସେହିପରି ଝଡ଼ିପଡ଼ିଲେ ) । "ଏହା ଦେଖି ରାମ" ବିସ୍ମୃତମାନସ ( ବିସ୍ମିତମନା ) ହୋଇଲେ । ଭଜିଲେ ( ପ୍ରାପ୍ତ ) ଅର୍ଦ୍ଧଚନ୍ଦ୍ରର ଛିଳେ ବିଷ୍ଟୁଅରି ( ବିଷ୍ଟୁଚକ୍ର ) ଗୁପ୍ତ ( ମର୍ମସ୍ଥାନ ) ହେକି ପ୍ରୟୋଗ କଲେ । ୧୯ ।

୨୦ଶ ପଦ—"ସେ ଶର" ଚାଣ୍ଡ ( ବେଗରେ ) ଗଳେ ( ଗଳାରେ ) "ଯାଇ" ବସିଲା "ପୁଣି" ଗଳିଗଲା ମୁଣ୍ଡ ପ୍ରଚଣ୍ଡ ରବେ ( ଘୋରଧ୍ୱନିକରି ) ବୁଲିଲା ( ଭ୍ରମିଲା ) ଜାଣି ( ଏହା ଜାଣିପାରି ) ପୁଣି ସେ କାଣ୍ଡ ( ଶର ) ତାକୁ ଦ୍ୱିଖଣ୍ଡ ( ଦୁଇଫାଳ ) କଲା, ଫାଳେକ (ଫାଳେ) ଭରତଖଣ୍ଡେ (ଭରତଖଣ୍ଡରେ) ପଡ଼ି ବାରିକୁଣ୍ଡ ( ଜଳେନ୍ଦୀସରୋବର ) ହେଲା । ଆର ଖଣ୍ଡ (ଫାଳ) ମେଘଦଣ୍ଡ ନାମେ ବରୁଣ ( ପାଶେଞ୍ଚ ) ତାରେ (ତାଉପରେ ପଡ଼ି) ଦଣ୍ଡବହିଲା "ମେଘଦଣ୍ଡ ପାଶେଞ୍ଚକୁ ଖଣ୍ଡିଦେଲା ଏହିଭାବ" । ଗୁରୁ ( ତାରମନେ ) ତୁଣ୍ଡ ହୋଇ "ରାବଣ ଗ୍ରାମରେ ଏମନ୍ତ" କହିଲେ, ଶୁଣି ଦଶମୁଣ୍ଡ ( ରାବଣ ) ବେଦନେ ( ବେଦନାକଲା ) ; ୨୦ ।

୨୧ଶ ପଦ—ତାହା ( ରାବଣ ବେଦନାକରିବା ) ଦେଖି ମହାପାରୁଶ ( ମହାପାର୍ଶ୍ୱ ରାକ୍ଷସ ) ଉଠି ବାଚକ ( କହିଲା ) କିପାଇଁ ଉତ୍ସାହା (ନିରୁତ୍ସାହ)

ବିପକ୍ଷେ ବେଗେ କର ତାହା । ବମାନ ବୋଲୁଁ ବାହା ପଞ୍ଚସୋଦର
ସ୍ନେହା ନୋହେ ତାଙ୍କ ପ୍ରତିଜ୍ଞା କୁହା ସେ ।୨୧।

ବିଗତ ଦେବାନ୍ତକ ତ୍ରିଶିର ନରାନ୍ତକ ମହୋଦର ଅତିକାୟକ ।
ବଜ୍ରକବଚ ଧୃକ ଭଲ୍ଲ ଗଦା ଶାୟକ କାର୍ମୁକ ଶକତି ସାୟକ ସେ ।
ବୀରତାକ ! ବଳହିଁ ଚଳେ ଅସଂଖ୍ୟକ ବାହ ଗଜ ରଥ ପଦକ ।
ବାଜେ ବାଦ୍ୟ ଅନେକ ଉସନ୍ନ ନାଗ-ନାକଲୋକରେ ସ୍ଥିତ ଯେତେ
ଲୋକ ସେ ।୨୨।

---

ହେଉଛ । ୧ ବିଖନ ( ବ୍ରହ୍ମା ) "ତାଙ୍କ" ସାହା ( ସହାୟ ) ହେଲେ
( ହୋଇ ) ଯାହା ଲେଖନ (ଲେଖି) ଥିବ "ତାହା" ପୋଛ (ଲିଭାଇଦେଇ)
ସେ ରଘୁନାହା ( ରଘୁନାଥଙ୍କୁ ) ମାରିବ । "ଏମନ୍ତ ଶୁଣି" ବଂଶବାହା (ରାବଣ)
ବୋଲେ ମୁହିଁ କାହା ( କଣ ) ବୋଲିବ ( କହିବ ) ବିପକ୍ଷେ (ଶତ୍ରୁଠାରେ)
ବେଗେ ତାହା ( ସେହିକଥା ) କର । "ରାବଣ କଥାଶୁଣି ମହାପାର୍ଶ୍ୱ"
ବମାନ ବାହା ବୋଲୁଁ ( ବୋଲନ୍ତେ ) ସ୍ନେହା ( ସ୍ନେହଯୁକ୍ତ ହୋଇ ) ପଞ୍ଚ
ସୋଦର ( ପାଞ୍ଚଭାଇ ) ତାଙ୍କ ପ୍ରତିଜ୍ଞା କୁହା ନୋହେ । "ଅନେକ ପ୍ରତିଜ୍ଞା
କଣ ସଜହେଲେ ଏହି ଭାବ" । ୨୧ ।

୨୨ଶ ପଦ—ଦେବାନ୍ତକ ତ୍ରିଶିର ନରାନ୍ତକ ମହୋଦର ଅତିକାୟକ
( ଅତିକାୟ ) "ଏ ପାଞ୍ଚଭାଇ ମହାପାର୍ଶ୍ୱ ସଙ୍ଗେ" ଭଲ୍ଲ ଗଦା ସାୟକ (ଖଡ୍ଗ)
ଶକତି (ଶକ୍ତି) କାର୍ମୁକ ( ଧନୁ ) ସାୟକ ( ଶର ) ବଜ୍ରକବଚ ଏମାନ ଧୃକ
(ଧର) ବିଗତ ( ଗଲେ ) । ଅସଂଖ୍ୟକ ( ଅପ୍ରମିତ ) ବଳହିଁ ( ସୈନ୍ୟମଧ୍ୟ )
ବୀର ତାକ "ଦେଇ" ଚଳେ । ବାହ ( ଅଶ୍ୱ ) ଗଜ ରଥ ପଦାକ ( ପଦାତି )
"ଏରୂପେ ଚତୁରଙ୍ଗ ବଳ" ଚଳେ । ଅନେକ ବାଦ୍ୟ ବାଜେ, ନାଗ -ନାକ
ଲୋକରେ ( ପାତାଳ ସ୍ୱର୍ଗ ଭୁବନରେ ) ସ୍ଥିତ ଯେତେଲୋକ "ସେମାନେ"
ଉସନ୍ନ ( ଭୀତ ) "ହେଲେ" । ୨୨ ।

---

୧—ବିଖନ ଶବ୍ଦ ବ୍ରହ୍ମାଙ୍କୁ କହନ୍ତି । ତଦୁକ୍ତଂ ଦଶମସ୍କନ୍ଧେ ବିଖନସାର୍ଥିତୋ
ବିଶ୍ୱଗୁପ୍ତୟେ ଇତି

ବର୍ମ୍ମେ ଓଗାଳି ମାଳ କରନ୍ତ ରଣେଗୋଳ ଅଙ୍ଗଦ ହନୁମନ୍ତ ମେଳ । ବୃକ୍ଷସାର ଅଚଳ ଋଷଭ ମହାବଳ ଘେନ ହେଲ ସମର ଶୀଳ ସେ । ବୃଷ୍ଟି ଶିଳ । ବାଣ ପରିଘ ଭଲ୍ଲ ଶୂଳ । ବାଳିସୁତ ପ୍ରହାରି ଶାଳ । ବାଜିଲା ହୃଦସ୍ଥଳ ନରାନ୍ତକ ଆକୁଳ ଗଜୁଁ ପଡ଼ିଲା ମହୀତଳ ସେ ।୨୩।

ବାମେ ସେହି ବାରଣ ଧରିଣ ପ୍ରହାରଣ ଲଭିଲେ ଦୁସ ବେନି ମରଣ । ବନ୍ଧିଲା ମୋହବାଣ ଦେବାନ୍ତକ ଦେଖିଣ ବାଳିନନ୍ଦନ ଜ୍ଞାନକ୍ଷୀଣ ସେ । ବ୍ରଣଗଣ । ବଣିଖେ କଲେ ସମୀରଣ । ବପ୍ତା ଯା ତାର ଶରୀରେଣ । ବଡ଼ଗ୍ରାବେ ମାରଣ ଗୁଣ୍ଡା ହେଲା ତକ୍ଷଣ ଅସ୍ଥି ସହ ରକ୍ଷନପୁଣ ସେ ।୨୪।

୨୩ଶ ପଦ—ବର୍ମ୍ମେ ( ବାଟରେ ) ମାଳ "କପି" ଓଗାଳି ରଣେଗୋଳ କରନ୍ତେ ଅଙ୍ଗଦ ହନୁମାନ ମେଳ ( ଏଦୁହେଁ ଯାଇଁ ମିଶିଲେ ) । ମହାବଳ ( ଅତି ବଳବନ୍ତ ) ଋଷଭ "କପି" ବୃକ୍ଷସାର (ବଡ଼ବୃକ୍ଷ) ଅଚଳ (ପର୍ବତ) ଘେନ ସମରଶୀଳ ହେଲ ( ଯୁଦ୍ଧକଲା ) । "ସେଠାରେ" ଶିଳ ( ପଥର ) ବାଣ ପରିଘ ଭଲ୍ଲ ଶୂଳ "ଏମାନ" ବୃଷ୍ଟି "ହେଲା" । ବାଳିସୁତ ( ଅଙ୍ଗଦ ) ଶାଳ "ବୃକ୍ଷ" ପ୍ରହାରୁଁ (ପ୍ରହାରକରନ୍ତେ) ନରାନ୍ତକ ହୃଦସ୍ଥଳ ( ଛାତିରେ ) ବାଜିଲା । "ତେଣୁ" ସେ ଆକୁଳ ( ବ୍ୟାକୁଳରେ ) ଗଜୁଁ ( ଗର୍ଜନ୍ଦପକୁଥିବି ) ମହୀତଳେ (ଭୂମିରେ ) ପଡ଼ିଲା । ୨୩ ।

୨୪ଶ ପଦ—ସେହି ବାରଣ ( ହସ୍ତୀକି ) "ଅଙ୍ଗଦ" ବାମେ ( ବାମହସ୍ତରେ ) ଧରିଣ ( ଧରି ) ପ୍ରହାରଣ ( ନରାନ୍ତକ ଉପରେ ପ୍ରହାରନ୍ତେ ) ଦୁସ ବେନି ( ସେ ଦୁହେଁ ) ମରଣ ଲଭିଲେ । ଦେବାନ୍ତକ ଦେଖିଣ (ତାଦେଖି) ମୋହ ବାଣ ବନ୍ଧିଲା । ବାଳିନନ୍ଦନ ( ଅଙ୍ଗଦ ) ଜ୍ଞାନକ୍ଷୀଣ ( ଅଚେତନ ) ହେଲା । ଯାହାର ବପ୍ତା ( ବାପ ) ସମୀରଣ (ପବନ) "ତାହାର" ଶରୀରେଣ ( ଶରୀରରେ ) ବଣିଖେ ( ବାଣଦ୍ୱାରା ) ବ୍ରଣଗଣ ( କ୍ଷତ ସମୂହ ) କଲା । "ଆମୋର ଦେବାନ୍ତକ ହନୁମାନ ଦେହମାନ କଣ୍ଟିଆ କରିଦେଲା ଏହାଭାବ" ହନୁମାନ ଯୁଦ୍ଧହୋଇ ବଡ଼ ଗ୍ରାବେ ( ପଥର ଏକ ) ମାରଣ ( ଫୋପାଡ଼ିଲା ) "ତହିଁରେ" ରକ୍ଷନପୁଣ ( ଦେବାନ୍ତକ ) ଅସ୍ଥି ସହ ( ହାଡ଼ସହିତ ) ତକ୍ଷଣ ( ସେହିକ୍ଷଣି ) ଗୁଣ୍ଡା ( ଚୂନା ) ହେଲା । ୨୪ ।

ବାଣେ ଦହି । ବଳାଷ୍ଟ ଅତିକାୟ୍ୟ ଗୃହିଁ । ବାତଜାଦ ନ ପାତରେ ରହି ।
ବାନର ସୈନ୍ୟ ତହିଁ ସିନ୍ଧୁ ମନ୍ଦର ସେହି ବରଜେ ଧନୁବର ଅହି ସେ ॥
ବିଷୟୁ ଯେ ବିଷମ ବିଷ ହେଲା ଜନମ ପ୍ରଜ୍ୱଳତରେ ଅନୁପମ ।
ବିଳୀନକୃତେ କ୍ଷମ ରାମ-ଅନୁଜ ଭୀମ ଆସି ସେ ଆଗେ ତା ବିଶ୍ରାମ ସେ ।
ଖରେତ୍ତମ । ବାତାଦ୍ୟ ଦେବ-ଗିରେ ପ୍ରେମ । ବ୍ରହ୍ମାସ୍ତ୍ର ଅଞ୍ଜଳି ସୁକ୍ଷମ ।
ବଶୀଷ୍ଟି କଲେ କାମ ସଞ୍ଜ୍ୱର ଗଙ୍ଗା ହିମକର କୀର୍ତ୍ତି ଭୂଷଣେ ରମ୍ୟ ସେ ॥

ସେହି ( ଅତିକାୟ ) ମନ୍ଦର "ପର୍ବତତୁଲ୍ୟ" ବିରାଜେ, ଧନୁବର ( ତାହାର ଶ୍ରେଷ୍ଠ ଧନୁ ) ଅହି ( ବାସୁକି ) "ହେଲା" "ଦେବାସୁର ଯୁଦ୍ଧେ ବାସୁକିଙ୍କି ରଜ୍ଜୁ କରି ମନ୍ଦର ପର୍ବତରେ ସିନ୍ଧୁ ମନ୍ଥିଲାପ୍ରାୟେ ଅତିକାୟ ବାନରସୈନ୍ୟ ମନ୍ଥିଲା ଏହି ଅଭିପ୍ରାୟ"। ୨୬ ।

୨୭ଶ ପଦ—ବିଷୟୁ ଯେ ( ଯୁଦ୍ଧ ବିଷୟ ) "ସେ" ବିଷମ ବିଷ "ରୂପେ" ଜନମ ( ଜନ୍ମ ) ହେଲା । "ସେ ଯୁଦ୍ଧବିଷ" ପ୍ରଜ୍ୱଳତରେ ଅନୁପମ "ହେଲ" । "ଘୋର ଯୁଦ୍ଧାନଳ୍ଲ ଜଳି ଉଠିଲା ଏହି ଭାବ" । "ସିନ୍ଧୁଜାତ ବିଷ ଶିବ ଗ୍ରାସ କରିଥିଲେ ଏଠି କପି-ସିନ୍ଧୁ ଜାତ ଯୁଦ୍ଧ ବିଷକୁ" ବିଳୀନ କୃତେ ( ବିଳୀନ କରିବା ନିମିତ୍ତ ) କ୍ଷମ ( ସମର୍ଥ ) ରାମ ଅନୁଜ ( ଲକ୍ଷ୍ମଣ ) ଭୀମ ( ମହାଦେବ ତୁଲ୍ୟ ) ଆସିଣ ( ଆସିକରି ) ତା ଆଗେ ( ସେହି ଯୁଦ୍ଧ ବିଷ ଆଗରେ ) ବିଶ୍ରାମ କଲେ ( ଠିଆ ହେଲେ ) । ସେ ଖରୋତ୍ତମ ( ଲକ୍ଷ୍ମଣ ) ବାତ ( ପବନ ) ଆଦ୍ୟ ( ପ୍ରଭୃତି ) ଦେବ ( ଦେବତାମାନଙ୍କ ) ଗିରେ ( କଥାରେ ) ପ୍ରେମ "ହୋଇ" ବ୍ରହ୍ମାସ୍ତ୍ର ( ବ୍ରହ୍ମଶରକୁ ) ଅଞ୍ଜଳି ( କର ଆଞ୍ଜୁଳିରେ ) ସୁକ୍ଷମ ( ସୁନ୍ଦର ) "କଲେ" । କାମ ( ବିଚେଷ୍ଟାରେ ) ସଂଜ୍ୱର ( ଯୁଦ୍ଧ ସନ୍ତାପକୁ ) ବଶୀଷ୍ଟି କଲେ ( ସଂହାରିଲେ ) । ଗଙ୍ଗା ହିମକର ( ଚନ୍ଦ୍ର ) ତୁଲ୍ୟ କୀର୍ତ୍ତି ଭୂଷଣେ ( ଜାତହେବା ଯଶରେ ଭୂଷିତ ହୋଇ ) ରମ୍ୟ ( ସୁନ୍ଦର ) "ଦିଶିଲେ" । "ଶିବ ଦେବତାଙ୍କ କଥାରେ ଅଞ୍ଜଳିରେ ଗ୍ରାସକରି ବିଷ ସନ୍ତାପ ହରିଥିଲେ ଏବଂ କାମକୁ ଭସ୍ମକରି ଯଶ ରଖିଥିଲେ, ଗଙ୍ଗା ଆଉ ଚନ୍ଦ୍ରକୁ ଧାରଣ କରିଥିଲେ, ତଦ୍ରୂପ ଲକ୍ଷ୍ମଣ ପବନ ଦେବତାଙ୍କ କଥାରେ ବ୍ରହ୍ମାସ୍ତ୍ରମାରି ଯୁଦ୍ଧ ସନ୍ତାପହରି ରାକ୍ଷସର କାମନା ଦୂରକରି କୀର୍ତ୍ତି ବିସ୍ତାରକଲେ ଏହି ଫଳିତାର୍ଥ" । ୨୭ ।

ବାହୁନି କାନ୍ଦେ ଗୁଣ ଶ୍ରବଣରେ ରାବଣ କୁରର ପରାଏ ପ୍ରମାଣ ।
ବିଷାଦ ଅସହଣ କରେଣ ହସ୍ତଭରିଣ ଶରାରି ଝମକ୍କ କୃପାଣ ସେ ।
କବାଲେ ତ୍ରାଣ । ବନ୍ଧୁଁ ମୁଁ ଘୋରତମ ବାଣ । ବଧିରେ ସେ ରାମ ଲକ୍ଷ୍ମଣ ।
ଯିବେ ତ୍ରାସନ୍ତେ ତ୍ରାଣ ଏବେ ହେବେ ଚର୍ବଣ ମ୍ଳାନ ଭଜିବେ ଋକ୍ଷଗଣ
ସେ । ୨୮ ।

ବଟତଳରେ ହୋମେ ରଥ ଜନ୍ମାଇ ରମ୍ୟ ଖ୍ୟାତ ଦେବଦଳନ
ନାମେ । ବୈଜୟନ୍ତୀ ବ୍ୟୋମେ ଦଗଦହନେ ଭ୍ରମେ ଦେଖି ପଡ଼ିବେ

---

୨୮ ଶବ୍ଦାର୍ଥ—ଶ୍ରବଣରେ ( ଦୂତମୁଖରୁ ତାହାଙ୍କ ମୃତ୍ୟୁ ଶୁଣି ) ରାବଣ ଗୁଣ ( ତାହାଙ୍କ ଗୁଣମାନ ) ବାହୁନି ୧କୁରର "ପକ୍ଷୀ" ପରାଏ ( ପ୍ରାୟ ) କାନ୍ଦେ ( କାନ୍ଦିଲା ) ପ୍ରମାଣ (ଏ କଥା ସତ୍ୟ ) । "ବାପର" ବିଷାଦ ଅସହଣ ( ସହି ନ ପାରି ) କରେଣ ( କରରେ ) ହସ୍ତ ଭରିଣ ( ହାତଦେଇ ) ଶରାରି ( ଇନ୍ଦ୍ରଜିତ ) କୃପାଣ ( ଖଡ୍ଗ ) ଝମକ୍କ ( ଝମକାଇ ) ତ୍ରାଣ "କର" ବୋଲେ ଘୋର ( ଭୟଙ୍କର ) ତମବାଣ ( ରାହୁରୂପ ଅନ୍ଧାର-ବାଣ ) ମୁଁ ବନ୍ଧିଁ ( ବାନ୍ଧିଲେ ) ବଧିରେ ( ବଧିରେତ ) ସେ ରାମ ଲକ୍ଷ୍ମଣ ( ମୃଗାଙ୍କ-ଚନ୍ଦ୍ର ) ହେଲେ "ତାଙ୍କୁ" ତ୍ରାସନ୍ତେ ( ତ୍ରାସକଲେ ମଧ୍ୟ ) ସେ ୨ତ୍ରାଣ ଯିବେ ( ରକ୍ଷାପାଇ ଯାଉଛନ୍ତି ) ଏବେ ଚର୍ବଣ ହେବେ ( ମୋ ବାଣ ଏବେ ଚୋବାଇ ଖାଇ ଦେବେ ) । ଋକ୍ଷଗଣ ( ନକ୍ଷତ୍ରଗଣ ରୂପକ ଭଲ୍ଲୁକଗଣ ) ମ୍ଳାନ ଭଜିବେ ( ମଳିନ ଦିଶିବେ ) । ୨୮ ।

୨୯ଶ ପଦ—"ଇନ୍ଦ୍ରଜିତ ଏମନ୍ତ ପ୍ରତିଜ୍ଞାକରି" ବଟତଳରେ (ନିକୁମ୍ଭିଳା ବଟମୂଳରେ ) ହୋମେ ( ହୋମ କରିବାରେ ) ରମ୍ୟ ( ସୁନ୍ଦର ) ଦେବଦଳନ ନାମେ ଖ୍ୟାତ "ଯେଉଁ" ରଥ "ତାହା" ଜନ୍ମାଇ ( ଜାତ-କରାଇଲା ) । "ସେ ରଥରେ" ଦଗଦହନେ ( ଦଗ ଦହନ ନାମକ ) ବୈଜୟନ୍ତୀ ( ବୈଜୟନ୍ତୀ ପତାକା ). ବ୍ୟୋମେ ( ଆକାଶରେ ) ଭ୍ରମେ ( ଉଡ଼ଇ ) । ଦେଖି ( ଦେଖିଲେ ) ପର ( ଶତ୍ରୁମାନେ ) ଝାମେ

---

୧—ଉତ୍କ୍ରୋଶକୁରରୌ ସମାବିତ୍ୟମରଃ ।

୨—ତ୍ରାଣଂ ତ୍ରାତଂ ରକ୍ଷିତମବିତଂ ଗୋପାୟିତଂ ଗୁପ୍ତମିତ୍ୟମରଃ ।

ହରଷାରେ ହିଂସା । ମାର ଗରେ । ବିଜୟୀ ତୂଣ ଅଭିରାମେ । ବାନ୍ଧି ଦକ୍ଷିଣେ ଧନୁ ବାମେ । ବନ୍ଧୁବଳ ସଙ୍ଗମେ ଲକ୍ଷିତ ଲକ୍ଷ ସମେ ପ୍ରବେଶ ହୋଇଲେ ସଂଗ୍ରାମେ ସେ ।୨୧।

ଦଳ ଉଭୟୁ ବାଦେ କେ ପ୍ରାବୃଟ ସମ୍ପଦେ କେ ତହୁଁ ଲକ୍ଷିତ ଶରଦେ । ବିପୁଳ ମେଘନାଦେ ଘନାଘନ ଆସ୍ପଦେ ବଢ଼େ ନିଶାଚର

( ହାମଯାଉ ) ଧଡ଼ନ୍ତେ । ଅଭିରାମେ ( ନାଗମାନଙ୍କରେ ସୁନ୍ଦର ) ବିଜୟୀ "ନାମକ" ୧ ତୂଣ ( ତୂଣୀର ) ଦକ୍ଷିଣେ ( ଦକ୍ଷିଣରେ ) ବାନ୍ଧି ଧନୁ ବାମେ ( ବାମହସ୍ତରେ ) ଧରି ମାର ( କନ୍ଦର୍ପ ) ଗରେ ( ବାହାରିଲେ ) । ବନ୍ଧୁବଳ ( ବନ୍ଧୁଙ୍କ ସୈନ୍ୟ ) ସଙ୍ଗମେ ( ସଙ୍ଗରେ ) ଲକ୍ଷିତ ହୋଇ ( ଯେକ ) ସମେ ଲକ୍ଷ ( ସମ ତୁଲ୍ୟ ) ସଂଗ୍ରାମେ ପ୍ରବେଶ ହୋଇଲେ । ୨୧ ।

ବିଂଶ ପଦ—ତହିଁ ( ସେ ଯୁଦ୍ଧଭୂମିରେ ) ଉଭୟ ଦଳ ବାଦେ ( ଦୁଇ ଥାଟଙ୍କ ବିବାଦରେ ) କେ (କେଉଁ ଦଳ) ୧ ପ୍ରାବୃଟ ସମ୍ପଦେ (ବର୍ଷାକାଳରେ) ଲକ୍ଷିତ "ହେଲା" କେ ( କେଉଁ ଦଳ ) ଶରଦେ ( ଶରଦ ଋତୁସଙ୍ଗେ ) ଲକ୍ଷିତ "ହେଲା" । "ଇନ୍ଦ୍ରଜିତର ଦଳ ବର୍ଷାକାଳ ତୁଲ୍ୟ" "ଯହିଁରେ" ବିପୁଳ ( ବଡ଼ ) ମେଘନାଦେ ୨ ( ଇନ୍ଦ୍ରଜିତ-ମେଘଗର୍ଜନ ) ଘନାଘନ ( ମତ୍ତ ଘାତୁକ କୁଞ୍ଜର-ବର୍ଷୁକ ମେଘ ) ଆସ୍ପଦେ ( ଆଶ୍ରୟ ହୋଇଛି ) ୩ ନିଶାଚର ( ରାକ୍ଷସଙ୍କର-ଜମ୍ବୁକ ସର୍ପାଦିଙ୍କର ) ସମ୍ପଦେ ( ଶ୍ରୀ ) ବଢ଼େ ( ବଢ଼ଇ ) । "ରାମଙ୍କ ଦଳ ଶରଦ ଋତୁତୁଲ୍ୟ" "ଯହିଁରେ" ବିଶାରଦେ ( ପ୍ରଗଲ୍‌ଭରେ ) ବିଶଦେ ( ନିର୍ମଳ-ଶୁଭ୍ର ) ରାମଚନ୍ଦ୍ର ( ରଘୁନାଥ-ରମଣୀୟ-ଚନ୍ଦ୍ର ) ଉଦେ ( ଉଦୟ ହୋଇଛନ୍ତି ) । ୪ ଦ୍ୱିଜ (କପିଙ୍କର-* ଶୁକପକ୍ଷିଙ୍କର)

୧—ତୂଣୋପାସଙ୍ଗ ତୂଣୀରନିଷଙ୍ଗା ଇତ୍ୟମରଃ ।

୧—ସ୍ତ୍ରିୟାଂ ପ୍ରାବୃଟ୍ ସ୍ତ୍ରିୟାଂ ଭୂମି ବର୍ଷା ଅଥ ଶରତ୍ ସ୍ତ୍ରିୟାଂ ଇତ୍ୟମରଃ ।

୨—ଘନାଘନୋ ବର୍ଷୁକାବ୍ଦେ ମତ୍ତଘାତୁକ କୁଞ୍ଜରେ ଶକ୍ରେ ଇତି ବିଶ୍ୱଃ ।

୩—ନିଶାଚରସ୍ତୁ ରକ୍ଷସି । ଫେରୁ ପେଚକ ସର୍ପେଷୁ ଇତି ମେଦିନୀ ।

୪—ଦ୍ୱିଜାହ୍ୱ କପିଭେକେଷୁ ହରି ନା କୀର୍ତ୍ତିଲେ ବିଷ୍ଣୁ ଇତ୍ୟମରଃ ।

* ଶୈଳିକୀଳା ପରିପକ୍ୱ ହେଲେ ଶୁକପକ୍ଷୀମାନେ ବିନୋଦ କରନ୍ତି-ତଦୁକ୍ତଂ ଋତୁସଂହାରେ-ଆପକ୍ୱଶାଳିରୁଚିରା ତନୁଗାତ୍ରଯଷ୍ଟିଃ ପ୍ରାପ୍ତା ଶରନ୍ନବବଧୂରିବ ରୂପରମ୍ୟା ।

ସମ୍ପଦେ ସେ । ବିଶାରଦେ । ବିଷଦେ ରାମଚନ୍ଦ୍ର ଉଦେ । ବିରାଜିତ ହରି ବିନୋଦେ । ବିକଶିତ କୁମୁଦେ ନଳିନୀ ପ୍ରମୋଦେ ଦୁହେଁ ରୁଚିର ଶରଭେଦେ ସେ ।୩୦।

ବାନ୍ଧି ନାଶିଲା କଶା ବୋଲାଇ ଯେ କେଶରୀ ଗବୟ ହୟଙ୍କୁ ବିଦାରି । ବିଧାରେ ହନୁ ଚୂରି ହନୁମାନ ପ୍ରସରି ରଥୀମାନଙ୍କେ କ୍ଷୋଧ ଭରି ସେ । ବାଳଧରି ବେଗେ ଅଙ୍ଗଦ ଅଙ୍ଗ ଟରି । ବିଜାନ ସାଦ-

---

ବିନୋଦେ (ବିହାରରେ) ବିରାଜିତ ( ଶୋଭିତ ) । * ନଳିନୀ ପ୍ରମୋଦେ (ନଳପଦ୍ମ—"ଶୁକ୍ଳବର୍ଣ୍ଣରେ" ପ୍ରମୋଦକାଶ †—ପଦ୍ମର ବୃଦ୍ଧ ଆମୋଦରେ) କୁମୁଦେ ( କୁମୁଦ ନାମା ଜଳଫୁଲରେ—କଇଁଫୁଲରେ ) ବିକଶିତ ( ଶୋଭିତ ) ଦୁହେଁ ( ଦୁଇଦଳ ) ୬ ଶର (କାଣ୍ଡର ) ଭେଦରେ "ତରୁଣିଲ ନିର୍ଗୁଣ-ଭେଦରେ" ରୁଚିର ( ମନୋହର ) କିମ୍ବା—ଦୁହେଁ ( ଦୁଇଟିରୁ ) ଶର ( ଜଳ ) ଭେଦରେ "ବର୍ଷାକାଳରେ ଜଳ ଆବିଳ ଶରଦରେ ଜଳ ନିର୍ମଳ ଏହି ଭେଦରେ" ରୁଚିର ( ସୁନ୍ଦର ) । ୩୦ ।

୩୧ଶ ପଦ— ୧କେଶରୀ ବୋଲାଇ ଯେ ( ଯେଉଁ ବାନର ) "ସେ କେଶରୀ" ( ସିଂହହେଲା ) । କଶା ( ହସ୍ତିମାନଙ୍କୁ ) ବାନ୍ଧି ( ବାନ୍ଧିକରି ) ନାଶିଲା । ଗବୟ "ବାନର" ଗବୟ ( ବସ୍ତୁଳ ପାଯୁହୋଇ ) ହୟଙ୍କୁ ( ଘୋଡ଼ାମାନଙ୍କୁ ବାନ୍ଧି ) ବିଦାରି ( ବିଦାରିଲା ) । ହନୁମାନ୍ ପ୍ରସରି ( ଧାଇଁଯାଇ ) ରଥୀମାନଙ୍କେ ( ରଥୀମାନଙ୍କଠାରେ ) କ୍ଷୋଧଭରି ( କୋପ-କରି ) ବିଧାରେ ହନୁ ( ସେମାନଙ୍କ ଗାଲ ) ଚୂରି ( ଚୂର୍ଣ୍ଣ କରିଦେଲା ) । ଅଙ୍ଗଦ ବେଗେ ବାଳଧରି ଅଙ୍ଗ ଟରି ସାଦଗଣ ( ସିପାଇମାନଙ୍କୁ ) *ବିଜାନ

---

୫—ନଳିନଂ କମଲେ ଜଳେ ଇତି ମେଦିନୀ ।

†—ଜଳ ଶୁକ୍ଳବର୍ଣ୍ଣରେ ବର୍ଣ୍ଣିତ ହୁଏଁ । ତଦୁକ୍ତଂ କବିକଳ୍ପଲତାୟାଂ—
ସମାନ୍ୟଗ୍ରହଣେ ଶୌକ୍ଲ୍ୟଂ ଛଦାମ୍ଭଃ ପୁଷ୍ପବାସସାମିତି ।

୬—ଶରଂ ନୀରେ ଶରଃ କାଣ୍ଡେ ଇତି କୋଷଃ ।

୧—ଦେହଛଳରେ କେଶରୀ ଗବୟ ପଦାରେ ସିଂହ ଗବୟ ଆସିଲା ।

* ଜାନ ( ଯାବନିକଭାଷା ) ପ୍ରାଣଅର୍ଥରେ ଯଥା—
ଜାନ ଯାଉପଛେ ମାନରହୁ ମାନବ ରାଜର ଜାନକୀ ॥

ଗଣ କର । ବଲୋକିଲେ ଶଉର ଯେ ଜନ ନ ଉତ୍ତୁର ସୁଗ୍ରୀବ ଗ୍ରୀବ ମୋଡ଼ି ମାରି ଯେ ।୩୧।

ବଧିଲେ କେତେକ ସୈନ୍ୟ ଜାମ୍ବବ ଯେ କଞ୍ଚନ ଡାଳିମ୍ବ ପନସ ଚନ୍ଦନ । ବୃକ୍ଷ କରି ପତନ ଜାମ୍ବବ ଯେ କଞ୍ଚନ ଡାଳିମ୍ବ ପନସ ଚନ୍ଦନ ଯେ । ବୃଶୋଧନ । ବିବଧ ବିବଧ ବଧାନ । ବାହାର କଲେ ଅନ୍ତ୍ରମାନ । ବଳୀ ମହେନ୍ଦ୍ର ଧନ୍ୟ ମହୀ କରି କର୍ଦ୍ଦମ ଦ୍ୱିବଦ ଦ୍ୱିବଧ ରଚନ ଯେ ।୩୨।

ବଳୀମୁଖ ପ୍ରସରେ ଦଧିମୁଖସଙ୍ଗରେ କାଳୀମୁଖ ଯେନ ରଙ୍ଗରେ । ବିରବ ହି ମୁଖରେ ମୁଷ୍ଟି ତାଡ଼ି ମୁଖରେ ଅରିବଳ ଜୀବନ ହରେ ଯେ ।

---

( ବିଗଡ଼ ପ୍ରାଣ ) କର ( କଲ ) "ଯେଉଁ" ଜନ ( ଲୋକକୁ ) ଶଉର ( ଶୌଷ୍ଟିନାମା ବାନର ) ଶଉର ( ଶବରପ୍ରାୟ ) ବିଲୋକିଲେ ( ଦୃଷ୍ଟିଦେଲେ ) ସେ ( ଲୋକ ) ନ ଉତୁର ( ମଲ ) । ସୁଗ୍ରୀବ ( କପିରାଜ ) ଗ୍ରୀବ ( ରାକ୍ଷସଙ୍କ ବେକ ) ମୋଡ଼ି ମାର ( ମାରିଲ ) । ୩୧ ।

୩୨ଶ ପଦ – ଜାମ୍ବବ ( ଋକ୍ଷରାଜ ) କଞ୍ଚନ "କପି" ଡାଳିମ୍ବ "କପି" ପନସ "କପି" ଚନ୍ଦନ "କପି" ଜାମ୍ବବ ଯେ ( ଜାମ୍ବୁ ) କଞ୍ଚନ "ବୃକ୍ଷ" ଡାଳିମ୍ବ "ଗଛ" ପନସ ( ପଣସଗଛ ) ଚନ୍ଦନ ବୃକ୍ଷ ପତନକର ( ପିଟି ) କେତେ ସୈନ୍ୟ ବୃଶୋଧନ "କର" ବଧିଲେ ( ମାରିଲେ ) । ବିବଧ ବିଧାନ ( ବିବିଧ ବିଧାନରେ ) ବିବଧ ( ବିଶେଷରେ ବଧକର ) ଅନ୍ତ୍ରମାନ ( ପେଟଭିତର ଅନ୍ତ୍ରବୁଜୁଳା ) ବାହାର କଲେ । ବଳୀ ( ବଳବାନ୍ ) ମହେନ୍ଦ୍ର "କପି" ଧନ୍ୟ ( ବୀରଗଣରେ ପ୍ରଶଂସ୍ୟ ) "ଅଟେ", ଦ୍ୱିବଦ "କପି" ମହୀ ( ଚଉଭୂମିକ ) "ରକ୍ତରେ" କର୍ଦ୍ଦମ ( କାଦୁଅ ) କର "ଅସୁରଙ୍କୁ" ଦ୍ୱିବଧ ( ଦୁଇଖଣ୍ଡ ) ରଚନ ( କଲ ) । ୩୨ ।

୩୩ଶ ପଦ—ଦଧିମୁଖ ( ଦଧିମୁଖା କପିଙ୍କ ) ସଙ୍ଗରେ କାଳୀମୁଖ ( କାଳୀମୁଖାକପି ) ଯେନ ରଙ୍ଗରେ ( ଯୁଦ୍ଧଭୂମିରେ ) ବଳୀମୁଖ (ବଳୀମୁଖା-ବାନରମାନେ ) ପ୍ରସରେ ( ପ୍ରସରିଲେ ) । ମୁଖରେ ବିରବ ( ବିଶେଷରବ ) "କରି" ମୁଖରେ ( ଅସୁରଙ୍କ ମୁହଁରେ ) ମୁଷ୍ଟି ତାଡ଼ି ( ମୁଷ୍ଟିମାର ) ଅରିବଳ

ବନ୍ଧି କଟେ । ବିପୁଳ ଶିଳ ନିରନ୍ତରେ । ବାନ୍ଧରି ପ୍ଳବନଶୀଳ ମାରଇ ।
ବସନ୍ତ ପବିନରେ ପରଭୃତହିଁ ସ୍ୱରେ ପଞ୍ଚମ ପଞ୍ଚଭୁ ଆଦରେ ସେ ॥

ବହ୍ନିସ ନାମ ଭଜେ ଅପୂର୍ବ ନଳ ନୀଳେ ଭସ୍ମ କରି ଉଡ଼ାଇ ଦେଲେ । ବ୍ୟାଳଶ୍ରିତ ଲଭିଲେ ଆଶରେ ଲୁଚିଗଲେ ତାର୍କ୍ଷ ତାର୍କ୍ଷ୍ୟ ହୋମଜ୍ୱଳେ ଯେ । ବିକସିଲେ । ବୈଦ୍ୟ ସୁଷେଣ କୁତୂହଳେ । ବ୍ୟାଧି

---

( ଶତ୍ରୁ ସୈନ୍ୟଙ୍କ ) ଜୀବନ ହରିରେ ( ନେଲେ ) । ବିପୁଳ ( ବଡ଼ ବଡ଼ ) ଶିଳ ( ପଥର ) କଟେ ବନ୍ଧି ( ଧରି ) ନିରନ୍ତରେ ( ସର୍ବଦା ) ପ୍ଳବନଶୀଳ "କପି" ବାନ୍ଧରି ( ନୀଚ କରି ) ମାରେ । ବସନ୍ତ ପବନରେ ( ବସନ୍ତ ପବନ-ଏ ବୃକ୍ଷକପି ) ପର ( ଶତ୍ରୁମାନଙ୍କୁ ) ଭୃତ ( ଧରନ୍ତେ ) "ଶତ୍ରୁ ଏ" ପଞ୍ଚମସ୍ୱରେ ( ମୃତ୍ୟୁସ୍ୱରରେ ) ପଞ୍ଚତ୍ୱ ( ମୃତ୍ୟୁ ) ଆଦରେ ( ଆଦରିଲେ ) । ଜମ୍ପା ବସନ୍ତ ପବନରେ ( ମଳୟ ପବନ ବହିବା ଯୋଗୁଁ ) ପରଭୃତହିଁ ( କୋକିଳ ମଧ୍ୟ ) ପଞ୍ଚମସ୍ୱରେ ପଞ୍ଚତ୍ୱ ( ବିସ୍ତାରକୁ ) ଆଦରେ "ପୁ ଧ୍ୱନ୍ୟର୍ଥ"* । ଟୀକା ।

୩୪ଶ ପଦ—ଅ ପୂର୍ବ ( ପୂର୍ବରେ ଅକାରଯୁକ୍ତ ହୋଇ ) ନଳନୀଳେ (ନଳ ଓ ନୀଳ) ଅନଳ ଅନିଳ ( ଅଗ୍ନି ପବନରୂପେ ) ବହ୍ନିସ ନାମ ( ବହ୍ନିସ-ନାମା ଅସୁରକୁ) ଭଜେ ( ଉତ୍ତମରୂପେ ) ଭସ୍ମକରି ଉଡ଼ାଇ ଦେଲେ । ତାର୍କ୍ଷ୍ୟ ( ଗରୁଡ଼ରୂପୀ ) ତାର୍କ୍ଷ "କପିର" ମହୋତ୍କ୍ଷଳେ ( ସ୍ୱାଷଣ ତେଜରେ ) ଆଶରେ ( ରାକ୍ଷସମାନେ ) ବ୍ୟାଳଶ୍ରିତ ( ସର୍ପ ସ୍ୱଭାବକୁ ) ଲଭିଲେ । "ସର୍ପ-ଗାତରେ ପକ୍ଷି ଲୁଚିଲାପରି" ଲୁଚିଲେ ( ଛପିଗଲେ ) । ସୁଷେଣ ବୈଦ୍ୟ କୁତୂହଳେ ( କୌତୁକରେ ) ବିକସିଲେ ( ବାହାରିଲେ ) । ବ୍ୟାଧିରୂପ ଦୈତ୍ୟ-

---

୧—ପଞ୍ଚମସ୍ୱର ଯଥା—ବାଳ କୁମାର ଯୁବା ବୃଦ୍ଧ ମୃତ୍ୟୁ । ତଦୁକ୍ତଂ—
କାଂଚଲ୍ଲାଭଜାତେ ବାଳଃ କୁମାର ଶ୍ଚାର୍ଦ୍ଧବଳକଃ

✱—ପଞ୍ଚତ୍ୱଂ ତନୁରେତୁ ଭୂତନିବହାଃ ସ୍ୱାଂଶେ ଶତ୍ରୁ ଧ୍ରୁବମିତ୍ର ପ୍ରଯୋଗଃ ।

କ୍ଷିତରେ ଦୈତ୍ୟକୁଳେ । ବିରଚିଲେ ଚପଳେ ମାରଣି ରଥବଳେ
ସୁଶୋଧନରେ କି ମଞ୍ଜୁଳେ ସେ ।୭୪।

ବପୁ ଗନ୍ଧମାଦନ ଚର ଗନ୍ଧମାଦନ ମାଡ଼ିପଡ଼ିଲି ଅବିଚ୍ଛିନ୍ନ ।
ବ୍ୟବସ୍ଥିତେ ଦୁର୍ବର୍ଣ୍ଣ କରିଦେଲ ସୁବର୍ଣ୍ଣ ପାରଦ ମିଶି ଘନ ଘନ ସେ

---

କୁଳେ (ଅସୁର ବଂଶରେ) ୧ କ୍ଷିତରେ ( ବିନାଶ ଅର୍ଥେ ) ମାରଣି ରଥ ( ପାର-ଆଦି ରସରୂପ ) ମାରଣ ରଥ ( ସଂହାର ନେଇ ) ବଳେ (ବେଳାଦ୍ବାରା ) ମଞ୍ଜୁଳେ ( ସୁନ୍ଦରରୂପେ ) ସୁଶୋଧନରେ ଉତ୍ତମ ଶୋଧନରେ ) ଚପଳେ ( ଚଞ୍ଚଳ ) ବିରଚିଲେ କି ? । ''ସୁଷେଣ ସମସ୍ତ ଦୈତ୍ୟଙ୍କୁ ମାରି ଶୋଧନ କଲେ ଏହି ଫଳିତାର୍ଥ'' । ୭୪ ।

୭୫ଶ ପଦ—ବପୁଗନ୍ଧମାଦନ ( ଗନ୍ଧମାଦନ ପର୍ବତ ତୁଲ୍ୟ ବପୁବନ୍ତ ) ଗନ୍ଧମାଦନ "କପି" "ଗନ୍ଧମାଦନ ପର୍ବତ" ପରି ଅବିଚ୍ଛିନ୍ନ ( ନିରନ୍ତର ) ମାଡ଼ି ପଡ଼ିଲ (ରାକ୍ଷସଙ୍କ ଉପରେ ମାଡ଼ିପଡ଼ିବାରୁ ସେମାନେ ମଲେ, । ପାରଦ "କପି" ୧ ପାରଦ ( ପାରଦପ୍ରାପ୍ତ ) ମିଶି ଘନ ଘନ ବ୍ୟବସ୍ଥିତେ ( ଘନ ଘନ ଅସୁର-ସୈନ୍ୟ ମିଳନ୍ତେ ତାହାଙ୍କୁ ) ସୁବର୍ଣ୍ଣ ( ଉତ୍ତମବର୍ଣ୍ଣ ପ୍ରାପ୍ତ ) ସୁବର୍ଣ୍ଣ ( ସୁନାକୁ ) ଘନ ଘନ ବ୍ୟବସ୍ଥିତେ ( ଅନବଚ୍ଛିନ୍ନ ବ୍ୟବହାରରେ ) ଦୁର୍ବର୍ଣ୍ଣ (ରୂପା-ବିବର୍ଣ୍ଣ) କରି ଦେଲ । "ପାରଦକୁ ସୁନା ସଙ୍ଗେ ଘନ ଘନ ମିଶାଇଲେ ଯେପରି ଉତ୍ତମ ବର୍ଣ୍ଣ ସୁନାକୁ ଧଳା କରି ବିବର୍ଣ୍ଣ କରିଦିଏ ସେହିପରି ପାରଦ ଘନ ଘନ ଆସୁଥିବା ରାକ୍ଷସଙ୍କ ସଙ୍ଗେ ମିଶିକରି ମାରି ବିବର୍ଣ୍ଣ କରିଦେଲା ଏହି ତାତ୍ପର୍ଯ୍ୟାର୍ଥ ।" ଯୂଥପେ ( ଯୂଥପତିମାନେ ) ପୁନଃପୁନଃ ( ବାରଂବାର ) କୋପେ ( କ୍ରୋଧ କରି ) ବୃନ୍ଦ ବୃନ୍ଦ ବଳବାନ୍ ( ବଳବନ୍ତ ରାକ୍ଷସଙ୍କୁ ) ପୂର୍ଣ୍ଣ (ପୂର୍ଣ୍ଣ ସଂଖ୍ୟାରେ) ବିନାଶୁଁ ( ବିନାଶ କରନ୍ତେ ) ଯହିଁରୁ "କପି" ଶବ୍ଦମାନ (ଅଦ୍ଭୁତ ଶବ୍ଦରେ) ପ୍ରଧାନ

---

୧—କ୍ଷୟୁବାସାବପି କ୍ଷିତିରିତ୍ୟମରଃ ।
କ୍ଷିତିର୍ନିବାସେ ମେଦିନ୍ୟାଂ କଲାନ୍ତଭେଦେ କ୍ଷୟେଽପି ଚ ଶତ କୋଷଃ ।
୧—ପାରଦ ସୌଧ ତଗର ମନ୍ଦାର ଦ୍ରୁମାଦୟଃ ଇତି କବିକଲ୍ପଲତାୟାଂ ।
ଏମାନଙ୍କୁ ଶୁକ୍ଳବର୍ଣ୍ଣନ କରାଯାଇଅଛି ।
୨—ଦୁର୍ବର୍ଣ୍ଣଂ ରଜତଂ ରୂପ୍ୟଂ ଖର୍ଜୁରଂ ଶ୍ୱେତମିତ୍ୟପି ଇତ୍ୟମରଃ ।

ବଳବାନ । ବୃନ୍ଦ ବୃନ୍ଦ ଯୂଥପେ ପୂର୍ଣ୍ଣ । ବନାଶୁଁ କୋପ ପୁନଃପୁନ ।
ବାନ୍ଧିଲେ ସରସ୍ଥାନ ସେତୁ କି ଶବମାନ ସରସେତୁ ଜରି ପ୍ରଧାନ ସେ ॥
ବଇଶ୍ରିବ ତନୟୁ ବରଶର ଆଳୟୁ ଷ ଭେଦେ ଅର୍ଦ୍ଧ କରି କ୍ଷତ ।
ବଲେ ଜ୍ୟେଷ୍ଠ ନିର୍ଣ୍ଣୟୁ ଆଷାଢ଼ ପାଇ କାୟୁ କ୍ରମ ଶ୍ରାବଣ ପରିଚିତ ଯେ ।

( ବଡ଼ ) କରି ସରସ୍ଥାନ୍ ( ରକ୍ତ ସମୁଦ୍ରରେ ) ସେତୁ ( ବନ୍ଧ ) ବାନ୍ଧିଲେ କି ? "ଏମନ୍ତ ଉତ୍ପ୍ରେକ୍ଷା" । କିମ୍ବା—ଯୂଥପତିମାନେ ବାରଂବାର କୋପରେ ବୃନ୍ଦ ବୃନ୍ଦ ମିଳିବନ୍ତ ରାକ୍ଷସ ବନାଶକରି "ରାମ ଆଦ୍ୟରେ ସରସ୍ଥାନ୍ ( ସମୁଦ୍ରରେ ) ସେତୁ ( ବନ୍ଧ ) "ବାନ୍ଧି" ତୁ ( ପୁଣି ) ଶବମାନ ( ଶବମାନଙ୍କର ) ସରସେ ( ଅନୁକରେ ) ପ୍ରଧାନ ( ବଡ଼ ) କରି ସରସ୍ଥାନ୍ ( ରକ୍ତ ସମୁଦ୍ରରେ ) ସେତୁ ( ବନ୍ଧ ) ବାନ୍ଧିଲେ କି ? ※ । ୩୬ ।

୩୭ଶ ପଦ—ବଇଶ୍ରବା ( ବିଶ୍ରବାପୁତ୍ର ରାବଣ ) ତନୟୁ ( ଇନ୍ଦ୍ରଜିତ ) ବରଶର ( ପ୍ରଧାନ ନାରାଚମାନଙ୍କର ) ଅଳୟୁ ( ସ୍ଥାନ ) "ହେଲ" । "ଲକ୍ଷ୍ମଣ ବନ୍ଧିବା ପ୍ରଧାନ ପ୍ରଧାନ ନାରାଚରେ ତାଙ୍କ ଦେହ ଯାକ ପୂର୍ଣ୍ଣ ହେଲ ଏହି ଭାବ" । କିମ୍ବା ଷଭେଦେ (ଷକାର ଭେଦରେ) ବରଷର (ବର୍ଷର) ଆଳୟୁ (ଏକବର୍ଷ) "ହେଲ" 'ତହିଁରୁ' ଅର୍ଦ୍ଧ ( ଅଧେ ) କ୍ଷିତକରି ( କ୍ଷୟ କଲେ ) "ଛଅମାସ ରହିଲ" । ଜ୍ୟେଷ୍ଠ ନିର୍ଣ୍ଣୟୁ ବଲେ ( ବଲେଉ ଜ୍ୟେଷ୍ଠମାସ ନିଷ୍ପନ୍ନ ହେଲ ) । ଇନ୍ଦ୍ରଜିତ ପକ୍ଷେ—ବଲେ ( ବଳବନ୍ତ ପକ୍ଷେ ) ଜ୍ୟେଷ୍ଠ "ବୋଲି" ନିର୍ଣ୍ଣୟୁ ( ନିଷ୍ପନ୍ନ ) "ହୋଇଅଛି ଏମନ୍ତ ଯେ ଇନ୍ଦ୍ରଜିତ ତାହାର" କାୟୁ ( ଶରୀର ) ଆଷାଢ଼ ( ଆଷାଢ଼ମାସ-ଗ୍ରୀଷ୍ମକୁ ) ପାଇ ( ପାଇଲା ) "ଲକ୍ଷ୍ମଣଙ୍କ କାଣ୍ଡମାନଙ୍କରେ ସନ୍ତାପିତ ହେଲ ଏହି ଭାବ" । କ୍ରମ ( ଯୁଦ୍ଧକ୍ରମ ଯୋଗୁଁ ) ୧ ଶ୍ରାବଣ ( ଶ୍ରାବଣମାସ— ସ୍ୱେଦ ଶ୍ରବଣରେ ) ପରିଚିତ ହେଲ "ଶ୍ରାବଣମାସରେ ଜଳଧାରା ବହିଲପ୍ରାୟ ଦେହରୁ ଝାଳ ବହିଲ ଏହିଭାବ" । ଯେ ( ଇନ୍ଦ୍ରଜିତ ) ବିବର୍ଦ୍ଧିତ (ବିଶେଷରେ ବର୍ଦ୍ଧିତ ହେଲ ) । "ସେ ପୁଣି" ବିଶ୍ୱେ ( ସଂସାରରେ )

※—ଶୀର୍ଯ୍ୟନ୍ମାଂସଂ ତୁ ପୂର୍ଣ୍ଣି କୁତ୍ସିତ ପ୍ରତ୍ୟାଗଃ ।
୧—ଶ୍ରବଣ ଶବ୍ଦରୁ ସ୍ୱାର୍ଥରେ ଅଣ୍ ପ୍ରତ୍ୟୟ; ଯଥା—ବାୟୁରେବ ବାୟୁସଃ ।
ରକ୍ଷଏବ ରାକ୍ଷସଃ ।

ବିବସ୍ଥିତ । ବିଶେ, ଭାଦ୍ରପଦର ଆଶ୍ରିତ । ବିଭାତି ଅସୀନ ଚ୍ଛେଦିତ ।
ବାହୁଳଯୁଉଦୟ ପ୍ରଭାରେ ଅତିଶୟ କରାଇ ମାର୍ଗଶୀର୍ଷାନ୍ୱିତ ସେ ॥

୧ଭାଦ୍ରପଦ ( ଭାଦ୍ରବମାସର—ଭା ସେ ପଦ୍ମ ଅର୍ଥାତ୍ ଦ୍ରପ ଯେ ଗନ୍ଧ ଏ ଦୁହିଁଙ୍କର ) ଆଶ୍ରିତ ଅଟେ । ବିଭାତ ( ପ୍ରଦୀପ୍ତ ) ଅସୀନ (ଅସିନମାସ —ପ୍ରଧାନ ଖଡ୍ଗରେ) ଚ୍ଛେଦିତ ( ଛେଦିଲ ) ୩ବାହୁଳଯ୍ୟ ( କାର୍ତ୍ତିକମାସ— ପ୍ରାଣ୍ୟସରେ ) ପ୍ରଭାରେ ଉଦୟ ହୋଇ ଅତିଶୟ ( ଅତିଶୟରେ ) ୪ମାର୍ଗଶୀର୍ଷ ( ମାର୍ଗଶିରମାସ— ମାର୍ଗକୁ ମସ୍ତକମାନଙ୍କରେ ) ଅନ୍ୱିତ ( ଯୁକ୍ତ ) କରଇ ( କରାଇଲି ) । ୩୬ ।

*—ବିସ୍ତାର ତନୟ ବଣଶର ଆଳମ୍ବ ସଭେଦେ ଅର୍ଦ୍ଧକରି ଷୟ ।
ବଳେ ଜ୍ୟେଷ୍ଠତନୟ ଆଷାଢ଼ ପାଇକାସ୍ୟ ଶ୍ରମ ଶ୍ରାବଣ ପରିଚୟ ସେ ।
ବିବସ୍ତ୍ରସ୍ୟ । ବିଶେ ଭାଦ୍ରପଦ ଆଶ୍ରୟ । ବିଭାତ ଆଶ୍ୱୀନ ସ୍ଥାପୟ ।
ବାହୁଳେୟ ଉଦୟ ପ୍ରଭାରେ ମହୋଦୟ କରାଇ ମାର୍ଗଶିରମୟ ସେ । ୩୬ ।

ଅର୍ଥ— ବିଶ୍ୱାସଣ ବର୍ଷକର ସ୍ଥାନ ହେଲ, ତହିଁ ସମାନ ଅଧେ କାଟି-ଦେଲେ ପୃଷ୍ଠଠାରୁ ଜ୍ୟେଷ୍ଠ ପର୍ଯ୍ୟନ୍ତଗଲା, ଅଷାଢ଼ଠାରୁ ମାର୍ଗଶିର ପର୍ଯ୍ୟନ୍ତ ରହିଲା । ଜ୍ୟେଷ୍ଠ ବଳେ ଯିବାରୁ ଆଷାଢ଼ମାସ କାସ୍ୟା ପାଇଲା, ଦର୍ପଦ୍ୱାରା ଶ୍ରାବଣମାସ ପରିଚୟ ଦେଲା, ଅତ ବିସ୍ମୟକର ଖର ଯୋଗେ ଭାଦ୍ରମାସ ସମାର ଆଶ୍ରୟ କଲା, ଆଶ୍ୱିନମାସ ଅତି ତେଜରେ ସ୍ଥାପିତ ହେଲା, ଅତ ପ୍ରଭାବନ୍ତ ହୋଇ କାର୍ତ୍ତିକମାସ ଉଦୟ ହେଲା, ତତ୍ପରେ ମାର୍ଗଶିରମାସ ହେଲା । ଯୁଦ୍ଧ-ପକ୍ଷେ—ବିଶ୍ୱାସଣ ଉତ୍ତମ ଶରମାନଙ୍କର ସ୍ଥାନ ହୋଇଥିଲା, ତାହାର ଶର-ଭେଦ ହେବା ପୂର୍ବରୁ ଇନ୍ଦ୍ରଜିତ ଅଧେ କାଟିପକାଏ, ବଳରେ ତ ବଡ଼ଭାଇର

୨—ଦର୍ପ—ଏଠାରେ ଦ୍ରପ ବୋଇଲେ ପ୍ରାକୃତ ଗୀତରେ ଏ ଦୋଷନୁହେ—
ଯଥା—ଭଗିନୀ—ଭଗ୍ନୀ, ଯୋଗିନୀ – ଯୋଗ୍ନୀ ।
୩—ବାହୁଳଯ୍ୟ—ବହୁଳସ୍ୟଭାବଃ ବାହୁଲ୍ୟଂ । ସଯୁକ୍ତାକ୍ଷର
ମୋଚନରେ ବାହୁଳଯ୍ୟ ହେଲା । ବାହୁଳୋଜୋକାର୍ତ୍ତିକିକ ଇତ୍ୟମରଃ ।
୪—ମାର୍ଗ—ପ୍ରଯୋଜ୍ୟକର୍ତ୍ତା ଇନ୍ଦ୍ରଜିତ ପ୍ରଯୋଜକକର୍ତ୍ତା ।
*ଏହି ପଦଗୀତକୁ କେହି କେହି ଅନ୍ୟପ୍ରକାର ପଢ଼ନ୍ତି ।

ବଦନ୍ତି ବୋଲନ୍ତି ନର ନାରାୟଣ ଏ ଗିର ସିଦ୍ଧ ହୋଇଛନ୍ତି ଯେଉଁଠାରେ । ଯାରପଣ ତାଙ୍କର କେ ହେବ ଶେଷକର ଅଲେଖ ଯେ ଲେଖ ଲେଖାରେ ସେ । ବଦନ୍ତେ ଶର । ବିଶ୍ୱଭରଣ ବୋଲିବାର । ବିଅର୍ଥ ନୋହେ ବିଶ୍ୱଭର । ବିଷ୍ଣୁ ସଙ୍ଗେ ସଙ୍ଗର ଅନନ୍ତ ସାହା ଯାର ଜିଷ୍ଣୁଜିତ ନୋହେ ଇତର ସେ । ୩୭ ।

---

ପୁଅ ଇନ୍ଦ୍ରଜିତ ବିଶ୍ରାନ୍ତ ଶରୀର ନାଶ କରିବାକୁ ଆଶା ବଢ଼ାଇଛ, ସେହି ଯୁଦ୍ଧ ବାଣ ବୃଷ୍ଟି କୋଟି ଶ୍ରାବଣ ବର୍ଷାର ପରିହସ୍ତ ଦେଉଅଛି, ଅତ ବସ୍ତୁ ଯାତରେ ସଂସାର ଭିତରେ ମଙ୍ଗଳପଦକୁ ଆଶା କରିଅଛୁ । ତେଜସ୍ୱାନ୍ ଅଶ୍ୱାରୋହ-ମାନଙ୍କୁ ଖୋଜି ପାଇଲେ, ଅନନ୍ୟ ପ୍ରଭାବନ୍ତ ହୋଇ କାର୍ତ୍ତିକେୟଙ୍କ ପ୍ରାପ୍ତ ଉଦୟ ହୋଇ ବାଟଯାକ ମୁଣ୍ଡମାଳ କରି ଦେଲେ । ୩୬ ।

୩୭ଶ ପଦ—ବଦନ୍ତେ (ପଣ୍ଡିତମାନେ) ବୋଲନ୍ତି ନରନାରାୟଣ ଏ ଗିର (ଏ ବଚନ) ଯେଉଁଠାରେ (ଯାହାଙ୍କଠାରେ) ସିଦ୍ଧ (ନିଷ୍ପନ୍ନ) ହୋଇଛନ୍ତି ତାଙ୍କର (ସେ ରାମ ଲକ୍ଷ୍ମଣଙ୍କର) ଯାରପଣ ଶେଷକର (ଶେଷ କର୍ତ୍ତା) କେ ହେବ (କେହି କାହିଁ ଶେଷକରି ପାରିବେ ନାହିଁ) । ୧ଲେଖ (ଦେବତା-ମାନଙ୍କ) ଲେଖାରେ ଯେ (ଯେଉଁ ଯାରପଣ) ଅଲେଖ (ଅପରିମିତ) "ଅଟେ", "ଦେବତାମାନେ ଲେଖିପାରିବେ ନାହିଁ ଏହିଭାବ" ସେ (ଇନ୍ଦ୍ର-ଜିତ) ୨ବିଶ୍ୱ (ସମସ୍ତ ଲୋକଙ୍କୁ) ଭରଣ (ଭର୍ତ୍ତିକରି—ପୂର୍ତ୍ତିକରି) ଶର (ନାରାଚ) ବଦନ୍ଧେ (ବନ୍ଧିଲା) "ଏଣୁ ତାକୁ" ବିଶ୍ୱ ୩ଭର (ସଂସାରର ଭାର) ବୋଲିବାର ବିଅର୍ଥ (ବ୍ୟର୍ଥ) ନୋହେ "ସାର୍ଥ" । ଅନନ୍ତ (ଶେଷଦେବ ଲକ୍ଷ୍ମଣ) ଯାର (ଯାହାର) ସାହା (ସହାୟ) "ଏରୂପ ରାମରୂପୀ" ବିଷ୍ଣୁ (ବିଷ୍ଣୁଙ୍କ) ସଙ୍ଗେ (ସଙ୍ଗରେ) ସଙ୍ଗର (ଯୁଦ୍ଧ) "କରୁଥିବା" ଜିଷ୍ଣୁଜିତ (ଇନ୍ଦ୍ରଜିତ) "ସେ" ଇତର (ସାମାନ୍ୟ) ନୋହେ । ଅଥବା—ଯେ ଲେଖ ଲେଖାରେ ଅଲେଖ (ଦେବତାଙ୍କ ଲେଖାରେ ଅପ୍ରମିତ) ସେ ବିଶ୍ୱଭରଣ

---

୧—ଆଦିତେୟା ଦିବୌକସୋ ଲେଖା ଅଦିତିନନ୍ଦନାଃ ଇତ୍ୟମରଃ ।

୨—ବିଶ୍ୱମଶେଷଂ କୃତ୍ସ୍ନଂ ସମସ୍ତନିଖିଳାଖିଳାଃ ଶେଷ ମିତ୍ୟମରଃ ।

୩—ଭରୋଽତିଶୟଭାରୟୋରିତି ବିଶ୍ୱଃ ।

ବିଭିନ୍ନରେ କବଚ ଶୋଣିତରେ ପ୍ରପଞ୍ଚ ଅସ୍ତ୍ରିକ ଭେଦିତ ନାହିଁ । ବଚନେ ନାହିଁ ପାଞ୍ଚ ଚତୁର୍ଥସ୍ୱରେ ବଚ ପ୍ରକାଶ କଲ ଯଥା ମୀତ ଯେ । ବୋଲେ ଉଚ୍ଚ । ବଚନ ଚପଳେ ମାରିବ । ବଧକ-ଭ୍ରାତ ! ଏବେ ରଚ । ବିହାରକୁ ସୁସଞ୍ଚ ଶମନପୁର ମଞ୍ଚ ଚେଳଣ ପୂର୍ବଗର୍ବ ମୁଞ୍ଚ ଯେ । ୩୮ ।

---

( ଘ୍ରାମ ) ଶରବେବନ୍ଧେ ( ବନ୍ଧନ୍ତ ) "ଏଣୁ ତାଙ୍କୁ" ବଶୁଭଧ ବେଲକାର ବ୍ୟର୍ଥ ନୋହେ ( ତାଙ୍କର ବଶ୍ୟମ୍ପ ନାହିଁ ସାର୍ଥ ), ଅନନ୍ତ (ଲକ୍ଷ୍ମଣପୁଣି ) ଯାର ( ଯାହାର ) ସାହା ( ସହାୟ ) "ସେ ରାମରୂପୀ" ବକ୍ଷ୍ୟ ସଙ୍ଗେ କ୍ଷ୍ମକ୍ରବ ( ଇନ୍ଦ୍ରଜିତ ) ସଙ୍ଗର ( ସଂଗ୍ରାମ ) କରେ ଯେ ( ଇନ୍ଦ୍ରଜିତ ମଧ୍ୟ ) ଇତର ( ଅଳ୍ପକ ଲୋକ ) ନୋହେ । ୩୭ ।

୩୮ଶ ପଦ—"ଲକ୍ଷ୍ମଣଙ୍କ" ନାରାଚ (ଲୌହମୟଶର) କବଚ (ସାଞ୍ଜୁ) ବିଭିନ୍ନରେ ( ବିଦାରଣ କରି ) ଅସ୍ଥିକ ( ହାଡ଼କୁ ) ଭେଦିତ ( ଭେଦିଲା ) "ତେଣୁ" ଶୋଣିତରେ ( ରୁଧିରରେ ) ୧ ପ୍ରପଞ୍ଚ ( ବିସ୍ତାର ) "ହେଲା" ବଚନେ ( ବଚନରେ ) ପାଞ୍ଚ ( ପାଞ୍ଚଥର ) ନାହିଁ "ବିସ୍ତର କହିବା ଶକ୍ତି ନାହିଁ ଏହିଭାବ" । ମୀତ ଯଥା ( ମୀତଲୋକ ପ୍ରାୟ ) ୨ ଚତୁର୍ଥସ୍ୱରେ ( ବୃଦ୍ଧ-ସ୍ୱରରେ ) ବଚ ପ୍ରକାଶ କଲା ( କଥା କହିଲା ) "ତତ୍ପରେ ଇନ୍ଦ୍ରଜିତ" ଉଚ୍ଚବଚନ ( ଉଚ୍ଚଶବ୍ଦରେ ) ଚପଳେ ( ବେଗରେ ) ବୋଲେ ହେ ମାରିବ ବଧକ ଭ୍ରାତ ! ( ହେ ଲକ୍ଷ୍ମଣ ) ପୂର୍ବଗର୍ବ ( ମୋତେ ମାରିବ ବୋଲି ଯେଉଁ ଗର୍ବ ତାହା ) ମୁଞ୍ଚ (ଛାଡ଼) ଏବେ ମଞ୍ଚ ( ମର୍ତ୍ତ୍ୟପୁର ) ଚେଳଣ (ଛାଡ଼-କରି ) ଶମନପୁର ( ଯମଭୁବନରେ ) ବିହାର ( କ୍ରୀଡ଼ା ) ସୁସଞ୍ଚ ( ଉତ୍ତମ ସୁନ୍ଦର କରି ରଚନାକର ) । ୩୮ ।

---

୧—ପ୍ରପଞ୍ଚୋ ବିସ୍ତରେଽପି ସ୍ୟାତ୍ ସଂଚୟେଚ ପ୍ରତାରଣେ ଇତି କୋଷଃ ।
ଅପିଚ —ବିପର୍ଯ୍ୟାସେ ବିସ୍ତରେ ଚ ପ୍ରପଞ୍ଚ ଇତ୍ୟମରଃ ।
୨—କାଖିଲ୍ଲାଭଙ୍ଗେବାଳଃ କୁମାରଷ୍ଟାଙ୍କ ଲଭନ୍ତେ ।
ସବର୍ଷିକଂ ଯୁବାଧଉେ ବୃଦ୍ଧେ ହାନ ମୃତେ ସ୍ମୃତ ଶତ ଜ୍ୟୋତିଃଶାସ୍ତ୍ରେ ।
କେହି କେହି ଚତୁର୍ଥସ୍ୱର "ଈ" । ଏହି କଥା ନସଲେ କହିଲ ଏମନ୍ତ ଅର୍ଥ କରନ୍ତି ।

ବାସବଜିତ ଭଲ ପ୍ରଳୟକାଳହେଲା ଚତୁର ଘନ ଧନୁ ହେଲା । ବରଷି ଶରଧାର ଗଗନ ଘୋଟାଇଲା ବାନରସୃଷ୍ଟି [1] ନାଶ କଲା ସେ । ବୁଡ଼ାଇଲା । ବିକର୍ତ୍ତନଜ ଯେଉଁ ଲୀଳା । ବଟ ବ୍ରହ୍ମାଣ୍ଡେ ଶୁଆଇଲା । ବାଳମୁକୁନ୍ଦ-ଲୀଳା ସୀତାବଲ୍ଲଭେ ଦେଲା ଲକ୍ଷ୍ମଣ ଶିବହିଁ ଢଳିଲା ସେ ॥

ବାସ୍ତୋଷ୍ପତି ପ୍ରଭୃତି ଦିଗପତି ସମ୍ମତି ସୁଗ୍ରୀବ ଆଦି ହେଲେ ହତ । ବଶିଷ୍ଟେ ଯେତେକ ସ୍ଥିତି ସେ ହେଲେ ଦିଗଦନ୍ତୀ ତମୋମୟରେ

---

୩୯ଶ ପଦ—ବାସବଜିତ ( ଇନ୍ଦ୍ରଜିତ ) ଭଲ ପ୍ରଳୟ କାଳ ହେଲା, ଧନୁ (ଆପଣାର ଧନୁକ) ଚତୁର ଘନ (ଆବର୍ତ୍ତକ, ସମ୍ବର୍ତ୍ତକ, ଦ୍ରୋଣ ଓ ପୁଷ୍କର ଏରୂପେ ଚାରିମେଘ ) ହେଲା, "ଜଳଧାର ରୂପ" ଶରଧାର ( ବାଣଧାର ) ବରଷି ଗଗନ ଘୋଟାଇଲା (ଘୋଡ଼ାଇଲା) "ପ୍ରଳୟ ସୃଷ୍ଟି ନାଶ କଲା ପ୍ରାୟ" ବାନର ସୃଷ୍ଟି ( ବାନର ବଳ ) ନାଶକଲା । "ପ୍ରଳୟ" ବିକର୍ତ୍ତନଜ ( ସୂର୍ଯ୍ୟ-ଜନତ ) ଯେଉଁ ଲୀଳା (କାରଣ) ବୁଡ଼ାଇଲା "ପ୍ରାୟ" ବିକର୍ତ୍ତନଜ (ସୁଗ୍ରୀବର) ଲୀଳା ବୁଡ଼ାଇଲା । "ପ୍ରଳୟରେ ବଟପତ୍ରରେ ବିଷ୍ଣୁ ବାଳମୁକୁନ୍ଦ ରୂପେ ଶୋଇଥିଲେ ଏଠାରେ "ପ୍ରଳୟ" [1] ବଟ "ରୂପ" ବ୍ରହ୍ମାଣ୍ଡେ ( ବ୍ରହ୍ମାଣ୍ଡରେ ) ସୀତାବଲ୍ଲଭେ ( ରାମଙ୍କୁ ) ବାଳମୁକୁନ୍ଦ ଲୀଳା ଦେଲା ( ଦେଇ ) ଶୁଆଇଲା ( ହତଜ୍ଞାନ ହେଲେ ) ଲକ୍ଷ୍ମଣ ଶିବହିଁ (ଶିବ ସ୍ୱରୂପ ହେଲେ ମଧ୍ୟ ) ସେ ଢଳିଲା ( ଅଚେତ ହୋଇ ଢଳିପଡ଼ିଲେ ) । ୩୯ ।

୪୦ଶ ପଦ—"ପ୍ରଳୟରେ" ବାସ୍ତୋଷ୍ପତି ପ୍ରଭୃତି ( ଇନ୍ଦ୍ରାଦି ) "ଦିକ୍‌ପାଳମାନ"ଙ୍କ ସମ୍ମତି ( ସମାନରେ ) ସୁଗ୍ରୀବ ଆଦି ହତ ( ବିନାଶ ) ହେଲେ । ବଶିଷ୍ଟେ ( ପ୍ରଧାନ ପ୍ରଧାନ ) ଯେତେ "ବାନର" ସ୍ଥିତି ( ଥିଲେ ) "ସେମାନେ" ଦିଗଦନ୍ତୀ ( ଦିଗ୍‌ଗଜତୁଲ୍ୟ ) ତମୋମୟ (ଅନ୍ଧକାର ସ୍ୱରୂପରେ) [1] ଜ୍ୟୋତି ( ପ୍ରକାଶ ) ଲୁଚ୍ଚି (ଲୁଚିଗଲା ) । "ଅନ୍ଧାରରେ ଜ୍ୟୋତି ଲୁଚିଲା

---

୧—ବଟସ୍ୟ ପତ୍ରସ୍ୟ ପୁଟେ ଶୟାନଂ ବାଳଂ ମୁକୁନ୍ଦଂ ମନସା ସ୍ମରାମି ଇତି ମୁକୁନ୍ଦାଷ୍ଟକେ

୧—ଜ୍ୟୋତିରଗ୍ନୌ ଦିବାକରେ ପୁମାନ୍ନପୁଂସକଂଦୃଷ୍ଟୌ ସ୍ୟାନ୍ନଷଦପ୍ରକାଶଯୋଃ ଇତି ମେଦିନୀ

ଲୁଚି ଜ୍ୟୋତି ସେ । ବିତିପତି ! ବହି ମାର୍କଣ୍ଡେୟ ମୂରତି । ବିଖ୍ୟାତେ କେବଳ ବର୍ତ୍ତି । ବଂଶବାହୁସନ୍ତତି କଇଟଭ ଆକୃତି, ସ୍ୱସ୍ଥାନେ ଉନ୍ନତି ପ୍ରକାଶେ ବିଭୂତି ସେ । ୪୦ ।

ବ୍ରହ୍ମା ହୋଇଲେ ଜାତ ସଚେତ ଜାମ୍ବବନ୍ତ ପୁନଃ ସେ ସୃଷ୍ଟି ବିରଚିତ । ବିରହମୂର୍ତ୍ତି ସତ ଯିବାର ହନୁମନ୍ତ ସ୍ଥାପି ଧରଣୀ, ହିମବନ୍ତ ସେ । ବିଜନିତ । ବିବିଧ ରସ ଔଷଧିତ । ବିନୋଦେ ସୁମନେ ରସିତ । ବେନଭ୍ରାତ ଅଚ୍ୟୁତ ଈଶ୍ୱର ପୃଥ୍ୱୀହିତ ଦୈତ୍ୟହିତକୁ ଯେ ବାଞ୍ଛିତ ସେ ।୪୧।

---

ପ୍ରାପ୍ତ ଚିତ୍ତ ବାନରରେ ମଲେ ଏହିଭାବ" । ବିତିପତି ( ବ୍ୟୁତ୍ପତ୍ତି ଏରୂପ ବିବେଚନା ହୁଏ ) ବିଖ୍ୟାତେ ମାର୍କଣ୍ଡେୟ ମୂରତି ( ମୂର୍ତ୍ତିକି ) ବହି କେବଳ ବର୍ତ୍ତି ( ବର୍ତ୍ତିଲେ ) । ବଂଶବାହୁ ୨ ସନ୍ତତି (ଇନ୍ଦ୍ରଜିତ) କଇଟଭ (କୈଟଭ ଅସୁର ) ଆକୃତି ( ଆକୃତିରେ ) ସ୍ୱସ୍ଥାନେ ( ନିଜ ସ୍ଥାନରେ ) ଉନ୍ନତି ( ଗର୍ବ ) ପ୍ରକାଶେ । "ଇନ୍ଦ୍ରଜିତ କୈଟଭ ଅସୁରଙ୍କ ପ୍ରାପ୍ତ ପ୍ରଳୟ ରୂପ ମୁକ୍ତି ଜନ୍ମ କରି ଲଙ୍କାରେ ଗର୍ବ କରି କହିଲେ ଏହିଭାବ" । ୪୦ ।

୪୧ଶ ପଦ—ପ୍ରଳୟାନ୍ତରେ ସଚେତ ( ଚେତନା ପାଇଁ ) ବ୍ରହ୍ମା ଜାତ ହୋଇଲେ "ପ୍ରାପ୍ତ" ଜାମ୍ବବନ୍ତ ( ଜାମ୍ବବାନ୍ ) ପୁନଃ ( ପୁଣି ) ସେ ସୃଷ୍ଟି ବିରଚିତ ( ରଚିଲେ ) । ସତ ( ସତ୍ୟ ଏ ) ହନୁମନ୍ତ ( ହନୁମାନ୍ ) ବିରହମୂର୍ତ୍ତି "ପ୍ରାପ୍ତ" ଯିବାରୁ ( ଯାଇ ) ଧରଣୀ ( ପୃଥ୍ୱୀରୂପ ) ହିମବନ୍ତ ( ମେରୁପର୍ବତକୁ ) ସ୍ଥାପି ( ସେଠାରେ ଆଣି ଥାପିଲେ ) ବିବିଧ ( ନାନାପ୍ରକାର ) ରସ ଔଷଧି (ଔଷଧିରସମାନଙ୍କୁ) ବିଜନିତ (ଜାତକଲେ) । "ଔଷଧି ଯୋଗେ" ଚେତନାପାଇ ସୁମନେ ( ଉତ୍ତମ ମନରେ ) ବିନୋଦେ ( କ୍ରୀଡ଼ାରେ ) ରସିତ ( ରସିଲେ ) । "ପ୍ରଳୟାନ୍ତେ ଦେବତାମାନେ ପ୍ରଥମ ଜନ୍ମି କ୍ରୀଡ଼ା କଲ ପ୍ରାପ୍ତ ବାନରେ କ୍ରୀଡ଼ା କଲେ ଏହିଭାବ" । ପୃଥ୍ୱୀହିତ ( ପୃଥିବୀର ହିତକାରୀ ) ଅଚ୍ୟୁତ ( ବିଷ୍ଣୁ ) ଈଶ୍ୱର ( ଶିବ ) "ରୂପୀ" ବେନଭ୍ରାତ ( ରାମ ଲକ୍ଷ୍ମଣ ) ଦୈତ୍ୟ ( ଅସୁରମାନଙ୍କ ) ହତ ( ବିନାଶ ) ବାଞ୍ଛିତ ( ବାଞ୍ଛିଲେ ) । ୪୧ ।

---

୧—ସନ୍ତତିଃ ଶୁଦ୍ଧବଂଶାରୁ ପାତ୍ରିଦେହି ଚ ଶର୍ମିଣ୍ଠେ ଇତି ରଘୋ ।

ବାଦସରିତ ଲଂଘନକୁ ତରୀତୁ ମଘବାରି ଅଜକୁ ଯଥା ବାଘ ।
ବିଚୂର୍ଣ୍ଣିତା କାଚୌଘ ବାଜି ଯଥା ପରିଘ ପାତକହତେ ଯଥା ମାଘ ସେ।
ବୋଲନ୍ତି ଶ୍ଳାଘ । ବାଳୀଏ ମିଳି ଦେଲେ ଅର୍ଘ୍ୟ । ବୋଲେ ରାବଣ
ଗଲା ଅଘ । ବିରଚି ପଦ ଓଘ ବସ୍ୱାକ୍ଷ ସଲଘ ଉପେନ୍ଦ୍ର ଚିତ୍ତ
ଅନଘ ସେ ।୪୨।

---

## ପଞ୍ଚଚତ୍ୱାରିଂଶ ଛାନ୍ଦ

ରାଗ—ପଞ୍ଚମବରାଡ଼ୀ । ବିଚିତ୍ରସିଂହା ବାଣୀରେ ।

ବାହୁଡ଼ିଲା ସାନୁମାନଶୃଙ୍ଗ ଥୋଇ ହନୁମାନ ମାନ ମାନସେ
ଗୃମାନ ଆଣି । ବିଗ୍ଭର ପ୍ରକୃତ ରାମେ କଲା ଅଭିରାମେ ରାମେ ଗିରେ

---

୪୨ଶ ପଦ—ବାଦସରିତ ( ଶତ୍ରୁ ନଦୀ ) ଲଂଘନକୁ ( ତରିବାକୁ) ତରୀ ନୌକା ଯଥା, ଅଜକୁ ( ସୈନ୍ୟ ଗ୍ରୁପଙ୍କୁ ) ବାଘ ଯଥା, ପରିଘ ବାଜି (ବଜ୍ରକର) କାଚୌଘ ( କାଚ ସମୂହ ) ବିଚୂର୍ଣ୍ଣିତ (ବିଶେଷରେ ଚୂନା ହୋଇଯାଏ) ଯଥା, ପାତକ ହତେ ( ପାପନାଶ କରିବାରେ ) ମାଘ "ମନ୍ତ୍ର" ଯଥା ତଥା ମଘବାରି ( ଇନ୍ଦ୍ରଜିତ ) ଶ୍ଳାଘ ( ପ୍ରଶଂସା ) ରାବଣ ବୋଲନ୍ତି ( ଏମନ୍ତ ବୋଲନ୍ତେ ) ୧ ବାଳୀଏ ( କନ୍ୟାମାନେ ) ମିଳି ଅର୍ଘ୍ୟ ଦେଲେ ( ଇନ୍ଦ୍ରଜିତକୁ ବନ୍ଦାଇଲେ ) । "ଆନନ୍ଦରେ ପୂର୍ଣ୍ଣ" ରାବଣ ବୋଲେ ଅଘ ( ପାପ ) ଗଲା । ସଲଘ ( ପୂର୍ଣ୍ଣହେଲା ) ବସ୍ୱାକ୍ଷ ପଦ ଓଘ (ସମୂହ) ବିରଚି (ରଚନାକରି ) ଉପେନ୍ଦ୍ରଭଞ୍ଜ "କବି" ଚିତ୍ତ ଅନଘ ( ନିଷ୍ପାପ ) ହେଲା । ୪୨ ।

—୧୪୨୫—

ପଞ୍ଚଚତ୍ୱାରିଂଶ ଛାନ୍ଦ

୧ମ ପଦ—ସାନୁମାନ ଶୃଙ୍ଗ ( ଗନ୍ଧମାଦନ ପର୍ବତ ଶୃଙ୍ଗକୁ ) ଥୋଇ ( ଯଥାସ୍ଥାନରେ ରଖି ) ହନୁମାନ୍ ବାହୁଡ଼ିଲା * ( ବାହୁଡ଼ିଲେ ) । ମାନସେ

---

୧—ବାଳୀ ବାନର କନ୍ୟସ୍ତ୍ରୋରଣ ଶବ୍ଦମାଳା ।
କନ୍ୟା କୁମାରିକା ବାଳେସ୍ତ୍ରୀ ଇତି ମେଦିନୀ ।

*—ଗୌରବାର୍ଥେ ।

ରାକ୍ଷସେ ସଂଗ୍ରାମେ ଜିଣି ସେ । ବନ୍ଧୁ ଶୁଣ । ବନ୍ଦିଥିବେ ସୁଖେ ନିଦ୍ରା
ସେହି । ବୈରି ସନ୍ଧି ନାଶ ଏହି ଗବି ବନ୍ଦି ସେ ।୧।

ବାରଣ ତେଜିଇଁଣି ରଣ ଆରମ୍ଭି ପତ୍ତିମାରଣ ବାରଣ ଧାରଣ
ହୟ କରି । ବୈଦେହୀ-ଶୋକ ବାରଣ ହେବାର ମୂଳ କାରଣ ଏହି
କଥା ଆସୁଅଛି ସ୍ମରି ସେ । ବଚନକୁ । ବାହାରିଲେ ଯୁଦ୍ଧ ରଚନକୁ ।
ବୃକ୍ଷ-ଶିଳା ଧରି ଅରି-ଶୋଚନକୁ ହେ ।୨।

ବସୁମତୀର ଦୁହିତା ହୃତା ନିକଟା ସହିତା ଅଶ୍ରୁ ତେଜନ୍ତେ ସବି
ଗୃହିଁ କହି । ବରବରନା ଦେବର ମୋର ବିନାଶୁ ଦେବର ରାଜ-

---

( ମନରେ ) ରାକ୍ଷସେ ସଂଗ୍ରାମେ ଜିଣିଗଲେ, "ଏହି" ଶୁମାନମାନ ଆସି ( ଅଭିମନ୍ୟୁମାନ ଆସିଲେ ) ଅଭିରାମେ ( ସୁନ୍ଦର ) ରାମେ (ରାମଙ୍କ ସମ୍ମୁଖରେ) ବାସ୍ତବ ପ୍ରସ୍ତାବ କଲେ ବନ୍ଧୁ ( ହେ ପ୍ରଭୋ ) ଶୁଣ ସେ ( ରାକ୍ଷସେ ) ବୈରି-ସବି ( ଶତ୍ରୁ ସବୁ ) ନାଶ ହେଲେ ଏହି ଗବି ବନ୍ଦି ଗ୍ରାମେ (ନିଜ ନିଜ ଗୃହକୁ) ଗଲେ । ପୁଣି ସେ ( ରାକ୍ଷସେ ) ସୁଖେ ( ସୁଖରେ ) ନିଦ୍ରା ବନ୍ଦିଥିବେ ( କରି-ଥିବେ ) ହି ( ନିଶ୍ଚୟ ) । ୧ ।

୨ୟ ପଦ—ବାରଣ ( ଗଜେନ୍ଦ୍ର ) ତେଜିଇଁଣ ( ତେଜିକରି ) ରଣ ( ଯୁଦ୍ଧ ) ଆରମ୍ଭି ପତ୍ତି ( ପଦାତିମାନଙ୍କ ) ମାରଣ ବାରଣ ( ହସ୍ତୀ ) ହୟ ( ଅଶ୍ୱଙ୍କ ) ଧାରଣ ( ନିବାରଣ ) କରି ( କରିବା ) । ବୈଦେହୀ (ସୀତାଙ୍କ) ଶୋକ ବାରଣ ( ନିବାରଣ ) ହେବାର ମୂଳ କାରଣ ଏହିକଥା ସ୍ମରି ( ସ୍ମରଣ କରି ) ଆସୁଅଛି, "ଏରୂପ କଲେ ସୀତାଙ୍କର ଆମ୍ଭ ନାଶଯିବା ଶୋକ ନିବାରଣ ହେବ ଏମନ୍ତ ଭାବି" । "ହନୁମାନର" ବଚନକୁ "ଶୁଣି ରାମ ଲକ୍ଷ୍ମଣ" ଯୁଦ୍ଧ ରଚନକୁ ( ଯୁଦ୍ଧ କରିବାକୁ ) ବାହାରିଲେ । "କପି-ମାନେ" ଅରି ଶୋଚନକୁ ( ଶତ୍ରୁଙ୍କୁ ଶୋକ ଦେବା ନିମିତ୍ତ ) ବୃକ୍ଷ ଶିଳାଧରି ବାହାରିଲେ । ୨ ।

୩ୟ ପଦ—"ଇନ୍ଦ୍ରଜିତ ରାମ ଲକ୍ଷ୍ମଣାଦିଙ୍କି ମାରି ଅଛନ୍ତି ଏମନ୍ତ ବାର୍ତ୍ତା ଶୁଣି" ବସୁମତୀର ଦୁହିତା ( ସୀତା ) ହୃତା ( ପ୍ରସ୍ତା ) ନିକଟା ସହିତା ଟଳଟଳ ରାକ୍ଷସୀ ସବେ ( ସେ ତ୍ରିଜଟାଙ୍କ ) ଗୃହିଁ ଅଶ୍ରୁ ତେଜନ୍ତେ ( କାନ୍ଦନ୍ତେ )

ତିଗୁକୁ ଏ ବର ବନ୍ଧ ସେ । ବୋଲେ ଶୁଣି । ବାମାଏ ବାମାକ୍ଷି ଏକ ନ୍ତ । ବଧିଲଣି ରଣେ ତାକୁ ଇନ୍ଦ୍ରଜିତ ସେ ।୩।

ବୋଇଲେ ଶ୍ରବଣେ ସତୀ ବନଶ୍ୟନ୍ତ ଯେ ବଂଶନ୍ତ-କରଜ ତେହ୍ନବ ଲକ୍ଷ୍ମଣେକରେ । ବୃଷାବ ବନ୍ତିଁ ନବନ୍ତିଁ ନିଦ୍ରାର୍ଥୀ ଅଶନ ଉଚିତ ଏହ୍ନ ଅର୍ଥୀ ରଜନୀ ବାସରେ ସେ । ବଳିଲଣି । ବାର ବେଳମାସ ମୋର ତପ । ବଳମ୍ଵକୁ ବେଳ ନାହିଁ କହ କି ବିକଳ୍ପ ସେ । ୪ ।

ବରବ ବାରବାନରେ ବରଚ ବାର ସଭ୍ୱରେ ବନ୍ଧରେ ପ୍ରାକାର ଜିଣି ପୁରେ । ବନ୍ଦୀ ବୁଦ୍ଧି ତେଜ ଦୂରେ ବନ୍ଧିଲେ ବନ୍ଦୀପ୍ରକାରେ

---

କହ୍ନ ( କହିଲେ ) ବର ବରନାରୀ ( ଆଗୋ ବାମାମାନେ ) ମୋଧ ଦେବର ( ଦିଅର ) ଦେବରସ୍ୱଜଗୁକୁ ଦେବସ୍ୱଜ ସ୍ୱେ ( ଇନ୍ଦ୍ରଜିତକୁ ) ବିନାଶୁ ( ବିନାଶକରୁ ) ଏ ବର ( ଏମନ୍ତ ଦେ ) ବନ୍ଧ ବନ୍ଧିଲେ । "ଏମନ୍ତ ଶୀତା ବରଦେବାର" ଶୁଣି ବାମାଏ ( ତ୍ରିଜଟା ଆଦି ରାକ୍ଷସୀଏ ) ବୋଲେ ( ବୋଇଲେ ) ଆଗୋ ବାମାକ୍ଷି ଏକି ( ଏ କଣ ) ସତ୍ୟ ତାକୁ ( ସେ ଲକ୍ଷ୍ମଣଙ୍କୁ ) ରଣେ ( ଯୁଦ୍ଧରେ ) ଇନ୍ଦ୍ରଜିତ ବଧିଲଣି ( ମାଇଲଣି ) "ସେ ତାକୁ କପରି ମାରିବେ ଅତଏବ ଏହା ମିଛ" । ୩ ।

୪ର୍ଥ ପଦ—ଶ୍ରବଣେ (ରାକ୍ଷସୀଙ୍କ କଥା ଶୁଣି) ସତୀ (ସୀତା) ବୋଇଲେ ବଂଶନ୍ତକରଜ (ଇନ୍ଦ୍ରଜିତ) ଲକ୍ଷ୍ମଣ କରେ ( ହସ୍ତରେ ) ବନଶ୍ୟନ୍ତ ହେବ ( ମରିବ ) "ଏଣୁ ଲକ୍ଷ୍ମଣେ" ଏହ ଅର୍ଥୀ (ଇନ୍ଦ୍ରଜିତକୁ ମାରିବା ଅଭିଳାଷୀ ହୋଇ) ରଜନୀ ବାସରେ ( ରାତ୍ରିଦିନ ) ନିଦ୍ରା ଅଶନ ( ଭୋଜନ ) ଉଚିତ "ଏ ଛନ୍ଦ କଥାରେ" ନବନ୍ତିଁ ବୃଷାବ ( ବୃଷପ୍ରାପ୍ତି ) ବନ୍ତିଁ "ଅଛନ୍ତି" ମୋର ତପ ( ତପସ୍ୟା ) ବାର ( ବାରମାସରୁ ) ବେନି ( ଦୁଇ ) ମାସ ବଳିଲଣି ( ବଳି-ଗଲାଣି ) । "ଚଉଦମାସ ପୂର୍ଣ୍ଣ ହେଲଣି ଏହ୍ନଙ୍କର" । ବଳମ୍ଵକୁ ବେଳ ( କାଳ ) ନାହିଁ ବିକଳ୍ପ ( ସନ୍ଦେହ ) କି ( କଣ ) କହ । "ନିଶ୍ଚୟ ମରିବ ଏହ୍ନଭାବ" । ୪ ।

୫ମ ପଦ—"ଏ ସମୟେ" ବୀର ବାନରେ ( ବାନର ବୀରେ ) ବରଚ ( ଭୂମି ) ବକ୍ରଚକର ( ହୋଇ ) ପ୍ରାକାର ( ଲଙ୍କା ପାଚେରୀ ) ଡେଇଁ ପୁରେ

ସୀତାକାନ୍ତି ଅସୁଖଜନକର ସେ । ବହ୍ନିକ୍ରୀଡ଼ା । ବନୌକାଏ ସ୍ଥାନେ
ସ୍ଥାନେ କଲେ । ବାଖିତରେ ଦୈତ୍ୟମାନେ ବଚ୍ଛିଲେ ସେ । ୫ ।

ବୈଶ୍ୱାନର କମ୍ପା ଜାତ ବାନରନରତ ହତ କନ୍ନର ସୁର
କଂକର ଯହିଁ । ବିସ୍ତାରିଣ ବାତାୟନ ଦତ୍ତ ନୟନ ଶୟନ ତେଜିଣ
ଅୟନ ପୃଷ୍ଠି ସେହି ସେ । ବେନକରେ । ବିଟପ ଦହୁଡ଼ି କି ବଦିତ ।
ବିରାଜନ୍ତି ଯଥା ଭ୍ରମେ ଯମଦୂତ ସେ । ୬ ।

---

( ଲଙ୍କାରେ ) ହତ୍ଵରେ ବହ୍ନରେ (ହତ୍ଵରେ ବହୁଟେଲେ) । ବନୌକା (ବାନର-ମାନେ) ସ୍ଥାନେ ସ୍ଥାନେ ( ପ୍ରତିସ୍ଥାନରେ ) ବହ୍ନିକ୍ରୀଡ଼ା କଲେ ( ଅଗ୍ନି ଜାଳିଲେ ) । ବଖିତରେ ( ନର୍ଭୟରେ ବା ବିଶେଷ ଭୟରେ ) ଦୈତ୍ୟମାନେ ବଚ୍ଛିଲେ । "ତା କାନ୍ତି" ଅସୁଖଜନକର ( ଘୋରକଷ୍ଟଦାୟୀ ) "ସୀତାଙ୍କ-ଠାରେ" ବନ୍ଦୀ ବୁଦ୍ଧି ( ବନ୍ଦୀକରି ରଖିବା ଭାବ ) ଦୂରେ ଥୋଇ ବନ୍ଧ ପ୍ରକାରେ ( ଭଟଙ୍କପ୍ରାପ୍ତ ) ସୀତାଙ୍କ ( ସୀତାଙ୍କର ) କାନ୍ତି ବନ୍ଦିଲେ ( ସ୍ତୁତି କଲେ ) । "ସୀତାଙ୍କୁ ଭର୍ତ୍ସନା କରିବା କଥାଜାଣି କାଳେ ଅମ୍ଭଙ୍କୁ ମାରିବେ ଏହି ଭୟରେ" । ୫ ।

ଅସ୍ପଷ୍ଟ ପଦ—ବୈଶ୍ୱାନର ( ଅଗ୍ନି ) କମ୍ପା ଜାତ "ହେଲା", "ବିଷ୍ଣୁହେତୁ ବଚ୍ଛିଲେ ଅଗ୍ନି କିଏ ଲଗାଇଲା ଏହି ଭାବ" । ଯହିଁ ( ଯେଉଁ ଲଙ୍କାପୁରେ ) କନ୍ନର ( କନ୍ନରମାନେ ) ସୁର ( ଦେବତାମାନେ ) କଂକର "ସେ ତାହୁଁ ଏହା କରିବେ" ବାନର ( ରିକ୍ଷକପିବଳ ) ନର ତ ( ରାମ ଲକ୍ଷ୍ମଣ ) ହତ ( ଇନ୍ଦ୍ରଜିତ ବାଣରେ ମରିଛନ୍ତି ) "ଏମନ୍ତ ଭାଳି" ଶୟନ ( ନିଦ୍ରା ବା ଶଯ୍ୟା ) ତେଜିଣ ( ତ୍ୟାଗକରି ) ବାତାୟନ ( ଜଳାକବାଟି ) ବିସ୍ତାରିଣ ( ଫିଟାଇ ) ନୟନ ଦତ୍ତ ( ଦେଖିଲେ ) ସେହି "ବାନରମାନେ" ଅୟନ ( ଲଙ୍କାର ରାଜମାର୍ଗରେ ) ପୃଷ୍ଠି ( ପୃଚ୍ଛନ୍ତି ) । "ତାଙ୍କ" ବେନକରେ ( ଦୁଇ ହସ୍ତରେ) ବିଟପ ଦହୁଡ଼ି କି ( ଗଛ ଦହୁଡ଼ି ପ୍ରାପ୍ତ ହୁଳା ) ବଦିତ ( ପ୍ରକାଶ ପାଉଅଛୁ ) । ଯମଦୂତ ( ଯମଦୂତମାନେ ) ଯଥା ( ଯେରୂପ ) ଭ୍ରମେ ( ଭ୍ରମନ୍ତି ) "ତଥା ସେମାନେ" ବିରାଜନ୍ତି । ୬ ।

ବଣିକଶ୍ରବ ଲମ୍ପଟେ ପ୍ରକଟେ କରି ମର୍କଟେ କନକକଟକ ଭଗ୍ନ ଜାଳିଲେ ।
ବଳବାନ ଖ୍ୟାତ ଅର୍ଥୀ ବିବେକସଂଜାତ ତହିଁ ବୀଥି ବୀଥି ବିଭ୍ରାଜିତ
ଶିଳେ ଦେଖି । ବର୍ଦ୍ଧମାନ । ବାତ ନାସାନଳୀ ଯୋଗେ ତହିଁ । ବିରୋଚନ
ଅତିକ୍ଷୋଭ୍ୟ ଏଣୁ ବନ୍ଧ ଯେ ।୭।

୨ମ ପଦ—ମର୍କଟ ( ବାନରମାନେ ) ବଣିକଶ୍ରବ ( ସୁନାରି ବଣିଆ ଶ୍ରବଣରେ ) ଲମ୍ପଟ ( ଲମ୍ପଟକୁ ) ପ୍ରକଟ କରି (ପ୍ରକାଶ କଲେ) । "ସୁନାରି ବଣିଆ" କନକ କଟକ ( ସୁବର୍ଣ୍ଣ କଙ୍କଣକୁ ) ଭଗ୍ନ ( ଭାଙ୍ଗିଦେଇ ) ଜାଳେ ( ପୋଡ଼ିଲା ) ପାଏ "ଏ ମର୍କଟେ" କନକ କଟକ ( ସ୍ୱର୍ଣ୍ଣମୟ ଲଙ୍କାପୁର ) ଭଗ୍ନ ( ଭାଙ୍ଗିଲେ ) ଓ ଜାଳେ ( ପୋଡ଼ିଲେ ) । ୧ ବଳବାନ୍ ଖ୍ୟାତ ୨ ଅର୍ଥୀ ( "ସୁନାରି ବଣିଆ" ସ୍ୱରୂପ ବାନ୍ଖ୍ୟାତରେ ଅଭିଳାଷୀ ହେଲାପ୍ରାୟ ) "ବାନରେ" ବଳବାନ୍ ( ବଳବନ୍ତ ) ଖ୍ୟାତ ( ଖ୍ୟାତରେ ) ଅର୍ଥୀ ( ଅଭି-ଳାଷୀ ) "ହୋଇଅଛନ୍ତି" । ବିଭ୍ରାଜିତ ( ବିରାଜିତ ) ତହିଁ ( ସେହି ସୁବର୍ଣ୍ଣ କଙ୍କଣରେ ) ୩ ବୀଥି ବୀଥି ( ପଂକ୍ତି ପଂକ୍ତି ହୋଇ ) ବିବେକ ( ସଦ୍ଜ୍ଞାନ ) ସଂଜାତ ( ଜାତ କରନ୍ତି ) "ଲୋକେ ଦେଖି ସୁନାର ଭଲମନ୍ଦ ବିଚାରନ୍ତି ଏହିଭାବ" । ତହିଁ ( ସେହି ଲଙ୍କାରେ ) ବୀଥି ବୀଥି ( ବୃନ୍ଦ ବୃନ୍ଦ ହୋଇ ) ଶିଳେ (·ପଥରମାନଙ୍କରେ ) ବିଭ୍ରାଜିତ (ତେଜୋବନ୍ତ "ବାନରଙ୍କଠାରେ") ବିବେକ ସଂଜାତ ହୁଏ, "ଅତି ତେଜସ୍ୱୀ ବାନରେ ଏମନ୍ତ ବିଚାର କରନ୍ତି ଏହିଭାବ" । ତହିଁ ( ସେହି କଙ୍କଣରେ ) ନାସାନଳୀ ଯୋଗେ ( "ବଣିଆର" ବାଉଁଶ ନଳୀ ଯୋଗରେ ) ବାତ ( ପବନ ) ବର୍ଦ୍ଧମାନ ( ବୃଦ୍ଧି ପାଇବାରୁ ) ବିରୋଚନ ( ହୁତାଶନକାନ୍ତି ) ଅତି ( ଅତ୍ୟନ୍ତ ) କ୍ଷୋଭ୍ୟ ( କ୍ଷୋଭକ ) ବନ୍ଧ ( ବନ୍ଧେ ) । ତହିଁ ( ସେ ଲଙ୍କରେ ) "ବାନରଙ୍କ" ନାସାନଳୀ-ଯୋଗେ ( ନାସା ବାୟୁ ଯୋଗେ ) ବାତ (ପବନ) ବର୍ଦ୍ଧମାନ ( ବୃଦ୍ଧିପାଏ )

୧—ବଳଂ ଗନ୍ଧରସେ ରୂପେ ଇତି ମେଦିନୀ ।
୨—ଅର୍ଥନଂ—ଅର୍ଥଃ—ଅଭିଳାଷଃ ଯସ୍ୟାସ୍ତୀତି ଅର୍ଥୀ ।
୩—ବୀଥିପଂକ୍ତୌ ଗୃହାଙ୍ଗେ ଚ ନାଟ୍ୟରୂପକ ବର୍ତ୍ମନୋରିତି ମେଦିନୀ ।

ବହନ୍ତି ଯେ କୁଳକୁଳ କି ଅବା ସେ ଆଳୀଆଳି ପତ୍ନୀସଙ୍ଗେ
ପତି ଯହିଁ ଜଳ । ବାସରେ ଯେଉଁ ତାଙ୍କ ରହି ବାସରେ ଲାଗୁଁ ବରହି
ବହିଁ ଚିତା ପଳାଇଁ ତା ଝଳ ସେ । ବିଦ୍ୟୋତକେ । ବାଳରେ ହୋଏ
କାହା ପତନ । ବହନ୍ତି କି ଅଗ୍ନିକୁମାରୀ ନର୍ତ୍ତନ ସେ ।୮।

ବହ୍ନି ବନିତାସଙ୍କୁଳେ ଝଙ୍କାର ଦ୍ୱିବେଳେ ବେଳେ ତହିଁ ପଡେ
ମୂର୍ଦ୍ଧନ୍ୟସ୍ଥ ଦେଇ । ବାନରଭୟ ଉଭ୍ରାନ୍ତ ବାଳକ ଆପଣା ସ୍ଥୂଳ

ଏଣୁ ବିବେଚନ ( ଅଗ୍ନି ) ଅତି ଜ୍ୟୋତି ( ପ୍ରଖର ଜ୍ୟୋତିଷ୍କ ) ବହୁ (ବହୁଳ) ✱ । ୭ ।

୮ମ ପଦ—ଯେ ( ଯେଉଁ ) "ବ ନରେ ଆନନ୍ଦରେ" କୁଳକୁଳ ବହନ୍ତି (ବହନ୍ତି), "ଏଣୁ କବି ଉତ୍ପ୍ରେକ୍ଷା କଲେ" କି ଅବା ୧ ଆଳୀ ଆଳି (ସ୍ତ୍ରୀସମୂହ) ହେ, ଯହିଁ ( ଯେ କାରଣୁ ) ବାସରେ ( ଅନୁରାଗ ଯୋଗୁଁ ) ପତିସଙ୍ଗେ ପତ୍ନୀ ଜଳ ( ପତିଙ୍କ ନ ଛାଡ଼ି ଶଯ୍ୟା ଯୋଗମଲ ) । ଯେତେ (ଆଉ ଯେତେ) ବାସରେ ( ଗୃହରେ ) "ଥିଲେ" "ତାଙ୍କ" ବାସରେ ( ପିନ୍ଧା ଲୁଗାରେ ) ବରହି ( ବହ୍ନି-ଅଗ୍ନି ) ଲାଗୁଁ ( ଲାଗିଲେ ) ନ ରହି (ଗୃହ ମଧ୍ୟରେ ନ ରହି) ପଳାଇ "ଯାଇ" ଚିତା ( ଶ୍ମଶାନାଗ୍ନି ) ତା ( ତାହାର ) ଝଳ ( ଝଳକ ) "ବହିଲେ" । "ଶ୍ମଶାନାଗ୍ନି ଶବଦଗ୍ଧ କଲାପ୍ରାୟ ବସନାଗ୍ନି ତାଙ୍କ ଦେହ ଦଗ୍ଧ କଲା ଏହି ଭାବ" । ବିଦ୍ୟୋତକ ( ପ୍ରକାଶକ ) ଦହନ ( ଅଗ୍ନି ) କାହା ( କାହାର ) ବାଳରେ ପତନ ହୋଏ । "ଯେମାନେ ତେଣୁ" ଅଗ୍ନିକୁମାରୀ ନର୍ତ୍ତନ ବହନ୍ତି କି ? । "ପ୍ରଜ୍ୱଳିତ ଅଗ୍ନି କାହାର ବାଳରେ ଲାଗିଯାନ୍ତେ ସେ ଡେଇଁ ଡେଇଁ ଯିବାରୁ ଅଗ୍ନିକୁମାରୀ ନୃତ୍ୟ କଲା ପ୍ରାୟ ଦେଖାଗଲା ଏହିଭାବ" । ୮ ।

୯ମ ପଦ—ବନିତା ( ସ୍ତ୍ରୀମାନେ ) ବହ୍ନିସଙ୍କୁଳେ ( ଅଗ୍ନି ସମୂହରେ ) ବେଳେ ବେଳ ( ଥରେ ଥରେ ) ଝଙ୍କାର ଦ୍ୱି ( ଦୁଇଗୋଟି ଲେଖି ) ତହିଁ

✱—ଏ ପଦ ନଟଙ୍କ ରୂପକ ।
୧—ଆଳୀ ସେତୌପଂକ୍ତିମାତ୍ରେ ବୟସ୍ୟାୟାଂ ତୁ ଯୋଷିତ ଇତି କୋଷଃ ।

ବୋଲନ୍ତି ଅତି ବନସ୍ଥୀ ହୋଇ ସେ । ବାତୁଳ କା । ବଦ୍ରୁମ-ମାଣିକ୍ୟ-
ମାଳାବ୍ରଜ । ବେଗେ ତପ୍ତାଙ୍ଗାର ମଣ୍ଡି ଅଙ୍ଗୁ ତେଜ ସେ ।୯।

ବକ୍ଷୋଜେ ଯା ନଖକ୍ଷତ ଜାତବେଦଙ୍କଣ ଜାତ ଜ୍ୱାଳା ମଣ୍ଡି
ଝାଡ଼େ ଅଞ୍ଚଳରେ । ବାରରେ ନ ପଶି ଡର ବାର ବନ୍ଧୁକୁ ନ ପାର
କୃପୀଟଯୋନ ଏ ଚଞ୍ଚଳରେ ସେ । ବଉଗଣ୍ଡୁ । ବାଟେ ଗଡ଼ାଗଡ଼ି
ଯାଉଅଛନ୍ତି । ବଡ଼ ଭୟେ ଚୌର୍ଯ୍ୟ ଖଣ୍ଡ ଯାଏ ମୂର୍ଚ୍ଛି ସେ । ୧୦ ।

---

ପକ୍ଷେ ( ଆର୍ଯ୍ୟ ନାନା ଗ୍ରନ୍ଥ ପର ଇତ୍ୟାଦିରେ ) ମୂର୍ଦ୍ଧନ୍ୟ ଷ ଦେଇ ( ମୂର୍ଦ୍ଧନ୍ୟ
ଷକାରରେ ଦେଲେ "ଇଷି" ହେବ ) "ଇଷି ଇଷି କହୁଯାନ୍ତି ଏହୁଖିବ" ।
ପୁଣି ବାନରଭୟ ଉତ୍ସାହୀ (ବାନରଙ୍କ ଭୟରେ ଉତ୍ସାହବନ୍ତ ହୋଇ) ଆପଣା
ଗୃହ (ଆପଣାର ଗୃହକୁ) ବର୍ଜନ (ଦେଖି) ଅତି ବନସ୍ଥୀ ହୋଇ "ଡରେ"
ବୋଲନ୍ତି "ଆମ୍ଭଙ୍କୁ ନ ମାର" । ବାତୁଳ କା ? ( ବାତୁଳ ପ୍ରାୟ ହେବାରୁ )
ବଦ୍ରୁମ ( ଯୋହଲା ) ମାଣିକ୍ୟ ମାଳାବ୍ରଜ ( ମାଳାସମୂହ ) ୧ ତପ୍ତାଙ୍ଗାର
( ଅଗ୍ନି ) ମଣ୍ଡି ( ମନେକରି ) ବେଗେ ଅଙ୍ଗ ( ଅଙ୍ଗରୁ ) ତେଜ ( ପକାଇ
ଦିଅନ୍ତି ) । ୯ ।

୧୦ମ ପଦ—ଯା ( ଯାହାର ) ବକ୍ଷୋଜେ ( ବକ୍ଷୋଜରେ ) ଜାତ
(ଜାତ ହୋଇଥିବା) ନଖକ୍ଷତ (ନଖକ୍ଷତକୁ) ଜାତବେଦ କଣ ଜ୍ୱାଳା ( ଅଗ୍ନି-
କଣାର ଜ୍ୱାଳା) ମଣ୍ଡି (ମନେକରି) ସ୍ୱେ ଅଞ୍ଚଳନ୍ତେ (କାନି ପଣନ୍ତରେ) ଝାଡ଼େ
(ଝାଡ଼ିଦିଏ) । "ଇଷତ୍ତୁରଙ୍ଗ ଦଶିବାରୁ ଏହୁ ଖିବ" । ବାରରେ ( ଜଳରେ )
ଡର ( ଭୟକରି ) ନ ପଶି ( ନ ପଶନ୍ତି ) । "କାହିଁକି ନା" ? ବନ୍ଧୁକୁ
( ଅଗ୍ନିର ପ୍ରତିବନ୍ଧୁକୁ ) ବାର ନ ପାର ( ଜାଣି ନ ପାରି ) ୧ କୃପୀଟଯୋନ ଏ
(ଅଗ୍ନିଏ) ଚଞ୍ଚଳରେ (ଏମନ୍ତ ଚଞ୍ଚଳ ବୁଦ୍ଧିରେ ) ବାଟେ (ଲଙ୍କାବାଟରେ)
ବଉଗଣ୍ଡି ଧନର ଗଣ୍ଡି ସବୁ ) ଗଡ଼ାଗଡ଼ି "ହୋଇ" ଯାଉଅଛୁ । ଚୌର୍ଯ୍ୟଖଣ୍ଡ
"ମାନେ" ବଡ଼ ଭୟେ "ନ ନେଇ" ମୂର୍ଚ୍ଛିଯାନ୍ତି । "ଅଗ୍ନି ଡରେ ବା
ବାନରଙ୍କ ଡରେ ଏହୁଖିବ" । ୧୦ ।

---

୧—ଘୃତ କୁମ୍ଭସମା ନାର୍ଯ୍ୟ ତପ୍ତାଙ୍ଗାରସମଃ ପୁମାନ୍ ଇତି ପ୍ରୟୋଗଃ ।
୧—କୃପୀଟଯୋନର୍ଜ୍ୱଲନୋ ଜାତବେଦା ସ୍ତନୂନପାଦହ୍ୟମରଃ ।

ବାଡ଼ବର ଜ୍ୟୋତି ବନ୍ଧ ବାଡ଼ବର ଘାତେ ଚହିଁ ଶୁଭିଲ ବଜ୍ର-
ନିର୍ଘୋଷପରି । ବଡ଼ବାର ସଙ୍ଗେ ସଙ୍ଗେ ତୁରଙ୍ଗେ ସମସ୍ତରଙ୍ଗେ ନ
ରସି ଭ୍ରମନ୍ତି ହୋଇ ତୁରି ସେ । ବଳମିଣ । ବସନ୍ତି ତାଙ୍କ ପୃଷ୍ଠରେ
କପି । ବୃକ୍ଷଶାଖା ଧୃତ ସାଦରୂପୀ ସେ । ୧୧

ବାଣୀ ରମଣୀଙ୍କ ଶୁଭେ ବଢ଼ାଇ ଆମ୍ଭ ବଲ୍ଲଭେ କହୁଥାନ୍ତି
ମାଇଲୁଁ ବାନର । ବଭ୍ରବସ୍ତୁର ବଭୃତି ଖ୍ୟାତ ତାପଇ ଜଗତ୍ତ ସେ ।

---

୧୧ଶ ପଦ—"ସେ ଅଗ୍ନି" ୧ବାଡ଼ବର ( ବାଡ଼ବାନଳର ) ଜ୍ୟୋତି ବନ୍ଧ ବାଡ଼ବର ( ବଡ଼ ବଡ଼ ବାଡ଼ମ ନ ) ଘାତେ ( ଘାତ ପକାଏ ) ତହିଁ "ସଙ୍ଗୀଣୁଁ" ସେ ଭଗ୍ନ ଶବ୍ଦ ବଜ୍ରନିର୍ଘୋଷ ପରି ( ଘଡ଼ଘଡ଼ି ଚଡ଼ଚଡ଼ି ପ୍ରାୟ ) ଶୁଭଇ । ୨ବଡ଼ବାର ( ଘୋଟକୀର ) ସଙ୍ଗେ ସଙ୍ଗେ ( ସଙ୍ଗ ହେବା ନିମିତ୍ତ ) ସମସ୍ତ ( ଉନ୍ମତ୍ତ ) ତୁରଙ୍ଗେ ( ଘୋଟକମାନେ ) ରଙ୍ଗେ ( କ୍ରୀଡ଼ାରେ ) ନ ରସି ତୁରି ହୋଇ ( ବେଗରେ ) "ତାପଭୟେ" ଭ୍ରମନ୍ତି ( ବୁଲନ୍ତି ) । "ତା ଦେଖି" କପି ( କପିମାନେ ) ତାଙ୍କ ପୃଷ୍ଠରେ ବଳମିଣ ( ଡେଉଁଯାଇ ) ବସନ୍ତି । ବୃକ୍ଷ ଶାଖା ( ଗଛ ଡାଳ ) ଧୃତ ( ଧରି ଥିବାରୁ ) "ସେହି କପି-ମାନେ" ୩ସାଦରୂପୀ ( ଅଶ୍ୱାରୋହପ୍ରାୟ ) ଦିଶିଲେ । ୧୧ ।

୧୨ଶ ପଦ—ରମଣୀଙ୍କ ( ଲଙ୍କା ସ୍ତ୍ରୀମାନଙ୍କର ) ବାଣୀ ଶୁଭେ (ଏରୂପେ ଶୁଭିଲା) । ଆମ୍ଭ ବଲ୍ଲଭେ ( ଆମ୍ଭର ସ୍ୱାମୀମାନେ ) ବାନର ( ବାନରଙ୍କୁ ) ମାଇଲୁଁ "ଏହି" ବଢ଼ାଇ କହୁଥାନ୍ତି "କିନ୍ତୁ ଅକ୍ଷମ କେବଳ ବଢ଼ାଇ ମାତ୍ର ସାର" ବଭ୍ରବସ୍ତୁର ( ସୂର୍ଯ୍ୟଙ୍କ ) ବଭୃତ ( ଦୀପ୍ତି ) ଜଗତ୍ତ ( ସଂସାରକୁ ) ତାପଇ ( ସନ୍ତାପିତ କରଇ ) "ଏମନ୍ତ" ଖ୍ୟାତ ( ବିଖ୍ୟାତ ) "ଅଛି" । ସେ ( ସୂର୍ଯ୍ୟ ) ଯେମନ୍ତେ ସ୍ୱର୍ଭାନୁ ( ରାହୁର ) ଆହାର "ହୁଏ" "ସେହିପରି ବାନରେ ଅସୁରଙ୍କୁ ଗ୍ରାସ କରିବେ" । ବଭ୍ରବସ୍ତୁ କଣ ( ଅଗ୍ନିକଣା ) ଛୁଇଁ

---

୧—ବାଡ଼ବୋ ବଡ଼ବାନଳ ଇତ୍ୟମରଃ ।

୨—ବାଳଃ କଶୋରେ ବାମ୍ୟଶ୍ୱା ବଡ଼ବା ବାଡ଼ବାଗଣେ ଇତ୍ୟପି ।

୩—ଅଶ୍ୱାରୋହାସ୍ତୁ ସାଦିନ ଇତ୍ୟମରଃ ।

ଯେମନ୍ତେ ସ୍ୱର୍ଭାନୁ ଆହାର ଯେ । ବାଧେ କ୍ଲଉଁ । ବାଧ୍ୱାବସୁନ୍ତଶ
ସମସ୍ତଙ୍କୁ । ବିହଗ ଚକୋର ଭକ୍ଷଇ ତାହାକୁ ଯେ । ୧୨ ।

ବଜ୍ରଅଙ୍ଗ ସରତ୍ରୁଷ୍ଟ ବନ୍ଧଭଗ୍ନ ସରପୃଷ୍ଠ ସରଥ ସଚଣ୍ଡ ହୋଇ
ଧାଇ । ବିହରେ ତହିଁ ଶରାଳି ବିହ୍ନ ଗିରିଷମ ଝଳ ବାଳିଜ ଜୀବନ
ହରି ନେଇ ଯେ । ବାଦ ଚେତେ । ବେଗେ ଶୋଣିତାକ୍ଷ ଜଳ ତ୍ରୁପାକ୍ଷ ।
ବିରୋଧୀତ ତାରେ ବେନି ଭ୍ରାତ ଦକ୍ଷ ଯେ । ୧୩ ।

---

( କ୍ଲଉଁଲମାନେ ) ସମସ୍ତଙ୍କୁ ବାଧେ ( ସନ୍ତାପିତ କରେ ) "ତଥାପି" ତାହାକୁ
( ସେ ଅଗ୍ନିକଣାକୁ ) ବିହଗ ଚକୋର (ଚକୋର ପକ୍ଷୀ) ଭକ୍ଷଇ । "ତନ୍ତ୍ରପ"
ଅସୁରେ ଆଜ୍ଞସମସ୍ତଙ୍କୁ ମାରି ପାରୁଥିବେ କିନ୍ତୁ ବାନରଙ୍କୁ ମାରି ପାରିବେ ନାହିଁ ॥

୧୩ଶ ପଦ—ବଜ୍ର ଅଙ୍ଗ ସରତ୍ରୁଷ୍ଟ "ଏ ଦୁଇ ଅସୁର" ✻ ବନ୍ଧଭଗ୍ନ
[1]ସର ( ବନ୍ଧ ଭାଙ୍ଗିଥିବା ପୋଖରୀ ପ୍ରାୟ ) ପୃଷ୍ଠରେ ( ହୃଷ୍ଟ ପୃଷ୍ଠରେ ) ସ[2]ରଥ
( ରଥ ସହିତ ) ସଚଣ୍ଡ ( ସୈନ୍ୟସହିତ ) ହୋଇ ଧାଇଁ ( ଧାଇଁଲେ ) ।
ତହିଁ ( ସେ ଦୁହିଙ୍କଠାରେ ) ଶରାଳି ( ଶରସମୂହ ) ବିହରେ । ଭଗ୍ନବନ୍ଧ
ସର—ପକ୍ଷେ—ପୃଷ୍ଠରେ ( ପୃଷ୍ଠଭାବରେ ) [4]ଶରଥ (ଶ୍ଳଥ—ଶିଥିଳ )
ସଚଣ୍ଡ ( ଭଉଁରୀ ସହିତ ) ହୋଇ ଧାଇଁ ( ଯାଏ ) ତହିଁ ( ତହିଁରେ )
[5]ଶରାଳି ( ଜଳପକ୍ଷୀମାନେ ) ବିହରେ ( ବିହରୁଥାନ୍ତି ) । ବାଳିଜ ( ଅଙ୍ଗଦ )
[6]ଗିରିଷମ ( ଗ୍ରୀଷ୍ମଋତୁର ) ଝଳ ( ତେଜକୁ ) ବହ୍ନି "ଏ ଦୁଇ [7]ଅସୁରଙ୍କ"
ଜୀବନ ହରି ନେଇ ( ହରିନେଲେ ) । "ଅଙ୍ଗଦ ନିଦାଘ ଝଳ ଜଳ ଶୋଷିଲା

---

✻—କବି ବକାର ନିୟମରକ୍ଷା କରିବା ସକାଶେ ଭଗ୍ନବନ୍ଧସର ନ ବୋଲି ବନ୍ଧ
ଭଗ୍ନସର ବୋଇଲେ ।

୧—କାସାର ସରସୀ ସର ଇତ୍ୟମରଃ ।

୨—ରଥୋ ରଥଦ୍ରୋଯାନେ ଚ ସ୍ୟନ୍ଦନେ ଚେତସେଽପତେଚ୍ଛ ଇତ୍ୟମେଦିନୀକରଃ ।

୩—ଚଣ୍ଡଂ କୋଟକେ ପୁମାନ୍ କ୍ଲୀବଂ ତ୍ରକ୍ତେ ଦୈନ୍ୟରଥାଙ୍ଗୟୋଃ ।
ରଙ୍ଗେତ୍ତ୍ରିମାତ୍ରେ କୁମ୍ଭକାଦିରୂପକରଣାଦ୍ୟନ୍ୟୋଃରିତ ଚଣ୍ଡଃ ।

୪—ଶ୍ରଥଃ ଶ୍ଳଥଃ ଶିଥିଳ ଇତ୍ୟଭିଧାନ ଶେଷଃ ।

୫—ଶରାରିରାଟିରାଡଷ୍ଟ ଇତ୍ୟମରଃ ଶରାଳି ରିତ୍ୟପି ।

ବ୍ରାହ୍ମଣ ହୋଇ ଦ୍ୱିବିଦ ନଖପ୍ରେତେ ପଳଶ୍ରାଦ୍ଧ ଦେଇ କଲେ ଜଳ ତର୍ପଣ । ବିଶୀର୍ଣ୍ଣ କରାଇ ଦ୍ୟୋତ ଜୁଲୁପାକ୍ଷକୁ ଖଦ୍ୟୋତ ବତ ଦିବସ ଛବି ଆପଣ ସେ । ବେନି ସୁତ । ବଳୀ କୁମ୍ଭକର୍ଣ୍ଣର ପ୍ରକଟ । ବାନରେଶ ହନୁମନ୍ତ ପାଇ ଭେଟ ସେ । ୧୪ ।

ବିନ୍ଧାଣ ସମରେ ସାନ୍ଦ୍ର ଶାଖାମୃଗେନ୍ଦ୍ର ମୃଗେନ୍ଦ୍ର କୁମ୍ଭ ସିନ୍ଧୁରେ ସିନ୍ଧୁରେ ଫିଙ୍ଗି । ବୁଡ଼ିଲା ନାହିଁ ଇକ୍ଷ୍ୱାକୁପାଦ ପରାସ୍ତେ ଇଚ୍ଛାକୁ ବାୟୁ-

---

ପ୍ରାପ୍ତ ସେ ଦୁହିଙ୍କ ପ୍ରାଣ ଶୋଷି ନେଲା ଏହିଭାବ" । "ତା ଦେଖି" ଶୋଣିତାକ୍ଷ ଜୁଲୁପାକ୍ଷ "ଦୁହେଁ" ବାଦ ( ଅଙ୍ଗଦ ସଙ୍ଗରେ ବିବାଦ ; ରଚେ ( କଲେ ) । ଦକ୍ଷ ( ସମର୍ଥ ) ବେନିଭ୍ରାତ ( ରାମ ଲକ୍ଷ୍ମଣ ) ତାରେ ( ଶୋଣିତାକ୍ଷ ଜୁଲୁପାକ୍ଷ ସଙ୍ଗରେ ) ବିରୋଧୀତ "ହେଲେ" ( ବିରୋଧ କଲେ ) ।।

୧୪ଶ ପଦ—ଦ୍ୱିବିଦ "କପି" ବ୍ରାହ୍ମଣ ( ବିପ୍ରପ୍ରାୟ ) ହୋଇ ନଖପ୍ରେତେ ( ତାହାର ନଖ ରୂପ ପ୍ରେତକୁ ) ପଳ ଶ୍ରାଦ୍ଧ ( ଅସୁର ମାଂସରେ-ଶ୍ରାଦ୍ଧ ) ଦେଇ କଲେ ( ରୁଧିର ରୂପ ଜଳରେ ) ତର୍ପଣ କଲା । "ଶୋଣିତାକ୍ଷକୁ ନଖରେ ବିଦାରି ମାରି ପକାଇଲା ଏହିଭାବ" । ଆପଣ ( ପୁଣି ସେ ଦ୍ୱିବିଦ ଆପେ ) ଦିବସର ଛବି ପରି "ଛବି ବହି" ଖଦ୍ୟୋତ ବତ ଦ୍ୟୋତ ( ପ୍ରକାଶ ଥାଉଥିବା ) ଜୁଲୁପାକ୍ଷକୁ ବିଶୀର୍ଣ୍ଣ କରାଇ ( କରାଇଲା ) । "ମାରିଲା" ଏହିଭାବ" । କୁମ୍ଭକର୍ଣ୍ଣର ବଳୀ ( ବଳବନ୍ତ ) ବେନି ସୁତ ( କୁମ୍ଭ ନିକୁମ୍ଭ ) ପ୍ରକଟ "ହୁଅନ୍ତେ" ବାନରେଶ ( ସୁଗ୍ରୀବ ) ହନୁମନ୍ତ ( ହନୁମାନ୍ ) ଭେଟ ପାଇ ( ଦୁହେଁ ଭେଟିଲେ ) । ୧୪ ।

୧୫ଶ ପଦ—ବିନ୍ଧାଣ ସମରେ ( ମଲ୍ଲଯୁଦ୍ଧରେ ) ସାନ୍ଦ୍ର ( ନିବିଡ଼ ) ଶାଖାମୃଗେନ୍ଦ୍ର ( ସୁଗ୍ରୀବ ) ମୃଗେନ୍ଦ୍ର ( ସିଂହପ୍ରାୟ ) କୁମ୍ଭ ସିନ୍ଧୁରେ ( କୁମ୍ଭ ଅସୁର ରୂପ ହସ୍ତିକି ) ସିନ୍ଧୁରେ ( ସାଗରମଧ୍ୟକୁ ) ଫିଙ୍ଗି "ଦିଅନ୍ତେ ସେ" ବୁଡ଼ିଲା ନାହିଁ । ଇକ୍ଷ୍ୱାକୁ ପାଦ ( ଲଙ୍ଘରୂମ୍ପା ) ପରାସ୍ତେ ( ପ୍ରାପ୍ତ ) ବାୟୁବେଗେ ( ପବନର ବେଗରେ ) ଇଚ୍ଛାକୁ ( ସ୍ୱଇଚ୍ଛାରେ ) "ନେଉଛି" ଆସି ରଙ୍ଗୀ ହେଲା ( ରଣରଙ୍ଗରେ ମାତିଲା ) । ସେ ( ସୁଗ୍ରୀବ ) "କୁମ୍ଭର" ବାହୁ ଧରି

ବେଗେ ଆସି ହେଲା ରଙ୍ଗୀ ସେ । ଛଘାତକୁ । ବନ୍ଧୁ ବାହୁ ଧରି ମୁଣ୍ଡେ ମୁଣ୍ଡ । ବନ୍ଧନରେ ରକ୍ଷମୁଣ୍ଡ ଶତେ ଖଣ୍ଡେ ସେ । ୧୫ ।

ବର୍ଣ୍ଣଯାନ୍ତୁ ରକ୍ଷଲୋକେ ନାଶଯାନ୍ତୁ ରକ୍ଷଲୋକେ ଖର ଗଦା ନିକୁମ୍ଭ ପ୍ରହାରି । ବକ୍ଷଲେ ବସ୍ତଂମାଳିତ ଚନ୍ଦ୍ରଲୋକେ ନେଇଁ ପାଣ୍ଡ ସେ ମାତିକ ସତ୍ବରେ ନିବାରି ସେ । ବଧାଏକ । ବଧାନରେ ମୂର୍ଚ୍ଛିତ ପାବନୀ । ବମାନେ ପକାଇ ବାହୁଡ଼ିଲା ଘେନି ସେ । ୧୬ ।

କପିକରସନ୍ତ ସ୍ୱଚ୍ଛେ ପ୍ରଭାକର ହୋଇ ପଚ୍ଛେ ଗୋଡ଼ାଇ ଚେତିଣିହନୁ-ମନ୍ତ । ବୃତ୍ରହର ପବିପରି ତଳ ହନୁରେ ପ୍ରହାରି ତଳରେ ପଡ଼ୁ

---

ମୁଣ୍ଡେ ମୁଣ୍ଡେ ( ତା ମୁଣ୍ଡରେ ଆପଣା ମୁଣ୍ଡର ) ଛଘାତକୁ ( ଆଘାତ ) ବନ୍ଧୁ । ( କରନ୍ତେ ) ବନ୍ଧନରେ ( ବେଗେ ) ରକ୍ଷ ( କୁମ୍ଭର ) ମୁଣ୍ଡ ଶତେ ଖଣ୍ଡେ ( ଶତଖଣ୍ଡ ହୋଇଗଲା ) । ।

୧୬ଶ—୧୭ଶ ପଦ—ରକ୍ଷଲୋକେ (ରାକ୍ଷସେ) ବର୍ଣ୍ଣଯାନ୍ତୁ ରକ୍ଷଲୋକେ ( ଭଲ୍ଲୁକେ ) ନାଶଯାନ୍ତୁ "ଏମନ୍ତ" ଖର ( ତୀକ୍ଷ୍ଣ ) ନିକୁମ୍ଭ "ଅସୁର" ଗଦା ପ୍ରହାରି ( ପ୍ରହାରିଲା ) । ମାରୁତ ( ହନୁମାନ୍ ) ବକ୍ଷଲେ ( ସ୍ନେହରେ ) ବକ୍ଷ ( ବକ୍ଷସ୍ଥଳ ) ନେଇଁ ଚନ୍ଦ୍ରଲୋକେ (ଚନ୍ଦ୍ରମଣ୍ଡଳରେ ) ପାଣ୍ଡ (ଦେଖାଇ) ସେ ମାତ ( ସେହି ଗଦାର ଭସ୍ମକୁ ) ସତ୍ବରେ ( ଶୀଘ୍ର ) ନିବାରି ( ନିବାରିଲା ) "ହନୁମାନ୍ ଶୁଣତରେ ରାକ୍ଷସର ଗଦା ବାଜି ବିଫଳ ହେଲା ଏହିଭାବ" । "ତା ଦେଖି ନିକୁମ୍ଭ" ବଧାଏକ ( ବଧାଏ ) "ମାରିଲା", ବଧାନରେ ( ସେହି ଆଧାର ଘାତରେ ) ପାବନି ( ହନୁମାନ୍ ) ମୂର୍ଚ୍ଛିତ "ହେଲା" । ସେ ( ନିକୁମ୍ଭ ) "ହନୁକୁ" ବିମାନେ ପକାଇ ଘେନି ବାହୁଡ଼ିଲା "ଏମନ୍ତ ଦେଖି" କପିକର ସୂନୁ ( ସୁଗ୍ରୀବ ) ପ୍ରଭାକର ( ସୂର୍ଯ୍ୟସମ ତେଜସ୍ୱୀ ) ହୋଇ ସ୍ୱଚ୍ଛେ ( ସ୍ୱଚ୍ଛରେ ) ପଚ୍ଛେ ( ଅସୁର ପଛରେ ) ଗୋଡ଼ାଇ ( ଗୋଡ଼ାଇଲେ ) । "କିଛିକ୍ଷଣପରେ" ହନୁମନ୍ତ ( ହନୁମାନ୍ ) ଚେତିଣି ( ଚେତନା ପାଇ ) ହରି ( ଇନ୍ଦ୍ର ) ବୃତ୍ରେ ( ବୃତ୍ରାସୁରକୁ ) ପବି ( ବଜ୍ର ) "ପ୍ରହାରିଲା" ପରି ହନୁରେ ( ନିକୁମ୍ଭ-ଗାଲରେ ) ତଳ ( ଚାପୋଡ଼ ) ପ୍ରହାରି ( ପ୍ରହାରିଲା ) । "ସେ ଆଘାତରେ

ଚରଣ ଘାତ ସେ । ବନ୍ଧୁଁ ତହୁଁ । ବୁକୁରେ ବଳ ସୁଗ୍ରୀବଯୋଗେ ।
ବୋଲେ ମକରାକ୍ଷ ମିଳି ରାମ ଆଗେ ସେ । ୧୭ ।

ବପ୍ତା ମୋର ଖର ଖରକର ଜ୍ୟୋତିଷ୍ମରଦ୍ଧରତର ଶରେ
ତା ଋଣ ଶୁଝିବ । ବୋଇଲେ ରାମ ରେ ଖରତନୟ କି ନୟ ତୋର
କରଅଛୁ ପାରୀନ୍ଦ୍ରେ ଯୁଝିବ ରେ । ବୃତଅନ୍ତେ । ବିବିଧ ସେବାମାନଙ୍କୁ
ବନ୍ଧ । ବୈବସ୍ୱତପୁରେ ଦେବା ପଠିଆଇଁ ସେ । ୧୮ ।

---

ନକୁମ୍ଭ" ତଳରେ ( ଭୂମିରେ ) ପଡ଼ୁଁ ( ପଡ଼ନ୍ତେ ) ତହିଁ ( ସେହି ସମୟରେ )
ସୁଗ୍ରୀବ ଚରଣଘାତ ( ଗୋଇଠାଏ ) ବୁକୁରେ ( ଅସୁର ଗ୍ଛାତିରେ ) ବନ୍ଧୁଁ
( ମାରନ୍ତେ ସେ ଯୋଗେ ( ସେହି ଗୋଇଠା ମାଡ଼ ଯୋଗକୁ ) ବଳ
( ଗୋଟାଏ ଗର୍ତ୍ତ ) "ହେବାକୁ ଦେ ମଲା" । "ଏ ସମୟେ" ଅସୁର
ମକରାକ୍ଷ ରାମ ଆଗେ ମିଳି ବୋଲେ ( କହିଲା ) । ୧୬।୧୭ ।

୧୮ଶ ପଦ—ମୋର ଖର "ରାକ୍ଷସ" ୧ ବପ୍ତା ( ବାପ ) "ଅଟେ"
"ତାହାର ପୁଅ ମୁଁ" ଖରକର' ( ସୂର୍ଯ୍ୟପ୍ରାୟ ) ଜ୍ୟୋତିଷ୍ମର ଖରତର
( ଅତି ତୀକ୍ଷ୍ଣ ) ଶରେ ( ନାରାଚରେ ) ତା ଋଣ ( ସେହି ପିତୃଋଣ )
ଶୁଝିବ । "ସେହିଶରେ ତୁମ୍ଭଙ୍କୁ ମାରିବ ଏହିଭାବ" । "ଏମନ୍ତ ଶୁଣି" ରାମ
ବୋଇଲେ ରେ ଖରତନୟ ! (ଅରେ ଗଧଛୁଆ) ତୋର କି ନୟ (ତୋହର-
ଏ କିରୂପ ନ୍ୟାୟ ) ପାରୀନ୍ଦ୍ରେ (ସିଂହ ସଙ୍ଗେ) ଯୁଝିବ "ଏପରି ଯାହା ମନରେ"
କରଅଛୁ "ଏହା କି ହୋଇପାରେ" 'ଗଧଛୁଆ କାହିଁ ସିଂହ ସଙ୍ଗେ ଯୁଝିବାକୁ
ଇଚ୍ଛାକରେ ଏହିଭାବ" । ରେ "ନବୋଧ" ବିବିଧ ସେବାମାନଙ୍କୁ ବନ୍ଧ (ନନା-
ପ୍ରକାର ସେବାକରି) ବୃତ ( ମୋଉଁ ବର ତ ପାଇଥିଲୁ ) ଅନ୍ତେ ( ତା ଶେଷ
ନ ହେଉ ) ବୈବସ୍ୱତ ପୁରେ ( ଯମପୁରେ ) ପଠିଆଇ ଦେବା "ପିତା ତୋହର
ସେଠାରେ ଅଛି ତୁ ତାହାର" ଅନ୍ତେ ( ସମୀପରେ ) ୨ ବୃତ ( କର୍ତ୍ତି-ରହି )
"ଏରୂପେ ତୋ ପିତୃଋଣ ତୁ ଶୁଝ ଏହିଭାବ" । ୧୮ ।

---

୧—ବପ୍ତା ପିତରେ ବାପକେ ଇତି ବିଶ୍ୱଃ ।
୨—ଭାଷାରେ ଏରୂପ ପଙ୍କ୍ତି କର୍ଣ୍ଣଦୋଷ ହୁଏ ନାହିଁ — ଭୃତ-ଭରତ,
ଦୃଷ୍ଟି ଇତ୍ୟାଦି ।

ବାନ୍ଧି ଧୂତପ୍ରଭା ଶର ସେ ଶୂରବନ୍ତ ଅସୁର ଯହୁଁ ନଗ୍ଗୁଇଲା ନବନ୍ଧଙ୍କୁ । ବର୍ତ୍ତିଶିଖ ଚର-ଅଚର-ପ୍ରଭୁ ଭୂଚର ଖେଚର କରି ବାନ୍ଧ ତା ଶିର ଚ୍ଛେଦକୁ ସେ । ବାହୁଡ଼ିଲେ । ବଳ ଜୟତୂର୍ଯ୍ୟବାଦ୍ୟମାନଦେଇ । ବଂଶବାହୁ ଆଗେ ଦୂତ କହ୍ନ ସେ । ୧୯ ।

ବଳଦ୍ୱୟ ସୌରମତେ ପ୍ରକଟ ବତ୍ସରଯୁକ୍ତେ ମେଷ ବୃଷଭ ମିଥୁନ କ୍ରମେ । ବନ୍ଧେ କର୍କପ୍ରଭ ସିଂହଗଡ଼ କନ୍ୟା-ଗଡ଼ ରହେ ତୁଳ ଅଳ

୧୯ଶ ପଦ—ଶୂରବନ୍ତ ( ବୀରପୁରୁଷ ) ସେ ଅସୁର ( ମକରାକ୍ଷ ) ଧୂତ-ପ୍ରଭାଶର ( ଧୂମ୍ରାଗ୍ନିପ୍ରଭଶର ) ବାନ୍ଧ ଯହୁଁ ନବନ୍ଧଙ୍କୁ ନଗ୍ଗୁଇଲା ( ବହୁତ ସୈନ୍ୟ ମାଇଲା ) ଚର ଅଚର ପ୍ରଭୁ ( ଚରାଚରପ୍ରାଣିଙ୍କର ପ୍ରଭୁ ରାମ ) ବର୍ତ୍ତିଶିଖେ ( ବାଣରେ ) ତା ( ସେହି ମକରାକ୍ଷର ) ଶିର ଛେଦକୁ ବାନ୍ଧ ( ମୁଣ୍ଡକାଟି ) ଭୂଚର ଖେଚର କରି ( କଲେ ) । "ଗଣ୍ଡିକି ଭୂମିରେ ପକାଇ ଦେଲେ ଶିରକୁ ଆକାଶରେ ଉଡ଼ାଇ ଦେଲେ ଏହି ଭାବ" । "ଏହାଦେଖି" ବଳ ( କପିବଳ ) ଜୟବାଦ୍ୟମାନ ଦେଇ ବାହୁଡ଼ିଲେ ; ଦୂତ "ଯାଇ" ବଂଶବାହୁ ଆଗେ କହ୍ନ ( କହିଲା ) । ୧୯ ।

୨୦ଶ ପଦ—ମେଷ ବୃଷଭ (ବୃଷ) ମିଥୁନ କ୍ରମେ ୧ବତ୍ସର ଯୁକ୍ତେ (ଏକ-ବର୍ଷ ) ସୌରମତେ (ସୌରମାନରେ) ବଳଦ୍ୱୟ ( ଦୁଇ ଥାଟ) ପ୍ରକଟ (ପ୍ରକାଶ-ପାଇଲେ ) ଜମ୍ୱା ୨ ଶୌରମତରେ ( ବୀରଭାବରେ ) ମିଥୁନ କ୍ରମେ ( ଦୁଇ ଦୁଇ ଲେଖରେ ) ବଳଦ୍ୱୟ ( ଦୁଇବଳ ମଧ୍ୟରୁ ) "ଆମ୍ଭବଳ" ମେଷ ବୃଷଭ ( ବଳଦଛେଳ ପ୍ରାୟ ବଳହୀନ ହେଲେ ) "ତାଙ୍କ ବଳ" ୩ କର୍କପ୍ରଭ (ଅଗ୍ନିର-ପ୍ରଭ ) ବନ୍ଧେ ( ବନ୍ଧିଲେ ) । ସିଂହଗଡ଼ ( ସିଂହପ୍ରାୟ ଗଡ଼ କଲେ ) । "ଏହା-ଦ୍ୱାରା ମେଷ ବୃଷ ମିଥୁନ କର୍କଡ଼ା ସିଂହ ଏହି ପାଞ୍ଚମାସ ସୂଚିତ ହେଲା" । "ଆମ୍ଭବଳ" କନ୍ୟା ( ସ୍ତ୍ରୀଙ୍କପ୍ରାୟ) ଗଡ଼ (ଗଡ଼କରି ) ୪ ରହେ (ଗୁପ୍ତ-ଲୁଚିଲେ)

୧—ସମ୍ୱତ୍ସରେ ବତ୍ସରୋଽବ୍ଦ ଇତ୍ୟମରଃ ।

୨—ଶୂର ଏବ ଶୌରଃ ସ୍ୱାର୍ଥେ ଅଣ୍ ।

୩—କର୍କଃ କର୍କଟକେ ବହ୍ନୌ ଶୁକ୍ଲାଶ୍ୱେ ଦର୍ପଣେ ଘଟେ ଇତିବିଶ୍ୱଃ ।

୪—ରହୋ ରତେଚ ଗୁହ୍ୟେଚ ଇତି ବିକାଣ୍ଡ ଶେଷଃ ।

ସରସରେ ଭ୍ରମେ ସେ । ଧେନେ ଧନୁ । ବଳେ ମକର ଅକ୍ଷ ବଳସେ ।
ବିଦ୍ୟମାନ କୁମ୍ଭ ମସ୍ତରେ ଏ ଶ୍ଳେଷ ଯେ । ୨୦ ।

ବିସ୍ମୁଖ ଶୁଣି ଦଶାସ୍ୟ ବାସବଦ୍ୱିଷ ପ୍ରବେଶ ରୁଷ ପ୍ରକାଶ ତାରେ
କରଇ । ବୁଡ଼ଣା ହୋଇଲା ସ୍ଥଳେ ଅନଳ ଲଗିଲା ଜଳେ ଅନିଳ
ପାଶେ ବନ୍ଧନ ହୋଇ ଯେ । ବ୍ରହ୍ମାୟୁଷ ବିହରିଲା ନର ନିଶ୍ୱାସକେ ।
ବୋଧ ଦେଲା ମେଘନାଦ ମୃଦୁବାକ୍ୟେ ସେ । ୨୧ ।

---

ତୁଳ ( ତୁଳା ପ୍ରାୟ ହୃଷ୍ଟା ହୋଉଥିଲେ ) । "ଏହାଦ୍ୱାରା କନ୍ୟା ତୁଳା ଏ ଦୁଇ-
ମାସ ସୂଚିତ ହେଲେ" । "ତାଙ୍କବଳ" ଅଳି (ବିଚ୍ଛାପ୍ରାୟ) "ଘାର୍ତ୍ତିକ ହୋଇ"
ସରସରେ ( ବାର୍ଯ୍ୟ ସହିତରେ ) ଭ୍ରମେ ( ଭ୍ରମିଲେ ) । "ଆମ୍ଭ ବଳରେ"
ଧେନେ ( ଥରେ ) ଧନୁବଳେ ( ଧନୁର ବଳରେ ) ମକର ଅକ୍ଷ ( ମକରାକ୍ଷ
ବଳସେ ( ମୁଦ୍ଗରକ ମଲ୍ଲ ) । କୁମ୍ଭ ( କୁମ୍ଭାସୁର ) ୬ ମସ୍ତରେ ( କୋଧରେ )
ବିଦ୍ୟମାନ "ହୋଇ ମୁଦ୍ଗରକ ମଲ୍ଲ" "ଏହା ଦ୍ୱାରା ଧନୁ ମକର କୁମ୍ଭ ମୀନମାନ
ସୂଚିତ ହେଲେ" "ଏରୂପେ ବାରମାସରେ" ଏ ଶ୍ଳେଷ (ଶ୍ଳେଷାର୍ଥ ହେଲା) । ୨୦

୨୧ଶ ପଦ୍ୟ—"ଆପଣାବଳର ପରାଜୟ ଦୂତ ମୁଖରୁ" ଶୁଣି ଦଶାସ୍ୟ
(ଦଶମୁଖ) ବିସ୍ମୁଖ (ବିମୁଖ) "ହେଲେ" । "ଏ ସମୟେ" ବାସବଦ୍ୱିଷ (ଇନ୍ଦ୍ରଜିତ)
"ଆସି ରାବଣ ସମ୍ମୁଖରେ" ପ୍ରବେଶ "ହେଲା" ତାରେ ( ତାକୁ ଦେଖି ) "ରାବଣ"
ରୁଷ ପ୍ରକାଶ କରଇ ( କହଇ ) । ସ୍ଥଳେ ( ସ୍ଥଳଯୁଦ୍ଧରେ ) ବୁଡ଼ଣା (ବୁଡ଼ିବାର)
ହୋଇଲା । ଜଳେ ଅନଳ ଲଗିଲା । ଅନିଳ (ପବନ) ପାଶେ (ପାଶରେ) ବନ୍ଧନ
(ବନ୍ଧା) ହୋଇ (ହେବ) । ନର ( ମାନବ ) ବ୍ରହ୍ମାୟୁଷ ( ବ୍ରହ୍ମାର ଆୟୁଷକୁ )
ନିଶ୍ୱାସକେ ( ଏକନିଶ୍ୱାସରେ ) ବିହରିଲା ( ହରଣ କରିନେଲା ) । "ଖାଦ୍ୟ
ନର ବାନର ସହିତଙ୍କୁ ମାରିବାରୁ ମୁଁ ଏରୂପ ମନେ କରେ ଏହି ତାତ୍ପର୍ଯ୍ୟାର୍ଥ"
"ରାବଣ କଥା ଶୁଣି" ମେଘନାଦ ମୃଦୁ ବାକ୍ୟେ ( କୋମଳବାକ୍ୟରେ )
ବୋଧ ଦେଲା । ୨୧

---

୧—ଶୃଙ୍ଗାରାଦୌ ବିଷେ ବୀର୍ଯ୍ୟେ ଗୁଣେ ରାଗେ ଦ୍ରବେ ରସଃ ଇତ୍ୟମରଃ ।
୨—ମସ୍ତରେ ମକ୍ଷିକାଦ୍ୟାଂ ହ୍ୟାନ୍ ମାତ୍ସର୍ଯ୍ୟକୋଧୟୋଃ ପୁମାନିତି ବିଶ୍ୱଃ ।
ମସ୍ତ ମସ୍ୟ ଦୁଇ ହୁଏ ।

ବାଦଲେ ମାଡ଼ଣ ଲୋକ ଇନ୍ଦ୍ରଗୋପ କଞ୍ଜୁଳୁକ ଆଷାଢ଼େ ଘନ-ଗର୍ଜନେ ଜୀଇ । ବକ୍ଷରେ ସେହିପ୍ରକାରେ ହେଲେ ଏ ନର ବାନରେ ହନୂମନ୍ତ ଜୀବନଦ ହୋଇ ସେ । ବନାଶିଲେ । ବାତବଳା ଜଣନ୍ତାଇଁ ଯୁଦ୍ଧ । ବୁଦ୍ଧି ଏକ କରିବା କ ଏବେ ସିଦ୍ଧ ସେ । ୨୨ ।

ବଦ୍ଧ୍ୟଙ୍କୁ ହ୍ରିବେଣୀକ ଯାଇ ଏକ ସୁବେଣୀକ ବୁଡ଼ାଇ ମାୟା-ଜାନକୀ କରୁ । ବୋଇଲା ରାବଣ ଶୁଣି ଉଣା ହେବ ସିନା ଆଣି ବାହୁଡ଼ ଇଲେ କତବକ୍ଷୀରୁ ସେ । ବଛେଦବା । ବୋଇଲା ଶୁଣି ତା ଇନ୍ଦ୍ରଜିତ । ବିଶ୍ରବାସୁତର ଶୁଣି ବୋଧ ଚିତ୍ତ ସେ । ୨୩ ।

---

୨୨ଶ ପଦ—"ଦେଖ" ଲୋକ (ଲୋକମାନେ) ଇନ୍ଦ୍ରଗୋପ (ସାଧବ-ଘର ବୋହୂ ପୋକ) କଞ୍ଜୁଳୁକ (କଆନାଡ଼) ମାଡ଼ଣ ( ମାଡ଼ିଦେଇ ) ବାଦଲେ ( ବାଦଲନ୍ତି ) । "ସେ ଯେମନ୍ତେ" ଆଷାଢ଼େ ( ଆଷାଢ଼ମାସ ) ଘନ ଗର୍ଜନେ (ମେଘ ଗର୍ଜନରେ) ଜୀଇ (ଜୀଅନ୍ତି) ବକ୍ଷରେ (ମୋ ବକ୍ଷରରେ) ସେହି ପ୍ରକାରେ ( ଇନ୍ଦ୍ରଗୋପ କଞ୍ଜୁଳୁକରୁଳୀ ) ଏ ନର ବାନର ହେଲେ । "ଏହାଙ୍କ" ଜୀବନଦ ( ଜୀବନଦାତା ) ହନୁମନ୍ତ ( ହନୁମାନ୍ ) ହୋଇ (ହୁଅଇ) "ଆମ୍ଭେ ମାଇଲେ ସେ ପୁଣି ଜୀଉଛନ୍ତି ଏହିଭାବ" । "ଏଣୁ" ବାତବଳା (ହନୂମାନଙ୍କୁ) ବନାଶିଲେ ଯୁଦ୍ଧ ଜଣନ୍ତାଇଁ ( ଆମ୍ଭେ ଯୁଦ୍ଧରେ ଜୟୀ ହୁଅନ୍ତେ ) । ଏକ ବୁଦ୍ଧି ଏବେ ସିଦ୍ଧ କରିବା କ ? । ୨୨ ।

୨୩ଶ ପଦ—"ତାତ" ! ବଦ୍ଧ୍ୟଙ୍କୁ "ରାକ୍ଷସ" ତ୍ରିବେଣୀକ (ତ୍ରିବେଣୀ-ଘାଟକୁ) ଯାଇ ଏକ ସୁବେଣୀକ (ନାରୀକାକୁ) ବୁଡ଼ାଇ ମାୟା ଜାନକୀ (ସୀତା) କରୁ । ଶୁଣି ରାବଣ ବୋଇଲା କତବକ୍ଷୀରୁ (ମାୟାସୀତା) ବାହୁଡାଇଲେ ଆଣି ( ଆତ୍ମବଡପଣ ) ଉଣା ହେବ ସିନା । ତା ଶୁଣି ( ସେ କଥାଶୁଣି ) ଇନ୍ଦ୍ରଜିତ ବୋଇଲା ବଛେଦବା (ହାଣିପକାଇବା), ଶୁଣି ( ଏକଥା ଶୁଣି ) ବିଶ୍ରବାସୁତର (ରାବଣର) ଚିତ୍ତ (ମନ) ବୋଧ ହେଲା । ୨୩ ।

ବାଞ୍ଛାବଟତଳେ ଗତ ସୁକାନ୍ତକ ଯେନ ଭ୍ରାନ୍ତ ମନାସି କାମ୍ୟକ-
ଘଟାର୍ଥେ ଯାନ୍ତି । ବସୁନନ୍ଦିନୀ-ସୁମୂର୍ତ୍ତି ବହଲା ଟହୁଁ ଝଟିତ ଝଟଝଟ ବନ୍ଦ୍ୟ-
ପ୍ରାପ୍ତ ଦେଖି ସେ । ବିଳପ୍ରାକେ । ବାହୁଡ଼ିଲା ବୃଷାର ଜାଣିଲା । ବଞ୍ଜୁଳ-
ବନରୁ ନେଲା ପ୍ରାପ୍ତେ ନେଲା ସେ । ୨୪ ।
ଏମାନରେ ମାନବଷ୍ଟପ୍ରକାରେ ଛନ୍ଦୁସୁବଷ୍ଟ ବସୁଁ ମୁଖପୋଛି
ଅଶ୍ରୁ ଗଳି । ବାତେ କ ନଳିନ ଢ଼ଳି ମରନ୍ଦ-ଉଦ୍‌ଗାରେ ଅଳି ଦ୍ୱୟ
ଡୋଳା ସେହି ଶୋଭାଶାଳି ସେ । ଏକମ୍ପିତ । ବେନି-ବେନି ପକ୍ଷ
ପକ୍ଷଘାତ । ବଢ଼ିବା ଅଳକ ବେଢ଼ି ସେହିମତ ସେ । ୨୫ ।

---

୨୪ଶ ପଦ— ସୁକାନ୍ତକ (ସୁକାନ୍ତନାମ୍ନୀ ଆପଣା ଭଗିନୀକି) ଯେନ ଭ୍ରାନ୍ତ (ବନ୍ଦ୍ୟକ୍ଷିପ୍ତ) ବାଞ୍ଛାବଟତଳେ (ବାଞ୍ଛାବଟମୂଳକୁ) ଗତ (ଗଲା) । ସେ (ସୁକାନ୍ତ) "ସୀତାଦେବୀ" ମନାସି କାମ୍ୟକଘଟାର୍ଥେ (କାମ୍ୟକଘଟାର୍ଥରେ) ଯାନ୍ତି (ଝସିଲା) । ବସୁନନ୍ଦିନୀ (ସୀତାପ୍ରାପ୍ତ) ସୁମୂର୍ତ୍ତି ଟହୁଁ ଝଟିତ (ତକ୍ଷଣାତ୍) ବହଲା 'ଟହୁଁ' ବନ୍ଦ୍ୟ (ବନ୍ଦୀପ୍ରାପ୍ତ) ଝଟଝଟ ଦେଖି (କାନ୍ତ ଝଟଝଟ ଦେଖିଲା) ବିଳପ୍ରାକେ (ଅର୍ଦ୍ଧଳତାରେ) ବାହୁଡ଼ିଲା "ତାହି" ବୃଷାର (ଛନ୍ଦୁନିତ) ଜାଣିଲା । ବଞ୍ଜୁଳ ବନରୁ (ଅଶୋକବନରୁ) ନେଲାପ୍ରାପ୍ତେ ନେଲା । ୨୪ ।

୨୫ଶ ପଦ—ଏମାନରେ (ରଥରେ) ମାନବଷ୍ଟ "ସ୍ତ୍ରୀ" ପ୍ରକାରେ ଛନ୍ଦୁସୁବଷ୍ଟ (ମାୟାସୀତା) ମୁଖ ପୋଛି ବସୁଁ (ବସନ୍ତେ) ଅଶ୍ରୁ (ଲୋତକ) ଗଳି (ଗଳୁଛି) । "ଦେଖି ଲଙ୍କାପୁରବାସୀମାନେ ଉତ୍ପ୍ରେକ୍ଷା କରନ୍ତି" ନଳିନ (ପଦ୍ମ) ବାତେ (ପବନରେ) ଢ଼ଳି (ଢ଼ଳିବାରୁ) ଅଳି (ଭ୍ରମରପ୍ରାପ୍ତ) ଶୋଭାଶାଳୀ ସେହି ଦ୍ୱୟଡୋଳା (ଦୁଇଡୋଳା) ମରନ୍ଦ (ମକରନ୍ଦ) ଉଦ୍‌ଗାରେ କ (ବାନ୍ତି-କରୁଛନ୍ତି) ଏକମ୍ପିତ (ଚଳୁଥିବା) ବେନି ପକ୍ଷ (ଦୁଇ ଆଖିପତା) ବେନି ପକ୍ଷଘାତ (ଭ୍ରମର ଡେଣାର ଘାତକ) "ବଢ଼ନ୍ତି" । ବଢ଼ିବା ଅଳକ (ବଢ଼ିଥିବା ଅଳକା) ସେହିମତ (ଭ୍ରମର ସମୂହ ପ୍ରାପ୍ତ) ବେଢ଼ି ଅଛନ୍ତି । ୨୫ ।

ବନ୍ୟସ୍ତ ଊରଜପରେ ଦେଉଛନ୍ତିଂକ ଶମ୍ଭୁଗିରେ କଣ୍ଠଶଙ୍ଖେ ବିରା-
ଜିତ ମାଳୀ । ବଧିରେ ସଲଳଶାପ୍ରୀ ସଲ୍ଲୀଳେ ଆରମ୍ଭ ହୋଇ ପ୍ରନାଳ
ରଞ୍ଜନ ରୋମାବଳୀ ସେ । ବେଣୀପରେ । ବଶ୍ରାମିଛି ଅନୁସର ଫଣୀ ।
ବିସ୍ମରନ୍ତି ଦେଖି ଲଙ୍କାର ରମଣୀ ସେ ।୨୬।

ବେଶହୀନ କ୍ଷୀଣ ଦଶେ ବସ୍ତ୍ରହୀନହରତେଷ ବସେ ପ୍ରସନ୍ନ ଦଶେ
ଏସନ ଏବେ । ବ୍ରହ୍ମାଣ୍ଡସାର ସୁନ୍ଦରୀଜାଳକ ତିଳକ ପରି ତିଳକ ଶୋଭ
ଯା ନ ପାଇବେ ସେ । ବ୍ରହ୍ମା କେତେ । ବସି କଳ୍ପିଛନ୍ତି କେତେକଳ୍ପେ ।
ବଲ୍ଲଭୀ ଏ ହେବ ପୁଣି କେତେ ତପେ ସେ । ୨୭ ।

---

୨୬ଶ ପଦ—"ମୁଖକୁ" ଉରଜପରେ "ଯାହା" ବନ୍ୟସ୍ତ "କରିଅଛି"
ଲଙ୍କାରରମଣୀ ଦେଖି ବିସ୍ମରନ୍ତି ବିରାଜିତ (ଶୋଭିତ) ମାଳୀ (ମାଳା) "ମାଳା-
କାର ରୂପେ" କଣ୍ଠଶଙ୍ଖେ ( କଣ୍ଠରୂପଶଙ୍ଖରେ ) ଶମ୍ଭୁଗିରେ ( କୁଚଶମ୍ଭୁଗିରେ )
"ନେଯାମ୍ବୁ ରୂପ ଜଳ" ଦେଉଛି କି ? ସେ ( ଶମ୍ଭୁ ) ବଧିରେ ( ବଧିରେକ )
ସଲ୍ଲଳଶାପ୍ରୀ ( ଜଳଶାୟୀଅଛନ୍ତି ) "ଏଣୁ" ସଲ୍ଲୀଳେ ( କଉତୁକରେ ) ଆରମ୍ଭ
ହୋଇ ରୋମାବଳୀ ( ଲୋମରାଜି ) ପ୍ରନାଳ ପ୍ରାୟ ରଞ୍ଜନ ଅଟେ । ବେଣୀ
"ରୂପ" ଫଣୀ ଅନୁସର ପରେ ( ଉପରେ ) ବିଶ୍ରାମିଛି * । ୨୬ ।

୨୭ଶ ପଦ—"ପୁଣି ସେ ରମଣୀଏ କହୁଅଛନ୍ତି" ବେଶହୀନ ( ବେଶ-
ଶୂନ୍ୟ ) କ୍ଷୀଣ ( କୃଶ ) ହରତେଷ ବସ୍ତ୍ରହୀନ ( ହର୍ଷଶୂନ୍ୟ ) "ହୋଇ" ବସେ
(ବସିଛି) । ଏସନ ( ଏରୂପ ହେଲେ ମଧ୍ୟ ) ଏବେ ପ୍ରସନ୍ନ ଦଶେ ( କେଡ଼େ
ପ୍ରସନ୍ନ ଦିଶୁଅଛି ) ବ୍ରହ୍ମାଣ୍ଡ ସାରସୁନ୍ଦରୀଜାଳାଙ୍କ ତିଳକ ପରି ( ବ୍ରହ୍ମାଣ୍ଡ ମଧ୍ୟରେ
ଶ୍ରେଷ୍ଠ ସୁନ୍ଦରୀ ସମୂହର ଭୂଷଣ ସ୍ୱରୂପ ଯେଉଁ ରାମା ସେ ) ଯା ( ଯେଉଁ
ରାମାର ) ତିଳକ (ତିଳପ୍ରମାଣ) ଶୋଭା ( ଶୋଭାକୁ ) ନ ପାଇବେ । କେତେ
ବ୍ରହ୍ମା ବସି କେତେ କଳ୍ପେ କଳ୍ପି ଅଛନ୍ତି ( ଏହାରୂପକୁ କଳ୍ପନାକରି ଗଢ଼ି-
ଅଛନ୍ତି ) ଏ ପୁଣି କେତେ ତପେ ବଲ୍ଲଭୀ "ଏରୂପ" ହେବ । ୨୭ ।

---

*—ଲକ୍ଷଣାରେ ଯାଧବଯାନା ହେଲ ଉଦ୍ଧୃତ ସାହିତ୍ୟେ—
ଲତାମୂଲେ ଯାନେ। ହରତଣ ପରସ୍ୱାଣୋ ଭ୍ରମନ୍ତି !
ଖ୍ତ ଚନ୍ଦ୍ରରଙ୍କାର ବହନ୍ତି ଜଳଧାର କୁବଳସ୍ୱାଦନ୍ତି ।

ବିଧାତା ଜଟାଧାରୀଙ୍କ ଦେଇ ଦିବ୍ୟସୁନ୍ଦରୀଙ୍କ ତିବେ ଉମା ରାମେ
ସୀତା ଦେଖ । ବିସର୍ଜନ୍ତା ପଛେ ଜୀବ ଲେଉଟାଇ ଏଡ଼େ ଦ୍ରବ୍ୟ ଆଣି
ଧିକ-ପୁଂସ ଦଶମୁଖ ସେ । ବୋଲେ କେହି । ବାରେ ଆଉ ନ ବୋଲ
ଏ ଭାଷ । ବଶତ ନୋହିଲା ରଖି ହେବ କିସ ସେ । ୨୮ ।

ବାନ୍ଧି ରଥେ ପଥେ ନେଇ ମିଳ ଠଣାପାଶେ ଯାଇଁ ସୈନ୍ୟଦ୍ୱନ୍ଦ୍ୱ
ଦ୍ୱନ୍ଦ୍ୱ ଘୋରତର । ବାନ୍ଧିଗଲା ପରବତେ ହନୂମନ୍ତ ପରବତେ ମାରିବାକୁ
ରହିଣି ଉପର ସେ । ବଳେ ନାହିଁ । ବାନ୍ଧାପାର୍ଥିବୀ ସ୍ଫୁଲିଙ୍ଗ ବୃହିଁ ।
ବାସବାରି ତାକୁ ଉଚେ ଏହା କହି ସେ ।୨୯।

---

୨୮ଶ ପଦ—ଦେଖ ବିଧାତା ଜଟାଧାରୀଙ୍କ ଶିବ ( ଜଟାଧାରୀ ଶିବଙ୍କୁ ) ଦିବ୍ୟସୁନ୍ଦରୀଙ୍କ ଉମା ( ଦିବ୍ୟସୁନ୍ଦରୀ ଉମାକୁ ) ଦେଇ "ଅଛି" । ଜଟାଧାରୀଙ୍କ ରାମେ ( ଜଟାଧାରୀ ରାମଙ୍କୁ ) ଦିବ୍ୟସୁନ୍ଦରୀଙ୍କ ସୀତା ( ଦିବ୍ୟସୁନ୍ଦରୀ ସୀତାଙ୍କୁ ) ଦେଇ "ଅଛି" । "ଲୋକୋତ୍ତରସୁନ୍ଦରୀଙ୍କ ରାଜାଧିରାଜଙ୍କୁ ନ ଦେଇ ଯୋଗୀନ୍ଦ୍ରଙ୍କୁ ଦେଇଛି ଏଣୁ ବିଧାତା ବଡ଼ ଅବିବେକ ଏହି ଭାବ" । ଜୀବ ( ପ୍ରାଣ ) ପଛେ ବିସର୍ଜନ୍ତା ( ଛାଡ଼ନ୍ତା ) ଏଡ଼େ ଦ୍ରବ୍ୟ ( ସୀତାକୁ ) ଆଣି ପୁଂସ ଦଶମୁଖ ( ପୁରୁଷ ହୋଇ ରାବଣ ) "ଭୟରେ" ଲେଉଟାଇ "ଦେଇଅଛି ଏଣୁ ଏହାକୁ" ଧିକ୍ "ଏହା ଶୁଣି" କେହି ( ନାୟିକା ) ବୋଲେ "ଆଗୋ ସଖି" ! ଆଉ ବାରେ ( ଥରେ ) ଏ ଭାଷ ( ଏ କଥା ) ନ ବୋଲ "ଏ ଗଲେ ସବୁ ଅନିଷ୍ଟ ଯିବ ଏହି ଭାବ" "ଏ ରାକାରି" ବଶ ତ ( ବଶୀଭୂତ ) ନୋହିଲା ରଖି କିସ ହେବ ( ଏହାକୁ ଘରେ ରଖି କି ହେବ ) । ୨୮ ।

୨୯ଶ ପଦ—ବାସବାରି ( ଇନ୍ଦ୍ରଜିତ ) ପଥେ ( ମାର୍ଗରେ ) ରଥ ବାନ୍ଧି ନେଇ ମିଳ "ସେନାପତି" ଠଣାପାଶେ ( ଠଣା ନିକଟରେ ) ଯାଇ ( ମିଳିଲା ) । ସୈନ୍ୟଦ୍ୱନ୍ଦ୍ୱ ( ଦୁଇଆଡ଼ଙ୍କର ) ଦ୍ୱନ୍ଦ୍ୱ ( ଯୁଦ୍ଧ ) ଘୋରତର "ହୋଇଲା" । ହନୁମନ୍ତ ( ହନୁମାନ୍ ) ପରବତେ (ପର୍ବତେ ତଳ) ବନ୍ଧି ଗଲା । ୧ରହିଣିଉପରେ ( ରଥଉପରେ ) ପରବତେ ( ପର୍ବତ ) ମାରିବାକୁ ପାର୍ଥିବୀ

---

୧—ସ.ନେ ରହିଣି ଯୁଦ୍ଧାର୍ଥେ ଶତାଙ୍ଗଃ ସ୍ୟନ୍ଦନୋରଥ ଇତ୍ୟମରଃ ।
ଶତାଙ୍ଗାଦିସ୍ତୁ । ଯୁଦ୍ଧାର୍ଥେ ରଥବନ୍ତ ଯାନେ ଏ ଟୀକାର୍ଥ ।

ବିବାଦ ଆରମ୍ଭ ଭୁମ୍ଭ ଆମ୍ଭର ଏ ଶାତକୁମ୍ଭ କୁମ୍ଭସ୍ତନୀ ଯେନ ଯାଉ ଥିଲି । ବାଳ ଧରି କରବାଳ ଯେନ ମାରିଲେ ପ୍ରବାଳ ଅଧରୀ-ଗଳରେ ଲାଗିଲା ଗଳ ସେ । ବିଚ୍ଛେଦନ । ବିଗହନଶୀରଷ ମଣ୍ଡେ ମହୀ । ବୋଇଲେ ହନୁମାନ କି କଲୁରେ ଦ୍ରୋହୀ ଯେ । ୩୦ ।

ବସୁଧାଭୃତ ପ୍ରହାରି ଶତାଙ୍ଗଙ୍କୁ ଚୂର୍ଣ୍ଣକରି ଭୟେ ହୟେ ଆରୋହି କର୍ବୁର । ବେଗେ ପଶିଲା ନଗରେ ପାବନି ଗତ ନଗରେ ଗରେ ଘାରିଲା ପ୍ରାପ୍ତ ଶରୀର ସେ । ବାଟେ ଯାଉଁ । ବୃଦ୍ଧ ଜାମ୍ବବନ୍ତଙ୍କୁ ଦେଖିଲେ । ତୃଷାକୁଳତା ହୋଇ ସକଳ କହିଲେ ସେ ।୩୧।

---

( ସୀତାଙ୍କ ) ସ୍ୱରୂପ ( ମୂର୍ତ୍ତିକ ) ବନ୍ଧି ବହ୍ନି ବଳେ ନାହିଁ ( ହାତ ଛଳିଲା ନାହିଁ ) ଚାପବାଣ ( ଇନ୍ଦ୍ରଜିତ ) ଉଚ୍ଚେ ( ଉଚ୍ଚସ୍ୱରରେ ) ଏହା ( କଥା ) କହି ( କହିଲା ) । ୨୯ ।

୩୦ଶ ପଦ—ଏ ଶାତକୁମ୍ଭ କୁମ୍ଭସ୍ତନୀ ( ଏ ସୁବର୍ଣ୍ଣଘଟସ୍ତନା ସୀତା ) ଯେନ ( ସକାଶେ ) ଭୁମ୍ଭ ଆମ୍ଭର ବିବାଦ ଆରମ୍ଭ "ହୋଇଅଛି" "ଏ ମଲେ ଭୁମ୍ଭ ଆମ୍ଭ" ସଳ ( ଅଶକ୍ତି ) "ହିବ" । "ଏହା କହି ମାୟାସୀତାର" ବାଳଧରି କରବାଳ ଯେନ ( ଖଣ୍ଡାଦ୍ୱାରା ) ମାରନ୍ତେ ପ୍ରବାଳ-ଅଧରୀ ( ନବପଲ୍ଲବାଧରୀ ମାୟାସୀତା ) ଗଳରେ ( ଗଳାରେ ) ଲାଗିଲା । ବିଚ୍ଛେଦନ ( ଦୁଇଖଣ୍ଡ ) "ହୁଅନ୍ତେ" ବିଗ୍ରହ (ତା ଦେହ) ଶୀରଷ ( ଶୀର୍ଷ— ମସ୍ତକ ) "ଦୁହେଁ" ମହୀ ( ଭୂମିକି ) ମଣ୍ଡେ ( ମଣ୍ଡିଲା ) "ମୁଣ୍ଡଗଣ୍ଡି ଦୁଇଖଣ୍ଡ ହୋଇ ମହୀରେ ପଡ଼ିଲା ଏହାଦେଖି" । "ଏହା ଦେଖି" ହନୁମାନ୍ ବୋଇଲେ ରେ ଦ୍ରୋହୀ ( ରେ ପାପୀ ) କି କର୍ମ କଲୁ ( ଅବଧ୍ୟ ସ୍ତ୍ରୀ ହତ୍ୟା କଲୁ ) ।୩୦।

୩୧ଶ ପଦ—"କ୍ରୋଧରେ ହନୁମାନ୍" ବସୁଧାଭୃତ ( ପର୍ବତ ) ପ୍ରହାରି ଶତାଙ୍ଗଙ୍କୁ ( ଇନ୍ଦ୍ରଜିତର ରଥକୁ ) ଚୂର୍ଣ୍ଣ କରି "ଦେଲା" । ଭୟେ ( ଭୟ ପାଇ ) ହୟେ ( ଏକ ଅଶ୍ୱ ) ଆରୋହି କର୍ବୁର ( ଇନ୍ଦ୍ରଜିତ ) ବେଗେ ନଗରେ ( ଲଙ୍କାପୁରରେ ) ପଶିଲା । "ତା ଦେଖି" ପାବନି ( ହନୁମାନ୍ ) ଗରେ ( ବେଗରେ ) ଶରୀର ପାରି ହୋଇ ପ୍ରାପତ ନଗରେ (ସୁବେଳ ପର୍ବତକୁ)

ବଦନ ମ୍ଳାନ ଅନାଇଁ ଦୁଇଜଣଙ୍କର ତହୁଁ ପଗ୍ରୁଁ କହିଲେ ଶ୍ରୀରାମରେ । ବିଖଣ୍ଡନ କଲା ଶିରଂ ରାବଣି ଖାଣ୍ଡସ୍ରି ଅସିର ଯେଉଁ ସୀତା ଧରାଜାତା ତାରେ ସେ । ବିଜ୍ଞାନ ସେ । ବିଞ୍ଚି ସିଞ୍ଚି ନୀର ଶାନ୍ତକଲେ । ବାସ କେଶ ଅସମ୍ଭାଳେ ବାହାରିଲେ ସେ । ୩୨ ।

ବୈଦେହୀ ଜାନକୀ ସୀତା ମୈଥିଳୀ ମହୀଦୁହିତା ଯୋଜନଗନ୍ଧା ନମାନ ପୂର୍ବେ । ବିନ୍ୟାସ କରିଣ ହାହା ଦେଖେ ତାକୁ ରଘୁନାହା

---

ଗଲ ( ଚଲ୍ଲ ) । ବାଟେ ଯାଉଁ ( ବାଟରେ ଦିବା ସମ୍ମୁଖରେ ) ବୃଦ୍ଧ ଜାମ୍ବବାନକୁ ଦେଖିଲେ । ବ୍ୟାକୁଳତା ( ଦୁଃଖିତ ) ହୋଇ ସକଳ "କଥା" କହିଲେ । ୩୧ ।

୩୨ଶ ପଦ—"ହନୁମାନ ଜାମ୍ବବାନ୍ ଦୁହେଁ ରାମଙ୍କ ନିକଟେ ପହଞ୍ଚନ୍ତେ ରାମ" ଦୁଇ ଜଣଙ୍କର ବଦନ ମ୍ଳାନ ( ମୁଖ ବିରସ ) ଅନାଇ ( ଦେଖି) ପଗ୍ରୁଁ ( ପଗ୍ରରନ୍ତେ ) ସେ ( ଦୁହେଁ ) ତହିଁ ( ସେଠାରେ ) ଶ୍ରୀରାମରେ ( ରାମଙ୍କ ସ୍ମୁମୁରେ ) କହିଲେ ରାବଣି ( ଇନ୍ଦ୍ରଜିତ ) ଖାଣ୍ଡେଅସିରେ ( ଖାଣ୍ଡ ଖଡ଼୍ଗରେ ) ଧରାଜାତା ( ମହୀଜା ) ଯେଉଁ ସୀତା ତାରେ ( ତାହାଙ୍କର ) ଶିର ବିଖଣ୍ଡନ ( ଛେଦନ ) କଲା । "ଏହା ଶୁଣି ରାମ" ବିଜ୍ଞାନ ( ହତଜ୍ଞାନ ) "ହେଲେ" । "ସେ ଦୁହେଁ ତାଙ୍କୁ" ବିଞ୍ଚି ( ବିଞ୍ଚଣାରେ ବିଞ୍ଚି ) ନୀର ( ଜଳ ) ସିଞ୍ଚି ଶାନ୍ତ କଲେ । ବାସ କେଶ ଅସମ୍ଭାଳେ ( ରାମ ବସନ ବାଳ ନ ସମ୍ଭାଳି ) ବାହାରିଲେ ( ଧାଇଁଲେ ) ।୩୨ ।

୩୩ଶ ପଦ—"ବୈଦେହୀ ଆଦି" ନାମାନ ପୂର୍ବେ ( ନାମମାନଙ୍କ ଆଦ୍ୟରେ ) ୧ ହା ହା "ଶବ୍ଦ" ବିନ୍ୟାସ କରିଣ ( ଦେଇ ) ହା ହା ବୈଦେହୀ ହା ହା ଜାନକୀ ହା ହା ସୀତା ହା ହା ମୈଥିଳୀ ହା ହା ମହୀଦୁହିତା ହା ହା ଯୋଜନଗନ୍ଧା "ଏରୂପେ କହି" ରଘୁନାହା ( ରାମଚନ୍ଦ୍ର ) ତାକୁ ( ମୃତ ମାୟାସୀତାକୁ ) ଦେଖେ (ଦେଖିଲେ) । ବିଘାତକ ସ୍ଥଳରେ ( ଖଣ୍ଡା ବାଜିବା ସ୍ଥାନରେ ) କୀଲାଲ ( ରକ୍ତ ) ବହିଅଛି । ଯେ ( ରକ୍ତନଦୀ ) ଆତପ ନଦୀ—ଛବେ ୨ ( ଖରକାଳ ନଦୀରୂପରେ ) ଶୋଭିତ ( ଶୋଭାପାଉଅଛି ) । "ଆତପ

---

୧—ହା ବିଷାଦେ ଚ ଶୋକେଚ କ୍ରୁଧା ଦୁଃଖାର୍ଥନ୍ଦ୍ରୋଚପୀଡ଼ । 
୨—ଛବିଃ ସ୍ୱଚ୍ଛବାଭିତ୍ରାସ୍ୟକଶ୍ମଷ୍ଟାରୂପାଚ୍ଚ ଜନୁସ୍ସୁ ।

ଶୋଭିତ ଆତପନଦୀଭାବେ ସେ । ବସିଅଛି । ବିଘାତକ ସ୍ଥଳରେ
କୀଲାଳ ତଟେ ସେ ସ୍ତନେ କୋକଉରଜ ଯୁଗଳ ସେ । ୩୬୩ ।

ବସ୍ତ୍ର ଶୁଷ୍କ ଫେନମତେ ହଂସାବଳି ବେନି-ପ୍ରାନ୍ତେ ଅସ୍ତବ୍ୟସ୍ତ
ସୁଭୁଜ ମୃଣାଳ । ବିପୁଳ ଉରୁ ପୁଳିନ ମଳିନକର ନଳିନ ରୋମାବଳୀ
ଶୈବାଳ ଜାଳ ସେ । ବିଲୋକିତେ । ବୋଇଲେ ମୋ ଘନରସଦାୟି ।
ବସି କୋଳେ ପକାଇଲେ ତାଙ୍କୁ ନେଇ ସେ । ୩୬୪ ।

ବିଭାକରବଂଶେ ଜାତ ଯେବେ ସେ ହେଲେ ଏମନ୍ତ ତାଙ୍କ ଫଙ୍କା-
ଭ୍ରମ ସ୍ତମ୍ଭାଠାରେ । ବୋଲନ୍ତି ରାଘବ ମୁହିଁ ବିହାର କରିବି କାହିଁ

---

କାଳନଦୀର” ବିଘାତକ ସ୍ଥଳରେ ( ଖୋଳିବା ସ୍ଥାନରେ ) କୀଲାଳ ( ଜଳ )
ବାହାରେ । “ତଟରେ” କୋକ ( ଚକ୍ରବାକ ପକ୍ଷି ) ଯୁଗଳ “ବସିଥିବା
ପ୍ରାୟ ମାୟାସୀତାର” “ଦେହରୂପ” ସ୍ତନେ ( ସ୍ତନରେ ) କୋକ “ରୂପ”
ଉରଜ ଯୁଗଳ ବସେ ( ବସିଅଛି ) । ୩୬୩ ।

୩୬୪ଶ ପଦ—“ଆତପକାଳ ନଦୀରେ ଶୁଖିଲା ଫେଣ, ଦୁଇ ପାଖରେ
ହଂସପନ୍ତି, ପଦ୍ମମୃଣାଳ, ପୁଳିନ, ପଦ୍ମ, ଶିଉଳି, ଜଳଥିବାରୁ ଶୋଭାହେଲେ”
ଶୁଷ୍କଫେନ ମତେ ( ଶୁଖିଲା ଫେଣ ପ୍ରାୟ ) ବସ୍ତ୍ର ( ତା ଦେହଲୁଗାର ) ବେନି
ପ୍ରାନ୍ତେ ( ଧଡ଼ି ଆଉ ମୁହଁରେ ) ହଂସାବଳୀ ( ଦୁଇ ହୋଇଥିବା ହଂସପନ୍ତି )
ଅସ୍ତବ୍ୟସ୍ତ “ହୋଇ ପଡ଼ିଅଛି” । ମୃଣାଳ ( ପଦ୍ମନାଡ଼ ରୂପ ) ସୁଭୁଜ
( ବାହୁଦ୍ୱୟ ) ବିପୁଳ ( ବୃହତ୍ ) ପୁଳିନ ( ତଟରୂପ ) ଉରୁ “ଦ୍ୱୟ”
ମଳିନ “ପଡ଼ିଥିବା” ନଳିନ ( ପଦ୍ମରୂପ ) କର ଦ୍ୱୟ ଶୈବାଳଜାଳ
( ଶିଉଳି ସମୂହରୂପ ) ରୋମାବଳୀ ( ଲୋମଶ୍ରେଣୀ ) ବିଲୋକିତେ ( ଖରାକାଳ
ନଦୀରୂପ ମାୟାସୀତା ଦେଖି ) ବୋଇଲେ ମୋ ଘନରସଦାୟି ( ନଦୀପକ୍ଷେ—
ଜଳଦାୟି, ମାୟାସୀତା ପକ୍ଷେ—ନବଘନ ଶୃଙ୍ଗାର ରସଦାୟି ) “ଏରୂପ” କହି
ବସି ତାଙ୍କୁ ନେଇ କୋଳେ ପକାଇଲେ । ୩୬୪ ।

୩୬୫ଶ ପଦ—ସେ ( ରାମ ) ବିଭାକର ( ସୂର୍ଯ୍ୟ ) ବଂଶେ ଜାତ
“ହେବା” ଯେବେ ତାଙ୍କ ( ସୂର୍ଯ୍ୟଙ୍କର ) ସ୍ତମ୍ଭା ଠାରେ ( ଫଙ୍କାର ଦାସୀଠାରେ )
ଫଙ୍କାଭ୍ରମ “ହେଲା ପ୍ରାୟ” ଏମନ୍ତ ( ଏରୂପ ଭ୍ରମ ) ହେଲେ । ବୋଲନ୍ତି

ପ୍ରେମସିନ୍ଧୁ ଜୀବନସ୍ଥାନରେ ଯେ । ବରାରୋହା । ବୋଲାଇଁ ମୁଁ ରାମ ରାମା ତୁନ୍ହି । ବାନ୍ଧବ ଗୌରୀଧନ ଶିବ ମୁହିଁ ଯେ । ୩୫ ।

ବୋଲନ୍ତ ସୀତା ସଂସାରେ ତାପ ବାରୁଣୀ ଯୋଗରେ ମଗ୍ନ ହୋଇଥିଲ ସୁଲଗ୍ନରେ । ବିଧାତା କରାଇଲା ଲୀନ ହରିପଦେ ତା ଭାବନ କରି ଭାଗୀ ହେବ ସନ୍ତାପରେ ଯେ । ବରାରୋହା । ବୋଲାଇବା ପଦ୍ମିନୀ ସକାଶେ । ବନାଶିତା ହେଲୁ କିବା ଚନ୍ଦ୍ରହାସେ ସେ । ୩୬ ।

---

ରାଘବ ମୁହିଁ ( ରାଘବ ମଞ୍ଚ ମୁଁ ) "ତୁ" ପ୍ରେମସିନ୍ଧୁ ତୋ ଜୀବନ ( ପ୍ରାଣ ) ଜୀବନ ( ଜଳ ) "ହେଲ" । "ତାହା" ବସ୍ଥାନରେ ( ବନା ) କାହିଁ ବିହାର କରିବ । ହେ ବରାରୋହା ମୁଁ ରାମ ( ମନୋହର ) ତୁହି ରାମା ( ମନୋହାରୀ ) ବୋଲାଇ ରେ ବାନ୍ଧବ ! ତୁ ଗୌରୀ ହେବା ଯେଣୁ ମୁହିଁ ଶିବ (ମଙ୍ଗଳ ଯୁକ୍ତ ପିନା ) "ଶିବ ଗୌରୀଙ୍କ ଧେନଅନ୍ତ ଏହି ଭାବ" ।୩୫।

୩୬ଶ ପଦ—ସଂସାରେ ( ସଂସାର ମଧ୍ୟରେ ) ତୁ ୧ ସୀତା ( ଗଙ୍ଗା ) ବୋଲନ୍ତ । ବାରୁଣୀ ଯୋଗରେ ( ଗଙ୍ଗା ବାରୁଣୀ ଯୋଗରେ ) ସୁଲଗ୍ନରେ ( ଉତ୍ତମ ଲଗ୍ନରେ ) ମଗ୍ନ ହୋଇଥିଲ ( ବୁଡ଼ିଥିଲ ) । "ତତ୍ପୂର୍ବରେ ବାରୁଣୀ ଯୋଗରେ ( ନବାରଣ ଯୋଗରେ ) ବୁଡ଼ିଲ" "ଏବେ" ବିଧାତା "ଗଙ୍ଗାକୁ" ହରିପଦେ ( ବିଷ୍ଣୁପାଦରେ ) ଲୀନ "କରାଇଲା ପରି ତୋତେ" ହରିପଦେ ( ଯମପଦରେ ) ଲୀନ କରାଇ ( କରାଇଲା ) । ତା ଭାବନ କରି ( ଏବେ ମୁଁ ତାହା ଭାବି କରି ) ସନ୍ତାପରେ ଭାଗୀ ହେବ । ହେ ବରାରୋହା ତୁ ପଦ୍ମିନୀ "ସ୍ତ୍ରୀ" ବୋଲାଇବା ସକାଶେ କିବା ଚନ୍ଦ୍ରହାସେ ( ଖଡ୍ଗରେ ) ବନାଶିତା ହେଲୁ "ଚନ୍ଦ୍ରହାସରେ ( ଚନ୍ଦ୍ରକିରଣରେ ) ପଦ୍ମିନୀ ମୁଦ୍ରିତ ହୁଏ ଏହି ତାତ୍ପର୍ଯ୍ୟାର୍ଥ" । ୩୬ ।

---

୧—ସୀତା ଲକ୍ଷ୍ମୀ ରୂମା ସୀତା ସୀତା ସାଦ୍ଧ୍ଵୀ ଦେବତା ।
ସୀତା ଲଙ୍ଗଳଦଣ୍ଡଃ ସ୍ୟାତ୍ ସୀତା ମନ୍ଦାକିନୀ ସ୍ମୃତା ଇତ୍ୟନେକାର୍ଥ-ଧ୍ୱନିମଞ୍ଜରୀ।

ବଲ୍ଲଭସଙ୍ଗେ ବଲ୍ଲଭି ଅଗ୍ନି ପ୍ରବେଶକୁ ଲଭି ସେହ୍ନ କଥା ବିପ-ରୀତ ହେବ । ବିପରୀତରେ ହୋଇଛନ୍ତି ପୁରୁଷ ବାଳମୃଗାକ୍ଷୀ ଏଡ଼େ କଥା କି ବିଫଳେ ଯିବ ସେ । ବହନରେ । ବହ ଗର୍ଭ ଦହନରେ ଆଣି । ବଡ଼ କର ଭାଷେ ଏହା ରଘୁମଣି ସେ । ୩୭ ।

ବାର୍ତ୍ତା ଅଶୋକବନେ ହେଲା ସୀତା ସନ୍ନିଧାନେ ତ୍ରିଜଟା ସମର୍ପାଆଦି ହସି । ବାନରସ୍ୱରୂପେ ଆସି ପେଷିଲେ ଏକ ରାକ୍ଷସୀ ବିଭୀଷଣ କର୍ଣ୍ଣେ ଗଲା ଭାଷି ସେ । ବଚସ୍କୃତ । ବ୍ୟର୍ଥ ଏ ଶବକୁ ତ୍ୟଜତ୍ୟଜ । ବର୍ଣ୍ଣେ ନ ଚହ୍ନିଲ ଚହ୍ନେ ଏବେ ହେଜ ସେ । ୩୮ ।

---

୩୭ଶ ପଦ—ବଲ୍ଲଭସଙ୍ଗେ ( ପତିସଙ୍ଗରେ ) ବଲ୍ଲଭି ( ପତ୍ନୀ ) ଅଗ୍ନି-ପ୍ରବେଶକୁ ଲଭି ( ଲଭଇ ), "ଏବେ" ସେହ୍ନ ( ଅଗ୍ନିରେ ପ୍ରବେଶ କରିବା ) କଥା ବିପରୀତ ହେବ ( ପତ୍ନୀସଙ୍ଗେ ପତି ଅଗ୍ନିରେ ପଶିବ ) "ଏହା ଅନୁଚିତ ବୋଲିଯାଇ ନ ପାରେ କାରଣ", ବିପରୀତରେ ( ବିପରୀତ ସଙ୍ଗମରେ ) ବାଳମୃଗାକ୍ଷୀ ( ନାୟିକା ) ପୁରୁଷ ହୋଇଛନ୍ତି ଏଡ଼େ କଥା ବିଫଳେ ( ବିଫ-ଳରେ ) ଯିବ କି ( ସଫଳ ହେବ ) । ବହନରେ ( ଶୀଘ୍ର ) ଦହନରେ ( ଅଗ୍ନି ) ଆଣି ଗର୍ଭ ବହ ( ଖାତଖୋଳ ) ରଘୁମଣି ( ରାମ ) ଏହା ( ଏକଥା ) ବଡ଼କର ( ଉଚ୍ଚରେ ) ଭାଷେ ( କହନ୍ତି ) ।

୩୮ଶ ପଦ—ସୀତା ସନ୍ନିଧାନେ ଅଶୋକବନେ "ଇନ୍ଦ୍ରଜିତ ସୀତା ଶିରଚ୍ଛେଦନ କରିବାର" ବାର୍ତ୍ତା ହେଲା ( ପହଞ୍ଚିଲା ) । ଏମନ୍ତ ଶୁଣି ତ୍ରିଜଟା ସମର୍ପାଆଦି ସଖୀ ହସି ଏକରାକ୍ଷସୀ ପେଷିଲେ, ସେ ବାନର ସ୍ୱରୂପେ ଆସି ବିଭୀଷଣ କର୍ଣ୍ଣେ ( କାନରେ ) ଭାଷି ( କହି ) ଗଲା । "ଏ ମାୟା ସୀତା ପ୍ରକୃତ ସୀତା ନୁହନ୍ତି" ମାଁ ଏ ବଚସ୍କୃତ ( ଏକଥା ) ବ୍ୟର୍ଥ ( ଅକାରଣ ) ଶବକୁ ତ୍ୟଜ ତ୍ୟଜ * ( ଛାଡ଼ ଛାଡ଼ ) । "ଏ ସୀତା ନୁହନ୍ତି ରାକ୍ଷସୀଏ ଆସି କହିଗଲା" ବର୍ଣ୍ଣେ (ତୁମ୍ଭେମାନ ବର୍ଣ୍ଣିଥିବାରୁ ) ନ ଚହ୍ନିଲ ଏବେ ଚହ୍ନରେ ହେଜ ( ଚହ୍ନମାନ ଦେଖି ବିଚାର କର ) । ୩୮ ।

---

*—ତ୍ୱରାର୍ଥେ ଦ୍ୱିର୍ଭାବଃ ।

ବାୟୁଜେ ପୃଚ୍ଛେ ଆଉ ଯେ ଆନ ନୋହେ ସୀତା ଏ ଯେ ସର୍ଜି ବାଣୀ ଗୃହିଁଲେ ଆନନ । ବଧନୁ ଦେ ହୋଇ ଘାତ ଦବସରେ ଧ୍ୱାନ୍ତ-ଜ୍ୟୋତ ନଶାପତ ପତନ ବିଧାନ ସେ । ବେଗ ଆଣି । ବନଜକର ଅଧର ଗୃହିଁ । ବଳପୁଷ୍ଟକ୍ଷତ ଦେଖେ ତହିଁ ନାହିଁ ସେ । ୩୯ ।

ବନ୍ଧଲେ ସେ କାକୋଳରେ ରଖିଲେ ନାହିଁ କୋଳରେ ଶବକୁ ସର୍ବେ ସେ କଥା କହ । ବଚନ ଭଣେ ମାରୁତ ବହ୍ଳ ଏଡ଼େ ସୁମୂର୍ତ୍ତି ଶ୍ରୁତରେ ସୁମୂର୍ତ୍ତି ଶୁଣା ନାହିଁ ଯେ । ବିଭୀଷଣ । ବଖ୍ୟାତ ପ୍ରୟାଗତୀର୍ଥେ ଶ୍ୱାସ । ବୋଧ ହେଲ ଶୁଣି ସମସ୍ତ ମାନସ ଯେ । ୪୦ ।

---

୩୯ଶ ପଦ—"ବିଭୀଷଣ କଥା ଶୁଣି ରାମ" ବାୟୁଜେ ( ହନୁମାନଙ୍କୁ ) ପୃଚ୍ଛେ ( ପଚାରିଲେ ) ଏ ଯେ ( ଏ ଯେଉଁ ସୀତା ) "ଆମ୍ଭର" ଆଉ ଆନ ସୀତା ନୋହେ "ଏମନ୍ତ" ବାଣୀ ସର୍ଜି ( କହି ) ଆନନ ( ମୁଖକୁ ) ଗୃହିଁଲେ ବଧୂ ନୂଦେ ( ବହୁରେ ) ଘାତ ହୋଇ ( ତ୍ରାହିତ ହୋଇ ) ଦବସରେ ଜ୍ୟୋତହୀନ "ହୋଇଥିବା" ନଶାପତ ( ଚନ୍ଦ୍ରର ) ପତନ ବିଧାନ ( ପତନ ହେବା ବିଧି ) "ଦ୍ୱଶେ" । ବେବେ "ଏରୂପ ସେ ମାୟାସୀତା ମୁଖକୁ" ଆଣି ବନଜକର ( ରାମଚନ୍ଦ୍ର ) ଅଧର ( ଅଧରକୁ ) ଗୃହିଁ ତହିଁ ( ସେହି ଅଧରରେ ) ବଳିପୁଷ୍ଟ ( କାକ ) କ୍ଷତ ନାହିଁ ଦେଖେ ( ଦେଖନ୍ତି ) ।

୪୦ଶ ପଦ—"କାକ ମୋର ଉପକାରରେ ଆସିଲ ଏମନ୍ତ ଭାବି" ସେ ( ରାମ ) ୧ କାକୋଳରେ (ଦ୍ରୋଣ କାକକୁ) ବନ୍ଧଲେ ( ପ୍ରଶଂସିଲେ ) । ଶବକୁ କୋଳରେ ରଖିଲେ ନାହିଁ ( ତଳେ ପକାଇ ଦେଲେ ) ସର୍ବେ ( ସମସ୍ତଙ୍କୁ ) ସେ କଥା ( କାକ ଚଞ୍ଚୁଘାତ କଥା ଯା ଆଦ୍ୟ ପ୍ରାନ୍ତକର ) କହ ( କହିଲେ ) । ବଚନ ( ଆଶ୍ଚର୍ଯ୍ୟ ହୋଇ ) ମାରୁତ ( ହନୁମାନ୍ ) ଭଣି ( କହିଲେ ) ଏଡ଼େ ସୁମୂର୍ତ୍ତି ( ଉତ୍ତମ ମୂର୍ତ୍ତି ) ବହିଲ ( ବିଧାନକଲ ) । ସୁମୂର୍ତ୍ତି ( ସ୍ମୃତଶାସ୍ତ୍ରରେ ) ଶ୍ରୁତ ( ବେଦରେ ) "ଏକଥା" ଶୁଣାନାହିଁ । ବିଭୀଷଣ ବଖ୍ୟାତ ( କହିଲେ ) ପ୍ରୟାଗତୀର୍ଥେ ଶ୍ୱାସ "ଦେଲେ ଯାହାଇଚ୍ଛା

---

୧—ଦ୍ରୋଣକାକସ୍ତୁ କାକୋଲ ଇତ୍ୟମରଃ ।

ବିଷମ ସମାସ୍ୟା ପୂର୍ତ୍ତି ପର୍ନୀକ ପତ୍ତି ଲୋକନ କରି ନ ଚନ୍ଦ୍ରିବା ଏହିଠାରେ । ବାରାଂନଧିରେ ପକାଇ ଯେ ଶବ ସଧିରେ ନେଇ ସ୍ନାନ ସାରି ଗଲେ ସୁବେଳରେ ସେ । ବିଭିବର୍ଗ । ବିଳାଗିତ ହୋଇଲି ଏମନ୍ତେ । ବଢ଼ାଇ ଅଶନ ଶୟନ ସମସ୍ତେ ସେ । ୪୧ ।

ବିଦଗ୍ଧ ଦୂତେ ରାବଣ ଏମାନ କରି ଶ୍ରବଣ ବିଦଗ୍ଧତାପେ ବଗୁରି କଳାୀ ବଳ ବୁଦ୍ଧି ଏ ସଗର ବଂଶିକୀରତିରେ ସ୍ଥଳ ନ ପାଇ ନିଷ୍ଟସ୍ଥ ବୁଡ଼ିଗଲି ସେ । ବିଡ଼ି ରମ୍ୟ । ବୟାଳିଶ ପଦେ ଏହୁ ଛାନ୍ଦ । ବୋଲେ ଉପଇନ୍ଦ୍ର ବନ୍ଧ ରାମଚନ୍ଦ୍ର ସେ । ୪୨ ।

---

କରିବ ତାହା ହେବ । ପ୍ରୟାଗ ଯାଇସରି ଏ ଫଳ” । ଶୁଣି ( ଏମନ୍ତ ଶୁଣି ) ସମସ୍ତ ( ସମସ୍ତଙ୍କ ) ମାନସ ( ମନ ) ବୋଧହେଲା । ୪୦ ।

୪୧ଶ ପଦ—ଏହିଠାରେ ୧ ବିଷମ ସମାସ୍ୟା ପୂର୍ତ୍ତି “ହେଲା”, ପର୍ନୀକ ପ୍ରତି ଲୋକନ କରି ( ଦେଖି ) ନ ଚନ୍ଦ୍ରିବା “ଯୋଗୁଁ” । ବାରାଂନଧିରେ ( ସମୁଦ୍ରରେ ) *ସେ ଶବ ( ମାୟାସୀତାଙ୍କ ) ସଧିରେ ନେଇ ପକାଇ ସ୍ନାନ ସାରି ସୁବେଳରେ ( ସୁବେଳ ପର୍ବତକୁ ) ଗଲେ । ଏମନ୍ତେ ବିଭିବର୍ଗ ( ରାତ୍ରି ) ବିଳାଗିତ ହୋଇଲି ( ଆସିଲା ) । ସମସ୍ତେ ଅଶନ ( ଭୋଜନ ) ଶୟନ ବଢ଼ାଇ ( କଲେ ) । ୪୧ ।

୪୨ଶ ପଦ—ବିଦଗ୍ଧ ( ଚତୁର ) ଦୂତେ ( ଦୂତଦ୍ୱାରା ) ଏମାନ ( ମାୟା ସୀତ ଛେଦନ କରିବା କଥା ମିଥ୍ୟା ଲକ୍ଷିବାର ) ରାବଣ ଶୁଣି ବିଦଗ୍ଧତାପେ ( ତାପରେ ସନ୍ତପ୍ତହୋଇ ) ବଗୁରି କଳା ବଳ ବୁଦ୍ଧି “ମୋହର” ସଗରବଂଶି କୀରତିରେ ( ରାମଙ୍କ ଯଶରେ ) ସ୍ଥଳ ନ ପାଇ ନିଷ୍ଟସ୍ଥ ବୁଡ଼ିଗଲା । ରାମଙ୍କ କୀର୍ତ୍ତିସାଗରେ ବୁଡ଼ିଗଲା ଏହି ତାତ୍ପର୍ଯ୍ୟାର୍ଥ । ରାମଙ୍କୁ ଜିଣିବାର ବୁଦ୍ଧି-ବଳ ନାହିଁ ଏହିଭାବ । ଏହୁ ବୟାଳିଶ ଛନ୍ଦ ( ପଦରେ ) ବଡ଼ ରମ୍ୟ ଉପଇନ୍ଦ୍ର ( ଉପେନ୍ଦ୍ର ଭଞ୍ଜ ) ରାମଚନ୍ଦ୍ର ବନ୍ଧ ବୋଲେ । ୪୨ ।

---

୧—ସମସ୍ୟା ତୁ ସମାସାର୍ଥା ଇତ୍ୟମରଃ ।

*—କେହି କେହି ଲବଣ୍ୟନିଧିରେ ପଢ଼ନ୍ତି କିନ୍ତୁ ସେ ଅସଙ୍ଗତ ଶବ୍ଦଠାରେ କବି କଦାପି ଲବଣ୍ୟନିଧି ଶବ୍ଦ ପ୍ରୟୋଗ କରିନାହାନ୍ତି ନାହିଁ ।

## ଷଟଚତ୍ୱାରିଂଶ ଛାନ୍ଦ

ରାଗ କାମୋଦୀ । ରୁକ୍ମଣୀଚଉତିଶା ବାଣୀରେ ।

ବୃନ୍ଦ ଆମ୍ଭେ ସୁମନେ ନିଦ୍ରାବଶେ ସୁମନେ ସଂବେଶ ଆବେଶ ଶ୍ରୀରାମ । ବସୁଧା ସୁଧାମୟୀ ବଶୁଦ୍ଧା ସୁଧା ପିଇ ସୁଧାଂଶୁନିଭଚ୍ଛତ୍ରେ ରମ୍ୟ ସେ । ବଶି ଶୁଭ୍ର । ବଜ୍ର ସିଂହାସନରେ ତହିଁ । ବସି ଶୁଭ୍ର । ବସନେ ବିରାଜିତ ହୋଇ । ବରବର୍ଣ୍ଣିନୀ ସୀତା ବରବର୍ଣ୍ଣିନୀଯୁକ୍ତା କୋଳରେ ଅଛନ୍ତି ବସାଇ ସେ । ୧ ।

---

## ଷଟ୍‌ଚତ୍ୱାରିଂଶ ଛାନ୍ଦ

୧ମ ପଦ—ଆମ୍ଭେ ସୁମନେ ( ପଣ୍ଡିତମାନେ ) ସୁମନେ (ଉତ୍ତମମନରେ) ବୃନ୍ଦ ଶ୍ରୀରାମ ( ରାମଙ୍କର ) ନିଦ୍ରାବଶେ ( ନିଦ୍ରାବସ୍ଥାରେ ) ୧ ସଂବେଶ ( ସ୍ୱପ୍ନ ) ଆବେଶ ( ଆବିର୍ଭୂତ ) "ହେଲା" । "ରାମ ନିଦ୍ରାରେ ସ୍ୱପ୍ନ ଦେଖିଲେ ଏହିପରି" । ସୁଧାମୟୀ ( ଅମୃତମୟୀ ) ବସୁଧା ( ପୃଥ୍ୱୀରେ ) କିମ୍ବା ସୁଧାମୟୀ ( ଚୂନଲିପା ) ବସୁଧା ( ଭୂମିରେ ) ବିଶୁଦ୍ଧ ସୁଧା ( ବିଶୁଦ୍ଧ ଅମୃତ ) ପିଇ ସୁଧାଂଶୁନିଭଚ୍ଛତ୍ରେ ( ଶ୍ୱେତଛତ୍ରରେ ) ରମ୍ୟ ( ରମଣୀୟ ) ୨ବଶି ( କାନ୍ତିଯୁକ୍ତ ) ୩ ଶୁଭ୍ର ( ଉଜ୍ଜ୍ୱଳ ) ୪ବଜ୍ର ( ହୀରାଜଡ଼ିତ ) ସିଂହାସନରେ ଶୁଭ୍ର ( ଶୁକ୍ଳ ) ବସନେ ( ବସ୍ତ୍ରଦ୍ୱାରା ) ବିରାଜିତ ହୋଇ ବସି ତହିଁ ( ସେହିଠାରେ ) ୫ ବରବର୍ଣ୍ଣିନୀଯୁକ୍ତା ( କୁଙ୍କୁମ ଲିପ୍ତା ) ୬ବରବର୍ଣ୍ଣିନୀ ସୀତା ( ସୀତାଦେବୀଙ୍କି ) କୋଳରେ ବସାଇ ଅଛନ୍ତି । "ଚୂନଲିପାସ୍ଥାନରେ ଶୁକ୍ଳବସ୍ତ୍ର ପିନ୍ଧି ଶ୍ୱେତଛତ୍ର ଧରାଇ ଦିବ୍ୟ ସିଂହାସନରେ ସୀତାଙ୍କୁ କୋଳେ ଘେନି ବସିଅଛନ୍ତି ଏହିସ୍ୱପ୍ନ" । ୧ ।

---

୧—ସ୍ୟାନ୍ନିଦ୍ରାଶୟନଂ ସ୍ୱାପଃ ସ୍ୱପ୍ନ ସଂବେଶ ଇତ୍ୟପି ଇତ୍ୟମରଃ ।

୨—ବଶ କାନ୍ତୌ ଧାତୋ: ଶତ୍ର୍ ପ୍ରତ୍ୟୟେ ବଶୀ ।

୩—ଶୁଭ୍ରମୁଦ୍ଦୀପ୍ତ ଶୁକ୍ଲୟୋଃଇତ୍ୟମରଃ ।

୪—ବଜ୍ରଂ ସ୍ୟାଦ୍ଧୀରକେ ପବୌ ।

୫—କାଶ୍ମୀର ଜନ୍ମାଗ୍ନିଶିଖା ବରଂ ବାହ୍ଲୀକପୀତନ ଐତ୍ୟମରଃ ।

୬—ଶୀତେ ସୁଖୋଷ୍ଣସର୍ବାଙ୍ଗୀ ଗ୍ରୀଷ୍ମେ ଚ ସୁଖଶୀତଳା ।
ଭର୍ତ୍ତୃଭକ୍ତା ଚ ଯା ନାରୀ ସାଭବେଦ୍‌ବରବର୍ଣ୍ଣିନୀ ॥

ବିହାର ବିହାୟସେ ଅର୍ଜୁନପାରାବତଂଶେ ବଂଶେ ଶୁକ୍ଳିତ ଚେଲ ରାଜିତ ।
ବଶିଷ୍ଠ କୁମ୍ଭଜଙ୍କ ବରିଷ୍ଠ କୁମ୍ଭ ସର୍ବେ ଶାତକୁମ୍ଭରେ ଢାଳେ ଜଳ ସେ ।
ବାରବାର । ବାରସ୍ତ୍ରୀମାନେ ଗୀତ ସ୍ତୁରେ । ବାରବାର । ବିହନ୍ତି ନୃତ୍ୟ
ଅପସରା । ବରଷନ୍ତି ସୁକଳ ସୁମନା ସେ ଥକଣ ସୁମନା ଶୂନ୍ୟରେ
ଏଅଣର ଦେସୁ ।୨।

ବାଜି ଶଙ୍ଖାଦି ବାଦ୍ୟରାଜି ଏଥି ଦ୍ୱିରଦ ବାଜି ସୁରୂପା
ରୂପାଗିରେ । ବିଜୟ ପୂର୍ବମୁଖେ ବିଜୟ ଘର ସୁଖେ ଜୟ ଜୟ ଶବ୍ଦ
ସ୍ଫୁରି ସେ । ବିଧୁର ସେ । ବିରସ ଜନସର୍ବ୍ବଙ୍କରେ । ରଘୁରତେ ।

---

୨ୟ ପଦ—ଅର୍ଜୁନ ପାରାବତଂଶେ ( ଶୁକ୍ଳ ପାରାମାନେ ) ବିହାୟସେ ( ଆକାଶରେ ) ବିହାର "କରୁଛନ୍ତି" । ବଂଶେ ( ବାଉଁଶରେ ) ଚେଲ ( ଶୁକ୍ଳଚେଲ ) ରାଜିତ ( ଶୋଭିତ ) "ହୋଇଅଛି" । ବରିଷ୍ଠ ( ପ୍ରଧାନ ) କୁମ୍ଭ ଶାତକୁମ୍ଭରେ ( ସୁବର୍ଣ୍ଣକୁମ୍ଭରେ ) ବଶିଷ୍ଠ "ଋଷି" କୁମ୍ଭଜ ( ଅଗସ୍ତ୍ୟ-ଋଷି ) ସର୍ବେ ( ସେହି ସମସ୍ତଙ୍କରେ ) ଜଳ ଢାଳେ ( ଢାଳୁଛନ୍ତି ) । ବାର-ବାର ( ବୃନ୍ଦ ବୃନ୍ଦ ) ବାରସ୍ତ୍ରୀମାନେ ( ବେଶ୍ୟାମାନେ ) ଗୀତ ସ୍ତୁରେ ( ଗାଉଛନ୍ତି ) । ବାରବାର ( ବାରମ୍ବାର ) ଅପସରା ( ଅପ୍ସରାମାନେ ) ନୃତ୍ୟ ବିହନ୍ତି ( ନୃତ୍ୟ କରୁଅଛନ୍ତି ) । ସକଳ ସୁମନା ( ସମସ୍ତ ଦେବତା ) ଶୂନ୍ୟରେ ଥକଣ ( ରହି ) ସୁମନା ( ଶୁକ୍ଳପୁଷ୍ପ ) ବରଷନ୍ତି । ୨ ।

୩ୟ ପଦ—ଶଙ୍ଖଆଦି ବାଦ୍ୟରାଜି (ବାଦ୍ୟସମୂହ) ବାଜି (ବାଜୁଛି) ରୂପା-ଗିରି ( ରୂପାପର୍ବତପରି ) ସୁରୂପା ( ଶୁକ୍ଳବର୍ଣ୍ଣ ) ଦ୍ୱିରଦ ( ହସ୍ତୀମାନେ ) ବାଜୀ ( ଅଶ୍ୱମାନେ ) ରଜି ( ବିରାଜୁଛନ୍ତି ) । ବିଜୟ ( ଅଜ ) ଘର ( ଘର-ଦ୍ୱାର ) ପୂର୍ବମୁଖେ ( ପୂର୍ବାଭିମୁଖରେ ) ସୁଖେ ( ସୁଖରେ ) ବିଜୟ ( ବିଜେ କରିଅଛନ୍ତି ) । ଜୟ ଜୟ ଶବ୍ଦ ସ୍ଫୁରି ( ସ୍ଫୁରୁଅଛି ) । ବିଧୁରତନେ ( ଜର୍ପୂରଥଳୀରେ ) ଚିତ୍ରଶାଳ ( ବହୁକ୍ରୋଶବ୍ୟାପାର ) ବିଧାନ ହୋଇଛି । ଜନ ସର୍ବ୍ବଙ୍କର ( ସବୁଜନଙ୍କର ) ବିରସ ବିଧୁର ( ବିଶ୍ଳେଷ ) "ହୋଇଅଛି" "ସମସ୍ତେ ହର୍ଷହୋଇ ଅଛନ୍ତି ଏହିଭାବ" । ବଦନ୍ତି ବଚନ ( ରାମଚନ୍ଦ୍ର )

ବିଧାନ ହୋଇଛନ୍ତି ଚର୍ଚ୍ଚିତ । ବିଷବନ୍ତେ ସେ ବିସନ୍ନ ବସନ ଚେତି କୃତ
କଥନ ଅନୁଜେ ନିମ୍ନଗ ସେ ।୩।

ବିଚକ୍ଷଣ ଲକ୍ଷ୍ମଣ ବୋଲେ ସେ କ୍ଷଣି କ୍ଷଣଦାରେ ଅଜ ସ୍ୱପ୍ନ ବୀକ୍ଷଣ । ବ୍ୟସ୍ତକେଶ ଲଙ୍କେଶସୁତ ଚଢ଼ି ମହିଷ ମହିମ ଇଛିଣ ଦକ୍ଷିଣ ସେ । ବଳୀ ସ୍ନେହ ! ବିଲେପନରେ ଜରଜର । ବଳ ସ୍ନେହ । ବିଷ ଭକ୍ଷେ ଲେହପାତ୍ରର । ବିଭୂଷା ରଙ୍ଗବାଣେ ଭୂଷା ଯିବ ମୋ ବାଣେ ଏ ରଣେ ଶରଣ କେ ତାର ସେ ।୪।

---

ଚେତି ( ଚେତନ ପାଇ ) କହନ୍ତେ ଅନୁଜେ ( ଲକ୍ଷ୍ମଣଙ୍କୁ ) ନିମ୍ନଗ କଥନକୃତ ( ସ୍ୱପ୍ନଦେଖିବା କଥା କହିଲେ ) * । ୩ ।

୪ର୍ଥ ପଦ—ବିଚକ୍ଷଣ (ପଣ୍ଡିତ ଲକ୍ଷ୍ମଣେ) କ୍ଷଣେ (ଅଳ୍ପକ୍ଷଣରେ)ବୋଲେ ( କହିଲେ ) ଆଜ କ୍ଷଣଦାରେ ( ରାତ୍ରିରେ ) ସ୍ୱପ୍ନ ବୀକ୍ଷଣ ( ଦେଖିଲି ) । ବ୍ୟସ୍ତକେଶ ( କେଶମୁକ୍ତାକରି ) କ୍ଷୀଣ ( କୃଶହୋଇ ) ଲଙ୍କେଶସୁତ ( ଇନ୍ଦ୍ରଜିତ ) ମହିଷ ( ମଇଁଷି ) ଚଢ଼ି ଦକ୍ଷିଣ ( ଦକ୍ଷିଣଦିଗକୁ ) ମହିମ ( ମହତ୍ତ୍ୱ ଦେଖାଇ ) "ଯାଉଛନ୍ତି" । ବଳୀ ( ବଳିଷ୍ଠ ) "ଇନ୍ଦ୍ରଜିତ" ସ୍ନେହ ( ତେଲ ) ବିଲେପନରେ ଜରଜର ( ଜର୍ଜର ) ହୋଇ ଲେହପାତ୍ରରେ ସ୍ନେହ କେ ( ବଳାଇ ) ବିଷ ଭକ୍ଷେ ( ଭକ୍ଷଇ ) । ରଙ୍ଗବାଣେ ( ରଙ୍ଗବାଣ ନାମକ ଫୁଲରେ ) ବିଭୂଷା ( ଭୂଷଣ ) "ହୋଇଅଛି" ଏ ରଣେ ( ଏ ବାର-ଯୁଦ୍ଧରେ ) ମୋ ବାଣେ ( ମୋହର ବାଣରେ ) ଭୂଷା ( ଫୋଡ଼ା ) ଯିବ କେ ତାର ୧ ଶରଣ ( କିଏ ତାହାର ରକ୍ଷକ ହେବ ) *"ନିଶ୍ଚୟ ମରିବ ଏହିଭଳି" । ୪ ।

---

* —ଶୁକ୍ଳଦ୍ରବ୍ୟ ଦେଖିବାରୁ ଶୁଭ ସୂଚିତହେଲ, ଯଥା—ବୃହସ୍ପତି ସ୍ୱପ୍ନାଧ୍ୟାୟେ

ସର୍ବାଣି ଶୁକ୍ଲାନି ସୁମଙ୍ଗଲାନି କାର୍ପାସଭସ୍ମାସ୍ଥି ବିବର୍ଜିତାନି ।
ସର୍ବାଣି କୃଷ୍ଣାନ୍ୟଶୁଭାନି ତାନି ଗୋହସ୍ତି ଦେବଦ୍ୱିଜବର୍ଜିତାନି ॥

୧—ଶରଣଂ ଗୃହରକ୍ଷିତ୍ରୋଃ ବଧେଃ ।

*—ଯଦୁକ୍ତଂ ସ୍ୱପ୍ନାଧ୍ୟାୟେ—ଖରୋଷ୍ଟ୍ରମହିଷଂ ଯାନ ମେକାକୀ ଯୋଽଧିରୋହତି ।
ତନୈଷ୍ଟଷ୍ଟ ବିବୁଧ୍ୟେତ ଆମୁମୂର୍ଷସ୍ୟ ବିନଶ୍ୟତି ।
ଅଭ୍ୟଙ୍ଗିତସ୍ୟ ତୈଳେନ ବସାମେଦଘୃତେନ ବା ।
ସ୍ନେହେନ ବା ତଥାନ୍ୟେନ ଆୟୁସ୍ତସ୍ୟ ବିନଶ୍ୟତି ॥

ବିଭୀଷଣଙ୍କୁ ଚାହିଁ ଦୂଷଣଜିତ କହି ଭୀଷଣ ଯୁଦ୍ଧ ଶକ୍ରାରିର ।
ବଳ ପ୍ରବଳ ମୋର ଧବଳକର ପ୍ରାପ୍ୟେ ତମ ପ୍ରାପ୍ୟେ କବଳକର
ସେ । ବିଶେଷର । ବାହୁଡ଼ିଲି ମୁଁ ଭୟ କରି । ବିଶେଷର । ବିଷାଇ
ଥାଇ ଯେ ତାହାର ବିସ୍ତାରେ କେତେ ଶକ୍ତି ଗଦା ମୁଦ୍ଗର ଶକ୍ତି
ଶୂଳ ଚକ୍ର ଚକ୍ର ପ୍ରହାର ସେ । ୪ ।

ବୈଶ୍ରବଣ ଶ୍ରବଣ କରାଇ ଯାହା ଆନ ଆନ ନ କରେ
ଶତମନ୍ୟୁ । କୀନାଶ ଏହା କରେ କୀନାଶ ଚିନ୍ତାକରେ କି ଭର୍ଗେ୍ୟ

ଏମ ପଦ—"ଲକ୍ଷ୍ମଣର ପ୍ରତିଜ୍ଞା ଶୁଣି" ଦୂଷଣଜିତ ( ରାମଚନ୍ଦ୍ର ) ବିଭୀଷଣଙ୍କୁ ଚାହିଁ କହି ( କହିଲେ ) । ଶକ୍ରାରିର ( ଇନ୍ଦ୍ରଜିତର ) ଯୁଦ୍ଧ ଭୀଷଣ ( ଭୟଙ୍କର ) । ପ୍ରବଳ ( ବଳବନ୍ତର ) ମୋର ବଳ ( ସୈନ୍ୟ ) ଧବଳକର (ଚନ୍ଦ୍ର) ପ୍ରାପ୍ୟେ "ଚନ୍ଦ୍ର ଜିତ" ତମ ( ରାହୁ ) ପ୍ରାପ୍ୟେ କବଳକର ( ଗ୍ରାସକାରୀ ) । "ଚନ୍ଦ୍ରକୁ ରାହୁ ଗ୍ରାସିଲାପରି ମୋର ସୈନ୍ୟଙ୍କୁ ଗ୍ରାସୁଅଛୁ ଏହି ଭାବ" । "ଏଣୁ" ବିଶେଷର ( ବିଶେଷରେ ) "ମୁଁ ମଧ ଭୟ କରି ବାହୁଡ଼ିଲି" । ଯେ (ଯେପରି) ତାହାର ଶର ( ତାହାର ଶରସମୂହ) ବିଷେ (ବିଷରେ) ବିଷାଇଥାଇ (ବିଷଯୁକ୍ତ କରିଥାଇ ) । "ଏକାବେଳେ" ଗଦାମୁଦଗର ୧ ଶକ୍ତି ଶୂଳଚକ୍ର ( ଶୂଳସମୂହ) ଚକ୍ର ପ୍ରହାର କେତେ ଶକ୍ତି ବିସ୍ତାରେ ( ବିସ୍ତାର କରେ ) । ୪ ।

ଷଷ୍ଠ ପଦ—ବୈଶ୍ରବଣ ( ବିଭୀଷଣ ) "ରାମଙ୍କ କଥା ଶୁଣି ଇନ୍ଦ୍ରଜିତର ବଳାତିଶୟ ବ୍ୟକ୍ତକରି" ଶ୍ରବଣ କରାଇଲା (ଶୁଣାଇଲା) । ଯାହା ଆନ (ଯାହାର ଗୁଣକୁ ) ଶତମନ୍ୟୁ ( ଇନ୍ଦ୍ର ) ଆନ ( ଅନ୍ୟଥା ) ନ କରେ । କୀନାଶ ( ଯମ ) ଏହା କରେ ( ଏହି ଇନ୍ଦ୍ରଜିତବଧରେ ) କୀନାଶ "ହେବ ଏମନ୍ତ" ଚିନ୍ତା କରେ କି ଭର୍ଗେ୍ୟ (ମୋହରଙ୍କ ପ୍ରତି ଏ ଗର୍ବବଳରୁ ) ମନୁଁ ( ତାହାର ମନରୁ ) "ମତେ ମାରିବାକୁ କଥା ପାସୋରନ୍ତି" । "ଇନ୍ଦ୍ରଜିତ ଯମର ଉପରେ "ଯମ ଏହି ଭାବ" ଏହାଦ୍ୱାରା ଇନ୍ଦ୍ରଜିତର ଶୌର୍ଯ୍ୟାତିଶୟ ପ୍ରକାଶପାଇଲା । "ଇନ୍ଦ୍ରଜିତ ବଧରେ ଲକ୍ଷ୍ମଣଙ୍କ କ୍ରୋଧ ବଢ଼ିବା ଆଶାରେ ଏରୂପ କ୍ରୋଧାବେଶ-ଗର୍ଭିତ କଥା କହିବା ବିଭୀଷଣଙ୍କ ଅଭିପ୍ରାୟ" । "ଲକ୍ଷ୍ମଣ ଏହାଶୁଣି" ତାହା

୧—ଶକ୍ତିରସ୍ତ୍ରାନ୍ତରେ ଚଶୌର୍ଯ୍ୟାମୁତ୍ସାହାଦୌ ବଲେଽପି ଚ ସ୍ତ୍ରୀୟାଂ ଇତି ରଭସଃ ।

ତାମୋଦନ୍ତି ମନ୍ଦୁ ହେଲ । ଶରଚନ୍ଦ୍ର । ବଢ଼ ପ୍ରତିଜ୍ଞା ତାହା ହତେ । ହରଷେଣ । ଜଳନି ଦୃଷ୍ଟାନ୍ତ ମର୍ଦ୍ଦନେ । ବ୍ରହ୍ମାର ଗଙ୍ଗାଧର ସ୍ମରଜ ସ୍ମରଧର ତାଙ୍କୁ ଜାଳିଲେ ନେଶପାଚେ ସେ ।୬।

ବଟେ ଲଙ୍କାଭୂତଳେ ଅବଟେ ଲଙ୍କାତଳେ ଜାତ ଜାତବେଦରେ ହୋମ । ବିହି ଅଜକୂଧ୍ନରେ ଧୀରେ ମନୋରଥରେ ଦେବଦଳନ ନାମ ସେ । ବାଜିବାର । ବାଣାସନ ତୂଣ ବଜ୍ରତ ବାଜିବାରେ । ବଜ୍ରରୁ ବଳ କରେ ଘାତ । ବଜ୍ର ଅଗତ ଶୁଣି ଥାଉଁ ଥାଉଁ ନିପାତି ପାରି ମୁଁ ପ୍ରାଣି ତେଜୁଁ ସତ ସେ । ୭ ।

---

ହତେ ( ଇନ୍ଦ୍ରଜିତବଧରେ ) ବଢ଼ପ୍ରତିଜ୍ଞା ଶରଚତ ( କଲେ ) ମଦଚେ ହରଷେ ( ହର୍ଷେର ସହିତରେ ) ସାର ( ଲକ୍ଷ୍ମଣଙ୍କ ) ଚତ୍ତ ( ମନ ) ବିକସି ( ପ୍ରଫୁଲ୍ଲ ହେଲ ) । "ଦୃଷ୍ଟାନ୍ତର ଦେଖାଇ ପୁନରପି ଲକ୍ଷ୍ମଣ କହିଲେ" ସ୍ମରଜ ( କନ୍ଦର୍ପଜ ) ବ୍ରହ୍ମାର ( ବ୍ରହ୍ମାଙ୍କର ) ଗଙ୍ଗାଧର ( ଗଙ୍ଗାଧରଣକରେ ) ସ୍ମରହର ( ମହାଦେବ ) ତାଙ୍କୁ ( ସେହି କନ୍ଦର୍ପଙ୍କୁ ) ନେଶପାଚେ (ନେତ୍ରାନଳରେ) ଜାଳିଲେ । "ସେହିପରି ମୁଁ ମାରିବି ହେଉଛି" । ୬ ।

୭ମ ପଦ—"ଲକ୍ଷ୍ମଣଙ୍କ ପ୍ରତିଜ୍ଞା ଶୁଣି ବିଭୀଷଣ କହିଲେ" ଲଙ୍କାଭୂତଳେ ( ଲଙ୍କାପୁରୀ ମଧ୍ୟରେ ) ବଟେ ( ଏକ ବଟବୃକ୍ଷ ଅଛି ) ଲଙ୍କାତଳେ ( ତାହାର ତଳେ ଭୂମିତଳରେ ) ଅବଟେ ( ଏକଗର୍ତ୍ତ ଅଛି ) । "ହୋମକୁଣ୍ଡ ସ୍ଥିତ" ଜାତବେଦରେ ( ଅଗ୍ନିରେ ) ଅଜକୂଧ୍ନରେ ( ଛାଗରକ୍ତରେ ) ଧୀରେ ( ସ୍ଥିର ଚିତ୍ତରେ ) ମନୋରଥରେ ( କାମନା କରି ) ହୋମ ବିହି ( କଲେ ) ଦେବଦଳନ ନାମ ରଥ ଜାତ "ହୁଏ" । ବାଜିବାର ( ଅଶ୍ୱସମୂହ ) ବାଣାସନ ( ଧନୁ ) ତୂଣ ( ତୂଣୀର ) ବଜ୍ରରୁ ବଳୀ (ବଜ୍ରଠାରୁ ଅଧିକ) ଘାତ କରେ ( ଘାତ କରୁଥିବା ) ବାଜିବାରେ ( ଶରସମୂହ ) ବାଦିତ ( ଉତ୍ପନ୍ନହୁଏ ) "ଶୁଣ ସେ ଅଜେୟ ହେଉଛି" । ଗତି ଥାଉଁ ଯାଇ ସୁପାଦ ( ଶଯ୍ୟା ) ତେଜୁଁ ( ତେଜିବା ସମୟରେ ) ବଜ୍ର ଅଗତ ( ଇନ୍ଦ୍ରଜିତକୁ ) ନିପାତିପାରି ( ମାରି ପାରିବ ) ଏ କଥା ସତ ( ମିଛନୁହେ ) । ୭ ।

ବେନି ହସ୍ତ ସେ ପାଶେ ଇନ୍ଦ୍ରଜିତ ନାଗପାଶେ ବ୍ରହ୍ମାସ୍ତ୍ରେ ନାଶ କରି ଗଲା । ପତଗ ରୂଷପତି ପତିତ ସେ ଖପତି ହେଲେ ମାରୁତିହିଁ ଥିଲା ସେ । ବାହାରେ ସେ । ବହୁ ବିବିଧଆୟୁଧକୁ । ବାହାରେ ସେ । ବୀର୍ଯ୍ୟ ବଳେ ବିଧିକୁ । ବଚସ୍କର ମୋହନ ତସ୍କର ଆଚରଣ ଲଭେ ବରଣସନ୍ନିଧିକୁ ସେ । ୮ ।

ବାଟ ପାଇଁ କପାଟ ପିଟି ଭଲ୍ଲ ମର୍କଟ ପ୍ରକଟ ପ୍ରଭାତୁଁ କଟକେ । ବିରତ ସଂଖ୍ୟାତ କଙ୍କାଦି ଖ୍ୟାତ ସାତ ଗ୍ରାମକୁଁ ଅଟକେ ଛଟକେ

୮ମ ପଦ— 'ପୁଣି ବାଲ୍ମୀକିରେ କହିଲେ ସେହି ଦେବଦଳନ ରଥଚଢ଼ି'' ସେ ( ଇନ୍ଦ୍ରଜିତ ) ବେନି ହସ୍ତ ( ଦୁଇଥର ) ପାଶେ (ପାଶରେ) ହନ୍ଦ୍ରଜ୍ଞ (ଗୁପ୍ତରୀଣ-ପାଇ ) ''ପ୍ରଥମଥର'' ନାଗ ପାଶେ ବାନ୍ଧି ''ଦ୍ୱିତୀୟଥର'' ବ୍ରହ୍ମାସ୍ତ୍ରେ ନାଶ କରି ଗଲା ପତଗ ( ପକ୍ଷୀ ) ଖପତି ( ଖପଦକୁ ) ଖପତି ( ଗରୁଡ଼ ) ହଟିଲେ ''ପ୍ରଥମଥର ଗରୁଡ଼ ଆସି ନାଗପାଶରୁ ଉଦ୍ଧାର କଲେ ଏହି ଭାବ'' । ମାରୁତି ( ହନୁମାନ୍ ) ହିଁ ( ସେ ସମୟ )ରେ ଥିଲା ( ଥିବାରୁ ) ରୂଷପତି ( ଜାମ୍ବୁବାନ୍ ) ''ଦ୍ୱିତୀୟଥର'' ଖପତି ହଟିଲେ । ''ଜାମ୍ବୁବାନ୍ ହନୁମାନଦ୍ୱାରା ଔଷଧ ଅଣାଇ ଦେଇ ଭଲକଲେ ଏହିଭାବ'' । ''ଏମନ୍ତ ଶୁଣି ଲକ୍ଷ୍ମଣ'' ବିଧି ( ଶତ୍ରୁ ) କୁ ( ବଧିବାକୁ ) ବୀର୍ଯ୍ୟ ( ବୀର୍ଯ୍ୟରଚନ ) ବାହାରେ ( ବାହାରିଲେ ) । ବିବିଧ ଆୟୁଧକୁ ( ନାନାପ୍ରକାର ଶସ୍ତ୍ରମାନଙ୍କୁ ) ବାହାରେ ( ହସ୍ତରେ ) ବହି ବଚସ୍କର ମୋହନ ( ଦ୍ରୁତଗାମୀ ) ତସ୍କର ଆଚରଣ ( ଚୋରପ୍ରାୟ ) ବରଣ ସନ୍ନିଧିକୁ ( ଲଙ୍କାଗଡ଼ ପ୍ରାଚୀରର ନିକଟକୁ ଯାଇ ) ଲଭେ ( ରହିଲେ ) ।୮ ।

୯ମ ପଦ—ପ୍ରଭାତୁଁ (ପ୍ରଭାତ ହେବାରୁ) କବାଟ ପିଟି (ପିଟିଲେ) ବାଟ ପାଇ ଭଲ୍ଲ ( ଋକ୍ଷ ) ମର୍କଟ କଟକେ ( ଲଙ୍କାପୁରରେ ) ପ୍ରକଟ ( ମିଳିଲେ ) । ଖ୍ୟାତ ( ବିଖ୍ୟାତ ) କଙ୍କାଦି ( କଙ୍କଅସୁର ପ୍ରଭୃତି ) ସାତ ବୀର ସାତ ବିରତ ( ସାଙ୍ଗହୋଇ ) ଗ୍ରାମକୁଁ ଛଟକେ ''ଆସି'' ଅଟକେ ( ଅଟକାଇଲେ ) ବାପି ( ଇନ୍ଦ୍ରଜିତର ଗୃହ ) ବାଶ୍ୱ ସବଳ ( ସୈନ୍ୟଘେନି ) ଲକ୍ଷ୍ମଣ ବେଷ୍ଟିତ ( ବେଢ଼ିଲେ ) । ବାସବାରି ( ଇନ୍ଦ୍ରଜିତ ) ବେଗେ ଆସି ମେଳ ( ଯୁଦ୍ଧ )

ସେ । ବାଗି ବାଟ । ବେଷ୍ଟିତ ଲକ୍ଷ୍ମଣ ସବଳ । ବାସବାରି । ବେଗେ ଆସି ଆରମ୍ଭି ନେତ୍ରାକଣ୍ଣ ବୋଇଲେ ଜଣେ ଏ ପଦ ମୃତ୍ୟୁସ୍ଥାନକୁ ପଦ୍ମ ଜାଣେ ଦୁର୍ଗମ ଦୁର୍ଗ ମେଳ ସେ ।୯।

ବନ୍ଧିଲ ଥର ଦୁଇ ଧୁଞ୍ଚିଲ ଥର ବନ୍ଧ ପ୍ରାଣ ସଞ୍ଚିଲ କି ଉପାୟେ ନେଚ୍ଛେଦ ପିଣ୍ଡୁ ମୁଣ୍ଡ ଛେଦନ ହେବ ଗୃଣ୍ଡ ନିଶାଦସାଦର ନିଷ୍ଠୁରେ ସେ । ବଇରିକ । ବାଦେ କପୋତ ନିକ ଧରି । ବଇରିକେ । ବିପାକ କର୍ମ ଅନ୍ତ କଲ । ବଧିରେ ଶଶପଞ୍ଚା ପଞ୍ଚାସ୍ୟକୁ ଅବଞ୍ଚା ଘଟେ ଘଟକର୍ଣ୍ଣର ପରି ସେ ।୧୦।

---

ଆରମ୍ଭି (ଆରମ୍ଭିଲ) । ଏପଦ (ଏହିକଥାପଦଙ୍କୁ) "ଇନ୍ଦ୍ର ଜିତ" ଜଣେ ବୋଲେ ( ଉଚ୍ଚେଜଣେକହିଲ ) ଜାଣେ ( ମୁଁ ଜାଣୁଛି ) ଦୁର୍ଗମ ଦୁର୍ଗମେଳ ( ଯାହା-ଦୁର୍ଗମଗଡ଼ ମଧ୍ୟରେ ମିଳିଲ ) ମୃତ୍ୟୁସ୍ଥାନକୁ ପଦ ( ତାଙ୍କମୃତ୍ୟୁସ୍ଥାନରେ ପାଦ ଦେଲ ) "କିଣ୍ଟେ ମରିବ ଯା ଏଠାକୁ ଆସିଲ ଏହିଭାବ" । ୯ ।

୧୦ମ ପଦ—"ପୁଣି ଇନ୍ଦ୍ରଜିତ ଲକ୍ଷ୍ମଣ ବିଭୀଷଣ ଆଦିଙ୍କି କହେ" ଦୁଇଥର "ନାଗପାଶ ବ୍ରହ୍ମାସ୍ତ୍ରରୁ" ବନ୍ଧିଲ । ଥର ବନ୍ଧ ( ଥର ଥର ହୋଇ ) ଧୁଞ୍ଚିଲ ( ପଳାଇଲ ) କି ଉପାୟେ ( କେଉଁ ଉପାୟରେ ) ପ୍ରାଣ ସଞ୍ଚିଲ ( ରଖିଲ ) "ବିଭୀଷଣ ଭୟେ ଯାକାଳ ପ୍ରାଣ ରଖିଲ ଲକ୍ଷ୍ମଣ ଗରୁଡ଼ ଓ ଔଷଧି ଉପାୟରେ ବଞ୍ଚିଲେ ଏହିଭାବ" । ବିଚ୍ଛେଦ ( ଛେଦନ ହୋଇଥିବା ) ପିଣ୍ଡରୁ ମୁଣ୍ଡ ତୃଣ୍ଟେ ( ବେଗରେ ) ଛେଦନ ହେବ, ନିଷ୍ଟୁରେ ନିଶାଦ ( ଦଣ୍ଡ ଆସିପ୍ରାୟ ) ସାଦର ( ଆଦର ସହିତ ) "ଆସିଲ" "ଏଣୁ ଦୁଇଖଣ୍ଡ ହେବ ଏହିଭାବ" । ବଇରିକ ( ଶତ୍ରୁ ସଞ୍ଚାଣ ପକ୍ଷୀକୁ ) କପୋତ "ପକ୍ଷୀ" ବାଦେ (ବିବାଦରେ) ଧରି ନିକ ( ଧରି ନିକ ) ? "ସେହିରୂପେ ତୁମ୍ଭେ କପୋତ ଆମ୍ଭେ ସଞ୍ଚାଣ ଏହି ଭାବ ।" ବିପାକ କର୍ମ ( ଆମ୍ଭ କର୍ମ ବିପାକରୁ ) "ତୁମ୍ଭର" ବଇରିକ ( ଶତ୍ରୁ ) କହି-ଅଛି । ବଧିରେ * ଶଶପଞ୍ଚା ( ଶଶାର କୃତ୍ରିମ ପଞ୍ଚା ) ପଞ୍ଚାସ୍ୟ ( ସିଂହକୁ ) ଅବଞ୍ଚା ( ବଞ୍ଚାଇଲ ନାହିଁ ) ପରି ( ସେହିରୂପେ ) ଘଟକର୍ଣ୍ଣର ( କୁମ୍ଭକର୍ଣ୍ଣର )

*—ପଶ୍ୟ ସିଂହୋ ମଦୋନ୍ମତ୍ତଃ ଶଶକେନ ନିପାତିତ ଇ.ତିହିତୋପଦେଶେ ।

ବୋଲେ ରାମସୋଦର ବଡ଼ାଇ ନ ଆଦର ନିଦର ନୃପ ତୁ ନିତ୍ୟବାଦ । ବିଶ୍ୱବିଧ୍ୱଂସୀ କାଳ କାଳକଣ୍ଠରେ-ତ୍ରିକାଳ କାଳକଣ୍ଠରେ ରଚି ବାଦ ଦିସ । ବିନାଶନ । ବ୍ରତଫଳ ତୋ ହେଲା ଶେଷ । ବିନା-ଶନ । ବିବାଦ ଆଜ ମୁଁ ଅବଶ୍ୟ । ବନ୍ଧାବନ୍ଧ ମାର୍ଗଣଗଣ ନସ ପୁଣ ପୁଣ ନାହିଁ ଏ ରୋଷ ପ୍ରତିଘୋଷ ଦେସ । ୧୧ ।

ବେନି ବଳ ସମରେ ବନ୍ଧ ହେଲେ ସମରେ ରୁକ୍ଷ ରକ୍ଷ ମାତର ଭେଦ । ବିରାଜନ୍ତି ଦେଖି ଜନ୍ତାଜନ୍ତି ସକଳେ ଯୁଦ୍ଧେ

---

ଘନେ । "ଶଶୀ କିପଟରେ ସିଂହକୁ ମାରିଲି ପରା କୁମ୍ଭକର୍ଣ୍ଣଙ୍କୁ ମାରିଲି ମୋତେ ମାର ପାରିବ ନାହିଁ ଏବେ" । ୧୦ ।

୧୧ଶ ପଦ—ରାମସୋଦର (ଲକ୍ଷ୍ମଣ) ବୋଲେ ନିତ୍ୟବାଦ (ରାକ୍ଷସ) ତୁ ବଡ଼ାଇ ନ ଆଦର (ନାହିଁକି ବଡ଼ାଇ କହୁଅଛୁ) । ନିଦର (ନିର୍ଭୟ) ନୃପ "ଦେଖ" ବିଶ୍ୱବିଧ୍ୱଂସୀ (ସଂସାର ଜୀବପ୍ରାଣହାରକ) [2] କାଳ (ଯମ) କାଳକଣ୍ଠରେ (ନୀଳକଣ୍ଠଙ୍କ ସଙ୍ଗେ) ବାଦ (ବିବାଦ) ରଚି ତ୍ରିକାଳ (ସେହିକ୍ଷଣି) କାଳ (ତାହାର କାଳ) ହୁଏ । "ସେହିପରି ମୋ ସଙ୍ଗେ ତୁ ବାଦ ରଚିବାରୁ ତୋହର ମୃତ୍ୟୁ ହେବ ଏମନ୍ତ ଜାଣ" । ତେ ବିନାଶନ (ତୋହର ଅନ୍ନଶନ) ବ୍ରତ ଫଳ ଶେଷ ହେଲା । ଆଜ ମୁଁ "ତୋ ସଙ୍ଗେ" ବିବାଦ (ପ୍ରତିବାଦ) ହୋଇଅଛି । ଅବଶ୍ୟ [3] ବିନାଶନ (ନିଶ୍ଚୟ ତୋହର ମରଣ) ହେବ । "ଏମନ୍ତ କୁହାକୁହି ହୋଇ" ମାର୍ଗଣଗଣ (କାଣ୍ଡ ସମୂହ) ✻ ପୁଣ ପୁଣ ବନ୍ଧାବନ୍ଧ "ହେଲେ" । ଏ ରୋଷ ପ୍ରତିଘୋଷ (କ୍ରୋଧରେ ଆଉ କୁହାକୁହି) ନାହିଁ । "ତୁନିହୋଇ ଶର ବିନ୍ଧାବିନ୍ଧି ହୁଅନ୍ତି ଏହି ଭାବ" । ୧୧ ।

୧୨ଶ ପଦ—ବେନିବଳ (ଦୁଇସୈନ୍ୟ) ସମରେ (ସମାନ ଭାବରେ) ସମରେ ବନ୍ଧହେଲେ (ଯୁଦ୍ଧକଲେ) ରୁକ୍ଷ ରକ୍ଷ "ଏ ଦୁଇଶବ୍ଦରେ" ମାତ୍ରାର "କେବଳ" ଭେଦ (ଆଜ୍ଞପତ୍ର-ଏବା) "ରୁକ୍ଷ ରକ୍ଷ ଏ ଦୁଇଶବ୍ଦର

---

୧—ନିତ୍ୟବାଦୋଽସଦ୍ଧ ଆପର ଇତ୍ୟମରଃ

୨—କାଲୋମୃତ୍ୟୌ ମହାକାଲେ ସମୟେ ଯମକୃଷ୍ଣୟୋଃ ।

୩—ଅନ୍ତୋନାଶୋ ଦ୍ୱୟୋ ମୃତ୍ୟୁ ମରଣଂ ନିଧନୋଽସ୍ତ୍ରି ୟାମିତ୍ୟମରଃ ।

✻—ପୈଶାଚିକ ଭାଷା ।

ଶୂରେ ଶୂରେ ସମ୍ବାଦ ସେ । ବହୁଶତ । ବିଶେଷ ହରି ମହାଭିଡ଼ନ୍ତି ।
ବହୁଶତ । ବିବାଦେ ପ୍ରାଣ ବଧ କରନ୍ତି । ବୀରେନ୍ଦ୍ର ଶର ଭଙ୍ଗ ବଳୀ
ବଳ ପ୍ରଜ୍ୱଳ ଅତିରଣେ ରତିରତ ସେ । ୧୨ ।

ବିଚିତ୍ର ଚିତ୍ରଭାନୁ ଭାନୁପତ୍ରୀ ସନ୍ଧାନୁ ଦନୁଜ ରାମାନୁଜ ଧୀର ।
ବନ୍ଧବାଣ ପବନ ଭୁବନଜ ଜବନ ଦେଲେ ସେ ଫକାଇ ଅବଧିରେ ସେ ।

---

କେବଳ ଜକାର ମାତ୍ରାର ଭେଦ ରହିଲା ଏହି ଶବ୍ଦ । ଶୂରେ ( ଯୋଦ୍ଧାସବୁ ) ବସ୍ତ୍ରକନ୍ତି ( ଶୋଭାପାନ୍ତି ) । ସକଳେ ( ସମସ୍ତେ ) ଜଳ୍ପାନ୍ତି ( ଦେହ ଲଗାଲଗି ) ହୋଇଗଲେ । ଯୁଦ୍ଧେ ( ସେହି ଯୁଦ୍ଧରେ ) ଶୂରେ ଶୂରେ ( ବୀରଙ୍କ ସଙ୍ଗେ ବୀରମାନେ ) ସମ୍ବାଦ ( ସମ୍ୟକ୍ ପ୍ରକାରେ ବିବାଦ ) କଲେ । କମ୍ବା-ସମ୍ପାଦ ( କଏ କେଉଁଠାରେ ଅଛୁ ବୋଲି ବୀରମାନେ ବୀରମାନଙ୍କୁ ଖୋଜିଲେ ) । ବିଶେଷ ( ବିଶେଷରେ ) ହରି ( ମର୍କଟମାନେ ) ବହୁଶତ ହୋଇଅଛନ୍ତି ( ବହୁରୂପଛନ୍ତି ) । ସେ ( ମର୍କଟମାନେ ) ବିବାଦେ ( ଯୁଦ୍ଧରେ ) ପ୍ରାଣ ବହୁଶତ କରନ୍ତି ( ଅସୁରଙ୍କ ପ୍ରାଣ ହାନଅନ୍ତି ) । ବଳୀ ( ଇନ୍ଦ୍ରଜିତ ) ବୀରେନ୍ଦ୍ର ( ଲକ୍ଷ୍ମଣଙ୍କ ) ଶରଭଙ୍ଗ ( ବାନ୍ଧିବା ଶରଗୁଡ଼ିକ ) ବଳ ( ଛୁଟିଦେଇ ) ପ୍ରଜ୍ୱଳ ( ପ୍ରଜ୍ୱଳିତ ହୋଇ ) ଅତି ରଣେ ରତ ରତ ( ଅତ୍ୟନ୍ତ ରଣକ୍ରୀଡ଼ାରେ ପ୍ରୀତ ) "କଲ" । "ଘୋର ଯୁଦ୍ଧରେ ପ୍ରବର୍ତ୍ତିଲ ଏହି ଶବ୍ଦ" । ଅଥବା ୧ ବଳୀ-ବଳୀ ( ଇନ୍ଦ୍ରଜିତ ) ବୀରେନ୍ଦ୍ର ( ଲକ୍ଷ୍ମଣଙ୍କ ) ଶରଭଙ୍ଗ ( ଶରତୁଲ୍ୟ ଶୀଘ୍ରବାନ୍ଧ ) ପ୍ରଜ୍ୱଳିତ ( କ୍ରୋଧାଗ୍ନିରେ ଜଳିଉଠି ) ଅତିରଣ ରତରତ ( ଘୋର ରଣକ୍ରୀଡ଼ାରେ ) ରତ ( ପ୍ରୀତ ) ବଢ଼ାଇଲା । ୧୨ ।

୧୩ଶ ପଦ—[1]ଦନୁଜ ( ଇନ୍ଦ୍ରଜିତ ) ବିଚିତ୍ର ( ଚମତ୍କାର ) ଚିତ୍ରଭାନୁ ଭାନୁପତ୍ରୀ ( ଅଗ୍ନି ରଶ୍ମି ଶର ) ସନ୍ଧାନୁ ( ଧନୁରେ ଯୋଚନ୍ତେ ) ଧୀର ( ପଣ୍ଡିତ ) ରାମାନୁଜ ( ଲକ୍ଷ୍ମଣ ) ପବନବାଣ ( ପବନାସ୍ତ୍ର ) ବାନ୍ଧ ସେ [2]ଭୁବନଜ ( ସେହି ଅଗ୍ନିଶରକୁ ) ଜବନ ( ବେଗରେ ) ବଳେ "ନେଇ"

---

୧—ବଳନଃ ବଳୀ-ବଳବଳୀ-ଅତିବଳୀ ।

—ଦନୁଜାସୁରଦୈତ୍ୟାନାମୈକ୍ୟମେବାଭିସମ୍ମତଂ ଇତି କବିକଳ୍ପଲତାୟାଂ ।

୨—ଜଳଜ-ଅଗ୍ନି-ଅଦ୍ଭ୍ୟୋଽଗ୍ନିର୍ବ୍ରହ୍ମତଃ କ୍ଷତ୍ରମଶ୍ମଭ୍ୟୋ ଲୋହମୁତ୍ଥିତମିତି ମହାଭାରତେ ।

ବିତପନ । ବିଧାନ ହେଲା କେତେ ଠାରେ । ବିତପନ । ବିଭବ ଦେଖି
ସୌମିତ୍ରିର । ବଡ଼କ୍ରୋଧରେ ଧନ୍ୱିର ଧନୁଶର ପ୍ରହାରେ ହରେ ତା
ପବି ଆୟୁଧରଂ ସେ । ୧୩ ।

ବିଧୃତ ଲକ୍ଷ ଲକ୍ଷ ଯେ ଶିଳୀମୁଖ ମୁଖ ଶାଣ ଲକ୍ଷ ଦୁହିଁଙ୍କ ଦୁହେଁ ।
ବିରକ୍ତସ୍ନାନ ରକ୍ତ ଜରଜର ଜରତବିମ୍ବ ଆକୃତି ବନ୍ଧ ଦେହେ
ସେ । ବିଦାରଣ । ନେଣ ସମାନଭାବ ତହିଁ । ବିଦାରଣ । ବୃଷ୍ଟି

---

ଅବଧିର ( ସିମ୍ପଦରେ ) ଧନ୍ୱାଇ "ଦେଲ" । ୩ ବିତପନ ୪ ବିଧାନ (ବିଶେଷ ତାପ ବିଧିରେ ଶରତାପରେ ବିଶେଷ ) ଧନ୍ୱୀର ( ଆସକ୍ତ ) ଯେ ( ଇନ୍ଦ୍ରଜିତ) ସୌମିତ୍ରିତ ( ଲକ୍ଷ୍ମଣଙ୍କର ସ୍ୱରୂପ ) ବିତପନ ବିଭବ ( ଗ୍ରୀଷ୍ମସୂର୍ଯ୍ୟସଦୃଶ ) ଦେଖି ବଡ଼ କ୍ରୋଧରେ ଧନୁଶର ( ପର୍ବତାସ୍ତ୍ର ) ପ୍ରହାରେ ( ପ୍ରହାରିଲା ) । "ତାଦେଖି ଲକ୍ଷ୍ମଣ" ପବି ( ବଜ୍ର ) ଆୟୁଧର ( ଶରରେ ) ତା ( ସେହି ପର୍ବତାସ୍ତ୍ରକୁ ) ହରେ ( ନାଶକଲେ ) । ୧୩ ।

୧୪ଶ ପଦ—ଶାଣମୁଖ ( ଶାଣ ଦେଲା ) ଶିଳୀମୁଖ (ବାଣ) ଲକ୍ଷ ଲକ୍ଷ ବିଧୃତ ( ଧରିବାରେ ) ଦୁହିଁଙ୍କ ଦୁହେଁ ୧ଲକ୍ଷ ( ସମାନ ), କିମ୍ବା ଲକ୍ଷ୍ୟ ( ଲକ୍ଷ୍ୟରଯୋଗ୍ୟ ), "ପୁଣି" ବିରକ୍ତସ୍ନାନ ( ବିରକ୍ତରହିତ ) ରକ୍ତ ଜରଜର ( ଶରାଘାତରୁ ରୁଧିରରେ ଜର୍ଜରିତ ) ଜରତ୍‌ବିମ୍ବ ( ପାଚିଲା ତରଡ଼ାଫଳର ) ଆକୃତି ଦେହେ (ଦେହରେ ) ବନ୍ଧ ୨ ବିଦାରଣ ( ଯୁଦ୍ଧ ) ତହିଁ ( ତହିଁରେ ) ନେଣ ( ଦୁହିଙ୍କର ) ସମାନଭାବ ( ନ୍ୟୂନାତିରିକ୍ତ ନାହିଁ ) । ବିଦାରଣ ( ଭେଦ ) ବୃକ୍ଷ କେବଳ ରହିଅଛି । ବାଣ ( ଶର ) ବାଣ ( ବାଣାସୁର ) "ହେଲା ତାହାର" ସେବନେ ( ସେବନରେ ) ଈଶ ( ଈଶ୍ୱରପ୍ରାପ୍ତ ) ଉଦ୍ଭାସ ( ଅଳ୍ପହାସ ) ପ୍ରକାଶକରନ୍ତି "ଶରମାନଙ୍କୁ ମ୍ଳେଷ୍ଠଜ୍ଞାନ କରନ୍ତି

---

୩—ତପନସ୍ତରଣେ ତାପେ ଇନ୍ଦ୍ରେ ବଶ୍ୟେ ।
୪—ବିଧିର୍ବିଧାନେ ଦୈବେଽପି ।
୫—ତତ୍ପରେ ପ୍ରସିତାସକ୍ତାବିତ୍ୟମରଃ ।
୧—ଲକ୍ଷଂ ଲକ୍ଷ୍ୟଂ ଶରବ୍ୟଂଚ ଇତ୍ୟମରଃ ।
୨—ବିଦାରଣଂ ରଣେ ଭେଦେ ବୃକ୍ଷେଚ ବିଦାରଣେ ଇତିବିଶ୍ୱଃ ।

କେବଳ ଅସ୍ତ୍ର ରନ୍ଧ୍ର । ବାଣେସେବନେ ଝଟ ଝଷଧ୍ୱାସ ପ୍ରକାଶ ଶଲ୍ୟ
କ ଶଲ୍ୟଭାବ ବନ୍ଧ୍ର ସେ । ୧୪ ।

ବାତସୁତ ଶାଳକେ ପକାଇଲେ ତଇଳେ ସୂତ ମାତ୍ସ୍ତି ଖିତ-
ଗ୍ରାହ୍ୟ । ବିଭଞ୍ଜନ ସେ ଜନରଞ୍ଜନ ରଥ ପୁନ ରାଜନସୁତ ଊର୍ଦ୍ଧ୍ୱ
ମହ୍ୟ ସେ । ବିଧା ତାରେ । ବାଳିସୁତ ପ୍ରହାରୁଁ ଘୋଟି । ବିଧା-
ତାରେ । ବିଜୟି-ଗର୍ବ ଗଲା ତୁଟି । ବିଶିଖେ ତୂଳା ତୂଳା ତନୁ ଭଣା
ବାତୁଳା ସେ କପଟୀ ବୋଧେ ଲମ୍ପଟୀ ସେ । ୧୫ ।

---

ଏହାଭାବ” ୩ ଶଲ୍ୟ (କାଣ୍ଡ) ଶଲ୍ୟ (ଟିଙ୍କପକ୍ଷୀ) “ହେଲ” । (କଅଣ)
ଶଲ୍ୟଭାବ ( ଶଲ୍ଲକୀତୁଲ୍ୟ ଟିଙ୍ଗକାଠି ବନ୍ଧହେଲା ପ୍ରାୟ ) ଶଲ୍ୟ ( କାଣ୍ଡମାନଙ୍କ )
ବନ୍ଧ ( ବନ୍ଧିଲେ ) । ୧୪ ।

୧୫ ଶ ପଦ—“ଏ ସମୟେ” ବାତସୁତ ( ହନୁମାନ୍ ) ଶାଳକେ
( ପର୍ବତେକ ) ପକାଇଲେ ( ମାଇଲେ ) “ତହିଁରେ” ୧ ସୂତ ( ଇନ୍ଦ୍ରଜିତର
ସାରଥି ) ତଇଳେ ( ତୈଳରେ ) ମାତ୍ସ୍ତି ( ମାଛପଡ଼ି ମଲାପ୍ରାୟ ) ଖିତଗ୍ରାହ୍ୟ
“ହେଲ” ( ମଲା ) । ପୁନ ( ପୁଣି ) ସେ ଜନରଞ୍ଜନ ରଥ ( ଇନ୍ଦ୍ରଜିତର
ସେହି ମନୋହର ରଥ ) ବିଭଞ୍ଜନ ( ଭାଙ୍ଗିଗଲା ) । “ଏଣୁ” ରାଜନସୁତ
( ଇନ୍ଦ୍ରଜିତ ) ମହ୍ୟ ( ପୃଥିବୀରେ ) ଊର୍ଦ୍ଧ୍ୱ “ହେଲା” । ବାଳିସୁତ ( ଅଙ୍ଗଦ )
ଘୋଟି ( ଆବୋରି ) ତାରେ ( ସେହି ଇନ୍ଦ୍ରଜିତକୁ ) ବିଧା ( ବିଢ଼ାଏ )
ପ୍ରହାର ( ମାଇଲା ) । ବିଧାତାରେ ( ବିଧାତାର ବର ପ୍ରସାଦରୁ ) ବିଜୟୀ
( ତ୍ରିପୁରବିଜୟୀ ) ଗର୍ବ “ତାହାର” ତୁଟିଗଲା ( ଭାଙ୍ଗିଗଲା ) । ବିଶିଖେ
( ଲକ୍ଷ୍ମଣଙ୍କ ଶରରେ ) ତନୁ ( ତାହାର ଶରୀର ) ତୂଳା ତୂଳାଭଣା (ତୂଳାରେ
ତୂଳା ଭଣାହେଲା ପ୍ରାୟ ହେବାରୁ ) ସେ କପଟୀ ( ଇନ୍ଦ୍ରଜିତ ) ବାତୁଳା
( ବାତୁଳହୋଇ ) ବୋଧେ ( ବୋଧଦେବାପାଇଁ ) ଲମ୍ପଟୀ ( ଲେଖି )
“ହେଲ” । ୧୫ ।

---

୩—କ୍ଷେଡ଼ଶଙ୍କୁ ଶରେ ଶଲ୍ୟ ମିର୍ଧେ ହଲାୟୁଧଃ ।
୧—ହୃତଃ କ୍ଷତ୍ତାଚ ସାରଥିକ୍ତ୍ୟନ୍ତରଃ ।

ବିରଥୀ ମୁଁ ଯେ ବୀର ପଦଗେ ପଦବୀର ରଙ୍ଗେ ବିରଙ୍ଗେ ଯଶ ହାନି । ବହୁବଳସଙ୍ଗରେ ରସିଥାଅ ରଙ୍ଗରେ ଆସଇଁ ଅସ୍ତ୍ର ଶସ୍ତ୍ର ଘେନି ଯେ । ବଟେ ଯିବ । ବ୍ୟର୍ଥହେବ ବିବାଦେ ନହି । ବଟେ ଯିବ । ବିମାନ ଆଣିବ ସେ ପୂଜି । ବିଭୀଷଣ ଭଣନ୍ତେ ଜାଣନ୍ତେ ପରିଣତେ ଧିକ୍‌କାର କରି କେତେ ଗଞ୍ଜି ସେ । ୧୬ ।

ବସି ହିରଣ୍ୟମୟ-ହୀରକରଥେ ମୟନପ୍ତା ହିରଣ୍ୟ ପ୍ରାପ୍ୟେ ଦଗି । ବହି ସାୟକ ଶର ପ୍ରହାରି ବହନରେ ନରସିଂହ ଉପରେ ମିଶି ସେ । ବିଘ୍ନରାଜ । ବଳୀମୁଖଙ୍କୁ ଚେତା କରି । ବିଘ୍ନ ରାଜ । ବିଭୂତି କରକୁ

---

୧୬ ଶ ପଦ—"ଜଳ୍ପିଲେ ବୋଧକରି କହିଲା" ମୁଁ ଯେ ବୀର (ଶୂର ମୁଁ) ବିରଥୀ (ରଥଶୂନ୍ୟ ହେବାରୁ) ପଦବୀର (ମାର୍ଗରେ) ପଦଗେ (ପାଦଗନ୍ତା କରି) ରଙ୍ଗେ (ଯୁଦ୍ଧରେ) ବିରଙ୍ଗେ (ହାରିଲେ) "ତୁମ୍ଭର" ଯଶହାନି "ହେବ" । "ଏଣୁ ତୁମ୍ଭେ ମୋହର" ବହୁବଳ (ବହୁତ-ସୈନ୍ୟଙ୍କ) ସଙ୍ଗରେ (ସହିତ) ରଙ୍ଗରେ (ଯୁଦ୍ଧରେ) ରସିଥାଅ, ଅସ୍ତ୍ରଶସ୍ତ୍ର ଘେନି ମୁଁ ଆସଇ (ଆସୁଛି) । "ଇନ୍ଦ୍ରଜିତ କଥାଶୁଣି ଲକ୍ଷ୍ମଣଙ୍କୁ ବିଭୀଷଣ କହିଲେ" ବଟେଯିବ (ଠକାହୋଇଯିବ) ବଟେ (ନିକୁମ୍ଭିଳା ବଟ ମୂଳକୁ) ଯିବ ସେ ପୂଜି (ଅଗ୍ନିରେ ହୋମକରି ପୂଜିବ) "ତହିଁରୁ ଜନ୍ମିବା" ବିମାନ ଆଣିବ । "ତହିଁରେ ବସି ଯୁଦ୍ଧକଲେ ଆମ୍ଭେ" ବିବାଦେ ନହିଁବ୍ୟର୍ଥ ହେବ (ଆମ୍ଭେ ଯୁଦ୍ଧରେ ଜିଣି ନ ପାରିବା) "ଅତଏବ ଏହାକୁ ଛାଡ଼ି ନଦଅ ଏହିକ୍ଷଣି" । ବିଭୀଷଣ ଭଣନ୍ତେ (ଲକ୍ଷ୍ମଣଙ୍କୁ ଏମନ୍ତ କହନ୍ତେ) "ଇନ୍ଦ୍ରଜିତ ତାହା" ପରିଣତେ (ପରିଣତରେ) ଜାଣନ୍ତେ (ବୁଦ୍ଧିପାରି) ଧିକ୍‌କାରକରି "ବିଭୀଷଣଙ୍କୁ" କେତେ (କେତେରୂପେ) ଗଞ୍ଜି (ଗଞ୍ଜିଲା) ।୧୬

୧୭ଶ ପଦ—ମୟନପ୍ତା (ମୟଦୈତ୍ୟର ନାତି ଇନ୍ଦ୍ରଜିତ) ହିରଣ୍ୟମୟ ହୀରକରଥେ (ସ୍ୱର୍ଣ୍ଣମୟ ହୀରାଖଚିତ ରଥରେ) ବସି ହିରଣ୍ୟ (ହିରଣ୍ୟକଶିପୁ-ଦୈତ୍ୟ) ପ୍ରାପ୍ୟେ ଦଗି (ଦଗିଲା) । "ହିରଣ୍ୟ ଯେରୂପ" ସାୟକ (ଖଡ୍ଗ) ବହି (ଧରି) ନରସିଂହ (ନୃସିଂହମୂର୍ତ୍ତିଙ୍କ) ଉପରେ ମିଶି ବହନ (ବେଗରେ) ପ୍ରହାରି "ଥିଲା" "ତଦ୍ରୂପ" ବିଘ୍ନରାଜ (ଗଣେଶଙ୍କପ୍ରାପ୍ତ)

ଉସ୍ତାଉ । କଷି ଚେତନା ପାଇ ବେଗେ ପତନ ହୋଇଁ କ୍ଷିପଣୀ ମନ୍ତ୍ରି ପୁନ ମାରି ସେ । ୧୭ ।

ବଳେ ସେ ଐରାବତ ବତ ମେରୁପର୍ବତ ଦନ୍ତରେ ପ୍ରହାରି କି ଦନ୍ତ । ଷଷ୍ଠାତରେ ପାତରେ ରକ୍ତଧାରାଂସତ୍ୱରେ ଗେରୁଯୁକ୍ତ ଜାହ୍ନବୀ ମତ ସେ । ବୀର ଶରେ । ବ୍ୟଥିତପ୍ରସୂ ସେ ଲପନ । ବିରସରେ । ବନ୍ଧେ ଫୁତ୍କୃତ ପୁନଃପୁନ । ବୋଲନ୍ତି ସେ ଜଗତେ ଲକ୍ଷ୍ମଣ ଏ ସଙ୍କଟେ ଗତେ ନ ଥିଲା ହୋଇ ଧନ୍ୟ ସେ । ୧୮ ।

---

ବଳୀ ( ବଳିଷ୍ଠ ) ଲକ୍ଷ୍ମଣ ବଳୀମୁଖଙ୍କୁ ( ମର୍କଟ ସୈନ୍ୟଙ୍କୁ ) ତେତା କରାଇ ( ସହାୟ ଦେଇ ) ଶର ( କଙ୍କପତ୍ରଶର ) ପ୍ରହାରି ( ମାରିଲେ ) । "ଇନ୍ଦ୍ରାରି ଇନ୍ଦ୍ରଜିତର୍"[1] ରାଜଦ୍ଭୁଜ ( କ୍ଷତ୍ରିୟସ୍ୟେଶୌର୍ଯ୍ୟପରାକ୍ରମ) ବିନ୍ଧ ( ବିଦ୍ଧ ଶରହେବାରୁ) ସେ ଇନ୍ଦ୍ରଜିତ୍ ବିସ୍ତାର ବେଗେ ପତନହୋଇ ( ମୂର୍ଚ୍ଛାଯାଇ ) ଚେତନା ପାଇ ( ଚେତଉଠି ) ବସି ପୁନ ( ପୁଣି ) ମନ୍ତ୍ରି ( ଅଭିମନ୍ତ୍ରିତ କରି ) କ୍ଷିପଣୀ ( ତିନିଗୋଟିକାଣ୍ଡ ) ମାର ( ଲକ୍ଷ୍ମଣଙ୍କୁ କାଢ଼ିଲା ) । ୧୭ ।

୧୮ଶ ପଦ—[2]"ସେ ତିନିଗୋଟି କାଣ୍ଡ ଲକ୍ଷ୍ମଣଙ୍କ କପାଳରେ ନିକଳି ରହିବାରୁ କବି ଉତ୍ପ୍ରେକ୍ଷା କଲେ" । ସେ ( ଇନ୍ଦ୍ରଜିତ ) ବଳେ ( ବଳରେ ) ଐରାବତ ବତ ( ଐରାବତ ହସ୍ତିତୁଲ୍ୟ ) ମେରୁପର୍ବତ "ତୁଲ୍ୟ ଲକ୍ଷ୍ମଣଙ୍କ କପାଳ" ଦନ୍ତ ( ଶୃଙ୍ଗ ) "ହେଲ" "ଦ୍ୱିଧିରେ" ଦନ୍ତ ପ୍ରହାରକି ( ମାରିଲାକି ) ? ଷଷ୍ଠାତରେ ( ଶରଦନ୍ତ ଷଷ୍ଠାତରେ ) ସତ୍ୱରେ ( ଶୀଘ୍ର ) ରକ୍ତଧାରା ପାତରେ ( ତିନିଗୋଟି ରକ୍ତଧାରା ପାତ ହେବାରେ ) ଗେରୁ ଯୁକ୍ତ ଜାହ୍ନବୀମତ ( ଗଙ୍ଗା ତିନିଧାର ହେଲପରି ଦିଶିଲା ) । ସେ ଲପନ ( ଲକ୍ଷ୍ମଣଙ୍କ ମୁଖ ) ବୀର ( ଇନ୍ଦ୍ରଜିତର ) ଶରେ ୧ ବ୍ୟଥିତପ୍ରସୂ ହେଲା ( ବ୍ୟଥାକୁ ଜାତକଲା ) । "ଶତ୍ରୁ ବଦ୍ଧଆସି ମୁଣ୍ଡରେ ପଶିବାରୁ" ବିରସରେ ( ଦୁଃଖମନରେ ) ପୁନଃପୁନ ( ବାରମ୍ବାର ) ଫୁତ୍କୃତ ( ଫୁତ୍କାର ) ବନ୍ଧେ ( କଲେ ) । ସେ ଯେ (ଲକ୍ଷ୍ମଣ "ପଶକ୍ତହୋଇ" ବୋଲନ୍ତି ଗତେ ( ଗତ କାଳରେ ) ଏ ( ଇନ୍ଦ୍ରଜିତ )

---

୧—ରାଜା ଯକ୍ଷେ ନୃପେ ଚନ୍ଦ୍ରେ କ୍ଷତ୍ରିୟେ ଚ ପୁରନ୍ଦରପୀଠ ବଣ୍ଡଃ ।

୨—ଜଳଯୁର୍ବୀ ଇତ୍ୟମରଃ ।

ବଢ଼ାଇ ବଧୀପଣ ଜଡ଼ାଇ ବେଶ୍ୱହେଷଣ ତାଳିଲ ପ୍ରାପ୍ତେ ବୋହା-
ନଳେ । ବହିତ ବ୍ୟଥିତକୁ ପ୍ରତିଜ୍ଞା କଥିତକୁ ସ୍ମୃତି ନ କରି ବଜ୍ରେ
ବେଳେ ସେ । ବଭ୍ରୁବସ୍ତୁ । ବଂଶଭୂଶୂରର ନିପୁଣ । ବଭ୍ରୁବସ୍ତୁ । ବଦ୍ଧିତ
ଦେବରିପୁ ତୃଣ । ବଧ୍ୱଂସ ସତ୍ୟବାଦୀ ବୋଲାଇ ସତ୍ୟ ବାଦୀ ହେବାର
ବାର କିଂକାରଣ ସେ ।୧୯।

---

ସଙ୍ଗତେ ( ସମାନ ) ଧନ୍ୟ (ପ୍ରଶଂସନୀୟ) ହୋଇ କ୍ଷତ୍ରିୟ ଜଗତେ ନ ଥିଲା । "ଥିଲେ ଶୂର୍ପଣଖା ଲକ୍ଷ୍ମଣଙ୍କର ଏମନ୍ତ ଚରିତ୍ର ଦେଖି ବଧୀପଣ ଜାଣିଲା ଏ ଏହାଙ୍କୁ ମାରି ପାରିବେ ନାହିଁ" । ୧୮ ।

୧୯ଶ ପଦ—ସେହିକ୍ଷଣି ବଧୀପଣ ବଢ଼ାଇ ( ଲକ୍ଷ୍ମଣଙ୍କର ଇନ୍ଦ୍ରଜିତ ମାରିବା ପ୍ରତିଜ୍ଞା ) "ତାଙ୍କ ମନରେ" ଜଡ଼ାଇ "କହିଦେଲେ" । 'ଅନଳେ ସ୍ନେହ ଢାଳିଲା ପ୍ରାପ୍ତେ ( ଅଗ୍ନିରେ ଲହୁଣୀ ଢାଳିଲାପରି ) "ସେ ପ୍ରଜ୍ୱଳିତ ହେଲେ" । "କିରୂପେ କହି ଜଡ଼ାଇ ଦେଲା ?" ପ୍ରତିଜ୍ଞା କଥିତକୁ ( କହିଥିବା ପ୍ରତିଜ୍ଞା ) ବେଳେ ( ଥରେ ) ଶତେ ( ମନରେ ) ସ୍ମୃତି ନକରି ( ନ ରଖି ) ବ୍ୟଥିତକୁ ( ବ୍ୟଥା ) ବହୁ ( ପାଉଛ ) । "ଇନ୍ଦ୍ରଜିତକୁ ମାରିବବୋଲି ପ୍ରତିଜ୍ଞା କରିଥିଲ ନ ମାରିଲେ ଲୋକେ ହସିବେ ଏହାଶୁଣ" । ୧ ବଭ୍ରୁବସ୍ତୁ ବଂଶଭୂ ଶୂରର ( ସୂର୍ଯ୍ୟବଂଶୀୟ ବୀରମଧରେ ) ୨ ନିପୁଣ (ତୁମେ-ପ୍ରବୀଣ ) ଏଣୁ ବଭ୍ରୁବସ୍ତୁ ( ଅଗ୍ନି ପ୍ରାୟ ) ବଦ୍ଧିତ ( ପ୍ରଦୀପ୍ତ ) ଦେବରିପୁ ( ଇନ୍ଦ୍ରଜିତ ) ତୃଣ "ପରି" ତାକୁ ବିଧ୍ୱଂସ ( ପୋଡ଼ିପକା ) "ତୁମେ" ସତ୍ୟବାଦୀ ବୋଲାଇ ( ତୁମ୍ଭଙ୍କୁ ଲୋକେ ସତ୍ୟବାଦୀ ବୋଲନ୍ତି ) "ଏହା" ବାର ( ମନରେ ଘେନ ) ବାଦୀହେବାର କିଂକାରଣ ( ତା ସଙ୍ଗେ ବାଦୀହେବା ଉଚିତ ନୋହେ ) "ଏହା" ସତ୍ୟ ( ମିଥ୍ୟା ନୋହେ ) । ଅଥବା ସତ୍ୟବାଦୀ ବୋଲାଇ ସତ୍ୟ ବିଧ୍ୱଂସ "କରୁଅଛ" । ୧୯ ।

---

୧—ମନୋଭୂ ପ୍ରାୟ ବଭ୍ରୁବସ୍ତୁଭୂ ହୋଇ ।
୨—ପ୍ରବୀଣେ ନିପୁଣାଭିଜ୍ଞ ବିଜ୍ଞ ନିଷ୍ଣାତ ଶିକ୍ଷିତା ।
ବୈଜ୍ଞାନିକଃ କୃତମୁଖଃ କୃତୀ କୁଶଲ ଇତ୍ୟପି ଇତ୍ୟମରଃ ।

ବାଣୀ କୁଟିଳ ପାଇ ଭ୍ରୁକୁଟିକ କମ୍ପାଇ କୁଟୀ ହେଲେ ମାରଣେ ତାର । ବାବଲ ବାଣୋତ୍ତମ ପ୍ରୟୋଗେ କେତୁ ତମ ତାରତମ କଲେ ତତ୍ପର ସେ । ବିଗ୍ରହ ଯେ । ବିଶୁଦ୍ଧ ସେହିକାଳେ ହେଲା । ବିଗ୍ରହ ଯେ । ବସୁଧା ଉପରେ ପଡ଼ିଲା । ବିହରୁତ ମରୁତସୁତ ନୃତ୍ୟକରୁତ ଶବେ ନୈର୍ଋତ ଛବି ନେଲା ସେ ।୨୦।

---

୨୦ଶ ପଦ—କୁଟିଳବାଣୀ ( ବିଶ୍ୱାସରେ ଛଦ୍ମକଥା ) ପାଇ ( ଶୁଣି ) ଭ୍ରୁକୁଟିକ ( ଭ୍ରୂଲତା ) କମ୍ପାଇ ( ନଚାଇ ) ତାର ( ସେହି ଇନ୍ଦ୍ରଜିତର ) ମାରଣେ ( ବଧ ବିଷୟରେ ) ୧ କୁଟୀ ( ମାୟାବୀ-କୈତବୀ ) ହେଲେ । ବାଣୋତ୍ତମ ( ବାଣଶ୍ରେଷ୍ଠ ) ବାବଲ ( ବାବଲଶର ) ତମ ( କ୍ରୋଧରେ ) ପ୍ରୟୋଗେ ( ପ୍ରୟୋଗ କରନ୍ତେ ) ତତ୍ପର ( ଆସକ୍ତହୋଇ ) କେତୁ ( କେତୁଗ୍ରହପରି ) ତମ ( ରାହୁଗ୍ରହ ପରି ) ତାରତମ ( ନ୍ୟୂନାଧିକଭାଗ ) କଲେ "ରାହୁକେତୁ ପ୍ରାୟ ଦୁଇଖଣ୍ଡ କଲେ ଏମନ୍ତଭାବ" । ସେହିକାଳେ ( ସେ ସମୟରେ ) ୨ ବିଗ୍ରହ ( ଯୁଦ୍ଧ ) ବିଶୁଦ୍ଧ ( ନିର୍ମଳ ) ହେଲା । ଯେ ( ଯେଉଁ ) ବିଗ୍ରହ ( ଇନ୍ଦ୍ରଜିତଶରୀର ) ବସୁଧା ଉପରେ ପଡ଼ିଲା । "ଇନ୍ଦ୍ରଜିତ-ମରି ତଳେ ପଡିବାରୁ ଦେଖି" ମରୁତସୁତ ( ହନୁମାନ୍ ) ରୁତ (ଆନନ୍ଦ ଧ୍ୱନିକରି) ଶବେ ( ଶବ ଉପରେ ) ନୃତ୍ୟକ ( ନୃତ୍ୟକାରୀ ହୋଇ ) ବିହରୁତ ( ବିହାର କରିବାରୁ ) ୩ ନୈର୍ଋତ ଛବି ନେଲା ( ଶବାରୂଢ଼ ନୈର୍ଋତ-ଦେବତାର ଛବିକି ନେଲା ) । ୨୦ ।

---

୧ — ମାୟାନିଶ୍ଚଳ ଯନ୍ତ୍ରେଷୁ କୈତବାନୃତରାଶିଷୁ ।
ଆନୟାଘଟନ ଶୈଳେ ଶୃଙ୍ଗେ ସୀରାଙ୍ଗେ କୂଟ ମସ୍ତ୍ରୀୟା ମିତ୍ୟମରଃ ।
୨— ବିଗ୍ରହଃ କାୟ ବିସ୍ତାର ବିଦ୍ଧରେ ନା ରଣେଽପି ସ୍ତ୍ରୀ ମିତ ମେଦିନୀ ।
୩— ନୈର୍ଋତାୟ ରକ୍ଷୋଽଧିପତୟେ ପ୍ରେତାରୂଢ଼ାୟ ଶ୍ୟାମ ବର୍ଣ୍ଣାୟ ଖଡ୍ଗହସ୍ତାୟ ସପରିବାହନାୟ ନମ ଇତି ମୀଳାଦ୍ରୁ ମହୋଦଧି ପୂଜାୟାଂ ।

ବଧାନ୍ତ ଶ୍ରମ ଶ୍ରମ ବଶ୍ୟାଏ ଅବଶ୍ରାମ କଙ୍କ କୁତୁକ ପକ୍ଷୀବଶେ ।
ବଧକ ଯେ ଧଙ୍କରେ କ ଶିବ ଅନ୍ଧକରେ ସିଂହକୁ ଶରଭରେ ନାଶେ
ସେ । ବିଧିରେ ଯେ । ବର୍ଣ୍ଣଭେଦରେ ସେ ମହୀଶ । ବଧିରେ ଯେ ।

୨୧ଶ ପଦ—ଶ୍ରମ ( ରମଣୀୟ ) ଶ୍ରମ ବଶ୍ୟାଏ ( ଲତାଏ ) ଅବଶ୍ରାମ ( ବିଶ୍ରାମ ନ କରି ) ୧ କଙ୍କ ( କଙ୍କପକ୍ଷୀ ତୁଲ୍ୟ ରାବଣପୁତ୍ର କଙ୍କକୁ ) କୁତୁକ ( କୌତୁକରେ ) ୨ ପକ୍ଷୀ ବଶେ ( ଗରୁଡ ପକ୍ଷୀତୁଲ୍ୟ ଶରଯୋଗୁ ) ବଧାନ୍ତ ( ମାରିଲେ ) ଧଙ୍କରେ ଯେ ( ଯେ ପୁଣି ରାବଣ ପୁତ୍ର ଧଙ୍କର ) ବଧକ ( ବଧକାରକ ) "ହେଲେ" । "ଏମନ୍ତ ଯେ ଶ୍ରମ" ଅନ୍ଧକରେ ( ଅନ୍ଧକ ଅସୁରର ) ବଧକ ( ବଧକାରୀ ) ଶିବ କି ? "ଶିବ ଅନ୍ଧକ ଅସୁରକୁ ମାରିଲପରି ଶ୍ରମ ଧଙ୍କକୁ ମାରିଲେ ଏହି ଉତ୍ପ୍ରେକ୍ଷା" । ୩ ଶର ୪ ଭରେ ( ସିଂହହନ୍ତା ତୁଲ୍ୟ ଶର ସମୂହରେ ) ୫ ସିଂହକୁ ( ସିଂହତୁଲ୍ୟ ରାବଣର ପୁତ୍ର ସିଂହକୁ ) ନାଶେ ( ନାଶକଲେ ) ୬ ବଧିରେ ସେ ( ଶ୍ରମ ) ମହୀଶ ( ରାଜା ) ବର୍ଣ୍ଣ ଭେଦରେ ( ଷବର୍ଣ୍ଣଭେଦରେ ୭ ମହୀଷ ( ମହିଷି ) ହେଲେ, ବଧିରେ ( ନଷ୍ଟେ ) ତୁରଙ୍ଗର ( ଅଶ୍ୱତୁଲ୍ୟ ରାବଣପୁତ୍ର ତୁରଙ୍ଗର ) ବିଳାସ ( ଲୀଳାକୁ ) ଶେଷ "କଲେ" "ମାରିଲେ ଏହିଭାବ" । ବେଲରେ ଓଲ ଯେ ସେ ବନ ଗୁପ୍ତରୂପୀ ( ବନରେ ଗୁପ୍ତ ହୋଇଥାଇ ) ଅପି ( ନଷ୍ଟେ ) ସୋଲପୀ (ରାବଣ ପୁତ୍ର) ଓ ସୋଲ ସଦୃଶ (ସମାନ) "ଏଣୁ" ଓ ଲୋପି ( ରାବଣ ପୁତ୍ର ) ୮ ବନ ( ପ୍ରହାର ଦ୍ୱାର ) ଗୁପ୍ତରୂପୀ ହେଲ

୧—ଲୋକପୃଷ୍ଠସ୍ତୁ କଙ୍କଃସ୍ୟାଦିତ୍ୟମରଃ ।
୨—ପକ୍ଷୀ ଶ୍ୟେନ ଇତ୍ୟପି ।
୩—ଉତ୍ପାଦକସ୍ତୁ ଶରଭଃ ସିଂହହନ୍ତା ଇତ୍ୟେକୋକ୍ତଃ ।
୪—ଅଥଶଶ୍ୟୋଭରଃ ଇତ୍ୟମରଃ ।
୫—ସିଂହୋ ମୃଗେନ୍ଦ୍ରଃ ପଞ୍ଚାସ୍ୟ ଇତ୍ୟମରଃ ।
୬—ବଧିର୍ବିଧାନେ କଥ୍ୟନ୍ତେ ବଧଃ କାଳେ ବଧାନ୍ତର ଇତିବିଶ୍ୱଃ ।
୭—ଲୁଲାପୋ ମହିଷୋବାହ ଦ୍ୱିଷତ୍କାସର ସୈରିଭ ଇତ୍ୟମରଃ ।
୮—ବନଂ ପ୍ରହରଣେଽପିଚେତି ବିଶ୍ୱଃ ।
ବନଂ ସ୍ତ୍ରୀହୃଦୟେ ଯୋଧି ବନ୍ଦ୍ରୋ ବାରଣି କାନନେ ।
ବନସ୍ପତୌ ଯୌବନେ ଚ ନଷ୍ଟେଗୂହନବାସୟୋ ଶତକୁମ୍ଭଦାକରଃ ।

ବିଳାସ ଭୁରଙ୍ଗର ଶେଷ । ବେଦ୍ଧତେ ଯେ ଅଲୋପି ଯେ ବର୍ଣ୍ଣିଗୁପ୍ତ
ରୂପୀ ସଲୋପି ସଲୋପୀ ସଦୃଶ ସେ । ୨୧

ବିକର୍ତ୍ତନ କର୍ତ୍ତନ ଶରେ ନାକମାର୍ଗଣ ନାକରେ ଦେବଦତ୍ତ
ଥୋଇଁ । ବିଛିନ୍ନତା ହୃଦର ଦରଶନେ ସୋଦର ଯୁଦ୍ଧଶାନ୍ତିର କଥା
ହୋଇ ସେ । ବିହରିଲେ । ବ୍ରଣ ସ୍ୱେର ମନ୍ତ୍ରେ ଶଲ୍ୟ । ବିହରିଲେ ।

---

( ଅଦୃଶ୍ୟ ହେଲ ) "ତାହାର ମରିବା ଜଣାଗଲା ନାହିଁ ଏହିଭଳି" ହୋଇଲୋପୀ ( ରାବଣର ପୁତ୍ର ) "ସୋଲଗନ୍ଥି ଭୂଲ୍ଲି ଛେଦନ ହେଲା" । "ସୋଲକୁ ଯେମନ୍ତ ଖଣ୍ଡ ଖଣ୍ଡ କରି କାଟିଲାପରି ତାକୁ ଶରେ ଖଣ୍ଡ ଖଣ୍ଡ କଲେ ଏହି-ଭଳି" । ( ବେଦ୍ଧରେ ଯେ ଅଲୋପୀ ସେ ବର୍ଣ୍ଣ ଗୁପ୍ତରୂପୀ ସଲୋପି ସଲୋପୀ ସଦୃଶ ଏମନ୍ତ କେହି କେହି ପଢ଼ନ୍ତି ) ଅର୍ଥ—ବେଦ୍ଧରେ ଅଲୋପୀ ଏହି ଶବ୍ଦର ଅବର୍ଣ୍ଣ ଲୋପ କଲେ ( ଲୋପୀ ) ହେଲା । "ସେ ଯେ ରାମ ସେ ଅଲୋପିକି ଲୋପ କରି ଦେଲେ ଏହିଭଳି" । ସଲୋପୀ ଏହି ଶବ୍ଦର ସବର୍ଣ୍ଣିକୁ ଲୋପ କରିଦେଲେ ( ମାରିଲେ ) । ୨୧ ।

୨୨ଶ ପଦ—୧ ନାକ ୨ ମାର୍ଗଣ ( ସ୍ୱର୍ଗଯାତ୍ରୀ ) ଦେବଦତ୍ତ ( ରାବଣ ପୁତ୍ରକୁ ) କର୍ତ୍ତନ ଶରେ ( କାଟୁଥିବା ବାଣରେ ) ବିକର୍ତ୍ତନ ( କାଟି ) ନାକରେ ( ସ୍ୱର୍ଗରେ ବା ଅନ୍ତରୀକ୍ଷରେ ) ଥୋଇ ( ଥୋଇଲେ ) "ମାରି ସ୍ୱର୍ଗକୁ ପଠାଇ ଦେଲେ ଏହି ଭାବ" । "ଏ ସାତଙ୍କର ମାରି ହୁନ" ସୋଦର ( ଲକ୍ଷ୍ମଣଙ୍କୁ ) ଦରଶନେ ( ଦେଖନ୍ତେ ) ହୃଦର ( ମନର ) ବିଛିନ୍ନତା ( ନିଷ୍ଫଳଭାବରେ ) ଯୁଦ୍ଧ ଶାନ୍ତିର କଥା ହୋଇ ( ଦୁଇଭାଇ ବସି ଯୁଦ୍ଧ କଥାବାର୍ତ୍ତା ହୋଇ ) ମନ୍ତ୍ରେ ( ମନ୍ତ୍ରଦ୍ୱାରା ) ଶସ୍ତ୍ରର ବ୍ରଣ ( ଶସ୍ତ୍ର ଘା ) ୩ ଶଲ୍ୟ ( ଦେହରେ ଲାଗି-ଥିବା ଶରମାନଙ୍କୁ ମଧ୍ୟ ) ବିହରିଲେ ( ବାହାର କଲେ ) । ଚକ୍ରବାନ ( ଚକ୍ରବନ୍ତ ହୋଇଥିବା ) ଫଳ ( କାଣ୍ଡଫଳାମାନଙ୍କୁ ) ବାରିରେ ( ଜଳରେ )

---

୧—ନାକସ୍ତୁ ତ୍ରିଦିବେ ନ୍ତରେ ଇତି ମେଦିନୀ ।

୨—ମାର୍ଗଣୋ ଯାଚକେ ଶରେ । ଯାରତ୍ତ୍ରିନ୍ନୁତ୍ଦେହୋଃ କ୍ଲୀବଂନିତ୍ତିବାଃ ।

୩—ଶ୍ୱେଡ଼ଃ ଶଙ୍କୁ ଶରେ ଶଲ୍ୟ ମିତ ଟଭଦଃ ।

ଧାରରେ ରକ୍ତବାନ ଫଳ ସେ । ବସିଲେ ସ୍ୱର୍ଗେ ସଭାସନ୍ଥାରେ ଦେବେ ରମ୍ଭା ଆରମ୍ଭ ନୃତ୍ୟବର୍ଗ ଫଳ ସେ । ୨୨ ।

ବାର୍ତ୍ତାବହରେ ବାର୍ତ୍ତା ପାଇ ରାବଣ ଚିନ୍ତା ବ୍ୟଥିତ ସ୍ଥିତ ରଣ ସ୍ଥାନେ । ବିଳାପ କରି କରି ରାବଣ ଚଢ଼ି କରୀ ବାହୁଡ଼ୁଁ କହେ ଆନ ଜନେ ସେ । ବୀରଶାତ । ଦେଖି ଇନ୍ଦ୍ରାରି ହତ । ବୀର ସାତ । ବଧି କଙ୍କାଦ୍ୱ ବଡ଼ ଯତ । ବକ୍ଷସ୍ଥମଣି ଆଣି ଆଣୀ କଣ୍ଠ ନ ମଣି ଗଲା ରାମରମଣୀ କ୍ଷତ ସେ । ୨୩ ।

---

ବାହରଲେ ( ଧୋଇଲେ ) । ଦେବେ ( ଦେବତାମାନେ ) ସ୍ୱର୍ଗେ ( ସ୍ୱର୍ଗପୁରରେ ) ୪ ସନ୍ଥାରେ ( ସଙ୍ଗ ମୂର୍ତ୍ତିଭାବେ ) ସଭା "କରି" ବସିଲେ । ରମ୍ଭା ( ସ୍ୱର୍ଗବେଶ୍ୟା ) ରମ୍ଭା ( କଦଳୀ ) "ହେଲ" ନୃତ୍ୟବର୍ଗ ( ନୃତ୍ୟସମୂହ ) "ତାହାର" ଫଳ "ହେଲ" ସେ ଆରମ୍ଭ "ହେଲ" । "ଇନ୍ଦ୍ରଜିତ ମରିବାରୁ ଦେବତାମାନେ ସ୍ୱର୍ଗରେ ପୂର୍ଣ୍ଣ ଭାବରେ ସଭା କରି ବସିଲେ, ସଭା ଆଗରେ କଦଳୀ ବାନ୍ଧିଥିବା କଦଳୀ ଗଛ ପାଖ୍ ରମ୍ଭା ଅପ୍‌ସରା ନୃତ୍ୟ ଆରମ୍ଭ କଲା ଏହି ଫଳିତାର୍ଥ" । ୨୨ ।

୨୩ଶ ପଦ—ରାବଣ ବାର୍ତ୍ତାବହରେ ( ଚର ମୁଖରୁ ଲକ୍ଷ୍ମଣ ଇନ୍ଦ୍ରଜିତଙ୍କୁ ମାରିବା ) ବାର୍ତ୍ତା ପାଇ ଚିନ୍ତା ( ଚିନ୍ତାରେ ) ବ୍ୟଥିତ ( ଦୁଃଖିତ ) ଓ ରଣସ୍ଥାନରେ ସ୍ଥିତ "ହେଲ" । ବିଳାପ କରି କରି ରାବଣ କରୀ ( ହସ୍ତୀ ) ଚଢ଼ି ବାହୁଡ଼ୁଁ ( ବାହୁଡ଼ନ୍ତେ ) ଆନ ଜନେ ( ଆନ୍ୟ ଜଣେ ) କହେ ( କହିଲ ) । ହେ ବୀର ! ( ହେ ବୀରବର ମହାରାଜ ) ଇନ୍ଦ୍ରାରି ହତ ଦେଖି ( ସାନସନ୍ଥ ଇନ୍ଦ୍ରଜିତଙ୍କୁ ମାରିବାର ଦେଖି ) କଙ୍କାଦ୍ୱ ( କଙ୍କ ପ୍ରଭୃତି ) ବୀର ସାତ ( ସାତବୀରଙ୍କୁ ) ୧ ଶାତ ( ଦୁର୍ବଳ କରିବାରୁ ) ବଡ଼ଯତ୍ନ ( ଶ୍ରମ ) ବଧି ( ତାଙ୍କୁ ମାରିଲ ) । "ଏହିକ୍ତ ଶୁଣି ରାବଣ" ବକ୍ଷସ୍ଥ ( ବକ୍ଷସ୍ଥଳରେ ଥିବା ) ମଣି ( ଅମୋଘ ମଣି ) ଆଣି "ଗୃଦ୍ଧ୍ରିବାମାନେ" ଆଣୀ

---

୪—ସନ୍ଥାରଃ ସର୍ବମୂର୍ତ୍ତିକ୍ଷ୍ମ ସ୍ତ୍ରିୟ ଇତି କାଶ୍ରଶେଷଃ ।

୧—ଦୁର୍ବଳେ ନନ୍ଦତେ ସ୍ୟାତ୍ ଶିତ ଶାତ ବପିନ୍ଦିଷ୍ଟ ଇତି ରଭସଃ ।
ଶାତୋଦଶ ଯୁବଦ୍ଧୈଶାଂ ଷଣ୍ମୁଷ୍ଟେବାଽଭୂଦତି ମାଘେ ।

ବୋଲେ ଏହା ଦେବର ଦେବରାଜନପର ପରମ କ୍ଷତ୍ରିୟ
ନବାରି । ବିକୋଷିଲା କୃପାଣ ସତ କୃପାବର୍ଜ୍ଜନ ମାରିବ ଜନକକୁମାରୀ
ସେ । ବୋଧଇ ସେ । ବାକ୍ୟେ ନିକଟା ରୋଷ ତେଜ । ବୋଧ ଈଶେ ।
ବନ୍ଦନେ ଚତୁର୍ଦ୍ଦଶୀ ଆଜ । ବିନାଦୋଷୀ ସଂହରି ଅଯଶେ ହେବୁ
ଧାରି ସର୍ପ ପ୍ରାୟେ ଅସୁରରାଜ ଯେ । ୨୪ ।
ବିବେକ ତା ପ୍ରସରି ତାମସୀଭାବ ସରି ତାମସୀ-ଭ୍ରାନ୍ତ ଯାଏ ସରି ।
ବିଧିରେ ମନାଇବା ରାମଚନ୍ଦ୍ର ନାଶିବା ଶିବାଳୟରେ ପୂଜା ସାରି ସେ ।

---

( ମେଣ୍ଢ ହେବା ବୟସ୍କ ) କିନ୍ତୁ ନ ମଣି ( ଚିନ୍ତା ନ କରି ) ରାମ ରମଣୀ ( ସୀତା ) କଡ଼ ( ପାଖକୁ ) ଗଲା । ୨୩ ।

୨୪ଶ ପଦ—ବୋଲେ ( ଯାଇ କହିଲା ) ଏହା ( ଏହାର ) ଦେବର ( ଦିଅର ) ପରମ କ୍ଷତ୍ରିୟ ( ମହାବୀର ) ଦେବରାଜନ ପର ( ଇନ୍ଦ୍ରାରିକି ) ନବାରି ( ମାରିଲା ) "ମୁଁ ଏ" ଜନକ କୁମାରୀ ( ସୀତାକୁ ) ମାରିବି "ଏହା କହି" କୃପାବର୍ଜ୍ଜନ ( ନିର୍ଦ୍ଦୟ ହୋଇ ) କୃପାଣ ( ଖଣ୍ଡା ) ବିକୋଷିଲା ( ଖାପରୁ ବାହାର କଲା ) । ନିକଟା ସତ୍ୟ "ମଣି" ବାକ୍ୟେ (କଥାରେ) ବୋଧଇ ( ବୋଧହୁଏ ) । ରୋଷ ତେଜ ( କ୍ରୋଧ ଗୁଡ଼ ) ଆଜ ଚତୁର୍ଦ୍ଦଶୀ "ତିଥି" ଈଶେ ( ମହାଦେବଙ୍କୁ ) ବନ୍ଦିନେ ( ସ୍ତୁତି ବାକ୍ୟରେ ) ବୋଧ ( ପ୍ରସନ୍ନ କରିଥ ) ତୁମ୍ଭେ ଶାନ୍ତି ହୋଇ ଲକ୍ଷ୍ମଣଙ୍କୁ ମାର । ବିନା ଦୋଷୀ (ନିର୍ଦ୍ଦୋଷୀ) "ଏ ସୀତାକୁ" ସଂହାରି ( ମାରିଲେ ) ଅଯଶେ ( ଅଖ୍ୟାତିରେ ) ଧାରି ହେବୁ, ହେ ୧ ଅସୁରରାଜ ( ହେ ଅସୁରରାଜ ) ସର୍ପପ୍ରାୟେ ( ସର୍ପ ଯେପରି ଅଦୋଷୀ ଦଂଶି ନିନ୍ଦ ପାଏ ସେପରି ନିନ୍ଦା ପାଇ ଅବଶେଷେ ସ୍ତ୍ରୀ ହତ୍ୟା ପାପେ ମଜ୍ଜିବୁ ) । ୨୪ ।

୨୫ଶ ପଦ—"ନିକଟା ଏମନ୍ତ କହିବାରୁ" ତା ( ସେ ରାବଣର ) ବିବେକ ( ସଦ୍‌ଜ୍ଞାନ ) ପ୍ରସରି ( ହେଲା ) "ତେଣୁ ତାହାର" ତାମସୀଭାବ ( କ୍ରୋଧୀ ଭାବ ) ସରି ( ସରିଲା ) । "କ୍ରୋଧ ଶାନ୍ତ ହେଲା ଏହାପରେ" "ନିକଟା କହିବା କଥା ମନରେ ରଖି" ତାମସୀ ଭ୍ରାନ୍ତ ଯାଏ ( ରାତ୍ର ପାହିବା

---

୧ —ଦ୍ବ୍ୟାଟଦୋକ୍ସ୍ତପ ଆଶାର ଇତ୍ୟମର୍ଷ ।

ବାହୁକରେ । ବୋଲାଇ ରଥ ନେଇଁ କରି । ବାହ୍ନି କରେ । ବାନା ଉଡ଼ାଇ ଶସ୍ତ୍ର ଧରି । ବନ୍ଧଣ ପ୍ରସାଦକୁ ଗୁଡ଼ିଲା ପ୍ରାସାଦକୁ ସାଦରେ ଲକ୍ଷ ଶଙ୍ଖ ସ୍ଫୁରି ସେ । ୨୫ ।

ବିମଳ ଆତପତ୍ର ଗୃମର ଧ୍ୱାନ୍ତ ଜାତ ଆଚ୍ଛାଦିତ ଆଦିତ୍ୟକର । ବିଦିତ କରେ ଧୂକ-ଧୂକ ସେ କ୍ଷୀରଧିକ ଲହରୀ ବହରିବା ତାର

---

ପର୍ଯ୍ୟନ୍ତ ) "ମହାଦେବଙ୍କୁ" ସ୍ମରି ( ମନ ମଧ୍ୟରେ ସ୍ମରଣ କରି ) ରାମଚନ୍ଦ୍ର ( ରାମଙ୍କୁ ) ନାଶିବ ( ମାରିବ ବୋଲି ) ମନାସିବା ( ମନାସିଲି ) "ତତ୍ପରେ" ବିଧୀରେ ( ବିଶେଷ ବୁଦ୍ଧିରେ ) କାମ୍ୟ ବିଧିରେ ( ବିଧି ଅନୁସାରେ ) ଶିବା-ଳୟରେ "ଶିବ" ପୂଜା ସାରି ବାହୁକରେ ( ସାରଥିକି ) ବୋଲଇଲା "ରଥ ସଜାଡ଼ି ଆଣ, ସାରଥି ରଥ ନେଇକରି "ଦେଲା" "ରାବଣ" ବାହୁ (ବାହୁରେ) ବାନା "ବାନ୍ଧି" ଉଡ଼ାଇ କରେ ଶସ୍ତ୍ର ଧରି ପ୍ରସାଦକୁ ( ପ୍ରସନ୍ନତାକୁ ) ବନ୍ଧ ବା ଶିବଙ୍କ ପ୍ରସାଦକୁ ( ଗ୍ରହଣ କରି ) ପ୍ରାସାଦକୁ ( ଅଟ୍ଟାଳିକା ରାଜଭବନକୁ ) ଗୁଡ଼ିଲା । ୧ ସାଦରେ ( ନିର୍ଭୟ ବା ଆଦର ସହିତ ହୋଇଥିବା ରାବଣ ଆଗରେ ) ଲକ୍ଷ ( ଏକଲକ୍ଷ ) ଶଙ୍ଖ ସ୍ଫୁରି ( ବାଜିଲା ) । ୨୫ ।

୨୬ଶ ପଦ—ବିମଳ ( ନିର୍ମଳ ) ଶ୍ୱେତାତପତ୍ର ( ଶ୍ୱେତଛତ୍ର ସବୁ ) "କେତେକା ହେବାରେ" ଗୃମର "ସବୁ ପଡ଼ୁଥିବାରେ" ଆଦିତ୍ୟ କର ( ସୂର୍ଯ୍ୟ-କିରଣ ) ଆଚ୍ଛାଦିତ "ହେବାରୁ" ଧ୍ୱାନ୍ତ ( ଅନ୍ଧକାର ) ଜାତ "ହେଲା" ସେ ( ଛତ୍ର ଗୃମର ) ବିଦିତ ( ପ୍ରକାଶ ପାଇବାରେ ) କ୍ଷୀରଧିକ ( କ୍ଷୀର ସମୁଦ୍ରକୁ ) ତାର ବହରିବା ଲହରି ( ସମୁଦ୍ର ଖେଳୁଥିବା ଲହରିକ ) "ଶୋଭାଧିକ୍ୟ ହେଉଁରୁ" ଧୂକ ଧୂକ ( ନିନ୍ଦା ) କରେ "ଶ୍ୱେତଛତ୍ର କ୍ଷୀର ସମୁଦ୍ର ତୁଲ୍ୟ ଗୃମର ପ୍ଳବନ ଲହରି ତୁଲ୍ୟ" । ତାକୁ ( ସେ ରଥକୁ ) ୧ ବିମାନେ ( ବ୍ୟୋମଯାନମାନେ ) ବିଲକ୍ଷିତ ହୋଇବେ ( ଅଲକ୍ଷିତ ହେବେ )

---

୧—ଆଦରେଣ—ନିର୍ଭୟେଣ ସହବର୍ତ୍ତିମାନଃ ସାଦରଃ ତସ୍ମିନ୍ ।

୧—ବ୍ୟୋମଯାନଂ ବିମାନୋଽସ୍ତ୍ରୀତ୍ୟମରଃ ।

ସେ । ବମାନେ ଯେଗ ବଲକ୍ଷିତ ହୋଇବେ ତାକୁ । ବମାନେ ଯେ । ବାନ୍ଧନ୍ତି ଏମନ୍ତ ହୟଙ୍କୁଂ ବଳକ୍ଷ ସବେ ବିନା ଲକ୍ଷଲକ୍ଷ ଗଣନା ଅଲକ୍ଷ କବ ବର୍ଷ୍ଣିବାକୁ ସେ । ୨୬ ।

ବାହିନୀ ଆଗେ ଗୁଣବନ୍ତ ପଞ୍ଚଦ୍ୱିଗୁଣ ଗୁଣବନ୍ତ କର କମାଣ । ବନ୍ଧେ ମହାରବଣ ଆଦ ଯଥା ଶ୍ରାବଣ ଘନ କ ଘନଘନ ବାଣ ସେ । ବଳୀ କ୍ଷତ । ବହନ୍ତେ କପିସୈନ୍ୟ ନାଶି । ବଳୀକ୍ଷତ । ବଶକ ଜଗ-ଜେଠିରିଶି । ବଜୟୁ ଦାଶରଥି ବଜୟୁ ଦଶରଥି ନେଦଲେ ସୁପକ୍ଷୀଣ ପେଶି ସେ । ୨୭ ।

---

୨ ବମାନେ ( ବଶେଷ ଚଅର ସମୁନ୍ନତ ଦ୍ୱାର ) ଏମନ୍ତ ହୟଙ୍କୁଂ ( ଘୋଡା-ମାନଙ୍କୁ ) ବାନ୍ଧନ୍ତି ( ଯୋଚନ୍ତି ) ଯେ ଯେ ହବେ ( ସେ ସବୁ ) ୩ ବଳକ୍ଷ ( ଶୁକ୍ଳବର୍ଣ୍ଣ ) ବିନା ଲକ୍ଷ ଲକ୍ଷ "ହୋଇ" ଗଣନା ଦେଉ ନାହାନ୍ତି । କବ ବର୍ଣ୍ଣିବାକୁ ଅଲକ୍ଷ ( ଲକ୍ଷ ନୁହେ ) । "ଅକଳନ ଅଟେ ଏହୁଭାବ" । ୨୬ ।

୨୭ଶ ପଦ—ଗୁଣବନ୍ତ (ଶୌର୍ଯ୍ୟ ଗୁଣବନ୍ତ ) ପଞ୍ଚଦ୍ୱିଗୁଣ ( ଦଶ ) ୧ ବାହିନୀ (ସେନା) ୨ କମାଣ ଧନୁଗୁଣବନ୍ତ କର ( ଧନୁରେ ଗୁଣ ଚଢ଼ାଇ ) "ରବଣ ଆଗରେ ଥିବା" ମହାରବଣ ଆଦ "ଯୋଦ୍ଧାମାନେ" ଘନ ଘନ ( ଅତ ନବଡ଼ରେ ) ବାଣ ବନ୍ଧେ ( ବନ୍ଧଲେ ) "ସେ ବାଣ ବୃଷ୍ଟି" ଶ୍ରାବଣ ଘନ କ (କଅଣ ସେ ଶ୍ରାବଣ ମାସର ବର୍ଷା) ? ଯଥା ( ଯେରୂପ ଶ୍ରାବଣ ମେଘ ବୃଷ୍ଟି କରେ ତଥା ଶରବୃଷ୍ଟି କଲେ )। ବଳୀ ( ମହା ବଳବାନ ବୀରମାନେ) କ୍ଷତ ବହନ୍ତେ ( ଆଘାତ କରନ୍ତେ ) କପିସୈନ୍ୟ ( ବାନର ଆଦ ) ନାଶି ( ମଲେ ) ଜଗଜେଠିରିଶି ( ପ୍ରଧାନ ପ୍ରଧାନ ) "ସେନାପତ ଆଦ ଯେତେ ଥିଲେ" ବଳୀକ୍ଷତ ( ବଳବନ୍ତର ଆଘାତର ) ବଶକ ( ବଶୀଭୂତ ହେଲେ ) । "ବଶେଷ ଘାଉଆ ହେଲେ ଏହୁ ଭାବ" । ବଜୟୁ ( ବଶେଷରେ ଜୟଯୁକ୍ତ )

---

୨—ମାନସ୍ତୁ ଉସମୁନ୍ନତ ଚତ୍ୱାରମରଃ ।

୩—ବଳକ୍ଷୋଧବଳୋଽର୍ଜୁନଃ ରତ୍ୟପି ।

୧—ବାହିନୀ ସ୍ୟାତ୍‌ରଙ୍ଗିଣୀଂ ସେନାସୈନ୍ୟଦ୍ରୂଭେଦୟୋ ଶତବଶ୍ୱଃ ।

୨—ହ୍ରୁନ୍ଦଭାଷା ।

ବଶୀ ଯେ ସୁମନସେ ସୁମର ସୁମନସେ ଛିଡ଼ିଲା ନ ଛିଡ଼ିଲା ମୁଣ୍ଡ । ବାହ ସେହ୍ନ ପ୍ରଶଂତ ବାହକେ ନ ଜାଣନ୍ତି ଭୂମଣ୍ଡଳେ ମସ୍ତକ ଲୁଣ୍ଠି ସେ । ବାତ କ ସେ । ବେପଥୁ ତନୁକୁ ବୁହାଇଁ । ବାତ କ ସେ । ବପତନ ତାଳ କରାଇଁ । ବୋଇଲେ ସୁରେ ସୂତେ ଘଣ୍ଟ କୁଲାଳସୂତ୍ର ଘାର୍ଘସୂତ୍ରେ ହନନ ହୋଇ ସେ । ୨୮ ।

---

ଦାଶରଥି ( ଶ୍ରୀମ ) ସୁପକ୍ଷୀଣ ( ଉତ୍ତମ ଶର ) ଯେତି ବଳସ୍ୱ ( ଅନେକ ) ଦଶରଥ ( ଦର୍ଶଂସଂଖ୍ୟକ ରଥିଙ୍କୁ ) ଛେଦିଲେ । ୨୭ ।

୨୮ଶ ପଦ—"ଶ୍ରୀମଙ୍କ ବାଣରେ ଦଶରଥିଙ୍କର" ମୁଣ୍ଡ ଛିଡ଼ିଲା କି ନ ଛିଡ଼ିଲା "ଏମନ୍ତ" ସୁମନସେ ( ଦେବତାମାନେ ) ସୁମନସେ ( ଉତ୍ତମ ମନରେ ) ସୁମର ( ବାସ୍ତବ ) ବଶୀ ହେଲେ ( ମୁଣ୍ଡ ଛିଡ଼ିଥିଲେ ତଳେ ପଡ଼ିଥାନ୍ତା ନ ପଡ଼ିବାରୁ ସନ୍ଦେହ କଲେ ) । ବାହ ( ରଥର ଘୋଡ଼ାମାନଙ୍କର ) ସେହ୍ନ ପ୍ରଶଂତ ( ରଥିଙ୍କ ପ୍ରାୟ ମୁଣ୍ଡ ଛିଡ଼ି ନ ପଡ଼ିଲା ) । "ଏହା" ବାହକେ ( ସାରଥିମାନେ ) ନ ଜାଣନ୍ତି । "ଯେ ସମୟେ ତଳକୁ ଦୃଷ୍ଟି ଦଅନ୍ତେ ଦେଖିଲେ" ଭୂମଣ୍ଡଳେ ( ଭୂମିରେ ) "ରଥି ଓ ଘୋଡ଼ାଙ୍କର" ମସ୍ତକ ଲୁଣ୍ଠି "ହୋଇ ପଡ଼ନ୍ତି" । "ଶ୍ରୀମଙ୍କ ଶର ବେଗର ଏରୂପ ପ୍ରଭାବ ଏହାଭାବ" । "ରଥି ଓ ଅଶ୍ୱଙ୍କ ତନୁ ଥରିବା ଦେଖି ଦେବତାମାନେ ଏମନ୍ତ ଉତ୍ପ୍ରେକ୍ଷା କଲେ"—ସେ ( ଶ୍ରୀମଙ୍କ ଶର ) ବାତ କି ? ( ବାତି ରୋଗ କଅଣ ) "ତେଣୁ" ତନୁ ( ଶରୀରରେ ) ବେପଥୁ ( କମ୍ପ ) ବୁହାଇଲା ( ଜନ୍ମାଇଲା ) । "ମୁଣ୍ଡ ସବୁ ତଳେ ପଡ଼ିବା ଦେଖି ପୁଣି ଏମନ୍ତ ଉତ୍ପ୍ରେକ୍ଷା କଲେ" ଯେ ( ଶର ) ବାତ କି ? ( ପବନ କି ) "ଏଣୁ" ତାଳ ( ତାଳ ଫଳ ତୁଲ୍ୟ ମୁଣ୍ଡମାନଙ୍କୁ ) ବପତନ କରାଇଲା ( ପକାଇ ଦେଲା ) ? "କନ୍ଧରୁ ମୁଣ୍ଡ ବେଗରେ ତଳେ ନ ଖସିବାରୁ ଦୃଷ୍ଟାନ୍ତରେ" ସୁରେ ( ଦେବତାମାନେ ) "ଏମନ୍ତ ବୋଇଲେ" କୁଲାଳ ( କୁମ୍ଭାର ) ସୂତେ ( ସୂତାରେ ) ସୂତେ ( ସୂତ୍ରକର ) "କାଟେ" ସେ ଘଣ୍ଟ ( ଭ୍ରାନ୍ତି ପ୍ରଭୃତି ) "ଯେରୂପ" ଘାର୍ଘସୂତ୍ରେ ( ବିଳମ୍ବରେ ) ହନନ ହୋଇ ( ନାଶ ଯାଇ ) "ତଦ୍ରୂପ ବିଳମ୍ବରେ ଛିଡ଼ି ପଡ଼ିଲା ଏହାଭାବ" । ୨୮ ।

ବିଂଶାକ୍ଷ ସାକ୍ଷିପତ୍ର ସାକ୍ଷାତରେ ଦେଖିଲା ଶାଖାମୃଗପତି ସଙ୍ଗତେ । ବିରୂପାକ୍ଷ-ବୀରୁ ତ ବିବ୍ରତ କରି ଋତ ଯୁଦ୍ଧରେ ଅସ୍ୱେକ୍ଷ କରନ୍ତେ ସେ । ବାରଣେଶେ । ବିସର୍ଜି ଗର୍ଜନ ଆସିଲା । ବାରଣେ ସେ । ବିକ୍ରମି କରି ଆକର୍ଷିଲା । ବିଧାନ୍ବରେ କଳପାଟି ଦଶନକୁ ଉପ୍ପାଟି ଦୈତ୍ୟ ପରିପାଟି ନାଶିଲା ସେ । ୨୯ ।

ବୃକ୍ଷରାଜ-ବୃକ୍ଷକୁ ପ୍ରହାରି ସେ ରକ୍ଷକୁ ନିରକ୍ଷ ପ୍ରାପ୍ତ କଲା ହତ । ବଢ଼ାଇଣ ଉନ୍ନତ ଗ୍ରୀବେ ଧାଡେ ଉନ୍ମତ୍ତ ସମୁଦ୍ଯୋତ ଗଦୋଦ୍ୟତ ହତ

୨୯ଶ ପଦ—ବିଂଶାକ୍ଷ ( ରାବଣ ) ସାକ୍ଷପତ୍ର ( ସାକ୍ଷୀ ଲୋକପତ୍ର ) ସାକ୍ଷାତରେ ( ପ୍ରତ୍ୟକ୍ଷରେ ) ଦେଖିଲା । ଶାଖା ମୃଗପତି ( ସୁଗ୍ରୀବ ) ସଙ୍ଗତେ ୧ ତ ( ପ୍ରଶଂସ୍ୟ ) ବିରୂପାକ୍ଷ ( ବିରୂପାକ୍ଷନାମା ରାବଣ ପୁତ୍ର ) ବୀରୁ ( ବୀର-ହେବାରୁ ) ବିବ୍ରତ କରି ( ବୀର ତାକ ଦେଇ ) ୨ ଋତ ( ସତ୍ୟ ) ଯୁଦ୍ଧରେ ଅସ୍ୱେକ୍ଷ କରନ୍ତେ ( ଏକକାଣ୍ଡ ସୁଗ୍ରୀବକୁ ମାରନ୍ତେ ) "ସେହି ସମୟରେ" ବାରଣେଶେ ( ତାହାର ଗଜେନ୍ଦ୍ର ) ଗର୍ଜନ ବିସର୍ଜି ( ଛାଡ଼ି ) ଆସିଲା । "ତା ଦେଖି" ସେ ( ସୁଗ୍ରୀବ ) ବାରଣେ ( ନିବାରଣ କରିବାପାଇଁ ) ବିକ୍ରମି ( ଡେଇଁଯାଇ ) କରି ( ସେହି ଗଜେନ୍ଦ୍ରର ଥୋର ପଦ୍ମହସ୍ତକୁ ) ଆକର୍ଷିଲା ( ଓଟାରିଲା ) । ବିଧାନ୍ବରେ ( ବିଧାଗୋଟି ପ୍ରହାରିବାରେ ) "ତାହାର" କଳ ( କଳପଟି ) ଫାଟି ( ଫାଟିଲା ), ଦଶନକୁ ( ତାର ଦନ୍ତକୁ ) ଉପ୍ପାଟି ( ଉପାଡ଼ିଲା ), ଦୈତ୍ୟ ( ବିରୂପାକ୍ଷର ) ୩ ପରିପାଟୀ ( ଅନୁକ୍ରମ--ଆକ୍ରମଣକୁ ) ନାଶିଲା । ୨୯ ।

୩୦ଶ ପଦ—"ସୁଗ୍ରୀବ" * ବୃକ୍ଷରାଜ ( ଅଶ୍ୱତ୍ଥ ) ବୃକ୍ଷକୁ ପ୍ରହାରି ସେ ରକ୍ଷକୁ ( ବିରୂପାକ୍ଷକୁ ) ନିରକ୍ଷ "ଜନ" ପ୍ରାପ୍ତ ହତ କଲା । ଗ୍ରୀବା

୧—ତଃ ସ୍ୟାତ୍ ପ୍ରଶ୍ନେ ବିତର୍କେ ଚ ଚକୁସ୍ତି ତଂ ପ୍ରଶଂସ୍ୟେଽରିତମେଦନି ।
୨—ସତ୍ୟଂ ତଥ୍ୟ ମୃତମିତ୍ୟମରଃ ।
୩—ପରିପାଟୀରନୁକ୍ରମ ଇତ୍ୟମରଃ ।
*—ବୃକ୍ଷରାଜବୃକ୍ଷ ବୃକ୍ଷଶବ୍ଦରେ ଦ୍ୱିରୁକ୍ତିଦୋଷ ନ ହେଲା ।
କରି କଳଭ ପ୍ରାପ୍ତହେଲା ।

ସେ । ରାମଚନ୍ଦ୍ର । ବାଣ ତା ହୃଦରେ ଥୋଇଲା । ରାମଚନ୍ଦ୍ର । ବଡ଼
ଏ କେତେ ଭ୍ରାତ ମାଇଲା । ବଳା ମମତ ମନ୍ତ୍ର ବୋଲି ରାବଣ ମତ୍ତଗଜ
ରଥେ ତା ଯୋଡ଼ିଥିଲା ସେ ॥ ୩୦ ॥

ବ୍ୟଗ୍ରବନ୍ତ ରୈବତ ପର୍ବତବତ ସେତ ସୁଗ୍ରୀବ ଧରୁଁ ଉଲଟାଇ ।
ବେତାଳ ଭୈରବ ପରାଏ ଭୈରବ ରବ ଖଡ଼୍ଗ ଫଣୀ ବନ୍ଧି ସେ ।

---

( ତା ଦେଖି ) ହନୁଅ ( ପବନ ପୁତ୍ର ) "ସୁଗ୍ରୀବଙ୍କୁ ମାରିବା ପାଇଁ" ଉନ୍ନତ ( ଗର୍ବ ) ବଢ଼ାଇଣ ( ପ୍ରକାଶ କରି ) ଧାମେ ( ଧାଁ ଅନ୍ତେ ) ଭାନୁଦ୍ୟୋତ ( ସୂର୍ଯ୍ୟ କିରଣରେ ) ୧ ଖଦ୍ୟୋତ ବତ ( ଜୁଳୁଜୁଳି ପୋକ ପ୍ରାୟ ) "ସୁଗ୍ରୀବ ଆଗରେ ପଶିଲା" । "ତାଙ୍କୁ ଦେଖି ସୁଗ୍ରୀବ" ରାମପଦେ ( ଗୋଇ-ଠାଏ ) ତା ହୃଦରେ ( ତା ଛାତିରେ ) ମାରି ବାଳ ( ଗାତ ଗୋଇଠାଏ ) ଥୋଇଲା ( କଲା ) । ରାବଣି ତା ରଥେ ( ତାହାର ରଥରେ ) ମତ୍ତଗଜ ଯୋଡ଼ିଥିଲା ! "ତା ଦେଖି" ମନ୍ତ୍ର "ନାମଜ ପୁତ୍ରଙ୍କୁ" ବୋଲି ( କହିଲା ) ରାମପଦେ ( ଶତ୍ରୁ ପଦରେ ) ଏ ( ସୁଗ୍ରୀବ ) ବଡ଼ ( କଅଣ ବଡ଼ ଶତ୍ରୁ ) "ଜାଣିକି ନା" ? ତୋ ଭ୍ରାତ ( ତୋ ଭାଇ ହନୁଅଙ୍କୁ ) ମାଇଲା । "ଏଣୁ ତୁ" ମମତ ( ଅଭିମତଙ୍କୁ ) ବଳା । ୩୦ ।

୩୧ଶ ପଦ—ସେ ( ସେ ଯେଉଁମାନେ ) ରୈବତ ପର୍ବତବତ ( ରୂପ୍ୟ ପର୍ବତ ପ୍ରାୟ ) ତ ( ଅଟେ ) । "ତେଣୁ" ବ୍ୟଗ୍ରବନ୍ତ ( ଅତି ବେଗରେ ) "ସୁଗ୍ରୀବ ନିକଟକୁ ଯାନ୍ତେ" ସୁଗ୍ରୀବ "ତାଙ୍କୁ" ଧରୁଁ ( ଧରନ୍ତେ ) "ସେ ମନ୍ତ୍ର ସୁଗ୍ରୀବଙ୍କୁ" ଉଲଟାଇ "ମାଡ଼ି ବସିଲେ" "ସେତେବେଳେ ସେ ଦୁହେଁ" ବେତାଳ ଭୈରବ ପରାଏ ଭୈରବ ରବ ( ଭୟଙ୍କର ଡାକ ) "ଦେଲେ" । ସେ "ପୁଣି" ଖଡ଼୍ଗଫଣୀ ( ଖଣ୍ଡା ) ବନ୍ଧି ( ଧରି ) ଚାହିଁ ( ମାରି ) ୧ ଯକେ

---

୧—ଖଦ୍ୟୋତୋ ଜ୍ୟୋତିରିଙ୍ଗଣ ଇତ୍ୟମରଃ ।

୧—ଯକେ ଏଠାରେ ଅର୍ଥଯୁକ୍ତ ନ ଥିବାରୁ ଦେଲା ନାହିଁ ସ୍ଥଳରେ ଯକେ ହୋଇଲା ଏ ଦୋଷ ନୋହେ ଯଥା ସଙ୍ଗୀତ ଶାସ୍ତ୍ରେ—

ପୌନରୁକ୍ତ୍ୟଂ ନ ଦୁଷ୍ଟାର୍ଥ୍ୟଂ ଗୀତେ ଦୋଷୋଽଭିଜାୟତେ ।
ଶୀଘ୍ରୋଚ୍ଚାରେ ଚ ବର୍ଣ୍ଣାନଂ ତଥୈବ ଦ୍ରୁତାଲଣେ ।
ଲଙ୍ଘାନ୍ୟତ୍ର ବସନ୍ତୀତ ସଂଯୁକ୍ତାକ୍ଷର ମୋକ୍ଷଣେ ।
ଅସଂଯୁକ୍ତେଽପିସଂଯୋଗେ ହ୍ରସ୍ୱାର୍ଦ୍ଧ ବ୍ୟଞ୍ଜନେ ।
ଭବନ୍ତ୍ୟେତେ ଚ ଦୋଷାସ୍ତୁ ସଂସ୍କୃତେ ପ୍ରାକୃତେ ତୁ ନ ।

ବାଂଧବକ । ବଗ୍ରର ହାଣିମାର ପାଇଁ । ବାଦ୍ୟବକ । ବେଳ ପାଶେ ବାଦ୍ୟ ବଜାଇଁ । ବୋଲିବୋଲି ସମ୍ଭାଳ ସମ୍ଭାଳରେ ନ ଭଜ ଆଜ, ଆସ୍ପୃଷ ତୋର ନାହିଁ ସେ । ୩୧ ।

ବସୁଧାରେ ଚରଣ କପିବ୍ରଣ ମାରଣ ଘଣ୍ଟିରଣ ରଣରେ ଭଳେ । ବଳ ଆଡ଼ଣୀ ଆଡ଼ ଆଡ଼ମ୍ବରେ ନବାଡ଼ ଘାତ ରକ୍ଷଗଳେ ଗଳେ ସେ । ବକର୍ତ୍ତନ । ବଭବ ବାଳୀସମ ରୁଚି । ବକର୍ତ୍ତନ ।

---

( ଟୀକା ) ବଗ୍ରର "ଅଳଣାରେ ସୁଗ୍ରୀବଙ୍କୁ" ହାଣିମାରପାଇଁ ( ହାଣିମା-ନମନ୍ତେ ), "ଗଲ" । ବାଦ୍ୟବକ ( ଚତୁର୍ବିଧ ବାଦ୍ୟକାର ) ବେଳ ( ଦୁଇ-ଜଣଙ୍କ ) ପାଶେ ( ପାଖରେ ) ବାଦ୍ୟ ବଜାଇ ( ବଜାଉଛନ୍ତି ) । "ସେ ଦୁହେଁ ଏମନ୍ତ" ବୋଲି ବୋଲି "କହୁଅନ୍ତି" । ରେ ସମ୍ଭାଳ ସମ୍ଭାଳ ଆଜ ଅସ୍ପୃଷ ତୋର ନାହିଁ ନଭଜ ( ମରିବାକୁ ଚିନ୍ତା ନ କର ) । ୩୧ ।

୩୨ଶ ପଦ—ବସୁଧାରେ ( ଭୂମିରେ ) ଚରଣ "ଦେଇ" କପିବ୍ରଣ ( ସୁଗ୍ରୀବ ) ମାରଣ ( ମାରନ୍ତେ ), ୧ ଘଣ୍ଟି ୨ ରଣ ( ଘାଗୁଡ଼ିଯୁକ୍ତ ଫଳ ଧର-ଥିବା ) "ମଣ୍ଡ" ରଣରେ ( ଯୁଦ୍ଧରେ ) ଭଳେ ( ଭଲ ) ଆଡ଼ଣୀ ଆଡ଼ ଅଡ଼ମ୍ବର ବଳ ( ମତ୍ତର ଅର୍ଦ୍ଧନୈର ଅଡ଼ମ୍ବରକୁ ବଳକର ) "ସୁଗ୍ରୀବର" ନବାଡ଼ ଘାତ ( ନବଡ଼ ପ୍ରହାର ) ରକ୍ଷଗଳେ ( ଅସୁର ଗଳାରେ ) ଗଳେ ( ଗଳଗଲ ) । ରାବଣ "ଦେଖି" ପାଞ୍ଚ ( ବିସ୍ମୟଲା ) । ବପକ୍ଷରେ ବକର୍ତ୍ତନ ( ଶତ୍ରୁମାନଙ୍କ ଛେଦନ କରିବାରେ ) ବକର୍ତ୍ତନ ବଭବ ( ସୂର୍ଯ୍ୟପୁତ୍ର ସୁଗ୍ରୀବର )

---

୧—କିଙ୍କିଣି କ୍ଷୁଦ୍ରଘଣ୍ଟିକା ଇତ୍ୟମରଃ ।
୨—ରଡ଼ୟୋ ରଲୟୋରୈକ୍ୟଦ୍ଧାତ୍ ତଦୁକ୍ତମଲଂକାର ଶେଖରେ—
ରଲୟୋର୍ଡ଼ରୟୋଶ୍ଚୈବ ବ୍ବୟୋଃଶସୟୋସ୍ତଥା ।
ବଦନ୍ତ୍ୟେଷାଂ ଚ ସାବର୍ଣ୍ଣ୍ୟ ମଲଂକାରବିଦୋଜନାଃ । ଇତି ।

ବିପକ୍ଷରେ ରାବଣ ପାଞ୍ଚ । ବତିଶପଦ୍ୱେ ଛାନ୍ଦ କୋବିଦଙ୍କ ସମ୍ପଦ ଉପେନ୍ଦ୍ର ଭଞ୍ଜ ବିରଚି ସେ । ୩୨ ।

—:*:—

## ସପ୍ତଚତ୍ୱାରିଂଶ ଛାନ୍ଦ

ରାଗ—ପଞ୍ଚମବରାଡ଼ୀ

ଗୋପଜୀବନ ଚଉତିଶା ବାଣୀରେ

ବିଳାସ ଅକ୍ଷରେ ସେହି ଚତୁର ପାଳରେ ଶୋହି କଟସାର ସାରରେ ମାରଣ । ବଳିପାତ ଯୋଗ ପୁନ ଦଶପ୍ରମୁଖରେ ଦାନ କାଠି-

ରୂଢ ( ଧାଡ଼ି ) ବାଳସନ ବାଳତୁଲ୍ୟ ) ଅଟେ । କୋବିଦଙ୍କ ସମ୍ପଦ ( ପଣ୍ଡିତଙ୍କ ସମ୍ପତ୍ତି ) ଏ ଛାନ୍ଦ ବତିଶ ପଦେ ଉପେନ୍ଦ୍ର ଭଞ୍ଜ ବିରଚିତ ( ଏହି ଷଟ୍ଚତ୍ୱାରିଂଶ ଛାନ୍ଦକୁ ବତିଶ ପଦରେ ଉପେନ୍ଦ୍ରଭଞ୍ଜ କବି ରଚିଲେ ) । ୩୨ ।

—:*:—

ସପ୍ତଚତ୍ୱାରିଂଶ ଛାନ୍ଦ

୧ମ ପଦ—ସେ ( ପ୍ରସିଦ୍ଧଭୂମି ) ହି ( ନିଶ୍ଚୟ ) ଅକ୍ଷରେ ( ପଶା-ଖେଳରେ ) ବିଳାସ ( ପ୍ରକାଶପାଏ ) । "ବିଳାସ ଶବ୍ଦର ଲା ଚ୍ୟୁତ କରି କୀଦୃଶ ହେଲ" । ଅକ୍ଷ ଖେଳରେ ଚତୁର ସ୍ଥିରଗୋଟି ) ପାଳରେ ଶୋହି ( ଶୋଭାପାଏ ) କଟ "ରେଫର ଚ୍ୟୁତ ହୋଇ ପଦଶ ହେବାରୁ" ପଟ ( ଦାନ ) ପଡ଼ିଲେ ୧ ସାର ସାରରେ ମାରଣ ( ସାରକୁ ସାରରେ ମାରନ୍ତି ) । କିମ୍ବା ପଟସାର ( ବଡ଼ଦାନ ) "ପଡ଼ିଲେ" ସାନ୍‌ମାରଣ ( ସାର ମାରନ୍ତି ) । ପୁନ ( ତହିଁରେ ପୁଣି ) ବଳି "ନାମକ ଦାନ" ପାତ ("ପଡ଼ିଲେ ) ଯୋଗ ( ଯୁଗ ବାନ୍ଧନ୍ତି ) । ଦଶ ପ୍ରମୁଖରେ ( ଦଶ ଦାନକୁ ଆଦିକରି ) ଦାନ "ଥିବା" କାଠି ( ପଶାକାଠି ) ପଡ଼େ ( ପକାଇବା ) ଅନୁକ୍ଷଣ ( ସର୍ବଦା ),

୧—ସାରସ୍ତୁ ଶକଳେ ବାଚ୍ୟ ଲିଙ୍ଗଃ ପୁଂସି ସମୀରଣେ । ଅକ୍ଷୋପକରଣେ ଇତି ମେଦିନୀ ।

ଦେଇନ ହିଁ ଅନୁକ୍ଷଣ ଯେ । ବିଶାରଦ । ବେଢ଼ି ଲୋକେ ମାର ମାର ସ୍ୱନେ । ବଳୀ ନାହିଁ ବଡ଼ ରଙ୍ଗେ ଖେଳ ସଭଙ୍ଗ ଅଭଙ୍ଗ ଦତ୍ତ, ଚ୍ୟୁତାକ୍ଷରେ ଅତିଘନେ ଯେ ।୧।

ବିଦ୍ୟ ସିନ୍ଧୁ ପରଂପରେ ଲବଣ ଯେ ଇକ୍ଷୁ ସୁରା ଘୃତ ଦଧି ଦୁଗ୍ଧ ପୟ ଯାତ । ବଳିଷ୍ଠ ବିଧିରେ ଜଳଦ ଅଧିକ ଭକ୍ତ ସମୁଦ୍ର

ହେଉଥାଇ, ହ ( ନଷ୍ଟସ୍ୱ ), ବିଶାରଦ ( ଚତୁର ) ଲୋକେ ବେଢ଼ି ମାର ମାର ସ୍ୱନ ( ଡାକ ଦେଉଥାନ୍ତି ) । "ଡାକ୍ଦ" ବଳୀ ଖେଳ ରଙ୍ଗେ ବଡ଼ "ଆଡ଼" ନାହିଁ । "ସେହିପରି ଯୁଦ୍ଧ ଭୂମି" ୨ ଚତୁରଙ୍ଗ ପାଲିରେ ( ଚତୁରଙ୍ଗ ବଳରେ ) ଶୋଭି ( ଶୋଭା ପାଉଅଛି ) । ଏ ପଦରେ "ଙ" ଅକ୍ଷର ଦତ୍ତ ହେଲ । ପଠ ( ପକ୍ଷ ) "ଧର" ସାର ହାତେ ମାରଣ ( ସାର ସାର ଲୋକ ମଲେ ) ଅଥବା କଠ ଶବ୍ଦର କଚ୍ୟୁତ କରି ଅବଶିଷ୍ଟ କଲେ ୩ ଅଠ ( ଅଷ୍ଟ ) ସାର ସାର ( ବଡ଼ ବଡ଼ ବୀର ) ମାରଣ ( ମଲେ ) । ପୁନ ( ପୁଣି ) ବନପାତ ଯୋଗ ( ବଶେଷରେ ନିପାତ ଯୋଗ ) ହେଲା । "ବନପାତ ଶବ୍ଦର ଚ୍ୟୁତ ହୋଇ ନବଦ ହେଲ" । ଅନୁକ୍ଷଣ ( ସର୍ବଦା ) ଦଶ ମୁଖରେ ( ରାବଣ ଦ୍ୱାରା ) ଦାନ ( ଛେଦନ ) ହୁଅନ୍ତେ କାଠ "ସଂଖ୍ୟକ ସୈନ୍ୟ" ପତନ (ପଡ଼ୁ ଅଛନ୍ତି) । "ଦଶପ୍ରମୁଖ ଶବ୍ଦର ପ୍ରଚ୍ୟୁତ ନହେଲ" । ବିଶାରଦ ( ଯୁଦ୍ଧ ପ୍ରବୀଣ ) ଲୋକେ ମାର ମାର ସ୍ୱନେ ( ଶବ୍ଦ ) ବେଢ଼ି "କଟନ୍ତି" । ଖେଳରଙ୍ଗେ ( ଯୁଦ୍ଧ ଖେଳା ରଙ୍ଗରେ ) ବଡ଼ "ହୋଇ" ବଳୀ ( ବଳିଷ୍ଠ ) "କେହି" ନାହିଁ । "ବଳିଷ୍ଠଲୋକ ଯେତେ ଥିଲେ ସେ ସବୁ ନାଶ ଗଲେ" । "ଏ ପଦ" ଦତ୍ତ ଚ୍ୟୁତାକ୍ଷରେ ସଭଙ୍ଗ ଅଭଙ୍ଗ ( ଦତ୍ତ ଚ୍ୟୁତାକ୍ଷର ଓ ସଭଙ୍ଗ ଅଭଙ୍ଗ ଶ୍ଳେଷ ଅଳଂକାରରେ ) ଅତି ଘନେ ( ଅତି ସୁନ୍ଦର ) 'ହୋଇଅଛି" । ୧ ।

୨ୟ ପଦ—ପରମ୍ପରା "ନିର୍ମିତ" ୧ ସିନ୍ଧୁ ଯେ ( ସମୁଦ୍ର ) ସେ ଲବଣ ଇକ୍ଷୁ ସୁରା ଘୃତ ଦଧି ଦୁଗ୍ଧ ପୟ "ଏରୂପେ" ଯାତ ( ସପ୍ତସଂଖ୍ୟକ ) ବିଦ୍ୟ

୨—ହସ୍ତ୍ୟଶ୍ୱରଥପାଦାନ୍ତଂ ସେନାଙ୍ଗଂସ୍ୟାଚ୍ଚତୁଷ୍ଟୟମିତ୍ୟମରଃ ।

୩—ଅଠ" ଭକ୍ତେ ଚ ଶୁଷ୍କେନା ଷୌନ୍ମେଂଜ ଓର୍ଥ ଗୃହୀତ୍ରେ ଇତ କୃମୁଦାକରଃ ।

୧—ଲବଣେ କ୍ଷୁସୁରାସର୍ପିଦଧି ଦୁଗ୍ଧ ଜଳଂ ସମାବ୍ଦଭ୍ୟମରଃ ।

ତହିଁ ଏଥିମଧ୍ୟେ ଦ୍ୱୀପ ସ୍ଥିତ ଯେ । ବିଶାରଦ । ବଦିତ ଗ୍ରାମ ଲକ୍ଷଣ
ତଥା । ବିଲକ୍ଷିତ ମାର୍ଗ ଖରେ ନିବଡ଼ ହୋଇ ଊମିରେ ତରଣି
ବୁଡ଼ିବା ନୋହେ ବୃଥା ସେ ୨ ।

ବେଷ୍ଟନେ ଘୋଟିଲେ ଯୂଥପତି ସେନା ଦଶରଥସୁତ ଘନାଘନ
ଶୋଭା ଧରେ । ବରଷି ଘନ ପ୍ରସ୍ତର ଧରଣୀ କଲେ ପ୍ରସ୍ତାର

( ବର୍ତ୍ତମାନ ହୋଇଅଛି ) । "ଏବେ" ନକାଣ୍ଡ ବିଷୟରେ ( କଳିବନ୍ତ ଲଙ୍କାର
ମୁଦ୍ଧ ବିଧାନରେ ) ଅଧିକ ( ଆଉ ଗୋଟିଏ ) ରକ୍ତ ସମୁଦ୍ର ( ରକ୍ତ ସମୁଦ୍ର )
ଉଦେ "ହୋଇଲା" । ତହିଁ ( ସେ ସାତସମୁଦ୍ରରେ ) ଦ୍ୱୀପ ( ଦ୍ୱୀପସବୁ )
ସ୍ଥିତ ( ଥିଲା ) ଏଥିମଧ୍ୟେ ( ଏ ରକ୍ତ ସମୁଦ୍ରରେ ) ଦ୍ୱିପ ( ହସ୍ତିମାନେ )
ସ୍ଥିତ "ହୋଇଅଛନ୍ତି" । "ସେ ସାତ ସମୁଦ୍ରରେ" ଗ୍ରାମ ଲକ୍ଷଣ ( ମୃଗଲାଞ୍ଛନ-
ଚନ୍ଦ୍ର ) ବଦିତ ( ପ୍ରକାଶ ହେବାରେ ) ଯଥା ( ଯେରୂପ ସେ ) ବିଶାରଦ
( ପ୍ରଗଲ୍ଭ ) ତଥା ( ତଦ୍ରୂପ ) "ଏ ରକ୍ତ ସମୁଦ୍ରରେ" ଗ୍ରାମ ଲକ୍ଷଣ ( ଦୁଇ
ଖଣ୍ଡ ) ବଦିତ "ହେବାରେ" ସେ ବିଶାରଦ ( ପ୍ରଗଲ୍ଭ ) "ହୋଇଅଛି"
"ସେହି ସାତ ସମୁଦ୍ରର" ଖରେ (ତଟରେ) ମାର୍ଗ ( ପଥ ) ବିଲକ୍ଷିତ
( ଲକ୍ଷକରା ନୁହେଁ ) ଏଥିରେ ମାର୍ଗ ( ପଥ ) ଖରେ ( ବାଣ୍ଡମାନଙ୍କରେ )
ବିଲକ୍ଷିତ ( ଅଦୃଶ୍ୟ ) "ହୋଇଅଛି" । "ସେ ସାତ ସମୁଦ୍ର" ଊମିରେ
( ଊମି ମଚ୍ଛମାନଙ୍କରେ ) ନିବଡ଼ ( ଘନ ) ହୋଇଥାଏ, "ଏ ରକ୍ତ ସମୁଦ୍ର"
ଊମିରେ ( ଶବ୍ଦକାରରେ ) ନିବଡ଼ ( ସାନ୍ଦ୍ର ) ହୋଇ ଅଛି. "ସାତ ସମୁ-
ଦ୍ରରେ" ତରଣି ( ସୂର୍ଯ୍ୟ ) ବୁଡ଼ିବା "କଥା" ବୃଥା ( ବ୍ୟର୍ଥ ) ନୋହେ,
"ଏଥିରେ ତରଣି ( ସୂର୍ଯ୍ୟ ) ବୁଡ଼ିବା କଥା" ବୃଥା ( ବ୍ୟର୍ଥ ) ନୋହିଲା ।
"ସମୁଦ୍ରରେ ସୂର୍ଯ୍ୟଙ୍କ ଅସ୍ତ ହୁଏ ଯୁଦ୍ଧ କରିବାରେ ସୂର୍ଯ୍ୟାସ୍ତ ହେଲା . ଏହି
ଭାବ" । ଅଥବା ତରଣି ( ନୌକା ) "ସମୁଦ୍ରରେ" ବୁଡ଼ିବା ବ୍ୟର୍ଥ
ନୋହେ ( ବୁଡ଼ିଯାଏ ) ।୨ ।

ଅସ୍ୟ ପଦ— ଯୂଥପତି ( ସେନାପତି ) ସେନା ( ସୈନ୍ୟ ) ଦଶରଥ
ସୁତ ( ରାମ ) "ଏମାନେ" ଘନାଘନ ( ବର୍ଷୁକ ମେଘପ୍ରାୟ ) ଶୋଭା ଧରେ
( ଧାରଣ କଲେ ) । "ଘନାଘନ" ଗୃଣଆବେଡ଼ ଘୋଟି ଘନ ( ଜଳ )

୨—ଦ୍ୱୀପୋଽସ୍ତ୍ରିୟାଂ ମନ୍ତ୍ରୋପଂ ଯଦବାରଣ ସ୍ତଃ ମିତ୍ୟମରଃ ।

ବଜ୍ର ଶରପାତ ନର୍ଗ୍ରେତରେ ଯେ ! ବଂଶବାହ୍ନା । ବହ୍ନ ସ୍ତମ୍ଭୀଭୂତକୁ ଦେଖେରେ । ବିହ୍ନନପକ୍ଷ ହୋଇଲା ଅଚଳପଦବୀ ନେଲା 'ଶଙ୍କାଜାତ' ତା ଚୂଳ ଚୂର୍ଣ୍ଣରେ ସେ । ୩ ।

ବିଭୀଷଣ ଯେ ପ୍ରବେଶ କର୍ମ କରିବାରେ ଶେଷ ଇଷ୍ଟି-କାମେ ସେ ମାନ୍ତ୍ରିକ ଦ୍ୱିଜ । ବନୌକାବର ଲକ୍ଷ୍ମଣ ଶାଖାକୃତ

ପ୍ରସ୍ତର ( କରକା ) ବଜ୍ରପାତ ନିରନ୍ତରେ ( ସର୍ବଦା ) ବରଷି (ବୃଷ୍ଟି କରି) ଧରଣୀ ବିସ୍ତାରକରେ "ଏମାନେ ରାବଣ ଗୃହପାଖରେ ଦେବତ୍ଵି" ଘନ ( ନିବିଡ଼ ) ପ୍ରସ୍ତର ( ଶିଳା ) ବଜ୍ର "ବୃକ୍ଷ" ଶରପାତ ନିରନ୍ତରେ ବରଷି ( ବର୍ଷି ) ଧରଣୀ ( ଧରଣୀରେ ) ପ୍ରସ୍ତାର ( ବିସ୍ତାର ) କଲେ । "ଏହା-ଦେଖି" ବଂଶବାହ୍ନା ( ରାବଣ ) ଶବ୍ଦରେ ସ୍ତମ୍ଭୀଭୂତକୁ ବହ୍ନ "ଘୋରବର୍ଷା-ଦେଖି ଲୋକେ ସ୍ତମ୍ଭୀଭୂତ ହେଲା ପ୍ରାୟ ହେଲା" । ବିହ୍ନନ ୧ ପକ୍ଷ ( ଡେଣା-ସ୍ୱରୂପ ରାକ୍ଷସମାନେ ମରିବାରୁ ରହିତ ହୋଇ ) ଅଚଳପଦବୀ ନେଲା ( ପର୍ବତପ୍ରାୟ ଚଳି ନ ପାରିଲା ) । "ପୂର୍ବେ ପର୍ବତସବୁ ଇନ୍ଦ୍ରଦ୍ୱାରା ପକ୍ଷ-ହୀନ ହେବାରୁ ଅଚଳ ହୋଇଥିଲେ ରାବଣ ଏମାନଙ୍କ ଦ୍ୱାରା ସୈନ୍ୟରୂପ ଡେଣାହୀନ ହେବାରୁ ଅଚଳହେଲା ଏଣ୍ଣୁଭାବ ।" ପୁଣି ତା ଚୂଳ ( ପର୍ବତର-ଶୃଙ୍ଗ ) ଚୂର୍ଣ୍ଣରେ ( ବଜ୍ରରେ ଚୂର୍ଣ୍ଣ ହୋଇଯାଏ ) "ରାମର ବଜ୍ରଶରରେ ମୋ ଚୂଳ ( ମୋ ମୁଣ୍ଡ ) କାଳେ ଚୂର୍ଣ୍ଣହେବ" ଏମନ୍ତ ଶଙ୍କା ( ଭୟ ) ଜାତ "ହେଲା" । ୩ ।

୪ର୍ଥ ପଦ— ୧ ଇଷ୍ଟି ( ମାତୃଣରୂପ ଯାଗ ) କାମେ ( କାମନାରେ ) ମାନ୍ତ୍ରିକ ( ବେଦମନ୍ତ୍ର ଜାଣିଥିବା ଦ୍ୱିଜରୂପ ମନ୍ତ୍ରଣାକାରୀ ) ଯେ ବିଭୀଷଣ ସେ "ଋଷିପୁତ୍ର ହେତୁରୁ" ଦ୍ୱିଜ (ବିପ୍ର ହୋଇ ) କର୍ମ ( ଯୋଗ କର୍ମରୂପ ରାମ ରାବଣର ଯୁଦ୍ଧକର୍ମ ) ଶେଷ କରିବାରେ ପ୍ରବେଶ ହେଲା । ବନୌକାବର ( ସୁଗ୍ରୀବ ) ଲକ୍ଷ୍ମଣ ଏ ଦୁହେଁ ବନୌକାବର ୨ ଲକ୍ଷ୍ମଣ (ଋଷିବର ଲକ୍ଷଣରୂପ)

୧—ପକ୍ଷଃ ସହାୟ୍ର ଇତ୍ୟପି ।

୧—ଇଷ୍ଟିର୍ଯାଗେଚ୍ଛୟୋ ଶବ୍ଦ୍ୟମରଃ ।

୨—ଲକ୍ଷଣଂ ନାମ ଚହ୍ନୟୋ ସ୍ୟାଲ୍ଲକ୍ଷେ ଲକ୍ଷ୍ମଣଃପୁଂସି ।

ସୌମିତ୍ରୌ ଶ୍ରୀମତି ଚିହ୍ନେ ଇତି ଧରଣିଃ ।

ଘୋଷେ ଗୁଣଶ୍ରୁତିରସେ ପାପ୍ତଅଗ୍ନି ତେଜ ଯେ। ବିରାଜିତ । ବାଣ-ଶରାସନ ସ୍ରୁବ ସ୍ରୁଚ। ବିଗ୍ରହମଣ୍ଡଳ କୁଣ୍ଡ ସ୍ୟନ୍ଦନ • ସମିଧବୃନ୍ଦ ଦଶା-ନନ ପଶୁଦଶା ପାଞ୍ଚ ଯେ। ୪।

ବିଷଣ୍ଣ ଦୂରଦରଶୀ ଅଦ୍ଭୁତ ଖଗ ଗରାସି ସଜୀବେ ପଳ ଖଣ୍ଡନ ଯେହୁ। ବିଭେଦିତ କଉଶିକ ମନ୍ତ୍ରିତ ପତ୍ରୀ ଅନେକ ମହା ବ୍ୟାକୁଳିତ ବଂଶବାହୁ ଯେ। ବିଗ୍ରହିଲ । ବଂଶଘନଖନନ

"ହୋଇ" ଅ ଶାଖା କୃତ ଘୋଷେ ( ବେଦର ଶାଖାକର୍ମ ଘୋଷିଲାପ୍ରାୟ "ରାବଣକୁମାର" ଏରୂପ ସହାୟ କଳବା ଘୋଷଣା କଲେ ) । ପୁଣ ( ପୁଣି ) ଶ୍ରୁତିରସେ ଅଗ୍ନି ତେଜ ପାପ୍ତ ( ବେଦର ଶ୍ରବଣରେ ଅଗ୍ନି ତେଜ ପ୍ରାପ୍ତ ହେଲ ପ୍ରାୟ ଏ ଦୂତଙ୍କ କଥା ଯେ ଶ୍ରବଣରେ ରାମଙ୍କର ଅଗ୍ନି ତୁଲ୍ୟ ତେଜ ପ୍ରାପ୍ତ ହେଲ ) । ବିରାଜିତ ( ଶୋଭିତ ) ବାଣ ଶରାସନ ( ଧନୁଶର ) ସ୍ରୁବ ସ୍ରୁଚ "ହେଲ" । ବିଗ୍ରହମଣ୍ଡଳ ( ଯୁଦ୍ଧଭୂମି ) କୁଣ୍ଡ ( ହୋମକୁଣ୍ଡ ) "ହେଲ" ସ୍ୟନ୍ଦନ ( ରଥସମୂହ ) ସମିଧବୃନ୍ଦ ( ହୋମକାଠରାଜି ) "ହେଲ" । "ଏହାଦେଖି" ଦଶାନନ ( ରାବଣ ) ପାଞ୍ଚ ( ଏମନ୍ତ ପାଞ୍ଚିଲ ) "ମୋହର" ପଶୁଦଶା ହେବ ( ଯଜ୍ଞରେ ପଶୁ ପ୍ରୋକ୍ଷଣ କରି ମାରିବାପ୍ରାୟ ଏ ରଣ ଯଜ୍ଞରେ ମୁଁ ପଶୁ ହେଲି ମୋତେ ମାରିବେ ) । "ଏମନ୍ତ ବିଗ୍ରହ ବିଷଣ୍ଣ ହେଲ" ଏ ଅର୍ଥ ପଞ୍ଚମ ପଦର ଆଦ୍ୟ ମିଶି ହେଲା । ୪ ।

୫ମ ପଦ—୧ ଖଗ ( ରାମଙ୍କ ବାଣ ) ଅଦ୍ଭୁତ ଦୂରଦରଶୀ ଖଗ ( ଆଶ୍ଚର୍ଯ୍ୟ ଗୃଧ୍ରପକ୍ଷୀ ) "ହେଲ" । ସଜୀବେ ( ଜୀବ ସହିତ ) ପଳ ( ମାଂସ ) ଖଣ୍ଡନ ( ଛିଣ୍ଡାଇ ପକାଉଛି ) ଯେହୁ ( ଗୃଧ୍ରପକ୍ଷୀ ) "ନିର୍ଜୀବ ମାଂସ ଛିଣ୍ଡାଇ ପକାଏ ଏ ସଜୀବ ମାଂସ ଛିଣ୍ଡାଇବାରୁ "ଆଶ୍ଚର୍ଯ୍ୟ ହେଲ" । କଉଶିକ ( ବିଶ୍ୱାମିତ୍ରଙ୍କ ମନ୍ତ୍ରରେ ) ମନ୍ତ୍ରିତ ଅନେକ ପତ୍ରୀ ( ବାଣରେ ) ବିଭେଦିତ ( ବିଦାରିତ ) "ହୋଇ" ବଂଶବାହୁ ( ରାବଣ ) ମହା ବ୍ୟାକୁଳିତ ( ଅତି ବ୍ୟାକୁଳମନରେ ) ବିଗ୍ରହିଲ ଖନନ ( ଖଣତା ) ବଂଶ

ଅ—ଶାଖା ସହାୟେ ହେନାରେ ବେଦଭାଗଦ୍ରୁମାଙ୍ଗୟୋ ରଥବଶଃ ।
୧—ବାଣାର୍କବିହଗାଃଖଗା ଇତ୍ୟମରଃ ।

ସମ୍ଭ୍ରମେ । ବଲ୍ଲୀବେଲ୍ଲି ପୂର୍ଣ୍ଣ ଗାଳ ଏବେ ମହାତରୁ ଲେଉ ଦାଢ଼ ଭାଙ୍ଗିବ ମୁଁ ଶକ୍ତ୍ରୀତିଳେ ଯେ । ୫ ।

ବକ୍ତ୍ରଦଶ କଥା କି ସେ ଦଶପାଳେ କି ପ୍ରକାଶେ ଏକତ୍ର ଆଶ୍ରିତ ସୁନାସୀର । ବ୍ରହ୍ମାଣ୍ଡ କୃଶାନୁଭବ କାଳବିଭୂତି ପ୍ରଭବ ଶିବଦେ

---

( କଣ୍ଠର ବୃନ୍ତକୁ ) ସମ୍ଭ୍ରମେ ( ମହାଦରରେ ) ଗଳ ( ନାଙ୍କ କଲପ୍ରାନ୍ତ ) ୨ କଣ୍ଠ ଗଳ ( କଣ୍ଠନ୍ତ ବାଣ୍ଡସିତ ) "ମୋତେ" ସମ୍ଭ୍ରମେ "ନାଶ କରିବ" । "ତୋଅଦ୍ୱାରା ଖଣ୍ଡିତା ଏ ଏହିଭଳିବ" । "ଆଗ" ନେଇବଲ୍ଲୀ ( ଦୂବଗୋଟି-ଲତା ) ତାଡ଼ି ପୂର୍ଣ୍ଣ ଏବେ ମହାତରୁ "ତାଡ଼ିବାକୁ" ଲେଉଟି ( ଲେଉଟିଅଛୁ ) "ଲତାତୁଲ୍ୟ କୁମ୍ଭକର୍ଣ୍ଣ ଇନ୍ଦ୍ରଜିତକୁ ମାରି ମହାତରୁ ତୁଲ୍ୟ ମୋତେ ମାରିବା ଲେଉଟିଛ ଏହିଭଳିବ" । ଏ ଖଣ୍ଡତାରୂପି ବାଣ୍ଡଶର ଦାଢ଼ "ଅଟ-ଗାଢ଼" "ଏହାକୁ" ମୁଁ ଶକ୍ତ୍ରିଗିଳେ ( ଶକ୍ତ୍ରରୂପ ପଥରରେ ) ଭାଙ୍ଗିବି । ଶିଳରେ ଖଣ୍ଡେଦାଢ଼ର ଆଣ୍ଠୁ ଭାଙ୍ଗିଗଲା ପ୍ରାୟ ଶକ୍ତି ମାରି ଏହା ଆଣ୍ଠୁ ଭାଙ୍ଗି ଦେବ ଏହିଭଳିବ" । ୫ ।

୬ଷ୍ଠ ପଦ—"ସେକାଳେ ବକ୍ଷେର ଗାତମନ୍ତ୍ରି ଦେଖି କବି ଉତ୍ପ୍ରେକ୍ଷା କଲେ" ବକ୍ତ୍ରଦଶ ( ରାବଣର ) କି କଥା ସେ ( ଅନର୍ଥକମାନ୍ୟ କଥା ବଚନରେ କହିହେବ ନାହିଁ ) ୧ ଦଶପାଳେ ( ଇନ୍ଦ୍ରାଦି ଦଶଦିଗପାଳ ) ଏକତ୍ର ( ଏକଭାବରେ ) ପ୍ରକାଶେ କି ? ( ରାବଣରୂପରେ ପ୍ରକାଶ ପାଉଛନ୍ତି କି ) ? ୨ ସୁନାସୀର ( ଇନ୍ଦ୍ର ତୁଲ୍ୟ ଉତ୍ତମ ସେନାମାନେ ଯାହାର ) ଆଶ୍ରୟ "ନେଇଅଛନ୍ତି" । ଏହାଦ୍ୱାରା ଇନ୍ଦ୍ର ଆଶ୍ରୟ ନେବାର ସୂଚିତ ହେଲା ବ୍ରହ୍ମାଣ୍ଡ ୩ କୃଶାନୁଭବ ( ବ୍ରହ୍ମାଣ୍ଡ ଭିତରେ ଅଗ୍ନି ତୁଲ୍ୟ ତେଜୋବନ୍ତ ) "ଏହାଦ୍ୱାରା ଅଗ୍ନି ଆଶ୍ରୟ ନେବାର ସୂଚିତ ହେଲା" । ୪ କାଳବିଭୂତି ପ୍ରଭବ

---

୨—ବଂଶଂହନ୍ତୀତି ବଂଶଘ୍ନଃ ଯଥା ସ୍ତମ୍ବଘ୍ନ—ସ୍ତମ୍ବଘନ ଇତ୍ୟମରଃ ।

୧—ଇନ୍ଦ୍ରାଗ୍ନି ଯମନୈରୃତ୍ୟ ବରୁଣା ନିଳଧନାଧିପାଃ ।
ଶଙ୍କରଃ ପଦ୍ମଯୋନଶ୍ଚ ନନ୍ତୋମାଂ ପାତ୍ରୁସର୍ବଦା ଇତି ପୂର୍ବାପଦେତୌ ;

୨—ସୁନାସୀରଃ ଇନ୍ଦ୍ର ଇତ୍ୟମରକୋଷେ ଇନ୍ଦ୍ରପର୍ଯ୍ୟାୟେ ।

୩—କୃଶାନୁରଗ୍ନି ରିତ୍ୟମରକୋଷେ ଅଗ୍ନି ପର୍ଯ୍ୟାୟେ ।

୪—କାଳୋମୃତ୍ୟୌ ମହାକାଳେ ସମୟେ ଯମକୃଷ୍ଣୟୋ ଇତି ମେଦିନୀ ।

ଶର ଅତ୍ୟନ୍ତ ଘୋର ଯେ । ବାରୁଣୀରେ । ବଶୀ ସ୍ପର୍ଶନତ ପୁଣ୍ୟଜନ ।
ବରଙ୍କଶ ପିତାମହ ପୁରୁଷତ ନାଗବୃନ୍ଦ ମଧ୍ୟରେ ପ୍ରଧାନ ହୋଇ
ଧନ୍ୟ ଯେ ॥ ୬ ।

---

( ଯମତୁଲ୍ୟ ଜଳବନ୍ତି ଘୋରମୂର୍ତ୍ତି ) । "ଏହାଦ୍ୱାରା ଯମ ଅଶ୍ରୟ ନେବାର
ସୂଚିତ ହେଲ" । ୪ ଶବଦେ ଶରଂ ଅତ୍ୟନ୍ତ ଘୋର (ଯେ କି ଅତି ଘୋର-
ନାଦ କରି ଶରଦ୍ୱାରା ଶବବାହନ ନୈର୍‌ଋତ ଦେବଙ୍କ ତୁଲ୍ୟ ଶବଦେଶାନ୍ତ ରଁ
ଅର୍ଥ ତ୍ରୁ ଚହ୍ନଟ କରେ )୍ । "ଏହାଦ୍ୱାରା ନୈର୍‌ଋତଦେବ ଆଶ୍ରୟ ନେବାର
ସୂଚିତ ହେଲ" । ୬ ବାରୁଣୀରେ ( ପଶ୍ଚିମ ଦିଗରେ ) ବଶ ( ବଶୀଭୂତ-
ବରୁଣ ପ୍ରାପ୍ତ ) ବାରୁଣୀରେ ( ମଦ୍ୟରେ ) ବଶ "ହୋଇଥ ଏ" । "ଏହାଦ୍ୱାର
ବରୁଣଦେବ ଆଶ୍ରୟ ନେବାର ସୂଚିତ ହେଲ" । ୭ ସ୍ପର୍ଶନତ ( ସ୍ପର୍ଶନ
ବାୟୁତୁଲ୍ୟ, ସ୍ପର୍ଶ ଜନିତ ନତ—ନମ ) । "ଏହାଦ୍ୱାରା ବାୟୁଦେବତା ଆଶ୍ରୟ
ନେବାର ସୂଚିତ ହେଲ" । ୮ ପୁଣ୍ୟ ଜନବର ( କୁବେର ତୁଲ୍ୟ ) ପୁଣ୍ୟ
ଜନବର ( ରାକ୍ଷସ ଶ୍ରେଷ୍ଠ ) । "ଏହାଦ୍ୱାରା କୁବେର ଅଶ୍ରୟ ନେବାର ସୂଚିତ
ହେଲ" । ୯ ଈଶ ( ମହାଦେବଙ୍କ ତୁଲ୍ୟ ) ଈଶ ( ପ୍ରଭୁ ଅଟେ ) । "ଏହା
ଦ୍ୱାରା ଈଶାନ ଦେବତା ଆଶ୍ରୟ ନେବାର ସୂଚିତ ହେଲ" । ୧୦ ପିତାମହ
ପୁରୁଷତ ( ବ୍ରହ୍ମାଙ୍କର ଅଙ୍ଗଜାତ ) "ବ୍ରହ୍ମା ଅଶ୍ରୟ ନେବାର ସୂଚିତ
ହେଲ" । ୧୧ ନାଗବୃନ୍ଦ ମଧ୍ୟରେ ପ୍ରଧାନ ହୋଇ ଧନ୍ୟ ( ନାଗବୃନ୍ଦ ପ୍ରଧାନ
ଅନନ୍ତ ପ୍ରାପ୍ତ ) ନାଗବୃନ୍ଦ ( ଗଜବୃନ୍ଦ ବା କୁଞ୍ଜରସମୂହ ) ମଧ୍ୟରେ ପ୍ରଧାନ
ହୋଇ ଧନ୍ୟ (ପ୍ରଶଂସ୍ୟ ) "ହୋଇଅଛି" । "ଏରୂପେ ଯେଉଁ ରାବଣ
ଦିଗ୍‌ଦିକ୍‌ପାଳଙ୍କ ତୁଲ୍ୟ ତାହାର ଚରିତ୍ର କଥା ଐକ୍ୟଅନସ୍ତୁ ଏହାଭାବ" । ୬ ।

---

୪—ଯମପରିବାରସ୍ତୁ ଶବାରୂଢ଼ସ୍ତୁ ନୈର୍‌ଋତାସ୍ତୁ ଇତି ପୂଜାଯନ୍ତେ ।
୬—ବାରୁଣୀ ଗନ୍ଧଦୂର୍ବାସ୍ତୁଂ ପ୍ରତୀତସୁରଯୋରିତି ଇତି ବଶୂଃ ।
୭—ସ୍ପର୍ଶନଃ ସ୍ପର୍ଶନୋ ବାୟୁର୍ଦ୍ୟୋମଠେ ॥
୮—ଅଥ ପୁଣ୍ୟଜନୋଦେଶେ ରାକ୍ଷସେ ଯକ୍ଷେନେଽପି ଚ ଇତି ମେଦିନୀ ।
୯—ଭବଃ ସର୍ବୋରୁଦ୍ରଃ ଈଶୁପତିରୁଥୋଂଃ ଦ୍ୱମହାଂସ୍ତ୍ରଥାଗ୍ନିମେଶାନାମିତି
ମହ୍ନେନ୍ନେ ଈଶଃ ତ୍ରିଭୁବନ ନୋଦଃ ।
୧୦—ପିତାମହଃ ସୁରଜ୍ୟେଷ୍ଠ ଇତ୍ୟମରେ ।
୧୧—ନାଗଃ ପନ୍ନଗ ମାତଙ୍ଗ କ୍ରୂରବୃତ୍ତେଷୁ ତୋୟଦେ ଇତି ମେଦିନୀ ।
ନାଗୋଽଷ୍ଟେଭଶ୍ଚପଣ୍ଡେଷ୍ଟ ଇତି କୁମୁଦାକରଃ ।

ବୃଲାଇ ଏହି ସମୟୁ ଏକଘମା ଘେନ କାୟୁ ବଢ଼ାଇ ବନ୍ଧ୍ୟ-ଶିଖର ଶିଖେ । ବହ୍ନି ଜଳଲପରିରେ ବୋଲେ ବାଣ୍ଡଶଣେ ମାରେ ଶିଶୁଲକ୍ଷ୍ମଣ ନ ରହ ମୁଖେ ରେ । ବତ୍ସଳ ସେ । ବେଦାରେ ଦାସର୍ଥି ହେଲେ ଆଗ । ବଳେ କର୍ଣ୍ଣ ନାସିକାର କାକୋଦର ପରକାର ଶର-ପୂର୍ଣ୍ଣ କଲେ ବେଗ ବେଗ ଯେ । ୭ ।

ବୈରାଗ୍ୟେ ହୋଇଲା ଘାଣ୍ଡ ଆଗପଛେ ଗତାଗତ ଶକ୍ତି ଜ୍ୟୋତି-ଷ୍ମନ୍ତେ ଆସେ ଘୋଟି । ବନପୋଡ଼ ହୁତାଶନେ ବନାଶନେ ଯଥା ଜନେ

୭ମ ପଦ—ଏହି ସମୟୁ ( ଏକାଳେ ) "ରାବଣ" କାୟୁ ( ଶରୀର ) ବଢ଼ାଇ, ଏକଘମା ( ଏକଘ୍ନୀ ନାମକ ଶକ୍ତି ) ଘେନ ବୂଲାଇ ( ଶବ୍ଦେପର ଭୂମାଇଲା ) । ବନ୍ଧ୍ୟ ଶିଖର ଶିଖେ ( ବନ୍ଧ୍ୟଗିରି ଶିଖରେ ) ବହ୍ନି ଜଳଲ ପରିରେ ( ଅଗ୍ନି ଜଳଲ ପ୍ରାୟ ) "ଶକ୍ତିର ଜ୍ୟୋତି ଦଶିଲା" । ରାବଣ ବୋଲେ ( ବୋଇଲା ) ରେ ଲକ୍ଷ୍ମଣ "ତୁ" ଶିଶୁ ( ବାଳକ ) "ଅତ୍ର, ଏଣୁ" ମୋ ମୁଖେ ( ମୋ ଆଗରେ ) ନରହ ( ଆଡ଼ହୋଇ ଯାଅ ) । ବାଣ୍ଡଣେ ମାରେ ( ଏଥିରେ ମୁଁ ବଣ୍ଡପଣକୁ ମାରେ ) । ଦାସର ବତ୍ସଳ ବେଦାରେ (ଭୃତ୍ୟବତ୍ସଳ ଭାବରେ ) "ବିଭୀଷଣକୁ ପଛକରି ଲକ୍ଷ୍ମଣ" ଆଗ ହେଲେ । "ଶକ୍ତି ମୋ ଉପରେ ପଡ଼ୁ ବିଭୀଷଣ ଉପରେ ନ ପଡ଼ୁ ଏହିଭାବ" । କାକୋଦର ପରକାର (ସର୍ପଙ୍କ ସଦୃଶ) "ରାବଣର" କର୍ଣ୍ଣ ନାସିକାର ବଳେ ( କାନ ନାକ ରନ୍ଧ୍ରକୁ ), ବେଗ ବେଗ ( ଅତି ବେଗରେ ) ଶର ପୂର୍ଣ୍ଣ କଲେ । ୭ ।

୮ମ ପଦ—୧ ବୈରାଗ୍ୟେ ( ଲକ୍ଷ୍ମଣଙ୍କ ବାଣାଘାତରେ ବିରକ୍ତ ହୋଇ ବା ମତ୍ସରଭାବ ବହି ) ଆଗପଛେ ଗତାଗତ ( ପଛକୁ ଯାଇ ପୁଣି ଆଗକୁ ଆସି ) ଶକ୍ତି ୨ ଘାଣ୍ଡ "ହେଲା" ( ଶକ୍ତି ପ୍ରହାରିଲା ) । "ସେ ଶକ୍ତି" ଜ୍ୟୋତିଷ୍ମନ୍ତେ ( ଜ୍ୟୋତି ପ୍ରକାଶକରି ) ଘୋଟି ( ଲକ୍ଷ୍ମଣଙ୍କୁ ଆଚ୍ଛାଦି ) ଆସେ । "ଏମନ୍ତ

୧— ଅସ୍ତ୍ରୀତ୍ରପୁସିବିରଗସ୍ତୁ ମାତ୍ସର୍ଯ୍ୟେ ଲୋହିତାଦିଷୁ କ୍ଲେଶା-ଦାବନୁରାଗେ ଚେତ ମେଦ୍ଧମା ।
୨—ଘାତଃ କର୍ଣ୍ଣପ୍ରହାରସ୍ତ୍ୟା ଶତମେଦ୍ଧମା ।

ବୃଷ୍ଟ ତଥା ସୁଗ୍ରୀବାଦ୍ୟ ପିଠି ଯେ । ଗ୍ରାମବାଧ । ଶରେ ବ୍ୟୋମ ଜଳ
ବରଷନ୍ତି । ବାନ୍ଧିଲେ ଲକ୍ଷ୍ମଣ ଯେତେ ଭୁଜଙ୍ଗଉଦିତେ ଉଦ୍ୟୋତେ
ଶୈଳକନ୍ଦନ ସେ ସେନ୍ଦ୍ରମନ୍ତ୍ର ଯେ । ୮ ।

ବେଳ୍ଲୁଁ ବେଳ ପ୍ରଭାକର ଶକ୍ତିକ ପକ୍ଷିନକର ନଦ୍ଧିତପ୍ରାୟେ ମୂର୍ଚ୍ଛିତ
ଆଖି । ବଳିମୁଖସାରେ ତାହାଁ ଚରମେ ବଦନ ଥୋଇ ଦିବାନ୍ଧ-
ଖଗରେ ହେଲେ ଲକ୍ଷି ସେ । ବିଚେତନ । ବଳୀ ଲକ୍ଷ୍ମଣ ହେଲେ

---

ଦେଖି" ସୁଗ୍ରୀବାଦ୍ୟ ବଜଯୋନ୍ତି ହୃତଶନେ ( ବଜଯୋନ୍ତି ଆସୁଥିବା ଅଗ୍ନିର ) ଜନାଶନେ ( ଜନାଶନମିତ୍ର ) କିନେ ( ଲୋକେ ) ବୃନ୍ଦଥା ( ଗନ୍ଧପତ୍ର ) "ଯୋପାଳ୍ପ ପ୍ରାପ୍ତ" ତଥା ବୃଷ୍ଟ ପିଠି ( ଶନ୍ତ୍ରଉପରେ ପଡ଼ିଲେ ) । ଗ୍ରାମ ବାଣବାନ୍ଧ ଶରେ ( ମେଘ ଶରମାରି ) ଜଳ ବରଷନ୍ତି ( ଶନ୍ତ୍ର ଉପରେ ଜଳ ବୃଷ୍ଟି କଲେ) । ଲକ୍ଷ୍ମଣ ଯେତେ "ଅସ୍ତ୍ର" ବାନ୍ଧିଲେ ଭାନୁ ଉଦିତେ ( ସର୍ଯ୍ୟ- ଉଦୟହେଲେ ) ଉଦ୍ୟୋତେ ( କିଳ୍କିଳାପୋକ ସବୁ ) ଶୈଳକନ୍ଦନ ( ତେଜୋହୀନ ) "ହୁଅନ୍ତି" ସେ ( ଅସ୍ତ୍ରସବୁ ) "ଶକ୍ତି ପ୍ରଭାବରେ" ସେନ୍ଦ୍ରମନ୍ତ୍ର ( ତେଜୋହୀନ ) "ହେଲେ" । "ଶକ୍ତି ନିବାରି ନ ପାରିଲେ ଏହାଭାବ" । ୮ ।

୯ମ ପଦ—ବେଳ୍ଲୁଁ ବେଳ ( ବେଳକୁ ବେଳ ) ପ୍ରଭାକର ( ପ୍ରଭାବଢ଼ାଇ ଆସୁଥିବା ) ଶକ୍ତିକ "ଗୃଧ୍ର ସୈନ୍ୟପାଳ" ପକ୍ଷିନକର ( ପକ୍ଷିସମୂହ ) ନଦ୍ଧିତ "ହେଲ" ପ୍ରାୟେ ମୂର୍ଚ୍ଛିତ ଆଖି "ହେଲେ" ( ଆଖିବୁଜିଲା- ପରିଲାଇଲେ ) । ତାହାଁ ( ହସିକାଲେ ) ବଳିମୁଖସାରେ ( ସୁଗ୍ରୀବ ) "ଗୃଧ୍ର" ଚରମେ ବଦନ ଥୋଇ ( ପିଠିଆଡ଼କୁ ମୁହଁକରିଦେଲେ ) । "ତେଣୁ ସୁଗ୍ରୀବ" ଦିବାନ୍ଧ ଖଗରେ ( ପେଚ୍ଛସଙ୍ଗରେ ) ଲକ୍ଷି ( ଲକ୍ଷିତହେଲେ ) । "ପେଚ୍ଛର ମୁଖ ପିଠିଆଡ଼କୁ ଥାଏ ଏହା ତାତ୍ପର୍ଯ୍ୟାର୍ଥ" । ବଳୀ ( ବଳିଷ୍ଠ ) ଲକ୍ଷ୍ମଣ "ଶକ୍ତି ପଡ଼ନ୍ତେ" ବିଚେତନ ( ଅଚେତନ ହୋଇ ) ପତନହେଲେ ( ପଡ଼ିଲେ ) । ବାସବ ( ଇନ୍ଦ୍ର ) ବଜ୍ରେ (ବଜ୍ରପ୍ରହାରେ) ଗିରିଭେଦମତେ (ପର୍ବତ ଭେଦିଲାପ୍ରାୟ) "ଲକ୍ଷ୍ମଣଙ୍କ ହୃଦରେ ଗଳିଯାଇ" ପୃଥ୍ୱୀସନ୍ଧିରେ ଫୁଟି ପାତାଳକୁ ମୂଳ ଦେଲା ।

ପତନ । ବଜ୍ରେ ଗିରି ଭେଦମତେ ବାଣବ ପୃଥ୍ୱୀସନ୍ଧିତେ ଫୁଟି ପାତାଳକୁ ଦେଲ୍ଲି ମୂନ ସେ । ୯ ।

ବେନବଳ ଲୋକାଲୋକ ତୁଲ୍ୟ ପାଶେ ନିର୍ମଳକ ପାଶେ ହୋଇ ଅନ୍ଧକାର ଯୁକ୍ତ । ବିବେକ ଦଶକନ୍ଧର ଅନନ୍ତକୁ ଅନ୍ତକର କାଳି ଅଚ୍ୟୁତ କରିବ ଚ୍ୟୁତ ଯେ । ବାହୁଡ଼ାଇ । ବିମାନକୁ ରାଘବ ସଲ୍ଲିଲେ । ବିହମିଲେ ଅବଧିରେ ଜୀବତ୍ରାସେ ତତପରେ ରହେ ଦେଖି ଗଡ଼ଦ୍ୱାର ସ୍ଥଳେ ଯେ । ୧୦ ।

---

"ନୈହ୍ନ କେହ୍ନ ବୃକ୍ଷେ କାଳକଳ୍ପମତେ ଭ୍ରମର ଏରୂପ ପଡ଼ନ୍ତି କିନ୍ତୁ ଏ ଅସମ୍ଭବ ଉପମା । କାରଣ ଭ୍ରମରରନ୍ଧ୍ର ଦୁଇପାଖ ଫୁଟିବାର ଦେଖାନାହିଁ, ଆଉମଧ୍ୟ ଟିକ୍ତ ଲାଗିଅଛି ଭ୍ରମରରନ୍ଧ୍ର, କିପରି ହେବ ଏଣୁ ଅସମ୍ଭବ" । ୯ ।

୧୦ମ ପଦ—ବେନ ବଳ ( ରାମ ରାବଣସୈନ୍ୟ ) ଲୋକାଲୋକ "ପର୍ବତ" ତୁଲ ( ତୁଲ୍ୟହେଲେ ) । "ଲୋକାଲୋକ ପର୍ବତର ପାଖେ ଅନ୍ଧାର ପାଖେ ଆଲୁଅ ଥାଏ ସେହିପରି ଲକ୍ଷ୍ମଣ ଶକ୍ତିଘାତରେ ପଡ଼ିବାରୁ" ପାଶେ ( ରାବଣ ସୈନ୍ୟ ପାଖକୁ ) ନିର୍ମଳକ ( ନିର୍ମଳଭାବରେ ଦେଖିଲେ ) । ପାଶେ ( ରାମ ସେନ୍ୟପାଖକୁ ) ଅନ୍ଧକାର ଯୁକ୍ତହୋଇ ( ଅନ୍ଧାରହେଲା ) । ଦଶକନ୍ଧର ( ରାବଣର ) ବିବେକ ( ଜ୍ଞାନ ) "ଏରୂପ ହେଲା" ଅନନ୍ତକୁ ( ଅବିନାଶିକୁ ) ମୁଁ ଅନ୍ତକର ( ନାଶକଲି ) । କାଳି ଅଚ୍ୟୁତକୁ ( ଚ୍ୟୁତ ନ ହେବା ବ୍ୟକ୍ତି ରାମକୁ ) ଚ୍ୟୁତ ( ନାଶ ) କରିବ । "ଏମନ୍ତ ବିଗ୍ଭରି" ବିମାନକୁ ( ରଥକୁ ) ବାହୁଡ଼ାଇ ( ଫେରାଇଲା ) ରାଘବ ( ମାଛ ) ସଲ୍ଲିଳେ ( ଜଳରେ ) "ବିଧର୍ମିଙ୍କ ତ୍ରାସ" ରାଘବ ( ରାମ ) ସଲ୍ଲିଳେ ( ଲୀଳାରେ ) ବିହମିଲେ । ଅବଧିରେ ( ଅବଧିରେ ) ଜୀବ ( ଜଳଜନ୍ତୁ ) ତ୍ରାସେ ( ରାଘବମତ୍ସ୍ୟ ତ୍ରାସ କରେ ) "ଏ ରାଘବ" ଜୀବ ( ରାବଣକୁ ) ତ୍ରାସେ ( ମାରିବାପାଇଁ ) ତତପରେ ( ଆସକ୍ତହୋଇ ) "ଯାଇ" ଅବଧିରେ ( ଅବଧିଲେ—ବଧିନପାରିଲେ ) । "ରାବଣ ଲଙ୍କା ପଳାଇଗଲା ଶୀଘ୍ର ଥିବାରୁ" । "ରାଘବମତ୍ସ୍ୟ" ସ୍ଥଳ "ଭାଗ" ଦେଖି ରହେ "ଏ ରାଘବ" ଗଡ଼ ( ଲଙ୍କାଗଡ଼ ) ଦ୍ୱାରସ୍ଥଳ ( ଦ୍ୱାରର ସ୍ଥଳଭାଗ ) ଦେଖି ରହେ ( ରହିଲେ ) । ୧୦ ।

ବିକଳ ସକଳରୂପେ ମିଳିଲେ ଭ୍ରାତ ସମୀପେ ଛବ ଉତ୍ସିନେ ଯେମନ୍ତ ଦଣ୍ଡ । ବିଲୋକି ଶକ୍ତି ଉତ୍ପାଟ ବୋଲୁଁ ଗୁଳେ କପିଭଟ ସମସ୍ତ ଚଳିଲେ ଅବନୀଖଣ୍ଡ ସେ । ବିସ୍ମିତରେ । ବାମକରେ ଧରି ଉତ୍ପାଟିଲେ । ବାରଣ ସନାଳ କଞ୍ଜପରି ସେ କରି ବିଭଞ୍ଜି ମାରୁତି ଅଙ୍ଗଦ ମାତ୍ରିଥିଲେ ଯେ । ୧୧ ।

ବୁଦ୍‌ବୁଦ ଜମ୍ବାଳେ ଜାତ କ୍ଷତଜ ଜାତ ତେମନ୍ତ ପଦ୍ମାକରଛବି ସେ ସୁନ୍ଦର । ବନଜ ବଦନ ମାଳଉତ୍ପଳ ନେତ୍ର ଶୈବାଳ ବାଳ

---

୧୧ଶ ପଦ—"ରାମଚନ୍ଦ୍ର" ସକଳରୂପେ ( କାୟିକ ମାନସିକ ବାଚନିକରେ ) ବିକଳ "ହୋଇ" ଭ୍ରାତ ( ଲକ୍ଷ୍ମଣଙ୍କ ) ସମୀପେ ( ପାଖରେ ) ମିଳିଲେ । ଛବ ଉତ୍ସିନେ ଦଣ୍ଡ ଯେମନ୍ତ ( ବେଣୁଉପରକୁ ହୋଇ ଛତା ଯିବାଥିବା ପ୍ରାୟ ) "ଲକ୍ଷ୍ମଣ ପତ୍ରିଛନ୍ତି ଶକ୍ତି ଦଣ୍ଡଅଛି" । ବିଲୋକି ( ଦେଖି ) ଶକ୍ତି ଉତ୍ପାଟ ( ଉପାଡ଼ ) ବୋଲୁଁ ( ବୋଲନ୍ତେ ) କପିଭଟ ( କପିମାନେ ) ଗୁଳେ ( ଗୁଳନ୍ତେ ) ସମସ୍ତ ( ସମୁଦାୟ ) ଅବନୀଖଣ୍ଡ ( ପୃଥିବୀଖଣ୍ଡ ) ଚଳେ ( ଚଳିଲା ) "ତାଦେଖି" ବିସ୍ମିତରେ "ରାମ" ବାମକରେ ( ବାମ ହସ୍ତରେ ) "ଶକ୍ତିକି" ଧରି ଉତ୍ପାଟିଲେ ( ଉପାଡ଼ିଲେ ) ବାରଣ (ହସ୍ତୀ) ସନାଳ ( ମୃଣାଳ ସହିତ ) କଞ୍ଜପରି ( ପଦ୍ମ ଉପାଡ଼ି ଭାଙ୍ଗିଲାପରି ) ସେ ( ରାମ ) "ଶକ୍ତିକି" ବିଭଞ୍ଜକରି ( ଭାଙ୍ଗିଦେଲେ ) । "ଉପାଡ଼ିବା ସମୟରେ ଲକ୍ଷ୍ମଣଙ୍କୁ" ମାରୁତି ( ହନୁମାନ୍ ) ଅଙ୍ଗଦ "ଏ ଦୁହେଁ" ମାତ୍ରି "ବସି" ଥିଲେ । ୧୧ ।

୧୨ଶ ପଦ—"ଯେମନ୍ତ" ଜମ୍ବାଳେ ( ପଙ୍କରେ ) ବୁଦ୍‌ବୁଦ ( ଭୁତୁଭୁତୁକା ) ଜାତ "ହୁଏ" ତେମନ୍ତ କ୍ଷତଜ ( ରକ୍ତ ) ଜାତ "ହେଲା" "ତେଣୁ" ସୁନ୍ଦର ସେ ( ଲକ୍ଷ୍ମଣ ) ୧ ପଦ୍ମାକର ୨ ଛବି ( ତାଡ଼ାଗ ଶୋଭାକୁ )

---

୧—ଏଠାରେ ଅନୁଗୁଣ ହେଲା—ପଦ୍ମାନାଂଆକରଃ ପଦ୍ମାକରଃ ।

ଏ ପଦ ଶ୍ଲିଷ୍ଟରୂପକ ହେଲା । ଯଥା—

ରାଜହଂସୋପଭୋଗାର୍ଥଂ ଭ୍ରମରଃ ପ୍ରାର୍ଥ୍ୟସୌରଭଂ ।

ପୁଷ୍ପାତ୍ ସୁସମାଂ କାଂଚନନ୍ଧଖପଙ୍କେରୁହଂ ତବେଦ ।

୨—ଶୋଭାକାନ୍ତି ଦ୍ୟୁତିଛବି ଇତ୍ୟମରଃ ।

କୋକନଦ ପଦ-କର ଯେ । ବୀଚି ବାହୁ । ବନାଚଳିତ କୁମୁଦହାସ । ବିକାଶ ଲେଶହିଁ ନାହିଁ ଘନଗର୍ବ ଭଙ୍ଗ ତହିଁ ପ୍ରକଟ ଯହିଁ ସୁହୃଦ-ବଶ ଯେ । ୧୨ ।

ବକ୍ଷସ୍ଥଳ ଦେଖି ଗର୍ତ୍ତ ରଥାଙ୍ଗ ଲକ୍ଷ ଖଞ୍ଚିତ ରଥାଙ୍ଗରଜନୀ ହୋଇଥିଲା । ବ୍ୟାଧ ନବ୍ୟାଦ ଜୀବିତନ୍ମରଣେ କେହ୍ନେ ସଚେତ ରହିଛି ଏହି ବଚନ କହିଲ ସେ । ବନଚାର । ବନଜ ଅଧିକ ହୋଇ

"ପାଇଲେ" । "ତାଙ୍କ" ବଦନ ( ମୁଖ ) ବନଜ ( ପଦ୍ମ ) ଚିକୁର "ହୋଇ" ନୀଳୋତ୍ପଳ ( ନୀଳକଇଁ ) ବାଳ ଶୈବାଳ ( ଶିଉଳି ) ପଦ ( ପାଦ ) କର ( ହସ୍ତ ) କୋକନଦ ( ରକ୍ତପଦ୍ମ ) ବନାଚଳିତ ( ଅଚଳ ) ବାହୁ ବୀଚି ( ଲହରୀ ) "ହେଲା" । ଯହିଁ ( ଲକ୍ଷ୍ମଣ ରୂପ ତଡ଼ାଗରେ ) ସୁହୃଦ୍‌ବଶ ( ସୁଗ୍ରୀବାଦି ମିତ୍ରଜନଙ୍କ ବଶୀଭୂତ ) ୩ ସୁହୃଦ୍‌ବଶ—( ଉତ୍ତମ ହୃଦୟବାନ୍ ଜନ ବଶରୂପେ ) ପ୍ରକଟ "ହୋଇଅଛି" ତହିଁ ୪ଘନଗର୍ବ ( ଦୁଃଖଗର୍ବ ) ଘନଗର୍ବ ( ଘନର ଗର୍ବକୁ ) ଭଙ୍ଗି ( ପିଟିବାରୁ ) ହାସ କୁମୁଦ ( ହାସ୍ୟରୂପ କଇଁଫୁଲର ) ବିକାଶ ଲେଶହିଁ ( ଲବମାତ୍ର ପ୍ରକାଶ ) ନାହିଁ । ୧୨ ।

୧୩ଶ ପଦ—"ଲକ୍ଷ୍ମଣଙ୍କ" ବକ୍ଷସ୍ଥଳେ ( ଛାତିର ) ଗର୍ତ୍ତ ( ଗାତ ) ରଥାଙ୍ଗ ( ରଥଚକ୍ର ) ଲକ୍ଷି ( ସମାନ ) ଦେଖି ଖଞ୍ଚିତ ( କହିଲେ ) "ଆମ୍ଭ ଦୁଇ ଭାଇଙ୍କର" ୧ ରଥାଙ୍ଗ ( ଚକ୍ରବାକୀ ଚକ୍ରବାକ ପକ୍ଷୀଙ୍କ ) ରଜନୀ ( ରାତ୍ରି ) ହୋଇଥିଲା । "ଯେପରି ଚକୁଆ ଚକେଇ ରାତ୍ରିରେ ଅନ୍ତର ହୁଅନ୍ତି ଆମ୍ଭେ ଦୁଇ ସେହିପରି ଏକସ୍ଥାନରେ ନ ଥିଲୁଁ ମୁଁ ଅଲଗା ଥିଲି ଏହି ଅଭିପ୍ରାୟ"

୩—ଚିତ୍ତଂ ତୁ ଚେତୋହୃଦୟଂ ସ୍ୱାନ୍ତଂ ହୃନ୍ମାନସଂ ମନଃ । ଇତ୍ୟମରଃ ।
ସୁହୃଦ୍‌ବଶଶବ୍ଦର ସନ୍ଧି କ୍ରାକ୍ଷର ମୋଚନରେ ସୁହୃଦବଶ ହେଲ ।
୪—ଘନଂ ସ୍ୟାଦ୍ ବାସରେ ଦୁଃଖେ ଶ୍ୱଶାନେ ଚ ପ୍ରୟୋଜନେ ଇତି ଯାଦବଃ ।
୧—ରଥାଙ୍ଗ ଶବ୍ଦରୁ ଚକ୍ରବାକ ଚକ୍ରବାକୀ କରୂପେ ଅର୍ଥ କଲ ଏହା କେହ୍ନେ ବୋଲିବେ ଦ୍ୱନ୍ଦସମାସରେ ସ୍ତ୍ରୀ ପୁରୁଷ ଦୁହିଁଙ୍କି ସମାସ କଲେ ପୁରୁଷର ଏକ ଶେଷ ହୁଏ ଯଥା— ଚକ୍ରବାକୀ ଚ ଚକ୍ରବାକଶ୍ଚ ଚକ୍ରବାକଃ ।

ଯୋଗ । ଶବ୍ଦୁଷ ଆଦ୍ୟଗନ୍ଧର୍ବ ନାମାଦରେ ¹କଲେ ରବ ବଡ଼ ମୁଁ
²ନାଶ ନୋହିଲି ଆଗ ସେ । ୧୩ ।

ବସୋଇ ଶୋଭାନୁଶୟନ ମର୍କତଶଇଳୁଁ ସ୍ୱର୍ଣ୍ଣ ଖଣ୍ଡଶଇଳ କି ଖସି
ପଡ଼ି । ବହିତ ନେତ୍ର ଗହ୍ୱରୁ ନିର୍ଝରମ୍ଭର କି ଗୁହା ହୃଦୟୁ ପ୍ରପାତେ

ବ୍ୟାଧ "ତୁଳ" ଇତ୍ୟାଦ ( ଶ୍ରାବଣ ଶବଦ ) ଜୀବିତ ହରଣେ ( ଲକ୍ଷ୍ମଣଙ୍କୁ ମାରନ୍ତେ ) ଜେହୁ ( ମୁଁ ) "ଯାହା" ହତେତ ( ଜୀବନ ଧନ ) ରହିଛୁ ଏ ( ଏକଥା ) ବଚନ ( ଆଶ୍ଚର୍ଯ୍ୟ ) "ହେଲ" "ଚକ୍ରବାକ" ଚକ୍ରବାକୀର ଜୀବନ ସେହିପରି ଲକ୍ଷ୍ମଣ ମୋହର ଜୀବନ, ବ୍ୟାଧ ଚକ୍ରବାକର ଜୀବନ ନେଲେ ଚକ୍ରବାକୀର ଜୀବନଧାରଣ ବଚନ ପ୍ରାପ୍ତ ଶ୍ରବଣ ଲକ୍ଷ୍ମଣର ଜୀବନ ନେବାରେ ମୋହର ପ୍ରାଣଧାରଣ ବଚନ ହେଲ ଏହି ତାତ୍ପର୍ଯ୍ୟାର୍ଥ । ବନ-ବାର ( ଅନବାର ) "ରାମଙ୍କ" ବିକଳ ଅଧିକ "ପରିମାଣେ" ଯୋଗ ¹"କର-ବାରୁ" ³ ଗନ୍ଧର୍ବ ନାମାଦରେ ( ଗନ୍ଧର୍ବ ପର୍ଯ୍ୟାୟର ଆଦ୍ୟନାମ- 'ହା ହା' ) ଶବ୍ଦୁଷ ଆଦ୍ୟ ( ପତ୍ରିତାଶନି-ଲକ୍ଷ୍ମଣ ) ମୁଁ ବଡ଼ ହୋଇ ଆଗ ନାଶ ନୋହିଲି "ଏମନ୍ତ ବୋଲି" ରବ କଲେ ( ଉଚ୍ଚରେ କାନ୍ଦିଲେ ) । ୧୩ ।

୧୪ଶ ପଦ—"ରାମ" ଜାନୁ ଶୟନ ( ଜାନୁରୂପ ଶଯ୍ୟାରେ ) ବସୋଇ ( ଶୁଆନ୍ତେ ) ମର୍କତ ଶଇଳୁଁ ( ମରକତ ପର୍ବତରୁ )¹ ସ୍ୱର୍ଣ୍ଣ ୧ଖଣ୍ଡ ଶଇଳ ( ସୁବର୍ଣ୍ଣ ଖଣ୍ଡ ଶୈଳ ) ଖସି ପଡ଼ିଛି କି ? ( ଖସି ପଡ଼ିଲାପ୍ରାୟ ଲକ୍ଷ୍ମଣ ¹ଦେଖା ଗଲେ )। ନେତ୍ର ² ଗହ୍ୱରୁ ( ନୟନରୂପ ଗୁହାରୁ ) ନିର୍ଝର ( ଝରୁ

²—ଇତ୍ୟାଦ ଶବ୍ଦ ଶ୍ରାବଣମାତ୍ରକ ଅର୍ଥରେ ବହୁବ୍ୟାପକ କିରୂପେ ଶ୍ରବଣ ଅର୍ଥ ହେଲା ? ପ୍ରସିଦ୍ଧ ପଦ ସମ୍ବନ୍ଧରୁ ବା ବ୍ୟବହାରରୁ ଅର୍ଥ ବୋଧହୁଏ, ଏଠାରେ ପ୍ରସିଦ୍ଧ ପଦ ଶ୍ରବଣ, ବା ବ୍ୟବହାରରୁ ଶ୍ରବଣ ଅର୍ଥ ହେଲା ।
ତଦୁକ୍ତଂ ସାହିତ୍ୟେ—

କୋଷବ୍ୟାକରଣୋପ୍ରୋକ୍ତ ବ୍ୟାକ୍ୟଶେଷୋପମାଦିତଃ ।
ପ୍ରସିଦ୍ଧପଦ ସମ୍ବନ୍ଧାଦ୍‌ବ୍ୟବହାରତ ବୁଧ୍ୟତେ । ଇତି ।

³—ହାହା ହୂହୂଶ୍ଚୈବମାଦ୍ୟାଗନ୍ଧର୍ବା ସ୍ୱର୍ଦିବୌକସା ମିତ୍ୟମରଃ ।
¹—ଖଣ୍ଡଶୈଳାଚ୍ୟୁତା ସ୍ଥୂଳୋପଳାଗିରେ ଶତ୍ୟମରଃ ।
²—ଗୁହାଦ୍ୱୟଂ ଦେବଖାତବିଲେ ଗହ୍ୱରେ ବୃଦ୍ଧିମେବଲେ ।

ଗଲା ଜଡ଼ ଚେ । ବାଣୀ ନ୍ୟାସୁଁ ୮ ବୈଦ୍ୟଚନ୍ଦ୍ର ସୁଷେଣ ଉଚିତ ।
ବିନାଶ ନୋହିବା ପ୍ରଦ ବିକାଶି ହୃଦକୁମୁଦ ଚକ୍ଷୁଚକୋର ସ୍ରବବା
ସ୍ଥିତ ସେ । ୧୪ ।

ବୋଲୁଁ ଆଣ ଅଉଷଧି ଗନ୍ଧମାଦନେ ପ୍ରସିଦ୍ଧି ଉତ୍ତରଭାଗେ ସେ
ସେନା ଡାକ । ବ୍ରହ୍ମାକେଳିନଗେ ଅଛି ନିଶା ଥାଉଁ ଜଣେ ବାଛି

---

ଥିବା ) ମାର ( ନେତ୍ରଜ ), ଝର୍ଝର ମାର ରୂପେ ବହୁତ ଜ ( ବୋହୁଥିଲା ଜ ) ରୁରୁ ( ମନୋହର ) ହୃଦସ୍ଥ ( ଉରଦେଶ ) ୩ ପ୍ରପାତ ( ଝରପଡ଼ନ ସ୍ଥାନ ) "ହେଲା" "ତହିଁରେ ସେ ଝର୍ଝର ମାରରୂପ ନୀର" ଜଡ଼ଗଲା ( ଓଦା ହୋଇଗଲା ) । "ଏରୂପେ ରାମଙ୍କ ଶୋକ ଦେଖି" ସୁଷେଣ "ନାମା" ବୈଦ୍ୟ ଚନ୍ଦ୍ର "ରୂପେ" ବିନାଶ ନୋହିବା ( ମରିବେ ନାହିଁ ଔଷଧ ଦେବା ) "ଏମନ୍ତ" ୪ ପଦ ବାଣୀ ( ପରିତ୍ରାଣ ବାଣୀ ରୂପ କିରଣ ) ନ୍ୟାସୁଁ ( ନ୍ୟାସ କରନ୍ତେ ) ହୃଦ କୁମୁଦ ( ରାମଙ୍କ ହୃଦୟ କୁମୁଦ ) ବିକାଶି ( ବିକାଶ ହେଲା ), ଚକ୍ଷୁ ଚକୋର ( ରାମଙ୍କ ନୟନ ରୂପ ଚକୋର ପକ୍ଷୀର ) ସ୍ରବବା ( ନେତ୍ରଜ ସ୍ରବବା ) ସ୍ଥିତ ହେଲା ( ରହିଲା ) "ଚକୋର ଚନ୍ଦ୍ରକିରଣ ପାନ କରେ ଏହାଥିବ" । "ସୁଷେଣ ଭଲ କରିଦେବା କହିବାରୁ ରାମଙ୍କ ମନ ଆନନ୍ଦ ହେଲା ଏହି ଫଳିତାର୍ଥ" । ୧୪ ।

୧୫ଶ ପଦ—ବୋଲୁଁ ( ଔଷଧ ଅଛି, ଏମନ୍ତ ସୁଷେଣ ବୋଲନ୍ତେ ) "ରାମ ବୋଇଲେ" ଅଉଷଧି ( ଔଷଧ ) ଆଣ । "ଏହା ଶୁଣି" ସେ ବୈଦ୍ୟ ସେନା ( ସୈନ୍ୟମାନଙ୍କୁ ) ଡାକ ଉତ୍ତରଭାଗେ ( ଉତ୍ତରଦିଗରେ ) ଗନ୍ଧମାଦନ "ନାମରେ" ପ୍ରସିଦ୍ଧି ( ବିଖ୍ୟାତ ) ବ୍ରହ୍ମା କେଳି ୫ ନଗେ ( ବ୍ରହ୍ମାଙ୍କର କେଳି ପର୍ବତର ଉତ୍ତରଭାଗରେ ) "ଔଷଧି" ଅଛି । ନିଶା ( ରାତ୍ର ) ଥାଉଁ ଜଣେ "ଯାଇଁ" ବାଛି "କରି" "ସେ ଔଷଧକୁ" ଆଣ "ଏମନ୍ତ" ଭଣି ( କହନ୍ତେ ) "ରାମ" ଲେଖି ( ଏଠାକୁ ଛୟାଶୀଯୋଜନ ) ଦୂର "ଜାଣି"

---

୩—ପ୍ରପାତସ୍ତୁ ତଟୋଭୃଗୁ ଇତ୍ୟମରଃ ।

୪—ଯଦଂବ୍ୟବସିତ ତୁଙ୍ଗ ସ୍ଥାନଲକ୍ଷ୍ମାଗ୍ରି ବସ୍ତୁଷୁ ଇତ୍ୟମରଃ ।

୫—ଶୈଳବୃକ୍ଷୌ ନଗାବଗୌ ଇତ୍ୟମରଃ ।

ଆଶୁ ଭଣୁ ଦୂରଲେଖିଶଙ୍କି ଯେ । ବ୍ଦନ୍ତ ଯେ । ବଳ୍ପିବଂଶୀ ଖାଇବା ଖତ । ବୋଇଲେ ସେ ସଦାଗତିତନୟୃତ ସଦାଖାଉ ଶୁଣି ଓଳଗି ଗମି ମାନ୍ତୁଛି ଯେ । ୧ ।

ବାର୍ତ୍ତା ପାଇ ଲଙ୍କପାଳ କାଳନେମିକ ତତ୍କାଳ ମଣାଇଣ ସକଳ ପ୍ରେଷଣ । ବେଗେ ଗନ୍ଧନଦୀକୂଳେ ନିର୍ମାଣି ଶମ୍ଭୁ ଦେଉଳେ ତପୀରୂପେ ବସିଛି ଆପଣ ନେ ି ବତାସ କ । ବହଇ ଯାଉଁ ପବନସୁତ ।

"କେବେ ଏତେଦୂର ପଥ ଯାଇ ରାତ୍ର ଥାଉ ଆଣିଦେବ ଏମନ୍ତ ଖଳ" ଶଙ୍କି-ହେଲେ ( ଭୟ କଲେ ) । ବଳୂଷିବଂଶୀ ( ରାମ ) ଖାଇବା ଖାତ ( ଲକ୍ଷ୍ମଣ ଆଉ ଖାଇବ ନାହିଁ ) କେବେ ଏତେ ଦୂର ଯିବ ଔଷଧ ଆଣି ଦେବ "ଏମନ୍ତ" ବଦନ୍ତ ( କହନ୍ତ ) । "ଏରୂପ ରାମଙ୍କ ବ୍ୟାକୁଳ ଦେଖି" ସେ ( ସୁଷେଣ ) ବୋଇଲା ସଦାଗତ ତନୟ ( ପବନ ପୁତ୍ର ) ତ ସଦାଗତ ( ଆମ୍ଭର ସବୁ କାଳର ଉପାସ୍ୟ) "ଅଛି" । "ସେ ଯାଇଁ ଔଷଧ ଆଣିବ ଏପନ୍ତୁଛିବ" "ଏହା ଶୁଣି" ମାନ୍ତୁତ ( ହନୁମାନ୍ ) ଓଳଗି ( ପ୍ରେମଙ୍କୁ ପ୍ରଣାମ କରି ) ଗମି ( ଗଲ ) ।୧୬।

୧୭ଶ ପଦ—ଲଙ୍କପାଳ ( ରାବଣ ) ବାର୍ତ୍ତା ( ହନୁମାନ୍ ଗନ୍ଧମାଦନ ପର୍ବତକୁ ଯାଇଁ ଔଷଧ ଆଣିମା କଥା ) ପାଇ ( ଶୁଣି ) ତତ୍କାଳ ( ସେକ୍ଷଣେ ) କାଳନେମିକ ( କାଳନେମି ଦୈତ୍ୟକୁ ) "ଅଣାଇ" ସକଳ "କଥା" ମଣାଇ "କହି" ପ୍ରେଷଣ ( ପଠାଇଲ ) । "ଯେପରି ରାତ୍ର ମଧ୍ୟରେ ହନୁମାନ୍ ଔଷଧ ଆଣି ନ ପାରିବ ତାହାର ଉପାୟ କରିବ ଏହିଛିବ" । "ସେ ଦୈତ୍ୟ" ବେଗେ "ଯାଇ" ଗନ୍ଧନଦୀକୂଳେ ( ଗନ୍ଧ ନଦୀର ତୀରରେ )

*—ଏ ପଦରେ ଶ୍ଳେଷଗୁଣରେ ସଂକ୍ଷିପ୍ତଗୁଣ ହୋଇଛି ।
ଯଦୁକ୍ତଂ ସାହିତ୍ୟେ—ସଂକ୍ଷିପ୍ତତ୍ୱ ମୁଦାରତ୍ୱଂ ପ୍ରସାଦୋକ୍ତି ସମାଧୟଃ ।
ଅତ୍ର ବାକ୍ୟସମାବେଶାତ୍ ପଞ୍ଚଶବ୍ଦଗୁଣାଃ ସ୍ମୃତାଃ । ଇତ୍ଥ ।
ତତ୍ର ସଂକ୍ଷେପଃ ସ୍ୱଳ୍ପାକ୍ଷରୈର୍ଭୂୟୋଽର୍ଥ କଥନଂ—
ଛେ ହିମାଳୟମାମନ୍ତ୍ର୍ୟ ପୁନଃପ୍ରାର୍ଥ୍ୟ ଚ ଶୂଳିନଂ ।
ସିଦ୍ଧଂ ଗ୍ୟସ୍ମୈ ନିବେଦ୍ୟାର୍ଥଂ ତଦ୍ୱିସୃଷ୍ଟା ମୁଦାଯଯୁଃ ।

ବନ୍ଧ ଯିବାକାର୍ଯ୍ୟେ ହେବ ଏ ସରେ ନ ମଜ୍ଜି ଶିବ ନ ଦେଖି
ଗଲେ ଏ ଗିରକୃତ ସେ । ୧୬ ।

ବିଶୋଉଁ ଏକଥା ଶ୍ରୋତ୍ର ହେଉଁ ସରସି ରସିତ ନନ୍ଦରୂପା
ଧରନ୍ତେ ପଦ୍ମର । ବୁଡ଼ି ପଦ୍ମରେ ଚପଳେ ତରନ୍ତେ ପକାଇ କୂଳେ
ରୁଚିରବର୍ଣ୍ଣ ଯୁବତିବର ସେ । ବୋଇଲା ଯେ । ବ୍ରହ୍ମାଙ୍କୁ ଏ ମୋ-
ଦେହ ଉଦ୍ଧାରଉଁ । ବୃଷ୍ଟିର ପରିଚାରକ ତୁମ୍ଭେ ହେଲ ମୋ ତାରକ
ମାର ରାବଣ ସେବକ ଏହୁ ଯେ । ୧୭ ।

---

ଶମ୍ଭୁ ଦେଉଳେ ( ମହାଦେବଙ୍କ ଦେଉଳ ) କର୍ମାଣି ( ତିଆର କରି ) ଆପଣ
( ଆଚ୍ଛି ) ତପୀରୂପେ ( ତପସ୍ୱୀରୂପରେ ) ବସିଛି । ପବନସୁତ ( ହନୁମାନ୍ )
ଯାଉଁ ( ଯିବା ବେଗରେ ) ବହିଲ "ଯେଉଁ" ପବନ ସେ ବିଭାସ କି ? । ସେହି
( କାଳନେମି ) "ବତାସ ପବନରୁ ହନୁମାନ୍ ଯିବାର ଜାଣି" ଏ ଗିର କୃତ
( ଏ କଥା କହିଲା ) । ଏ ସରେ ( ଏ ପୁଷ୍କରିଣୀରେ ) ନ ମଜ୍ଜି ( ନ ବୁଡ଼ି )
ଶିବ ( ମହାଦେବଙ୍କୁ ) ନ ଦେଖି ( ଦର୍ଶନ ନ କରି ) ଗଲେ ଯିବା କାର୍ଯ୍ୟେ
( ତୋର ଯିବା କାର୍ଯ୍ୟରେ ବନ୍ଧ ହେବ ) । ୧୬ ।

୧୭ଶ ପଦ୍ୟ—ଏକଥା ( ମାୟା ତପିର ଏକଥା ) "ହନୁମାନର"
ଶ୍ରୋତ୍ର ( ଶ୍ରବଣରେ ) ବିଶୋଉଁ ( ପ୍ରବେଶ କରନ୍ତେ ) "ସେ କଥା ପ୍ରତି-
ପାଳି" ସରସି ( ଗଭିରନଦୀରେ ) ରସିତ ହେଉ ( ବୁଡ଼ନ୍ତେ ) ନନ୍ଦରୂପା
( ଗନ୍ଧକାଳୀ ଯକ୍ଷର ଦୁହିତା କୁମ୍ଭିରୀ ) ପଦ୍ମର ( ହନୁମାନରପାଦ ) ଧରନ୍ତେ
"ହନୁମାନ୍" ପଦ୍ମରେ ( ଜଳରେ ) ବୁଡ଼ି କୂଳେ ( ନଦୀ କୂଳରେ ) ପକାଇ
ଚପଳେ ( ସତ୍ୱର ) ତରନ୍ତେ ( ଦୁଇଫାଳ କରନ୍ତେ ) ରୁଚିରବର୍ଣ୍ଣ ( ସୁନ୍ଦରୀ )
ଯୁବତିବର ( ଯୁବତିମଣି ) ହୋଇ ବୋଇଲା ମୋ (ମୋହର) ଏ ଯେ ଦେହ
"ଏଥିରେ" ବ୍ରହ୍ମାଙ୍କୁ ଉଦ୍ଧାରଉଁ ( ଉଦ୍ଧାରଇବାରୁ ) "ତାଙ୍କ ଅଭିଶାପରେ କୁମ୍ଭିରୀ
ହୋଇ ଏ ନଦୀରେ ଥିଲି" ତୁମ୍ଭେ ବୃଷ୍ଟିର ପରିଚାରକ ( ଭୃତ୍ୟ ) "ଏଣୁ"
ମୋ ତାରକ ( ମୋହର ଶାପୋଦ୍ଧାରକର୍ତ୍ତା ) ହେଲ । ଏହୁ ( ଏ ମାୟାଯତି )
ରାବଣ ସେବକ (ରାବଣର ଭୃତ୍ୟ କାଳନେମି) "ଏହାକୁ" ମାର (ବଧକର) ॥

ବିପିନରେ ତା ବଧଶାଳୀ ବିଧ୍ ଲେଖିଲେ ଗୋଟେ, ମିଳି ଭାବି ବ୍ରହ୍ମପଦ
ବିପିନରେ । ବିଶଲ୍ୟ ଖୋଜୁଁ ସେ ଶଲ୍ୟ-ପଶୁସ୍ୱଭାବରେ ଶଲ୍ୟ ଶର
ମାରି ରଳ ସାବର୍ଣ୍ଣ୍ୟରେ ସେ । ବିଦ୍ୟାଧରେ । ବୃଧେ ଏ ଲକ୍ଷଣା ଏଣୁ
କରି । ବିଧାରେ ସେ ସାନୁମାନ ଶତଯୋଜନ ଉଗନ ମୁଷ୍ଟିପ୍ରହାରେ
ତାହାଙ୍କୁ ମାରି ସେ ।୧୮।

ବାସୁକି ଶୀରଷେ ଯଥା ଧରନ୍ତି ଧରିତ୍ରୀ ତଥା ଗିରି ସେ ବହି
ଆକାଶେ ଆସେ । ବିଷ୍ଣୁରଥ ସୁଧା ହରି ସୁର୍ଗୁଁ ଆସିଲ ପରି ଦୂତେ

୧୮ଶ ପଦ—ବିପିନରେ ( ବଣରେ ) ତା ( ସେହି ମାୟା ଯତିର ) ବଧ-ଶାଳୀ ( ବଧକାରୀ ) "ହୋଇ" ବିଧି ଲେଖିଲେ ଗୋଟେ ( ବିଧାତା ଗୋଟିଏ ଲେଖିଲେ ) ପର୍ବତ ଗନ୍ଧମାଦନରେ ) ମିଳି ( ପ୍ରବେଶ କରି ) ବିପିନରେ ( ପର୍ବତର ଉପବନରେ ) ବ୍ରହ୍ମପଦ ( ଏ ବ୍ରହ୍ମାଙ୍କର ପଦକୁ ) "ପାଇବି" ଏମନ୍ତ ଭାବି ( ମନରେ ବାଞ୍ଛାକରି ) ସେ ( ହନୁମାନ୍ ) ବିଶଲ୍ୟ (ବିଶଲ୍ୟ କରଣୀ ଔଷଧ) ଖୋଜୁଁ (ଖୋଜିବା ସମୟରେ) ବିଦ୍ୟାଧରେ (ବନରକ୍ଷକାରି ବିଦ୍ୟାଧରମାନେ) ଶଲ୍ୟପଶୁ ସ୍ୱଭାବରେ ( ସେମାନଙ୍କ ପଶୁ ସ୍ୱରୂପ ) "ହନୁମାନଙ୍କୁ ମନେ କରି" ୧ ଶଲ୍ୟ ଶର ( ଶଲ୍ୟ ରୂପ ଶର ) "ସେମାନଙ୍କ ଦେହରେ ଥିଲା ପାଖ" ଶରମାରି "ହନୁମାନର ଦେହକୁ" ରଳସାବର୍ଣ୍ଣ୍ୟରେ ( ରଳର ଐକ୍ୟଭାବରେ ଶର ( ଶଲ-ସେମାନଙ୍କ କାଟିମସ୍ତ ) "କରିଦେଲେ" । ବୃଧେ ( ପଣ୍ଡିତମାନେ ) ଏଣୁ ଏ ଲକ୍ଷଣା ( ଶଲ୍ୟ ପଶୁ ଲକ୍ଷଣା ) କରି ( କରିଗଲେ ) ସେ ( ହନୁମାନ୍ ) ବିଧାରେ ( ବିଧାମାରି ) ସାନୁମାନ ( ଗନ୍ଧମାଦନ ପର୍ବତର ) ଶତଯୋଜନ ( ଶଏ ଯୋଜନ ପ୍ରମାଣରେ ) ଶୃଙ୍ଗ ଉଗନ ( ଉଗ୍ନକରି ) ତାହାଙ୍କୁ ( ସେହି-ବିଦ୍ୟାଧରମାନଙ୍କୁ ) ମୁଷ୍ଟିପ୍ରହାରେ (ମୁଷ୍ଟି ପ୍ରହାର କରି) ମାରି (ମାଇଲା) ।୧୮।

୧୯ଶ ପଦ—ବାସୁକି ( ନାଗରାଜା ) ଶୀରଷେ (ଶୀର୍ଷରେ-ମସ୍ତକରେ) ଯଥା ( ଯେରୂପ ) ଧରିତ୍ରୀ ( ପୃଥିବୀକି ) ଧରନ୍ତି ତଥା ସେ ( ହନୁମାନ୍ ) ଗିରି "ମୁଣ୍ଡରେ" ବହି ଆକାଶେ ( ଆକାଶ ମାର୍ଗରେ ) ଆସେ । ବିଷ୍ଣୁରଥ

୨—କ୍ଷେତ୍ରଶଙ୍କୁଶରେଶଲ୍ୟଂ ନାଶ୍ୟ ବିନ୍ଧ୍ୟବନଦ୍ରୁମେ ଇତି ତାରପାଳଃ ।
ଶ୍ୱାବିତ୍ ଶଲ୍ୟସ୍ତଲ୍ଲୋମ୍ନି ଶଲ୍ଲୀ ଶରଳାଂଶଲ ମିତ୍ୟମରଃ ।

ଶ୍ରବଣ ରାବଣ ପେଷେ ଯେ । ବଳବନ୍ତ । ବଳ ଦଶସହସ୍ର ସଂଖ୍ୟାରେ ।
ବିହାୟସରେ ଭେଟିଲେ ରବିଙ୍କ ପ୍ରାତେ ଘୋଟିଲେ କାଳକେଯୂଗଣ
ପରକାରେ ସେ ।୧୯।

ବିପ୍ର ତର୍ପଣ ମାରଣ କରାଦ୍ରି ପାନ ଧାରଣ ପଦ ପ୍ରସ୍ତରଣ ପ୍ରକା-
ଶିଲା । ବିଶେଷ ତୋଷ ଦେବତା ପିତାମହ ଏ ମମତା ମୋ ସୃଷ୍ଟିରେ
ଏ ଦେଖା ନ ଥିଲା ଯେ । ବିମର୍ଦ୍ଦନ । ବପୁ ଉପରୁ ତଳକୁ ଆସି ।
ବ୍ୟୋମକେଶ ଆକାଶର ମଳିନ ପୁଷ୍ପନିକର ଖସିପଡ଼ିଲାର ପରି ଦିଶି ସୋ।

( ଗରୁଡ଼ ) ସ୍ୱର୍ଗରୁ ସୁଧା ( ଅମୃତ ) ହରି ( ହରଣ କରି ) ଆଣିଲା ପରି
"ହନୁମାନ୍ ପର୍ବତ ଧରି ଆସିବାର କଥା" ଦୂତେ ଶ୍ରବଣ ( ଦୂତମୁଖରୁ
ଶୁଣି ) ରାବଣ ଦଶସହସ୍ର ସଂଖ୍ୟାରେ ( ଦଶହଜାର ) ବଳବନ୍ତ ( ବଳିଷ୍ଠ )
ବଳ ( ସୈନ୍ୟ ) ପେଷେ ( ପଠାଇଲା ), ସେ ( ସୈନ୍ୟ ) ବିହାୟସରେ
( ଆକାଶରେ ) "ଯାଇଁ" ପ୍ରାତେ (ପ୍ରଭାତରେ) କାଳକେୟୂଗଣ (ରାକ୍ଷସଗଣ)
ରବିଙ୍କ ( ସୂର୍ଯ୍ୟଙ୍କୁ ) ଘୋଟିଲେ ପରକାରେ ( ଘୋଟିଥିଲାପ୍ରାୟ ) "ହନୁ-
ମାନଙ୍କୁ" ଭେଟିଲେ । ୧୯ ।

୨୦ଶ ପଦ—"ହନୁମାନ୍" ବିପ୍ର "ତୁଲ୍ୟ" କରାଦ୍ରି ପାନ ( ହସ୍ତରେ
ପାଦତୁଲ୍ୟ ପର୍ବତ ) ଧାରଣ "କରି", ମାରଣ ( ମାରିବା ରୂପ ) ତର୍ପଣ
"କଲେ" । ପଦ ପ୍ରସ୍ତରଣ ( ପାଦପ୍ରକ୍ଷେପ ) "ମନ୍ଥପଦ ପ୍ରସ୍ତରତୁଲ୍ୟ"
ପ୍ରକାଶିଲା "ହସ୍ତରେ ପର୍ବତ ଧରି ପାଦରେ ମାଇଲା ଏହିଭାବ" । "ତଦ୍ଦ୍ୱାରା"
ଦେବତା ( ଦେବଗଣ ) ବିଶେଷ ( ବିଶେଷରେ ) ତୋଷ "ହେଲେ" ।
"ବିପ୍ର ତର୍ପଣରେ ଦେବଗଣ ସନ୍ତୁଷ୍ଟ ହେଲା ପ୍ରାୟ ରାକ୍ଷସ ମାରଣରେ ସନ୍ତୁଷ୍ଟ
ହେଲେ ଏହି ଭାବ" । ପିତାମହ ( ବ୍ରହ୍ମାଙ୍କର ) ଏ ମମତା ( ଏମନ୍ତ ବିଚାର )
"ହେଲା" । ମୋସୃଷ୍ଟିରେ ( ମୋ ସର୍ଜନାରେ ) ଏ ( ଏକଥା ) ଦେଖା ନ
ଥିଲା ( ଏବେ ଦେଖାଗଲା ) ବିମର୍ଦ୍ଦନ ( ମରଣରୁ ) "ଅସୁରଙ୍କ" ବପୁ
( ଶରୀର )ଉପରୁ ତଳକୁ ଆସି (ଆସିବାରେ) ବ୍ୟୋମକେଶ ( ମହାଦେବଙ୍କ )
ଆକାଶର ( କେଶ ଆକାଶରୁ ) ମଳିନ ପୁଷ୍ପ ନିକର ଖସି ପଡ଼ିଲା ପରି ଦିଶି
( ଦିଶିଲା ) "ଶିବମୁଣ୍ଡରୁ ବାସି ଫୁଲ ସବୁ ଖସି ପଡ଼ିଲା ପ୍ରାୟ ଅନୁମାନ ହେଲା
ଏହିଭାବ" । ୨୦ ।

ବର୍ଣ୍ଣିନା ଭାନୁ ହୋଇଣ ପ୍ରଭାତରେ ଦକ୍ଷିଣାୟନ ତେଜି ଉତ୍ତରା-
ୟଣ ବଳୁରେ । ବଡ଼ ଯୋଦ୍ଧା ଅଯୋଧ୍ୟାର ଉପରେ ଗମନ କର
ଭ୍ରମେ ଭରତ ଭ୍ରମେ ନିଶାରେ ସେ । ବାଟୁଳିଏଁ । ବିଘାତ କୁ ଖସି
ଅଳ୍ପ ମୂର୍ଚ୍ଛା । ବସୁଧାଭୃତେ ମୂର୍ଦ୍ଧାରେ ଧାରଣ ଉଠି ସତ୍ୱରେ ରାତ୍ରୀ
କେତେ ଅଛି କଲା ପୃଚ୍ଛା ସେ ।୨୧।

ତୁମ୍ଭେ କା ତରଳିର ନିଶୀଥିନୀ ତ ପଚାରୁ ଭରତ ଭାଷୁଁ ମାରୁତି
ଉକ୍ତି । କିଷିନ ଲଙ୍କାପୁରରେ ବାଦକୃତ ରାବଣରେ ରାମ ଲକ୍ଷ୍ମଣେ

---

୨୧ଶ ପଦ—ବର୍ଣ୍ଣିନା ( ଏମନ୍ତ ବର୍ଣ୍ଣନା କରିବାରେ ) ପ୍ରଭାତରେ ସେ ଭାନୁ ( ସୂର୍ଯ୍ୟ ) ହୋଇଣ ( ହୋଇ ) ଦକ୍ଷିଣାୟନ ( ଦକ୍ଷିଣମାର୍ଗ ) ତେଜି ( ଛାଡ଼ି ) ଉତ୍ତରାୟଣ ( ଉତ୍ତର ମାର୍ଗରେ ଯିବାକୁ ) ବଳୁରେ (ବିଚାରକଲା) । "ସୂର୍ଯ୍ୟ ଯେରୂପ ଦକ୍ଷିଣାୟନ ଉତ୍ତରାୟଣ ଗତି କରନ୍ତି ସୂର୍ଯ୍ୟତୁଲ୍ୟ ହନୁମାନ୍ ପର୍ବତମୁଣ୍ଡାଇ ଦକ୍ଷିଣ ଛାଡ଼ି ଉତ୍ତରେ ଯିବାକୁ ବିଚାରିଲେ ଏହି ତତ୍ପର୍ଯ୍ୟାର୍ଥ" । ବଡ଼ଯୋଦ୍ଧା ( ପ୍ରଧାନବୀର ) ସେ ( ହନୁମାନ୍ ) ଭ୍ରମେ ( ଭ୍ରମରେ ) ଅଯୋଧ୍ୟାର ଉପରେ ( ଅଯୋଧ୍ୟାପୁର ଉପରେ ଶୂନ୍ୟରେ ) ଗମନକର ( ଗଲେ ) । ଭରତ ( ରାମଙ୍କଭାଇ ଭରତବୀର ) ନିଶାରେ ( ରାତିରେ ) ଭ୍ରମେ ( ପୁରମଧ୍ୟରେ ଭ୍ରମଣ କରୁଥିଲେ ) । "ହନୁରଯିବା ଶବ୍ଦଶୁଣି" ଏତେବେଳରେ ଆକାଶରେ କିଏ ଯାଉଛି ଏମନ୍ତବିଚାରି" । ବାଟୁଳିଏ ( ବାଟୁଳି ଗୋଟାଏ ) ବିଘାତ ( ମାରିବାରୁ ବାଜନ୍ତେ ) "ହନୁମାନ୍" କୁ ( ପୃଥ୍ୱୀରେ ) "ଖସିପଡ଼ି" ଅଳ୍ପମୂର୍ଚ୍ଛା "ଯାଇ" ମୂର୍ଦ୍ଧାରେ ( ମସ୍ତକରେ ) ବସୁଧାଭୃତେ ( ପର୍ବତକୁ ) ଧାରଣ "କରି" ସତ୍ୱରେ ( ବେଗେ ) ଉଠି କେତେ ରାତିଅଛି ବୋଲି ପୃଚ୍ଛାକଲା ( ପଚାରିଲେ ) । ୨୧ ।

୨୨ଶ ପଦ—"ତୁମ୍ଭେ" ତତ୍ପର (ଚଞ୍ଚଳ) ହେଉଛ "କାହିଁକି" ? [illegible] ( କଥା କ'ଣ ) ? ନିଶୀଥିନୀ (ରାତି) "କେତେଅଛି ବୋଲି" ପଚାରୁଛ ? ଭରତ ଭାଷୁଁ (ଏମନ୍ତ ପଚାରନ୍ତେ) ମାରୁତି (ହନୁମାନ୍) ୧ ଉକ୍ତି

---

୧—ବ୍ୟାହାରଅଭିଲପିତଂ ଲପିତଂ ବଚନଂ ବଚଇତ୍ୟମରଃ ।

ଭେଦିତ ଶକ୍ତ୍ୟ ସେ । ବଧୂ ଗ୍ଲୁହିଁ । ସ୍ୱରକୈକେୟୁ ଘଷେ ରଭସେ ।
ବିଗ୍ରହ ଡାକିନୀସ୍ଥାନେ କିମର୍ଥେ ଘିଷ ଏମାନେ ଶୋଭା ଅର୍ଜୁନାରି
ମୃଗ କେ ସେ ଯେ ।୨।

ବାୟୁଜ କଲା ଉତ୍ତର ରକ୍ଷସ୍ଥାନ ଲଙ୍କାପୁର ରାମ ଯାହା ଶରୀରେ
ଆଶ୍ରିତା । ବିଭ୍ରାନ୍ତେ ଯେ କଣି ରାମ ବନେ ବନ୍ଧ୍ୟାଉଁ ରାମ ରାବଣ
ନେଲା ରେଭରି ସୀତା ଯେ । ବ୍ରହ୍ମାଣ୍ଡରେ । ବିଦର୍ଭ ସେ ଦାଶରଥି ରାମ ।

---

( କହିଲେ ) ବିଷମ (ଦୁର୍ଗମ) ୨ଲଙ୍କାପୁରରେ ୩ରାମ ଲକ୍ଷ୍ମଣେ (ରାମଲକ୍ଷ୍ମଣ-
ଦ୍ୱାରାରେ ) ବାଦକୃତ ( ରାବଣ ସଙ୍ଗେ ଯୁଦ୍ଧ କରୁଥିଲେ ) ରାବଣର ଶକ୍ତି
"ଅସ୍ତ୍ରରେ" ଲକ୍ଷ୍ମଣେ ( ଲକ୍ଷ୍ମଣ ) ଭେଦିତ ( ବିନାଶିତ ) "ହୋଇଅଛନ୍ତି" ।
"ଏମନ୍ତ ଶୁଣି ଭରତ" ବଧୂସ୍ୱହି ( ଚନ୍ଦ୍ରଙ୍କୁ ରାମ ଲକ୍ଷ୍ମଣ ବୋଲନ୍ତି ତାଙ୍କ-
ଠାରେ ଶସ୍ତ୍ରଭେଦ ହେବାର ଦେଖା ଯାଉନାହିଁ ଏମନ୍ତ ଭାଳି ଚନ୍ଦ୍ରକୁ ଗୃହି )
ସ୍ୱର କୈକେୟୁ ( ଭରତ ) ରଭସେ ( ବେଗରେ ) ଘଷେ ( କହିଲେ )
କିମର୍ଥେ ( କି ନିମିତ୍ତେ ) ? "ଲଙ୍କାପୁରେ ବାଦକୃତ ହୋଇଲ" ଡାକିନୀସ୍ଥାନେ
( ଡାକିନୀ ସ୍ଥାନରେ ) "ଲଙ୍କାରୁ ଡାକିନୀ କହନ୍ତି" ବିଗ୍ରହ ( ଯୁଦ୍ଧ )
"କଲେ" । "ରାମ ଶର" ଶୋଭା ଅର୍ଜୁନାରି ମୃଗ ଏମାନେ ( ଏମାନଙ୍କ
ମଧ୍ୟରେ ) କେ ( କେଉଁ ) "ରାମ" ସେ ଘିଷ ( କହ ) ।୨।

୨୩ଶପଦ—ବାୟୁଜ (ହନୁମାନ୍) ଉତ୍ତରକଲା ଲଙ୍କାପୁରେ "ପଦରେ"
ରକ୍ଷସ୍ଥାନ ( ଅସୁରଙ୍କର ବାସସ୍ଥାନ ) । ରାମ ( ଶୋଭା ) ଯାହାଶରୀରେ
( ଯାହାଙ୍କ ଦେହକୁ ) ଆଶ୍ରିତା ( ଆଶ୍ରା କରିଅଛି ) ଯେ ବିଭ୍ରାନ୍ତେ ( ବିଭ୍ର-
ହେଲାପରେ ) ରାମ ( ପଶୁରାମଙ୍କୁ ) କଣି ( ଜୟକରି ) ବନେ ( ବନବାସ-
କାଳେ ) ରାମ ( ମାୟାମୃଗକୁ ) ବନ୍ଧ ଧାଉଁ ( ବନ୍ଧିବାନିମିତ୍ତ ଯତ୍ନେ )
ରାବଣ "ଏହି ଅବସରେ କୁଟୀମଧ୍ୟରୁ" ସୀତା ( ସୀତାଦେବୀଙ୍କି ) ରେଭରି
( ବଳାତ୍କାରେ ହରଣକରି ) ନେଲା । ସେ ରାମ ଦାଶରଥି ( ଦଶରଥରାଜାର-

---

୨—ଲଙ୍କାରକ୍ଷପୁରୀ ଶାଖା ଡାକିନୀ କୁଳଟାସୁ ଚ ନଡ ମେଦିନୀ ।
୩—ରାମଃ ପଶୁବିଶେଷସ୍ୟ କ୍ଷାନ୍ତଦାଗ୍ନେ ହଲ ୟୁଧେ ।
ରାଘବେ ନାଶିତଶ୍ୱେତ ମନୋଜ୍ଞେଷୁ ଚ ଇତ୍ୟବିଶ୍ୱଃ ।

ବାଳି ବଧି ସୁଗ୍ରୀବର ମିତ୍ରତା କୃତବାନର ସିନ୍ଧୁ ତର ଶୈଳେ ପରେ ବାମ ଯେ । ୨୩ ।

ବାଚକ ତାଙ୍କ ଅନୁଜ ଭରତ ମୁଁ କ ଆଶ୍ଚର୍ଯ୍ୟ ଶୁଣିଲ ହରି-ବଲ୍ଲଭୀ ନେଇ । ବଞ୍ଚକ ଅଚ୍ଛି ଲୁଚ୍ଛିଲ ତୃଣାଙ୍କୁରେ ଭେଦ ହୋଇ ଗଣ୍ଡକର ଦେହ ତଥା ଏହି ଯେ । ବାତସୁତ । ବୋଲେ ଏମନ୍ତ

---

ପୁଅବୋଲି ) ବ୍ରହ୍ମାଣ୍ଡରେ ବଦିତ ( ଖ୍ୟାତ ) "ହୋଇଅଛନ୍ତି" "ସେହିରାମ" ବାଳି ( କିଷ୍କିନ୍ଧ୍ୟାରାଜାଙ୍କୁ ) ବଧି ( ମାରି ) ସୁଗ୍ରୀବର ( ବାଳି ଭାଇ ସୁଗ୍ରୀବସଙ୍ଗେ ) ମିତ୍ରତା "ସ୍ଥାପନକରି" କୃତବାନର ( ବାନରବଳ ସଙ୍ଗ-ଘେନ ) ଶୈଳେ ( ପଥରରେ ) ସିନ୍ଧୁ ( ସାଗରବାନ୍ଧ ) ତରି ( ପାର-ହୋଇଯାଇ ) ପରେ ( ଶତ୍ରୁ ରାବଣର ) ବାମ ( ପ୍ରତିକୂଳ ବିପକ୍ଷ ) "ହୋଇଅଛନ୍ତି" । ୨୩ ।

୨୪ଶ ପଦ—"ହନୁମାନର କଥା ଶୁଣି ଭରତ" ବାଚକ ( କହିଲେ ) ତାଙ୍କ ( ସେହି ରାମଙ୍କର ) ଅନୁଜ ( ସାନଭାଇ ) ମୁଁ "ମୋନାମ" ଭରତ କ ଆଶ୍ଚର୍ଯ୍ୟ "କଥା" ଶୁଣିଲି ହରିବଲ୍ଲଭୀ ( ସିଂହଭାର୍ଯ୍ୟାକୁ ) ବଞ୍ଚକ ( ଶୃଗାଳ ) ନେଇ ( ଚୋରାଇ ନେଇ ) ଲୁଚିଲଅଛି । "ରାମ ଭାର୍ଯ୍ୟାକୁ ରାବଣ ନେବା କଥା ଏହିରୂପ ଏହିଭାବ" । ତୃଣାଙ୍କୁରେ ( ବାଲୁଙ୍ଗା ଧାନ-ଶିଙ୍ଗରେ ) ଗଣ୍ଡକର ( ଗଣ୍ଡାଜୀବର ) ଦେହ ଭେଦ ହୋଇ ( ହେଲାପ୍ରାୟ ) ଏହି ( ଲକ୍ଷ୍ମଣଙ୍କ ଶକ୍ତିଭେଦ କଥା ) ତଥା ( ଯେହିରୂପ ଆଶ୍ଚର୍ଯ୍ୟ ) । "ଏହା-ଶୁଣି" ବାତସୁତ ( ହନୁମାନ ) ବୋଲେ ( କହିଲେ ) ଏମନ୍ତ ନୁହେ ( ତୁମ୍ଭେ କହିବା କଥା ଏରୂପ ନୁହେ ) ଏମନ୍ତ ( ଏରୂପ ) "ଯଥା"—"ପୂର୍ବେ" ବାରିଧିରେ ( ସମୁଦ୍ରରେ ) ଲକ୍ଷ୍ମୀ ଗୁପ୍ତ "ହୋଇଥିଲେ" ମନ୍ଦର ( ମନ୍ଦର ପର୍ବତଦ୍ୱାରା ) ମନ୍ଥନେ ( ମନ୍ଥନ କରିବାରେ ) ଲକ୍ଷ୍ମୀ ଖ୍ୟାତ ହୋଇ-ଥିବାପ୍ରାୟ ସୀତା ସମୁଦ୍ରମଧ୍ୟରେ ଗୁପ୍ତ ହୋଇଅଛନ୍ତି ମନ୍ଦର ( ମନ୍ଦରାବଣର ) ମନ୍ଥନରେ ( ବିନାଶରେ )[୧] ଲକ୍ଷ୍ମୀ ( ସୀତା ) ଖ୍ୟାତ (ପ୍ରକଟ) "ହେବେ" ।

---

୧—ରାଘବନ୍ତେ ଭବେତ୍ସୀତା ରୁକ୍ମିଣୀ କୃଷ୍ଣଜନ୍ମନି ଅନ୍ୟେଷୁ ଚାବତାରେଷୁ ବିଷ୍ଣୋରେଷାନପାୟିନୀ । (ବିଷ୍ଣୁପୁରାଣବଚନାତ୍) ।

ନୋହେ ଏମନ୍ତ । ବୀରଧିରେ ଲକ୍ଷ୍ମୀ ଗୁପ୍ତ ମନ୍ଦରମନ୍ଥନେ ଖ୍ୟାତ ମେରୁ ଭେଦେ ଐରାବତଦନ୍ତ ଯେ । ୨୪ ।

ବିଷାଦ ସାଦରେ ବେନି ପରାକ୍ରମ ହାନି ଘେନି ବଡ଼ାଇ ରଖି ନିୟମ କଲେ । ବିକମି ନଭେ ପାବନି ପ୍ରବେଶ ଯୁଦ୍ଧ-ଅବନୀ ବେନି ମନ୍ତ୍ରୀ ଗିରି ଉଚ୍ଚାରିଲେ ଯେ । ବୃକ୍ଷ ଚହ୍ନି । ବିମର୍ଦ୍ଦି ତୋଳି ତହିଁର ପତ୍ର । ବିହନ୍ତେ ନାସ ଅଜ୍ଞାନ ନାଠ ମ୍ଲାନ କ୍ଷତଚହ୍ନ ଉଠିଲେ ଶୀଘ୍ରେ ସୁମିତ୍ରାସୁତ ଯେ । ୨୫ ।

---

**ଐରାବତ** ( ହସ୍ତୀ ) ଦନ୍ତ ମେରୁ "ପର୍ବତରେଁ" ଭେଦେ ( ଭେଦିଲାପ୍ରାୟ- **ସ୍ୱର୍ଣ** ଶକ୍ତି ଲକ୍ଷ୍ମଣଙ୍କ ଦେହରେ **ଭେଦିଲା** ) । ୨୪ ।

୨୫ଶ ପଦ—ବେନି ( ଭରତ ହନୁମାନ୍ ଦୁହେଁ ) ପରାକ୍ରମହାନି ଘେନି ( ପରାକ୍ରମ ନାଶହିବା ସକାଶରୁ ) ବିଷାଦ ( ଦୁଃଖିତ ମନରେ ) ସାଦରେ ( ଆଦର ସହିତ ) "ପରସ୍ପର" ବଡ଼ାଇ ( ବଡ଼ପଣ ) ରଖି ନିୟମ ( ଶପଥ ) କଲେ । "ଏ କଥା କେହି କାହା ଆଗରେ ନ କହିବା ଏହି ଭାବ" "ଭରତ କହିଲେ ମୋ ବଜ୍ର ବାଟୁଳିରେ ଗିରି ଫୁଟିଯାଏ, ମର୍କଟ ଗୋଟାକର କିଛି ନ ହେଲା ଏହା ଶୁଣି ବୀରଗଣ ନିନ୍ଦା କରିବେ । ହନୁମାନ୍ କହିଲେ ମୋ ପରି ବୀରର ଦେହ ବଜ୍ରରେ କିଛି ନ ହୁଏ ସାମାନ୍ୟ ବଟୁଳିରେ ମୂର୍ଚ୍ଛି ଗଲି ଏହା ଶୁଣି ବୀରମାନେ ନିନ୍ଦିବେ ଏହି ଅଭିପ୍ରାୟ" । "ତଦନ୍ତେ" ପାବନି ( ହନୁମାନ୍ ) ନଭେ ( ଆକାଶରେ ) ବିକ୍ରମି "ଯାଇ" ଯୁଦ୍ଧ ଅବନୀ ( ଯୁଦ୍ଧଭୂମିରେ ) ପ୍ରବେଶ "ହେଲେ" । ବେନିମନ୍ତ୍ରୀ (ଜାମ୍ବବସୁଷେଣ) "ହନୁମାନର ମସ୍ତକରୁ" ଗିରି ଉଚ୍ଚାରିଲେ ( ଓହ୍ଲାଇ ରଖିଲେ ) । ବୃକ୍ଷ ( ଔଷଧ **ବୃକ୍ଷ** ) ଚହ୍ନି ତହିଁର ପତ୍ର **ବିମର୍ଦ୍ଦି ( ମଳିଦେଇ ) ନାସା ବିହନ୍ତେ** ( ଦିଅନ୍ତେ ) **ଅଜ୍ଞାନ** ( ଲକ୍ଷ୍ମଣଙ୍କର **ଅଚେତନ** ) **ମ୍ଲାନ "ଗଲା" "ଜ୍ଞାନ ଜନ୍ମିଲା ଏହି** ଭାବ ।" କ୍ଷତ ( ଘାଆର ) ଚହ୍ନ ମ୍ଲାନ ( ଲୁଚିଗଲା ) । ସୁମିତ୍ରାସୁତ ( ଲକ୍ଷ୍ମଣ ) ଶୀଘ୍ରେ ( ବେଗେ ) ଉଠିଲେ । ୨୫ ।

ବସନ୍ତେ ସେ ଜଡ଼ ଶକ୍ରଘାତ ତ୍ରୁଟି ବିକାଶନ୍ତ ରାମ ନଳିନ ମଳିନ ଆସ୍ୟ । ବିରସ ତେଜ କୁମୁଦପ୍ରଭୃତି ଲଭିଲେ ମୋଦ ଲକ୍ଷଣଯୁକ୍ତ ଜ୍ୟୋତି ପ୍ରକାଶ ସେ । ବାର୍ତ୍ତା ଶୁଣି । ବିଶ୍ରବାସୁତ ଖର ନିଃଶ୍ୱାସୀ । ବିଧାତାଦ୍ରି ଶୃଙ୍ଗ ସ୍ଥାନେ ଥୋଇ ଯାଉଁ ହନୁମାନେ ସୈନ୍ୟ ପେଷୁଁ ଲାଙ୍ଗୁଳେ ସେ ଧ୍ୱଂସି ସେ । ୨୬ ।

ବିଭାବରୀ ଶେଷକାଳେ ସ୍ଫୁରିତ ଶଙ୍ଖ ମଙ୍ଗଳେ ସ୍ଥୂଳଜଙ୍ଘକୁ ତାମ୍ରଳେ ଚୋଷି । ବିରଗିଲା ଗଲାକ୍ଷଣେ ଚମୂସଙ୍ଗେ ଶୀଘ୍ରବାଣେ

---

୨୬ଶ ପଦ—ସେ ( ଲକ୍ଷ୍ମଣ ) ହଠେ ବସନ୍ତେ ( ବସିବା ) "ବସନ୍ତ-କାଳ ହେଲ" । ଶକ୍ରଘାତ ( ଶତ୍ରୁର ଘାଆ ) ଜଡ଼ ( ତାଙ୍କର ଅଙ୍ଗନିର୍ଷ୍ଣି ) ଜଡ଼ ( ଶିଶିରକାଳ ହେଲ ) ତ୍ରୁଟି ( "ସେ ତ୍ରୁଟି ଯିବାରୁ ) ରାମ ( ରାମଙ୍କର ) ମଳିନ ( ଶୁଷ୍କ ) ଆସ୍ୟ ନଳିନ ( ମୁଖପଦ୍ମ ) ବିକାଶନ୍ତ ( ପ୍ରଫୁଲ୍ଲ ହେଲେ ) "ଶିଶିର ଅନ୍ତେ ବସନ୍ତ ଋତୁରେ ମଳିନ ନଳିନମାନେ ରାମ ( ରମଣୀୟ ) ହୋଇ ଫୁଟନ୍ତି" । କୁମୁଦ ( କୁମୁଦନାମା କପି ) କୁମୁଦ ( କୈରବ ହେଲ ) "ତାହାଙ୍କୁ" ପ୍ରଭୃତ ( ଆଦିକରି ) "ଫୁଲ ଆଉ କପିମାନେ" ବିରସ ତେଜ ମୋଦ ଲଭିଲେ ( ବିରସ ଛାଡ଼ି ହରଷ ହେଲେ ) । ଲକ୍ଷ୍ମଣ ଜ୍ୟୋତି ଯୁକ୍ତ ହୋଇ ପ୍ରକାଶ ହୁଅନ୍ତେ ( ଲକ୍ଷ୍ମଣ ତେଜୋବନ୍ତ ଦିଶନ୍ତେ ) "ଲକ୍ଷଣଯୁକ୍ତ ରାମଙ୍କର ଜ୍ୟୋତି ବସନ୍ତରେ ଚନ୍ଦ୍ରଜ୍ୟୋତି ପ୍ରକାଶିଲା ପ୍ରାୟ ହୁକାଶିଲ" । "ଚର ମୁଖରୁ ଏମନ୍ତ" ବାର୍ତ୍ତା ଶୁଣି ବିଶ୍ରବାସୁତ ( ରାବଣ ) ଖର ନିଃଶ୍ୱାସୀ ( ଦୀର୍ଘ ନିଃଶ୍ୱାସ ଛାଡ଼ିଲା ) । ହନୁମାନେ ( ହନୁମାନ୍ ) ବିଧାତାଦ୍ରି ଶୃଙ୍ଗ ( ଗନ୍ଧମାଦନ ପର୍ବତ ଶୃଙ୍ଗକୁ ) ସ୍ଥାନେ ( ଯଥା ସ୍ଥାନରେ ) ଥୋଇ ( ଥୋଇବାପାଇଁ ) ଯାଉଁ ( ଯାଆନ୍ତେ ) ସୈନ୍ୟ ପେଷୁଁ ( ହନୁମାନଙ୍କୁ ମାରି ପର୍ବତ ଛଡ଼ାଇ ଆଣିବାପାଇଁ ରାବଣ ସୈନ୍ୟ ପଠାନ୍ତେ ) ସେ ( ହନୁମାନ୍ ) "ତାଙ୍କୁ" ଲାଙ୍ଗୁଳେ ( ଲାଙ୍ଗୁଳରେ ଗୁଡ଼ାଇ ) ଧ୍ୱଂସି ( ମାରି ପକାଇଲା ) । ୨୬ ।

୨୭ଶ ପଦ—ବିଭାବରୀ ଶେଷକାଳେ ( ପ୍ରଭାତରେ ) ମଙ୍ଗଳ ଶଙ୍ଖ ସ୍ଫୁରି ( ବାଜିଲ ) "ରାବଣ" ସ୍ଥୂଳଜଂଘକୁ ( ସ୍ଥୂଳଜଂଘନାମା ପୁତ୍ରକୁ )

ମର୍କଟ ପ୍ରକଟ ହେବା ତ୍ରାସି ସେ । ବୃକ୍ଷ ଗ୍ରାବ । ବନ୍ଧ ଓପାଳିଲ ଆସି ମାଳ । ବିଶ୍ୱକର୍ମାସୁତ ହନୂମନ୍ତ କପିପତିସୂନୁ ସମ୍ବରବେ ଆରମ୍ଭେ ଭୂମୂଳ ଯେ । ୨୭ ।

ବଧି ନୁଦ ବାଳିପୁତ୍ର କେଶ୍ୟାତ୍ମାନ ଚନ୍ଦ୍ରନେନ ମୋଚକକର୍ଣ୍ଣି ଧାବନ ଶାର୍ଦ୍ଦୂଳ । ବଳିପୁଷ୍ଟ ନଳ ତହିଁ ଉଲୂକେ ବିଘାତ ବନ୍ଧ ଧରି ଏହି ବେନ ସ୍ତନଶୀଳ ଯେ । ବିଲୋକରେ ଘୋର ମୁକ୍ତଜଙ୍ଘ ଘୋର-

---

ତାମ୍ବୂଳେ ( କର୍ପୂର ଯୁକ୍ତ ପାନ ଦେଇ ) ଚୋଷ ( ଚୋଷବନ୍ତ ) ବରିଲେ ( ଯୁଦ୍ଧକୁ ପଠାଇଲେ ) । ସେ ୧ ଚମୂସଙ୍ଗେ ( ସୈନ୍ୟ ସଙ୍ଗେ ଘେନି ) ଗଲ-କ୍ଷଣେ ( ଗିବା ମାତ୍ରକେ ) ତୀକ୍ଷ୍ଣବୋଣେ (ସୁତୀକ୍ଷ୍ଣ ବାଣମାନ) ପ୍ରକଟ ହେବା ( ଯୁଦ୍ଧ କରୁଥିବା ) ମର୍କଟ ( କପିମାନଙ୍କୁ ) ତାସି ( ମାରିଲେ ) । "ତା ଦେଖି" ମାଳ "ସେନାପତି" ବୃକ୍ଷ ଗ୍ରାବ ( ତରୁଶୀଳ ) ବନ୍ଧ ( ଧରି ) ଆସି ଓପାଳିଲେ । ବିଶ୍ୱକର୍ମାସୁତ ( ନଳ ) ହନୂମନ୍ତ ( ହନୂମାନ୍ ) କପିପତିସୂନୁ ( ଅଙ୍ଗଦ ) ସମ୍ବରବେ ( ଏମାନେ ସମାରୋହରେ ଆସି ) ୨ ଭୂମୂଳ ( ଘୋର ଯୁଦ୍ଧ ) ଆରମ୍ଭେ ( ଆରମ୍ଭିଲେ ) । ୨୭ ।

୨୮ଶ ପଦ—ବାଳିପୁତ୍ର ( ଅଙ୍ଗଦ ) ବଧି ନୁଦ ( ରାହୁପ୍ରାୟ ଯାଇ ) "ଚନ୍ଦ୍ର ତୁଲ୍ୟ" ଚନ୍ଦ୍ରନେନ "ରାକ୍ଷସକୁ ଗ୍ରାସ କରନ୍ତେ ସେ" କେଶ୍ୟାତ୍ମାନ ( ନଷ୍ଟେଜ ) "ହୋଇମଳ" ଧାବନ ( ହନୂମାନ୍ ) ଶାର୍ଦ୍ଦୂଳ ( ବ୍ୟାଘ୍ରପ୍ରାୟ ହୋଇ ) ମୋଚକକର୍ଣ୍ଣି ( ମୃଗ ତୁଲ୍ୟ ମୋଚକର୍ଣ୍ଣ ରାକ୍ଷସକୁ ) "ମାଡ଼ିବସି ମାଇଲା" । ତହିଁ ( ତା ମଧ୍ୟରେ ) ନଳ ବଳିପୁଷ୍ଟ ( କାକପ୍ରାୟ ଉଡ଼ିଯାଇ ) ଉଲୂକେ ( ପେଚ୍ଚାତୁଲ୍ୟ ଉଲୂକ ରାକ୍ଷସକୁ ) ଧରି ବିଘାତ ବନ୍ଧ ( ବିନାଶ କଲା ) । ଏହି ବେନ ( ମୋଚକର୍ଣ୍ଣ ଉଲୂକ ଏ ଦୁହେଁ ) ସ୍ତନଶୀଳ ( ରକ୍ତ ଗ୍ରୁଡ଼ିଲେ ) । ବିଲୋକରେ ( ଏହା ଦେଖି ) ଘୋରତର ( ମହାଭୟଙ୍କର ) ବର୍ଷାଘନ ( ବର୍ଷୁକ ମେଘ ) ୧ ଘନ ଶରଦରେ ( ନବଜଳ ଦେଲପ୍ରାୟ )

---

୧—ପୂତନାମାକନୀଚମୂ ବରୁଥିନୀତ୍ୟମରଃ ।

୨—ନଯୁଦ୍ଧଂ ବାହୁଯୁଦ୍ଧେ ସ୍ୟାଦ୍ଧୂମୂଳଂ ରଣସଙ୍କୁଳେ ଇତ୍ୟମରଃ ।

୧—ଘନଂ-ନବଜ୍ଜଂ ଶରଂ-ଜଳଂ ଦଦାତି ଇତି ଘନଶରଦାଃ ।

ତର । ବର୍ଷାଘନ ଘନ ଶରବରେ ଖର ମାଳ ଦୂର କୁନ୍ଦ ଫୁଟିଲ ଭୁହନ ଗିର ଯେ ।୨୮।

ବ୍ୟାଖ୍ୟାନ ଶିଶିରେ ଶୀର୍ଣ୍ଣ ସାରସ ପ୍ରଭୃତ ସ୍ୱନ ମଧୁମତ୍ତ ସେହି ଉପବନେ । ବିଭାବସୁବଂଶ ଯୋଗେ ପ୍ରକାଶମାନରୁ ନଗେ କାଳଖଣ୍ଡ ଶେଷ ଉଚ୍ଚକାଳେ ଯେ । ବୈଦେହୀଶ । ବ୍ୟାଖ୍ୟେଣ ପୃଚ୍ଛା-

ଙ୍କର ସ୍ଥୂଳକଂଘ ୨ ଘନଶରଦିବରେ ( ନବଡ଼ ଶରଦ୍ୱାରା ଖଣ୍ଡନ କରିବାରୁ ) ଘନ ଶରଦ୍‌ବର୍ଷେ ( ବର୍ଷାର ଶରଦ ଋତୁରେ ) ଖର ( ଶୀଘ୍ର ) ମାଳ ( ମାଳ-ବର୍ଣ୍ଣ ଦୂତ ହେଲୁଅଁଶ ) ମାଳ "ସେନାପତି" ଖର ( ଗଧ ପ୍ରାୟ ) ଦୂର "ହେଲ" ( ପଳାଇଲ ) । ଭୁହନ ଗିର ( ଭୁ ସ୍ୱାନ ଏହି ବାକ୍ୟ ) ଭୁହନ ( ହ୍ୱନରିତୁ ହେବାରୁ ) କୁନ୍ଦ "ନାମ ନୃଅପଦ" କୁନ୍ଦ ( କୁନ୍ଦପୁଷ୍ପ ଫୁଟିଲ ପ୍ରାୟ ) ଫୁଟିଲ (କ୍ଳାନ୍ତହେଲ) "ଅଙ୍ଗଦ ଚନ୍ଦ୍ରନେଇକୁ ହନୁମାନ୍ ମୈଚକ୍ରଣ୍ଣକୁ ନଳ ଉଲ୍‌କକୁ ମାରିବା ଢେଙ୍କି ସ୍ଥୂଳକଂଘ ଜଳଧାର ପ୍ରାୟ ଭୀଷଣ ଶରବୃଷ୍ଟି କରିବାରୁ ମାଳ ପଳାଇଲା କୁନ୍ଦକପି କ୍ଳାନ୍ତ ହୋଇ ପଡ଼ିଲା ଏହି ଫଳିତାର୍ଥ" । ୨୮ ।

୨୧ଶ ପଦ—ସାରସ ( ପଦ୍ମ ) ୧ ଶିଶିରେ ( ଶିଶିରଋତୁରେ ) ଶୀର୍ଣ୍ଣ "ହେଲପ୍ରାୟ" ସାରସ "ନାମ ନୃଅପଦ" ଶିଶିରେ ( ସ୍ଥୂଳ କଂଘର ଶିଶିର ବାଣରେ ) ଶୀର୍ଣ୍ଣ "ହେଲ" । ମଧୁମତ୍ତ ( ମଦ୍ୟ ପାନରେ ମତ୍ତରୂପେ ) ବ୍ୟାଖ୍ୟାନ "ହୋଇଥିବା" ସ୍ଥୂଳକଂଘ ମଧୁମତ୍ତ ( ବସନ୍ତଋତୁ ତୁଲ୍ୟ ହେବାରୁ ) ୨ ପ୍ରଭୃତ ( ତାହାର ପ୍ରକର୍ଷରେ ଧାର କଟିବା ) ସ୍ୱନ "ଯେ" ( ରବ ) ସେହି ପ୍ରଭୃତ ( ପରଭୃତ-କୋକିଳ ) ସ୍ୱନ ( ଧ୍ୱନି ) "ହେଲ" । ୩ ଉପବନେ (ଗ୍ରୀଷ୍ମଋତୁର ଗ୍ରୀଷ୍ମ ପ୍ରବଳ) ଯୋଗେ ବିଭାବସୁ ( ଅଗ୍ନି ) ନଗେ

୨—ଘନଂ-ନବଡଂ ଶରଂ-ବାଣଃ ତେ ଦ୍ୟତି-ଖଣ୍ଡୟତିତି-ଘନଶରଦଃ ।

୧—ଶିଶିରଂସ୍ୟାଦୃତୋର୍ଭେଦେ ତୁଷାରେଶୀତଳେଽବଦତ ।

୨—ପ୍ରଭୃତ-ପରଭୃତ-ଆକମ-ପରାକମ-ଦବସପଦ

ଦବସ୍ଥତ ଇତ୍ୟାଦ ଫଶ ହେଲ ଗୀତରେ ଏ ଦୋଷ ହୁଏ ନାହିଁ

ଏହାର ପରହାର ଗ୍ରନ୍ଥର ଆଦ୍ୟରେ ଦିଆଯାଇ ଅଛି ।

୩—ଉଷ୍ଣ ଉଷ୍ଣାଗମ ସ୍ତପ ଇତ୍ୟମରଃ ।

କଲେ ଏ କେ । ବଳିଲା କୁମ୍ଭକର୍ଣ୍ଣରୁ ଏତ ଇନ୍ଦ୍ରଜିତଠାରୁ ରଥ ଆଣି ପର୍ବତରେ ଟେକେ ଯେ ।୨୯।

ବଳକ୍ଷୟୋତ୍ଥିତ ଯୋଗ ଧୁଆଁଇ ସେନାନୀବର୍ଗ ଉପୁଜାଇଲା ଇତର କୀର୍ତ୍ତି । ବିଖ୍ୟାତ ଉତ୍ତର ଇନ୍ଦୁମନ୍ତ୍ରୀ ନନ୍ଦନ ଏ ଇନ୍ଦୁମନ୍ତ ତପ-ପତି ଗତି ନତି ଯେ । ବିଧ୍ୱଂସନ । ବିଭୁ ଦରଶନ ଦରଶିରେ ।

---

( ପର୍ବତରେ ) ପ୍ରକାଶ ମାନରୁ ( ପ୍ରକାଶ ହେବାରୁ କି ଲାଗିଯିବାରୁ ) ବଂଶ ( ବାଉଁଶ ଆଦି ବୃକ୍ଷ ଜନ୍ମିଗଲା ପ୍ରାୟ ) ବିଭୁବସୁ ବଂଶ ( ରାମଙ୍କ ) ତପ ବଳେ ( ତପସ୍ୟାର ବଳରେ ବା ପ୍ରତାପ ଦଳରେ ) ବଂଶ ( ବାଉଁଶ ଧନୁରେ ) ବିଭୁବସୁ ( ଅଗ୍ନି ଶର ) ଯୋଗେ ( ସଂଯୋଗ କରି ) ନଗେ ( ସୁବେଳ ପର୍ବତ ଉପରେ ) ପ୍ରକାଶମାନରୁ ( ପ୍ରକାଶ ହେବାରୁ ) କାଳସ୍ଥିତି ( ବର୍ଷା ଆଦି ଛଅ ଋତୁର ଗତିପତି ) କାଳସ୍ଥିତି ( ସ୍ଥୂଳଜଙ୍ଘର ମୃତ୍ୟୁ କାଳ ) ଶେଷ ( ସମାପ୍ତ ) "ହେଲା" । "ରାମଚନ୍ଦ୍ର ସ୍ଥୂଳଜଙ୍ଘକୁ ଅଗ୍ନି ଶରରେ ଦଗ୍ଧ ପକାଇଲେ ଏହି ଭାବ" । ବୈଦେହୀଶ ( ରାମଚନ୍ଦ୍ର ) ବିଭୀଷଣେ ( ବିଭୀଷଣଙ୍କୁ ) ପୁଚ୍ଛା କଲେ ( ପଚାରିଲେ ) ଏ କେ ( ଏ ରାକ୍ଷସ କିଏ ) ? । ଏତ କୁମ୍ଭକର୍ଣ୍ଣରୁ ( କୁମ୍ଭକର୍ଣ୍ଣଠାରୁ ) ଇନ୍ଦ୍ରଜିତଠାରୁ ବଳିଲା ( ବୀର ପଣରେ ବଳିଗଲା ) । "ଯେଣୁ" ରଥ ଆଣି ପର୍ବତରେ ଟେକେ ( ସୁବେଳ ପର୍ବତରେ ଟେକିଲା ) । ୨୯ ।

୩୦ଶ ପଦ— ସେନାନୀବର୍ଗ ( ସେନାନୀସମୂହ ) ଧୁଆଁଇ ( ଧୁଆଁପଳାଇଲେ ) ବଳ କ୍ଷୟୋତ୍ଥିତଯୋଗ ଉପୁଜାଇଲା ( ବଳର କ୍ଷୟକଲା ) । ଇତର [1] କୀର୍ତ୍ତି ( ଅଳ୍ପ ଯଶ ଏ କି ) । "ଏମନ୍ତ ରାମଚନ୍ଦ୍ର ବୋଲନ୍ତେ ବିଭୀଷଣ" ଉତ୍ତର ବିଖ୍ୟାତ ( ଉତ୍ତର ଦେଲା ) । ଏ "ରାବଣ ଭାର୍ଯ୍ୟା" ଇନ୍ଦୁମନ୍ତ୍ରୀ ନନ୍ଦନ, ଇନ୍ଦୁମନ୍ତ ( ଚନ୍ଦ୍ର ପ୍ରାୟ କୀର୍ତ୍ତିମନ୍ତ ) ସେ ତପ ( ସୂର୍ଯ୍ୟ ) ପରି ନତି ( ପ୍ରଣିପାତ ) ଗତି ( ଗମନ ) କରେ । "ସୂର୍ଯ୍ୟ ତୁଲ୍ୟ ଜଗତରେ ଭ୍ରମଣ କରେ ଏହି-

---

୧—କୀର୍ତ୍ତିଃ ପ୍ରସାଦଯଶସୋଃ ବିସ୍ତାରେ କର୍ଦ୍ଦମେଽପି ଚ ଇତି ମେଦିନୀ ।
ଦାନାଦି ପ୍ରଭବା କୀର୍ତ୍ତିଃ ଶୌର୍ଯ୍ୟାଦି ପ୍ରଭବା ଯଶଃ ଇତି ପ୍ରଭେଦଃ ।

ବୋଲାଇ ଏ ସ୍ଥୂଳଜଙ୍ଘ ଠୁଳ ସକଳ ପ୍ଲବଙ୍ଗ ବଳେ ଆଣି କଲା ଏକା-
ଠାବରେ ସେ । ୩୦ ।

ବିଦାରି ହୋଇବା ଗାତ୍ର କରାଇ କଣ୍ଟୁରାପର ଋଜ ପାତ
ତଥା ରାବଣି ଏ । ବୋଲନ୍ତେ ରାମ ପ୍ରତ୍ୟୁତ୍ତର ରହିଲା ବୃକ୍ଷମାତର ହେଲା
ପଲାଶ ହତ ସମୟେ କହେ । ବାର୍ତ୍ତା ପାଇ । ବିଷ୍ଟରତା କୈକଷା-

---

ତ୍ମଜ" । ହେ ବିଭୁ "ଆମଙ୍କେ" ଦରଶନ ( ଦର୍ଶନ ) ୨ ଦରଶରେ ( ଦର୍ଶ—ଅମାବାସ୍ୟା ତିଥି ହେବାରୁ ) "ତାହାର" ବିଧ୍ୱଂସନ ( ବିନାଶ ) "ହେଲା" । ଏ ସ୍ଥୂଳଜଂଘ ବୋଲାଇ ( ଏହାର ନାମ ସ୍ଥୂଳଜଂଘ ), ସକଳ ପ୍ଲବଙ୍ଗ ( ସବୁ ମର୍କଟଙ୍କୁ ) ବଳେ ( ବଳପୂର୍ବକ ) ଆଣି ଏକଠାବେ ଠୁଳ କଲା । "ଏଣୁ ଏ ମହାବଳିଷ୍ଠ ଏହି ଭାବ" । ୩୦ ।

୩୧ ଶ ପଦ—କଣ୍ଟୁରାପର ଋଜ ( ଚଉଁଆଠ ପଦର ଅଂଶୁ, ବାଇଡ଼ଙ୍କ ପରାଗ ଅଂଶୁ ) ପାତ ( ପଡ଼ିଲେ ) 'ଯେରୂପ' ଗାତ୍ର ବିଦାରି ହୋଇବା ( ଦେହ କଣ୍ଟାଇ ହୁଏ ) ତଥା ( ତଦ୍ରୂପ ) ଏ ରାବଣି ( ରାବଣର ପୁତ୍ର ମାନେ ) "ଶର ଲାଗିଲେ" ଗାତ୍ର ( ତାଙ୍କଦେହକୁ ) ବିଦାରି କରାଇ ( ବିଦାରି ପକାନ୍ତି ) "ରାକ୍ଷସ ପୁତ୍ରମାନେ ମହାଦୁଷ୍ଟ ଏମନ୍ତ ବିଭୀଷଣ" ବୋଲନ୍ତେ ( କହନ୍ତେ ) ରାମ ପ୍ରତ୍ୟୁତ୍ତର "କହେ" ସମୟେ ( କାଳେ ) ପଲାଶ ( ପତ୍ର ) ହତ ( ହେଲା ) ବୃକ୍ଷମାତର ରହିଲା । "କଣ୍ଟୁରି ଶର ତୁଲ୍ୟ ରାବଣର ପୁତ୍ରମାନେ ମଲେ କେବଳ କଣ୍ଟୁରି ବୃକ୍ଷ ତୁଲ୍ୟ ରାବଣ ରହିଲା ଏହି ଭାବ" । ବାର୍ତ୍ତା ପାଇ କୈକଷୀ ତନୟ ( ରାବଣ ) ବିଷ୍ଟରତା ( ଚଞ୍ଚଳ ଭାବ ବହି ) ବିହ୍ୱଳେ ( ବିହ୍ୱଳ ମନରେ ) ବିସ୍ତୃତ ପଦକୁ ( ଆକାଶକୁ ) ଚାହିଁ ( ଗ୍ରହାନ୍ତେ )

---

୨—ଅମାବାସ୍ୟା ତ୍ୱମାବାସ୍ୟା ଦର୍ଶସୂର୍ଯ୍ୟେନ୍ଦୁସଙ୍ଗମଃ । ଇତ୍ୟମରଃ ।
ଅମାସହ ଚନ୍ଦ୍ରାର୍କୌ ବସତୋଽସ୍ୟା ମିତ୍ୟମାବାସ୍ୟା । କିଂବା-
ଅମା-ସୂର୍ଯ୍ୟରଶ୍ମିଃ ତତ୍ର ଚନ୍ଦ୍ରୋ ବସତୀତି ଅମାବାସ୍ୟା ।
ଅମାନାମରବେରଶ୍ମି ସ୍ଥିତେନ୍ଦୁର୍ଲୋକେ ପ୍ରତିଷ୍ଠିତଃ ।
ତତ୍ର ସୋମୋ ବସତ୍ୟସ୍ମାଦମାବାସ୍ୟା ତତଃ ସ୍ମୃତା । ଇତ୍ୟନ୍ୟେ ।

ତନୟେ । ବସ୍ତ୍ର ପ୍ରଧିକୁ ବସ୍ତ୍ରେୟେ ଗୃହ୍ନୁଁ ଶଙ୍କି ଦେବତାଏ ନ ପୁଣି ସ୍ୱର୍ଗେ କରେ ବିଜୟେ ଯେ ।୩୧ ।

ବଦନ କରୁଁ ମସ୍ତକ ସେ ଭିଳେ ତର୍କେ ଅନ୍ଧ କି ଏକଣି ମୋତେ କେ ଆଉ ଧରୁ । ବିବେକ ଉଦୟ ଚିତ୍ତେ ଦଇବେ ହୋଇ ଉଚିତେ ଆଗ ରଘୁନାଥ ଶରୁଁ ତରୁ ଯେ । ବିପକ୍ଷରେ । ବିଜେ ସୁବେଳ ଗିରି ଉପରେ । ବତିଶପଦେ ରଞ୍ଜନ ଗ୍ରନ୍ଥ ବ୍ରିଷ୍ଟିବ ସୁଜନ କୃତ ଉପଇନ୍ଦ୍ର ବୀରବରେ ଯେ ।୩୨।

—:o:—

---

ଦେବତାଏ ( ଦେବଗଣ ) ଶଙ୍କି ( ଭୟ କଲେ ) ନ ପୁଣି "ଏ ଦୁଷ୍ଟ" ସ୍ୱର୍ଗେ (ସ୍ୱର୍ଗପୁରକୁ) ବିଜୟେ କରିବ (ବିଜେକରି ଆମ୍ଭଙ୍କୁ ନ ମାରଇତ) ।୩୧।

୩୨ଶ ପଦ—ସେ (ରାବଣ) ମସ୍ତକ ବଦନ କରୁଁ (ତଳକୁ ପୃହାନ୍ତେ) ସେ ( ମସ୍ତ ) ଭିଳେ ( ବିଚାରିଲେ ) ଅନ୍ଧକ ( ନାଗରାଜ ବାସୁକିଙ୍କ ) ତର୍କେ ( ତର୍କଇନ୍ତି ) "ସେ ତଳେ ଗୁଡ଼ି ଦେଲେ" ଏକଣି ମୋତେ ଆଉ କେ ଧରୁଁ ( କିଏ ଧରିବ ) । ଦଇବେ ଚିତ୍ତେ ( ତା ମନରେ ) ଏମନ୍ତ ବିବେକ ( ବିଚାର ) ଉଦୟ ହୋଇ ଉଚିତେ ( ଉଚିତରେ ) ଆଗ ରଘୁନାଥ ଶରୁଁ ( ରାମ ବାଣରୁ ) ତରୁ ( ଉଦ୍ଧାରପାଉ ) । ବିପକ୍ଷରେ ( ବିଶେଷରେ ସହାୟ ହୋଇଥିବା ) "ସୁଗ୍ରୀବାଦମାନେ" ସୁବେଳ ଗିରି ଉପରେ ବିଜେ "କରିଛନ୍ତି" ହେ ସୁଜନ ଏ ଗ୍ରନ୍ଥ ବତିଶ ପଦେ ରଞ୍ଜନ ( ଶୋଭିତ ) ବୀରବରେ ( ବୀର-ବର ) ଉପଇନ୍ଦ୍ର ( ଉପେନ୍ଦ୍ର ଭଞ୍ଜ ) କୃତ । ୩୨ ।

—:o:—

# ଅଷ୍ଟଚତ୍ୱାରିଂଶ ଛାନ୍ଦ

ରାଗ—ଚକ୍ରକେଳି କେଦାର

ବୋଇଲା । ବସି ପୁରେ ବଶୀଭୂତ ବାମାରେ ଲଙ୍କେଶ ଯେ ।
ବିପତ୍ତି ଉତ୍ପତ୍ତି ଏ ସମ୍ପତ୍ତି ଗଲା ନାଶ ଯେ । ୧ ।
ବୋଇଲା । ବଂଶତରୁଁ ପତ୍ର ବଂଶ ପଲ୍ଲବେ ତରୁଣ ଯେ ।
ବସନ୍ତ ରାମବଶରେ ହତ ପୁଣ ପୁଣ ଯେ । ୨ ।
ବୋଇଲା । ବ୍ୟାଧିଭାବ ସୀତାଭାବ ହୃଦୟେ ଉଦୟେ ଯେ ।
ବିଶେଷ ଶେଷ ହେବାର ଉପାୟ ନ ପାଏ ଯେ । ୩ ।

---

## ଅଷ୍ଟଚତ୍ୱାରିଂଶ ଛାନ୍ଦ

୧ମ ପଦ—"ସ୍ଥୂଳଜଂଘ ମରଣପରେ" ଲଙ୍କେଶ ( ରାବଣ ) ପୁରେ ( ପୁର ମଧ୍ୟରେ ) ବାମାରେ ( ମନ୍ଦୋଦରୀ ପ୍ରଭୃତି ସ୍ତ୍ରୀମାନଙ୍କଠାରେ ) ବଶୀଭୂତ "ହୋଇ" ବସି ବୋଇଲା । ବିପତ୍ତିର ( ସୀତାହରଣ ହେତୁକ ବିପଦ ) ଉତ୍ପତ୍ତି ( ଜାତ ) "ହେବାରୁ" ଏ ସମ୍ପତ୍ତି ( ମୋର ଏହି ଚତୁରଙ୍ଗ ବଳ ) ନାଶ ଗଲା ? ୧ ।

୨ୟ ପଦ—"ପୁଣି" ବୋଇଲା "ମୋହର" ବଂଶ ( ସନ୍ତାନ ) ବଂଶତରୁ ( ବାଉଁଶ ଗଛ ) ପତ୍ର (ପ୍ରାୟ ) "ହେଲା" ।* "ବଂଶତରୁ ଯେପରି" ବସନ୍ତ ବଶରେ ( ବସନ୍ତକାଳ ଯୋଗୁଁ ) ପୁଣ ପୁଣ ( ବାରଂବାର ) "ହୋଇ" ତରୁଣ ୧ ପଲ୍ଲବେ ( ତରୁଣ ପତ୍ର ସବୁ ) ହତ ( ବିନାଶ ହୁଅନ୍ତି ) "ସେପରି" ରାମ ବଶରେ ( ରାମଙ୍କ ଯୋଗୁଁ ) ତରୁଣ ( ଯୁବା ରୂପେ ) ପଲ୍ଲବେ ( ବିସ୍ତାର ପାଉଥିବା ) ମୋ ବଂଶ ପୁଣ ପୁଣ "ହୋଇ" ହତ ହେଲେ । ୨ ।

୩ୟ ପଦ—"ପୁଣି" ବୋଇଲା ସୀତା ଭାବ ( ସୀତାର ଅଭାବ-ସୀତା ମୋତେ ନ ଭଜିବା ) ଯେ ବ୍ୟାଧିଭାବ ( ରୋଗରୂପରେ ) ହୃଦୟେ (ମୋହର ଅନ୍ତଃକରଣରେ ) ଉଦୟେ ( ଉଦିତ ହୋଇ ରହିଅଛି ) ବିଶେଷ ( ବିଶେ-

---

୧—ପଲ୍ଲବୋ ବିଟପେ ଶାଖାୟାଂ ଚେଲେକଣ୍ଠଲଯୋଃସ୍ମୃତଃ ବିସ୍ତାରେଽପି କୁମୁଦାକରଃ ।

ବୋଇଲ । ବଲ୍ଲଭୀଶ୍ରେଷ୍ଠ ତା ଲଭି ଭରସା ରସାଇ ଯେ ।
ବିହିତ ହିତ ଭେଷଜ ସଜ୍ଜନିତ ଏହି ଯେ । ୪ ।
ବୋଇଲ । ବ୍ୟାଧିବୃଦ୍ଧି ସୀତ ମଧୁରତା ରତା ମୁଞ୍ଚ ଯେ ।
ବିଭୋ ବିଭୂତିବିଭୂଷା କନ୍ୟା ଦାନ ରଚ ଯେ । ୫ ।

ସ୍ତରେ ) "ସେହି ସୀତା ଅନ୍ତରବର" ଶେଷ ( ସୀତା ଉଜବାର ) ଉପାୟ "ଏକମାତ୍ର" ନ ପାଏ ( ନ ପାଇଲି ) ' ସୀତା ଙ୍କ ଉପାୟେ ମୋତେ ଭଜିବ ଅନ୍ତର୍ଗତ ଜନିତ କାମବ୍ୟାଧି ମୋହର ନାଶ ଯିବ ଏହି ଫଳିତାର୍ଥ' । ୩ ।

୪ର୍ଥ ପଦ—"ରାବଣଠାରୁ ଏମନ୍ତ ଶୁଣି" ତା ( ରାବଣରେ ) ୧ ବଲ୍ଲଭୀ ଶ୍ରେଷ୍ଠ ( ପାଟରାଣୀ ମନ୍ଦୋଦରୀ ) ଭରସା ଲଭି ( ପାଇ ) ରସାଇ ( ମନରଞ୍ଜାଇ ) ବୋଇଲ "ଯେରୂପ" ସଜ୍ଜନିତ ( ଉତ୍ତମ ଜାତ ) ଭେଷଜ ( ଔଷଧି ) "ରୋଗିର" ହିତ ବିହିତ ( ହିତ କରେ ) "ସେହିପରି" ଏହି ( ଅନ୍ତର୍ଗତ କାମବ୍ୟାଧିର ) ସଜ୍ଜନିତ ( ସାଧୁତା ଜନିତ ) ଭେଷଜ ହିତ ବିହିତ ( ହିତ କରିବ ) । ୪ ।

*ମ ପଦ—"ପୁଣି" ବୋଇଲ ୧ ସୀତା ( ଶର୍କରାର ) ୨ ମଧୁରତା ( ମଧୁରଗୁଣରେ ) ରତା ( ଅନୁରକ୍ତହେଲେ ) "ଯେରୂପ" ବ୍ୟାଧି ବୃଦ୍ଧି "ପାଏ" ମୁଞ୍ଚ ( ମଧୁର ନ ଖାଇଲେ ) "ରୋଗ ଛାଡ଼ିଯାଏ ସେହିପରି", ସୀତା ( ସୀତା ଦେବୀର ) ମଧୁରତା ( ମାଧୁରୀରେ ) ରତା ( ଅନୁରକ୍ତ ) "ହେଲେ" ବ୍ୟାଧି ( କାମବ୍ୟାଧି ) ବୃଦ୍ଧି "ପାଇବ" "ଅତଏବ" ମୁଞ୍ଚ ( ତାହାଙ୍କ ପରିତ୍ୟାଗ କର ) । ହେ ବିଭୋ ( ହେ ନାଥ ) ବିଭୂତି ଭୂଷା (ଜଟାଧାରୀର) ୩ କନ୍ୟା (ନାରୀକୁ) "ତାହାଙ୍କୁ" ଦାନ ରଚ ( ଦାନକର ) "କନ୍ୟାଦାନ ସୁକୃତରୁ ରୋଗ ଛାଡ଼ିଯିବ ଏମନ୍ତ ହେତ୍ୱାର୍ଥ ସ୍ଫୁଟ ହେଲ" ।

୧—ସପ୍ତତରେ ବଲ୍ଲଭୀ ହୁଏ ଭାଷାରେ ବଲ୍ଲଭୀ ହୁଏ ।
୧—ମତ୍ସ୍ୟଣ୍ଡିଃ ଫଣିତଂ ଖଣ୍ଡବିକାରେ ଶର୍କରାସିତେତ୍ୟମରଃ ।
୨—ମଧୁରୋ ସ୍ୱାଦୁଶୋଭନୌ ଇତି ବର୍ଣ୍ଣେ ।
୩—କନ୍ୟା କୁମାରିକାନାର୍ଯୋ ରୋଷଧିରାଶିଭେଦୟୋରଣ ମେଦିନୀ ।
*—ବାଚ୍ୟାତିଶାୟିନ ବେଙ୍ଗେ ଧ୍ୱନିସ୍ତତ୍କାବ୍ୟମୁତ୍ତମମିତି ସାହିତ୍ୟେ ।

ବୋଇଲ । ବନବାସିରସିକା ରସିକା ନୋହିଥିବ ଯେ ।
ବନ୍ଧୁଜୀବ ! ବୋଲିବାକୁ ବନ୍ଧୁ ଜୀବ ଭାବ ଯେ ।୭।
ବୋଇଲ ! ବାସ ବାସକରଙ୍ଗରୁ ରଙ୍ଗ ଇଚ୍ଛେ ଅଳି ଯେ ।
ବିଧୀରେ ବିଧିରେ ଶୋଭା ରୂପେ ଅଛ ଭୁଲି ଯେ ।୮।

---

୬ଷ୍ଠ ପଦ—"ପୁଣି" ବୋଇଲ "ହେ ସୀତା" ମହାରସିକା ହୋଇଥିବ ଏମନ୍ତ ମନରେ ଯେଣ ଭୁଲନ୍ତ, "ମୁଁ କହେ ସେ" ୧ ରସିକା ( ରସାଲା ) ନୋହିଥିବ । "ରସାଳା ହୋଇଥିଲେ ରାଜାଧିରାଜ ଯେ ତୁମ୍ଭେ ତୁମ୍ଭଠାରେ ଅନୁରାଗିଣୀ ନୋହନ୍ତି" ବନବାସି ( ବନରେ ବାସ କରୁଥିବା ଲୋକଠାରେ ) ରସିକା ( ଅନୁରାଗବତୀ ) "ହୋଇଥାନ୍ତା କି" ? ୨ ହେ ଜୀବବନ୍ଧୁ ! ( ପ୍ରାଣବନ୍ଧୁ—ହେ ପ୍ରାଣସଦୃଶା ) "ଏମନ୍ତ ତାଙ୍କୁ" ବୋଲିବାକୁ "ଯେ ଯେନ୍ତ ନାହିଁ" ଅଥବା—ହେ ବନ୍ଧୁ ହେ ଜୀବ "ଏମନ୍ତ" ବୋଲିବାକୁ "ତାଙ୍କୁ" ୩ ବନ୍ଧୁ ଜୀବ ( ବନ୍ଧୁଲି ପୁଷ୍ପପ୍ରାୟ ) ଭାବ ( ଭାବନା କର ) । ବନ୍ଧୁ ନୋହେ ଜୀବ ନୋହେ ✱ ଜୀବବନ୍ଧୁ ନୋହେ ।• କାହିଁକି ନା ? "ବନ୍ଧୁ ଜୀବପର ସେ ଏମନ୍ତ ସ୍ୱରୂ" । ୭ ।

୭ମ ପଦ—"ପୁଣି ଦୃଷ୍ଟାନ୍ତର ଦେଖାଇ" ବୋଇଲ "ସେ ଯେଉଁ ବନ୍ଧୁଲି ଫୁଲ" ବାସ ( ସୁଗନ୍ଧର ) ବାସ ( ସ୍ଥାନ ) କି ? ( ସ୍ଥାନନୋହେ—ଗନ୍ଧହୀନ ) । "କେବଳ" ରଙ୍ଗରୁ ( ସ୍ୱର୍ଣ୍ଣରଙ୍ଗରୁ ) ଅଳି ( ଭ୍ରମର ) ରଙ୍ଗ ( କେଳି ) ଇଚ୍ଛେ । ବିଧିରେ ( ଦୈବଯୋଗୁଁ ), ବିଧୀରେ ( ବିଗତ

---

୧—ରସିକାଶବ୍ଦ ଏଠାରେ ରସାଳାର୍ଥ । ରିସାଳୋ ରସିକ ପୁଂସି ସ୍ୟାଦକ୍ଷୌ ଚୂତଭୂରୁଦ୍ଦେ ଇତି କୁମୁଦାକରଃ । ରସୋଽନୁରାଗୋବିଦ୍ୟତେ ଯସ୍ୟାଃ ସା ରସିକା । ନାନାର୍ଥବର୍ଗରେ ରସଶବ୍ଦରେ ଅଛି ରାଗେଯଥାରସିକଃ ।
୨—ଅନୁପ୍ରାସରୁ ଜୀବବନ୍ଧୁ ନ ବୋଲି ବନ୍ଧୁଜୀବ ପ୍ରୟୋଗ କଲେ ।
୩—ମାଧ୍ୟଂ କୁନ୍ଦଂ ରକ୍ତକସ୍ତୁ ବନ୍ଧୁକୋ ବନ୍ଧୁଜୀବକ ଇତ୍ୟମରଃ ।
ବନ୍ଧୁଶବ୍ଦ ସଦୃଶବାଚକ । ଏହା ତଳ ଗ୍ରନ୍ଥରେ ଥିବାରୁ ନ ଲେଖିଲୁ ।

ବୋଇଲ । ବନ୍ଧନ୍ତ ଶୋଭାଆରମ୍ଭ । ରମ୍ଭାଭୁଲେ କେଳି ଯେ ।
ବଡ଼େ ଯେତେ ସୁନ୍ଦରୀ ସେ ପୁରନ୍ଦରୀଭଳି ଯେ ।୮।
ବୋଇଲ । ବାଳକ ନୁହ ଜମ୍ବାଳମଧ୍ୟରେ ନ ମଜ୍ଜ ଯେ ।
ବିମଳ ଉଜ୍ଜ୍ୱଳଜଳ ଗୂଢ଼ ମହାରାଜ ! ଯେ ।୯।

---

ବୁଦ୍ଧିରେ—ବୁଦ୍ଧି ନ ଥିବାରୁ ) "ସେ ବନ୍ଧୁଳୀଫୁଲର" ଶୋଭା ୧ ରୂପ ( ଶୋଭା ରୂପକୁ ଦେଖି ) ଭୁଲ "ଥିବା ପ୍ରାୟ ତୁମ୍ଭେ ସୀତା ଶୋଭାରୂପରେ" ଭୁଲି ଅଛ ସେ ରସିକା ନୋହେ । ୭ ।

୮ମ ପଦ—"ପୁଣି" ବୋଇଲ ଶୋଭା ୨ ଆରମ୍ଭା ( ଅତି ସୁନ୍ଦରୀ ) ରମ୍ଭା "ଅପସରା" ତୁଲେ କେଳି ବନ୍ଧିଛ ( କରିଛ ) ହେ ବଡ଼େ ! ( ଦେବ ନାଥ ) ସେ ( ରମ୍ଭା ) "ସଂସାରେ" ଯେତେ ସୁନ୍ଦରୀ "ଅଛନ୍ତି ତାହାଙ୍କର" ପୁରନ୍ଦରୀ ଭଳି ( ପୁରନ୍ଦରୀ ନାୟିକା—ଇନ୍ଦ୍ରତୁଲ୍ୟ ) ସର୍ବ ୬ ସୁନ୍ଦରୀମଣି ରମ୍ଭାଠାରୁ ସୀତା ତ ସୁନ୍ଦରୀ ନୁହେଁ ତାଠାରେ କାହିଁକି ରସିଛ ବୁଝାଉଅ । ୮ ।

୯ମ ପଦ—"ପୁଣି ଯେତାଇ ଏମନ୍ତ" ବୋଇଲ ହେ ମହାରାଜ ! "ତୁମ୍ଭେତ" ବାଳକ ନୁହଁ, ବିମଳ ( ନିର୍ମଳ ) ଉଜ୍ଜ୍ୱଳ ଜଳ ଗୂଢ଼ ଜମ୍ବାଳ ମଧ୍ୟରେ ( ପଙ୍କ ଭିତରେ ) ନମଜ୍ଜ ( ନ ବୁଡ଼ ) "ତୁମ୍ଭେତ ବାଳକ ତୁଲ୍ୟ ଅଜ୍ଞାନ ନୁହ, ମୋ କଥା ନିର୍ମଳ ଉଜ୍ଜ୍ୱଳ ଜଳ ତୁଲ୍ୟ ତାକୁ ଗୂଢ଼ ସୀତାପ୍ରତି ଲୋଭ ଜମ୍ବାଳ ତୁଲ୍ୟ ତହିଁରେ ନ ବୁଡ଼ ଏହି ଫଳିତାର୍ଥ" । ୯ ।

---

୧—ରୂପ ଲକ୍ଷଣଂ ତୁ ସାହିତ୍ୟେ—
ଅଙ୍ଗାନ୍ୟଭୂଷିତା ନ୍ୟେବକ୍ଲସ୍ୟାଦ୍ୟୈର୍ବିଭୂଷଣୈଃ ।
ଯେନ ଭୂଷଣବଦ୍ ଭାତି ତଦ୍ରୂପ ମିତି କଥ୍ୟତେ ।
୧—ଆରମ୍ଭସ୍ତୁ ବରାୟାଂସ୍ୟାଦ୍ବଧେ ଦର୍ପେ ତୁଥୋଦ୍ୟମେ ଇତି ମେଦିନୀ ।
୨—ରୂପଯୌବନସମ୍ପନ୍ନା ସୁନ୍ଦରୀତ୍ୟଭିଧୀୟତେ ।

ବୋଇଲେ । ବାଣୀ ବାଣୀକେ ତହିଁରେ ପ୍ରମାଣ ପ୍ରମାଣ ଯେ ।
ବନିତାଗଣ ଜନିତ କରେ ପୁଣପୁଣ ଯେ ।୧୦।
ବୋଇଲେ । ବଚନେ ବଂଶବାହୁ ଯେ ବାହୁଜେ ହସିବେ ଯେ ।
ବାରପଣେ ସମର୍ପଣେ ଉଣା ସର୍ବଭବେ ଯେ ।୧୧।
ବୋଇଲେ । ବଇରି ଦେହେଁ ଈରଷା ବନ୍ଧ ନ ମାନିବେ ଯେ ।
ବିନାଶନ ବନ୍ଧୁଜନ କ ଜୀବେ ରାଜୀବେ ଯେ ।୧୨।

୧୦ମ ପଦ—ତହିଁରେ ( ସେଠାରେ ) ୧ ବନିତାଗଣ ରମଣୀ (ସମୂହ) ବାଣୀ ବାଣୀକେ ( କଥା କଥାକରେ ) "ନନ୍ଦେ ଦେଖ ଯାହା" ବୋଇଲେ ମେ ୨ ପ୍ରମାଣ ପ୍ରମାଣ ( ସତ୍ୟ ସତ୍ୟ ) "ଏହା" ପୁଣ ପୁଣ ( ବାରମ୍ବାର ) ଜନିତ କରେ ✱ ( ପ୍ରକାଶକଲେ ) । ୧୦ ।

୧୧ଶ ପଦ—"ରାଣୀମାନଙ୍କର କଥା ଶୁଣି" ବଂଶବାହୁ ( ରାବଣ ) ବଚନେ ( ସେମାନଙ୍କ କଥାକୁ ଲକ୍ଷ୍ୟକରି ) ବୋଇଲେ ଯେ ସୀତା ସମର୍ପଣେ ( ଫେରାଇ ଦେଲେ ) ବାହୁଜେ ( କ୍ଷତ୍ରିୟମାନେ ) ହସିବେ, "ବୋଲିବେ ରାବଣ ଏଡ଼େବଡ଼ କ୍ଷତ୍ରିହୋଇ ଡରେ ସୀତା ସମର୍ପିଲା ମୋହର ମରଣରୁ ଲଜ ବଳିଯିବ" । "ପୁଣି" ବାରପଣେ ( ମୋହର ବୀରପଣିଆ ) ସର୍ବଭବେ ( ସବୁରୂପେ ) ଊଣାହେବ । "ନିନ୍ଦାପାଇବ ହେବ" । ୧୧ ।

୧୨ଶ ପଦ—"ପୁଣି" ବୋଇଲେ ବଇରି ( ଶତ୍ରୁମାନେ ) ଈରଷା ( ଈର୍ଷା ) ଦେହେଁ ( ଦେହରେ ) ବନ୍ଧ ନ ମାନିବେ ( ମୋତେ ଆଜ୍ଞା ମାନିବେ ନାହିଁ ) । "ବୋଲିବେ ଗୋଟା ଡିପସ୍ୱିର କିଛି କରି ନ ପାରି ଶରଣ ପଶିଲା ଆମ୍ଭର କ'ଣ କରିବ" । "ଲୋକେ ନିନ୍ଦନ୍ତୁ ମୋ ବୀରପଣିଆ ନ ରହୁ ଶତ୍ରୁ ଏ ନ ମାନନ୍ତୁ ସେଥିପାଇଁ ମୋର ଶୋଚନା ନାହିଁ" ବିନାଶନ ( ମଲେ ଯେଉଁ ) ବନ୍ଧୁ ( ପୁତ୍ରନାତି ଭାଇବନ୍ଧୁ ) ଜନ ( ସୈନ୍ୟ ସେନାପତି ଆଦି ) ଜୀବେ ( ପ୍ରାଣପାଇ ) ରାଜୀବେ କି ( ଶୋଭା ପାଇବେ କି ) ? ( ଜୀଇବେ ନାହିଁ ) "ତାଙ୍କ ମରାଇ ସୀତା ଦେଇ ଆପେ ବଞ୍ଚି ରହିବା ନିତାନ୍ତ ଅନୁଚିତ ଏଣୁ ସୀତା ଦେବି ନାହିଁ ଏହି ଫଳିତାର୍ଥ" । ୧୨ ।

୧—ବନିତା ଜନିତାତ୍ୟର୍ଥାନୁରାଗୀସ୍ତ୍ରୀ ଜୁ ଯୋଷିତ୍ ଇତ୍ୟମରଃ ।
୨—ପ୍ରମାଣଂ ନିତ୍ୟମର୍ଯ୍ୟାଦାଶାସ୍ତ୍ରେଷୁ ସତ୍ୟବାଦିନଃ । ଇତରଭଦଃ ।
✱ ରଳୟୋ ରୈକ୍ୟାତ୍ ।

ବୋଇଲା । ବିଦେହ-ରାଜନସୁତା ବିଦେହଯୋଷାଟିରେ ଯେ ।
ବପୁରେ ଶୋଭି ଅଧିକାରେ ଧିକ୍କାରେ ସଂସାରେ ଯେ ।୧୩।
ବୋଇଲା । ବାହ୍ୟରେ ସେ ରସାଳସା ରସାଳସଦୃଶ ଯେ ।
ବରନାରୀ ନାରିକେଳ ଅନ୍ତରେ ସରସ ଯେ ।୧୪।

---

୧୩ଶ ପଦ—"ମନ୍ଦୋଦରୀ କହିଥିଲା ରମ୍ଭାଠାରୁ ସୀତା ସୁନ୍ଦରୀ ନୁହେ ସେ କଥାକୁ ଲକ୍ଷ୍ୟକରି ରାବଣ" ବୋଇଲା ବିଦେହ ରାଜସୁତା (ସୀତାଙ୍କ) ବପୁ ଶୋଭା ଅଧିକାରେ (ଶରୀର ଶୋଭା ଅଧିକ ହେବା ଯୋଗୁଁ) ବିଦେହ ଯୋଷିତରେ (କାମପତ୍ନୀ ରତି ଦେବୀଙ୍କ) ସଂସାରେ (ସଂସାର ଲୋକେ) ଧିକ୍କାରନ୍ତି (ନିନ୍ଦାକରୁଛନ୍ତି) । "ଲୋକୋତ୍ତର ସୁନ୍ଦରୀ ସୀତା ତାକୁ ରତି ସମ ନୁହେ ରମ୍ଭା କାହୁଁ ସମାନ ହେବ ଏହିଭାବ" । ୧୩ ।

୧୪ଶ ପଦ—"ପୁଣି" ବୋଇଲା ସେ ରସାଳସା (ସୀତା) ବାହ୍ୟରେ (ବାହାରେ ଦେଖିବାକୁ) ୧ ରସାଳସଦୃଶ (ଆମ୍ରପ୍ରାୟ) ଲୋଚନ ଲୋଭନୀୟ ସୌନ୍ଦର୍ଯ୍ୟଶାଳୀ, ପରିମଳ, ମନୋହର ଗନ୍ଧରେ * ଦିଗ୍‌ମଣ୍ଡଳ ସୁବାସିତ କରେ ଏଣୁ ତା ନାମ ଯୋଜନଗନ୍ଧା, ଆମ୍ରର ହୃଦୟ କଠିନପ୍ରାୟ ତା ହୃଦୟ କଠିନ, "ପୁଣି ସେ ଯେଉଁ" ବରନାରୀ (ବରାଙ୍ଗନା) ନାରିକେଳ (ନଡ଼ିଆର) ଅନ୍ତରେ (ଭିତରେ) ସରସ (ସ୍ୱାଦୁରସ ଥିବାପ୍ରାୟ) ଅନ୍ତରେ (ରାମଙ୍କଠାରେ) ୨ ସରସ (ଅନୁରାଗବତୀ) "ହୋଇଥାଏ" ॥

---

୧—ଆମ୍ରଶ୍ଚୂତୋ ରସାଳୋଽସୌ ସହକାରୋଽତି ସୌରଭେ ଇତ୍ୟମରଃ ।
*—ଦିଙ୍ମଣ୍ଡଳଂ ପରିମଳୈଃ ସୁରଭୀ କରୋଷି
ସୌନ୍ଦର୍ଯ୍ୟମାବହସି ଲୋଚନଲୋଭନୀୟଂ ।
ତ୍ୱଂ ହେ ରସାଳଫଲବର୍ଯ୍ୟ ତଥାପି ଦୂନେ
ଯଦ୍‌ବ୍ରଞ୍ଜିଲଂ ହୃଦୟକଂ କଠିନଂ ବିଧତ୍ସେ ॥ ପ୍ରାସଙ୍ଗିକଶ୍ଲୋକଃ ।
୨—ରସୋ ଗନ୍ଧରସେ ସ୍ୱାଦେ ତିକ୍ତାଦୌ ବିଷରାଗୟୋରିତି ଧରଣିଃ ।

ବୋଇଲା । ବନତା ମୁଁ କଠିନତା ପ୍ରକାଶି ମୋହରେ ଯେ ।
ବହେ କୋମଳତା ପ୍ରେମଲତା ସ୍ୱମଠାରେ ଯେ ।୧୫।
ବୋଇଲା । ବତର୍କି କେତକୀପର ଘାତକୀ ଭ୍ରମରେ ଯେ ।
ବସିବ ଶିବଶିରସି ରସି ନଶାକରେ ଯେ ।୧୬।

---

୧୫ଶ ପଦ—"ପୁଣି" ବୋଇଲା "ଆମ୍ଭ ନଡ଼ିଆ ଏ ଦୁହିଙ୍କ ସହିତ ସମାନ ହେବା ଯୋଗୁଁ" ବନତା (ନମ୍ର) ହେଲା । "କିନ୍ତୁ" ? ମୁଁ ବନତା (ବନ୍ୟସ୍ୱଭାବ ପ୍ରକାଶିଲେ) ମୋହରେ (ମୋଠାରେ) କଠିନତା (କଠୋରଭାବ) ପ୍ରକାଶି (ହୃଦୟ ମଧ୍ୟରେ ପ୍ରକାଶ କରେ) । "ସେ ଯେଉଁ" ପ୍ରେମଲତା "ଅନ୍ତରେ ଥିବା" ସ୍ୱମଠାରେ କୋମଳତା ବହେ (କୋମଳ ଭାବ ପ୍ରକାଶ କରେ) । ୧୫ ।

୧୬ଶ ପଦ—"ପୁଣି" ବୋଇଲା "ସେ ସୀତା" କେତକୀ "ଫୁଲପର" ବତର୍କି (ବତର୍କୁଛି) । "କେତକୀ ଯେରୂପ ଗନ୍ଧାଢ଼୍ୟା ସ୍ୱର୍ଣ୍ଣବର୍ଣ୍ଣା ଜଗତ-ବନ୍ଦିତା ହୋଇ" ୧ ଭ୍ରମରେ (ଭୃଙ୍ଗର) ଘାତକୀ (ଘାତୁକ) ହୁଏ, ନଶାକରେ (ଏକମାତ୍ର ଶିବସନ୍ନିଧିରେ) ରସି (ରସିକର) ୨ ଶିବ ଶିରସି (ଶିବଙ୍କ ମସ୍ତକରେ) ବସେ "ଏ ସୀତା ସେହିପର" ଗନ୍ଧାଢ଼୍ୟା ସ୍ୱର୍ଣ୍ଣବର୍ଣ୍ଣା ଜଗତବନ୍ଦିତା ହୋଇ ଭ୍ରମରେ (କାମୁକ ମୋଠାରେ) ଘାତୁକୀ "ହୋଇ-ଅଛି" ଶିବ ୩ ଶିରସି (ଶିବଙ୍କଠାରୁ ଶିର—ପ୍ରଧାନ ସ୍ୱମଠାରେ) ରସି ନଶାକରେ (ଏକସ୍ୱନ) ବସିବ । "କଣ୍ଟାରେ ପକ୍ଷି ଛିଡ଼ିଯିବା ଭୟେ କେତକୀରେ ଭ୍ରମର ବସଇନାହିଁ ଏ ଶିବସନ୍ନିଧିରେ କେତକୀଫୁଲରେ ଶିବ ସନ୍ତୁଷ୍ଟ ହୁଅନ୍ତି" । ୧୬ ।

---

୧—ଭ୍ରମରଃ କାମୁକେ ଭୃଙ୍ଗେ ଇତି ମେଦିନୀ ।
୨—ଶିବୋ ମୋକ୍ଷେ ମହାଦେବେ ମଙ୍ଗଳେ ଇତ୍ୟପି ।
୩—ଶିରଃ ପ୍ରଧାନେ ସେନାଗ୍ରେ ଶିଖରେ ମସ୍ତକେଽପିଚେତି ମେଦିନୀ ।

ବୋଇଲା । ବାଣୀଏ ଅନୁରକ୍ତରେ ରକ୍ତବୀର୍ଯ୍ୟ-ଜେମା ଯେ ।
ବୃହସ୍ପତି-ରମାପରି ମନାଇ ଚନ୍ଦ୍ରମା ଯେ ।୧୭।
ବୋଇଲା । ବିପକ୍ଷରେ ସୁରରେ ଅସୁର ପକ୍ଷ ଘେନ ଯେ ।
ବଳକ୍ଷକର ବିପକ୍ଷ କର୍ମବଳ ମାନ ଯେ ।୧୮।
ବୋଇଲା । ବାହୁଡ଼ାଇ ନ ଜଡ଼ାଇ ନପାରେ ମାନସ ଯେ ।
ବହୁତ ଅଙ୍କରେ ଅଙ୍କ ପ୍ରକାଶରେ ଦୃଶ୍ୟ ଯେ ।୧୯।
ବୋଇଲା । ବିନାଶ ବହୁତକଳା ରହି ସେ କଳାକେ ଯେ ।
ବୃଦ୍ଧି ବନ୍ଦନୀୟ ବନ୍ଦାପନା-କାଳେ ଲୋକେ ଯେ ।୨୦।

---

୧୭ଶ ପଦ—"ସ୍ରବଣ କଥାଶୁଣି" ରକ୍ତବୀର୍ଯ୍ୟ ଜେମା ( ରକ୍ତବୀର୍ଯ୍ୟ-ଅସୁରଙ୍କର ଇନ୍ଦୁମତୀ ) ବାଣୀଏ ବୋଇଲା ( କଥାଏ କହିଲା ) ଅନୁରକ୍ତରେ ( ଅନୁରାଗରେ ) ବୃହସ୍ପତି ରମା ( ବୃହସ୍ପତିଙ୍କ ଭାର୍ଯ୍ୟା ତାରାକୁ ) ଚନ୍ଦ୍ରମା ମନାଇ "ଅଣିଲା" ପରି "ତୁମ୍ଭେ ସୀତାଙ୍କୁ ମନାଇ ଆଣିଲ କି ? ବଳାତ୍କାରୁ କରି ଆଣିଅଛ" । ୧୭ ।

୧୮ଶ ପଦ—"ପୁଣି" ବୋଇଲା "ବୃହସ୍ପତିଙ୍କ ସ୍ତ୍ରୀକି ଚନ୍ଦ୍ର ନେଲା ସମୟେ ସୁରରେ ( ଦେବତାମାନେ ) ବିପକ୍ଷରେ ( ବିଶେଷରେ ପକ୍ଷନେଲେ ) "ତାହାଦେଖି" ବଳକ୍ଷକର ( ଚନ୍ଦ୍ର ) ଅସୁରପକ୍ଷ ( ଅସୁରଙ୍କ ପକ୍ଷ ) ଘେନ "ଯୁଦ୍ଧକଲେ ଦେବାସୁର ଯୁଦ୍ଧରେ ଅସୁରେ ହାରିଗଲେ ଯେଣୁ" ବିପକ୍ଷ ( ସହାୟ ନ ପାଇ ) "ଚନ୍ଦ୍ର ଆପଣାର" କର୍ମବଳ ମାନ ( ମୋହର କର୍ମବଳ ଗୁଣ ବୋଲି ମାନିଲେ ) । ୧୮ ।

୧୯ଶ ପଦ—"ପୁଣି" ବୋଇଲା "ଚନ୍ଦ୍ର" ନପାରେ ମାନସ ନ ଜଡ଼ାଇ ( ମନରେ ଲଜ ନ ପାଇ ) ବାହୁଡ଼ାଇ ( ତାଙ୍କ ଭାର୍ଯ୍ୟା ତାଙ୍କୁ-ଫେରାଇ ଦେଲେ ) "କିନ୍ତୁ ଥିପି" "ପରିନାରୀ ହରଣରୂପ" ଅଙ୍କ ( କଳଙ୍କକୁ ) ଅଙ୍କରେ ( କୋଡ଼ରେ ) ବହି "ଅଛନ୍ତି ଦେଖୁଛ" । "ତୁମ୍ଭେ ସୀତାକୁ ଫେରାଇଦିଅ ତଥାପି ପରସ୍ତ୍ରୀ ହରଣ ଦୋଷ ଲାଗିବ ଏହି ଭାବ" । ୧୯ ।

୨୦ଶ ପଦ—"ରାବଣ କହୁଥିଲା ସୀତା ଦେବିକଲେ ବନ୍ଧୁଜନ ହସିବେ କି ? ତହିଁକି ଲକ୍ଷ୍ୟକରି" ବୋଇଲା "ଚନ୍ଦ୍ରର ବହୁତ କଳା ବିନାଶହୁଏ ସେ କଳାକେ ( କଳାଏମାତ୍ର ) ରହି ବୃଦ୍ଧି ପାଇ ବନ୍ଦନୀୟ ( ପ୍ରଶଂସ୍ୟ ) ହୋଇ

ବୋଇଲି । ବୋଲିବ ଅବା ସେ ସାନ୍ଧ ଈଶାନମଣ୍ଡନ ଯେ ।
ଦର୍ଷ୍ମ ସୁଧା ସୁଉଜ୍ଜ୍ୱଳ ଜଳଧିନନ୍ଦନ ଯେ ।୨୧ ।
ବୋଇଲି । ବରସିତା ଯୋଷିତା ସିନା ସେ ସୀତା ଦିଅ ଯେ
ବଳସିତେ ଉଲ୍ଲସିତେ ଏ ସମ୍ପଦେ ଥାଅ ଯେ । ୨୨ ।

କାଳେ ( ପୂର୍ଣ୍ଣିକଳା ପାଇଁଲିଦନ ) ଲୋକେ "ତାଙ୍କୁ" ବନ୍ଦାପନା କରନ୍ତି । "ସେହିରୂପେ ତୁମ୍ଭର ବହୁତ କଳାସ୍ୱରୂପ ବନ୍ଧୁଜନ କ୍ଷୟଯାଇ କଳାମାତ୍ରକ ତୁମ୍ଭେ ଖାଇଥିଲେ ପୁଅ ନାତି ଯେନ ଲୋକ ବନ୍ଦନୀୟ ଓ ପ୍ରଶଂସନୀୟ ହେବ ଏହି ଫଳତାର୍ଥ" । ୨୦ ।

୨୧ଶ ପଦ—"ପୁଣି" ବୋଇଲ "ତୁମ୍ଭେ" ଅବା ବୋଲିବ ସେ "ବଡ଼ଲୋକ ନୋହେ" ସାନ ( ଶ୍ରେଷ୍ଠଲୋକ ) ହେବାରୁ "ଉତ୍ତ ଫେରାଇ ଦେଲ, ଦେଖ ତାଠାରୁ ବଡ଼ଲୋକ କେହିନାହିଁ" ଈଶାନ ମଣ୍ଡନ ( ସେ ମହାଦେବଙ୍କ ଶିରୋଭୂଷଣ ), ଦର୍ଷ୍ମ ସୁଧା ( ଅମୃତମୟ ଶରୀର ) ସୁଉଜ୍ଜ୍ୱଳ ( ଉତ୍ତମ ଉଜ୍ଜ୍ୱଳକାନ୍ତି ) ଜଳଧିନନ୍ଦନ ( କ୍ଷୀର ସମୁଦ୍ର ପୁଅ ) "ଅଟେ" । "ଏହାଦ୍ୱାରା ହଇବଂଶୀୟ ପ୍ରକଟିତ ହେଲ"* । ୨୧ ।

୨୨ଶ ପଦ—"ପୁଣି" ବୋଇଲ ବରସିତା (ତୁମ୍ଭଠାରେ ରସି ନାହିଁ) ଯୋଷିତା ( ଏମନ୍ତ ସ୍ତ୍ରୀ ) ସିନା ସୀତା, "ତାଙ୍କୁ ଫେରାଇ" ଦିଅ । ଏ ସମ୍ପଦେ ( ଏହି ସମ୍ପତ୍ତିରେ ) ଉଲ୍ଲସିତେ ( ଉଲ୍ଲାସ ଭାବରେ ) ବଳସିତେ ( ବଳାସ କରି ) ନିଶ୍ଚିନ୍ତରେ ଥାଅ । "ରସିଥିବା ତାଙ୍କୁ ଚନ୍ଦ୍ର ଫେରାଇ-ଦେଲ ଏତ ରସୁନାହିଁ ଏହାକ ଫେରାଇ ଦେବାର ଆପତ୍ତି କଣ ଏହି ତାତ୍ପର୍ଯ୍ୟାର୍ଥ" । ୨୨ ।

*—ଯଦୁକ୍ତଂ ପ୍ରାସଙ୍ଗିକେ—
ଜନ୍ମ କ୍ଷୀରପୟୋନିଧୌସହଭୁବଃ ଶ୍ରୀପାରିଜାତାଦୟୋ—
ବାସ୍ତୁଂ ଯସ୍ୟ ସୁଧାମୟଂ ନିଭୂବନାଧୀଶସ୍ୟ ମୂର୍ଦ୍ଧ୍ନି ସ୍ଥିତଃ ।
ବୃଦ୍ଧିର୍ୟସ୍ୟ ଚରାଚରକ୍ଷୟିଣୀ ତସ୍ୟୋଦୟେ କେବଳଂ
। ଇତି

ବୋଇଲା । ବର୍ଦ୍ଧନ ମୂଳଧନରୁ କଳନ୍ତରବତ ଯେ ।
ବିନୟ ଘେନିବ ହେବ ତନୟ ବହୁତ ଯେ । ୨୩ ।
ବୋଇଲା । ବୈଶ୍ରବଣ ଶ୍ରବଣରେ କି କହୁ ରମଣି ଯେ ।
ବିପଣୀ ଏ ସଂସାର ତହିଁର ସାରମଣି ଯେ । ୨୪ ।
ବୋଇଲା । ବଡ଼କୃପଣ ଚଉରପଣ କର ଆଣି ଯେ ।
ବିସର୍ଜିବି ଜୀବ ସଟତଜବ କେବେ ପୁଣି ଯେ । ୨୫ ।
ବୋଇଲା । ବୁଧ ବିବୁଧଗଣରେ ଅମୂଲ୍ୟତ ସତ ଯେ ।
ବୋଲିବା ରମଣୀମଣି ଏବେ ସମ୍ଭାବିତ ଯେ । ୨୬ ।

---

୨୩ଶ ପଦ—"ପୁଣି" ବୋଇଲା ମୂଳଧନରୁ କଳନ୍ତର ବର୍ଦ୍ଧନ ବତ (ମୂଳଧନ ଥିଲେ ତହିଁରୁ ଯେପରି କଳନ୍ତର ବଢେ) "ସେହିପରି ତୁମ୍ଭେ ଥିଲେ" ବହୁ ତନୟ ହେବ (ପୁତ୍ର ନାତି କେତେ ହେବେ) "ଏଣୁ ମୋର ବିଷୟେ" ବିନୟ ଘେନିବ (ମୋହର ବିନୟ ଭାବକୁ ଘେନିବା ହେଉ) "ସୀତା ଫେରାଇ ଦିଅ ଏହି ଭାବ" । ୨୩ ।

୨୪ଶ ପଦ—ବୈଶ୍ରବଣ (ରାବଣ) ଶ୍ରବଣରେ (ଇନ୍ଦୁମତି କଥା-ଯାକ ଶୁଣି) ବୋଇଲା ରେ ରମଣୀ ତୁ କି କହୁ (ତୁ କିରୂପେ ସୀତା ଫେରାଇଦେବା କୁତ୍ସିତ କଥା କହୁ) । ଏ ସଂସାର ୧ ବିପଣୀ (ବଜାର ହେଲା) ତହିଁର (ତା ମଧ୍ୟରେ) ସୀ (ସେହି) ରମଣୀ (ସୀତା) ସାରମଣି (ଶ୍ରେଷ୍ଠ ରତ୍ନ) ଅଟେ । ୨୪ ।

୨୫ଶ ପଦ—"ପୁଣି" ବୋଇଲା ବଡ଼ କୃପଣ (ଦରିଦ୍ର) "ସାର-ମଣିକି" ଚଉରପଣ (ଚୌର୍ଯ୍ୟ ବୃତ୍ତିରେ) ଆଣି, ଜୀବ (ଏ ପ୍ରାଣ) "ପଛକେ" ବିସର୍ଜିବି (ଛାଡ଼ିବ) କେବେ (କଦାପି) ପୁଣି ତାକୁ ସଟତେଜବ ଛାଡ଼ିବ କି ? (ଛାଡ଼ିବ ନାହିଁ) । "ଏ ବିଷୟେ ମୁଁ ବଡ଼ ଦରିଦ୍ର ସେ ସାର-ମଣିକି ଛାଡ଼ିବ ନାହିଁ ଜୀବ ପଛକେ ଯିବ ଏହି ଭାବ" । ୨୫ ।

୨୬ଶ ପଦ—"ପୁଣି" ବୋଇଲା ବୁଧ ବିବୁଧଗଣରେ (ପଣ୍ଡିତ ଦେବ-ଗଣଙ୍କ ମଧ୍ୟରେ) "ସେ ସାରମଣି" ଅମୂଲ୍ୟତ ସତ (ଏହା ମିଛ ନୋହେ)

---

୧—ବିପଣୀ ପଣ୍ୟବୀଥିକା ଇତ୍ୟମରଃ ।

ବୋଇଲି । ବନେ ଗଲା ଖଞ୍ଜାଗୀଟ ଖଞ୍ଜି ଆଦ୍ୟେ ବୃନ୍ଦ ଯେ ।
ବାଣ ଡୋଳା ଚଞ୍ଚଳତ ଚଳତକୁ ଗୃଦ୍ଧି ଯେ ।୨୭।
ବୋଇଲି । ବଡ଼ମା ସେ ରଙ୍ଗରେ କୁରଙ୍ଗ କଲା ମୃଗ ଯେ ।
ବୋଲିବା କବି କବିତ୍ୱେ ସେ ବଡ଼ ଅଯୋଗ୍ୟ ଯେ ।୨୮।
ବୋଇଲି । ବଳକ୍ଷ ଲକ୍ଷ ଯେତେକ ବଳକ୍ଷବର୍ଣ୍ଣକ ଯେ ।
ବାମାପାଶ ପାଶ ହୋଇ ବାନ୍ଧିଛି ମତିକ ଯେ ।୨୯।

---

ରମଣୀମଣି ବୋଲିବାକଥା ଏବେ (ବର୍ତ୍ତମାନ) "ତା ଠାରେ" ସମ୍ଭାବିତ ହୋଇ "ହୋଇଅଛି" ନ ଥିଲି ନୋହିବ ଏହିଭାବ । ୨୬ ।

୨୭ଶ ପଦ—"ପୁଣି ଶ୍ରବଣ" ବୋଇଲି ଖଞ୍ଜାଗୀଟ (ଖଞ୍ଜାଗୀଟ ପକ୍ଷୀ) "ଖଞ୍ଜାଗୀଟ ଶବ୍ଦର" ଆଦ୍ୟେ (ଆଦ୍ୟରେ) ବନ୍ଧ ବନେ (ବନକୁ) ଗଲା । କାହିଁକି ? "ସେ ରମଣୀମଣିର" ଡୋଳା ଚଞ୍ଚଳତ "ହୋଇ" ଚଳତକୁ (ଚଳିବାର) ଗୃଦ୍ଧି ବାଣ ଏ "ଏମନ୍ତ ମନେ କରିବାରୁ" । ନେତ୍ରୋପମ ଖଞ୍ଜନପକ୍ଷୀ ତା ଡୋଳା ଗତିକି ଶରି ମନେ କରି ଡରେ ଲ୍ଲେଟା ହୋଇ ବନକୁ ଗଲା ଏହିଁ ତାତ୍ପର୍ଯ୍ୟାର୍ଥ; "ଖଞ୍ଜନପକ୍ଷୀ ତା ନେତ୍ର ଗତିର ସମାନ ନୁହେ ଏହିଭାବ" । ୨୭ ।

୨୮ଶ ପଦ—ପୁଣି ବୋଇଲି ସେ (ରମଣୀ ମଣି) ବଡ଼ମା (ଡୋଳା-ଗତିର ବଡ଼ପଣ) ମୃଗ (ମୃଗକୁ) ରଙ୍ଗରେ (କ୍ରୀଡ଼ାରେ) କୁରଙ୍ଗ (କୁତ୍ସିତ-ରଙ୍ଗ) କଲା । କବିତ୍ୱେ (କବିତାରେ) "କବିମାନେ ଯାହା କୁରଙ୍ଗନେତ୍ରା ବୋଲନ୍ତି" (ସେପରି ବୋଲିବା) "ତାଙ୍କର" ବଡ଼ ଅଯୋଗ୍ୟ "ପଣ" ବୋଲିବା "କୁରଙ୍ଗ ନେତ୍ର ତା ନେତ୍ରକୁ ସମାନ ନୋହେ ଏହିଭାବ" । ୨୮ ।

୨୯ଶ ପଦ—"ପୁଣି" ବୋଇଲି ବଳକ୍ଷବର୍ଣ୍ଣକ (ସେହି ନିରୁପମା ସୁନ୍ଦରୀଙ୍କ) ଯେତେ ଲକ୍ଷ୍ୟ (ଉପମା) "ଅଛି" ସେ ଲକ୍ଷ "ନୁହନ୍ତି" । "ଏରୂପ ସେହି" ବାମା (ମନୋରମା ରମଣୀର) ପାଶ (ସମୀପ) ପାଶ (ରଜ୍ଜୁ) ହୋଇ ମତିକ (ମୋ ବୁଦ୍ଧିକି) ବାନ୍ଧିଛି । "ଏଣୁ ତା ଠାରୁ ମନ ଛାଡ଼ୁନାହିଁ ଏହିଭାବ" । ୨୯ ।

ବୋଇଲା । ବରାଙ୍ଗୀ ତାରକାଶୋଭୀ ନାରକାସୁରଜା ଯେ ।
ବନ୍ଧ୍ୱ ନ ବହିବ ସମେ ସୁସମେ ବୋଲ ଯା ଯେ ।୩୦।
ବୋଇଲା । ବିଦ୍ୟୁଜ୍ଜିହ୍ୱ କ ବିଦୁଷ ବିଦ୍ୟୁତ୍କାନ୍ତଯୁବା ଯେ ।
ବିଧାମି ଶୋଭାନିଧାମି ସାବଧାନି ହେବା ଯେ ।୩୧।

---

୩୦ଶ ପଦ—୧ ବରାଙ୍ଗୀ ( ଶ୍ରେଷ୍ଠାଙ୍ଗୀ ବା କୁଙ୍କୁମାଙ୍ଗୀ—ଅତିସୁନ୍ଦରୀ ) ୨ ତାରକାଶୋଭୀ ( ଯାହାର ନେତ୍ର ତୋଳା ଅତି ସୁନ୍ଦର ତା ତାରାପ୍ରାୟ ଶୋଭାବତୀ ) ନାରକାସୁରଜା ( ନାରକାସୁର ଦୁହିତା ) ବୋଇଲା "ହେ ନାଥ ତୁମ୍ଭେ" ଯା ( ଯାଇଁ ) ବୋଲ ବନ୍ଧ ( ବିଧାତା ) ୩ ସୁସମେ ସମେ ( ତା ସମାନ ସୁନ୍ଦରୀ ) ନ ବହିବ ( ଗଢ଼ି ନ ପାରିବ ) । "ସେ ବିଧି ଗଢ଼ିତା ନୁହେ ଏହିଭାବ" । ୩୦ ।

୩୧ଶ ପଦ—"ପୁଣି" ବୋଇଲା "କାହାକୁ ଯାଇଁ ବୋଲିବ ଏମନ୍ତ ଅବା ବୋଲିବ" । ବିଦ୍ୟୁଜ୍ଜିହ୍ୱ "ନାମା ରାକ୍ଷସକୁ ଯାଇ ବୋଲ" ସେ ବିଦ୍ୟୁଜ୍ଜିହ୍ୱ କ ବିଦୁଷ ( ଅନଙ୍ଗଶାସ୍ତ୍ର ପଣ୍ଡିତ ) ଅଟେ । "ତେଣୁ" ବିଦ୍ୟୁ-କାନ୍ତ ( ବିଜୁଳୀର କାନ୍ତ ପରି କାନ୍ତି ଯାହାର ) ଶୋଭା ନିଧାମି ( ଶୋଭାର ସ୍ଥାନ ସ୍ୱରୂପ ) ଯୁବା ( ଯୁବକ ) ବିଧାମି ( ବିଧାନ କରିବାକୁ ସମର୍ଥ ଅଟେ ) "ଏ ବିଷୟରେ ଆପଣ" ସାବଧାନି ହେବା ( ଏକମନା ହୁଅନ୍ତୁ ) । "ବିଦ୍ୟୁ-ଜ୍ଜିହ୍ୱକୁ କହିଲେ ସେ ସୀତାଠାରୁ ଅଧିକ ସୁନ୍ଦରୀ ଗଢ଼ିଦେବ ଏହିଭାବ" । ୩୧ ।

---

୧—ବର ବାହ୍ଲୀକ ମୀତକଂ ଇତ୍ୟମରଃ
୨—ସ୍ତ୍ରୀକ ତାରା ରୂପେ ବର୍ଣ୍ଣନ କରାଯାଏ । ତଦୁକ୍ତ ମଲଂକାର ଶାସ୍ତ୍ରେ—
ଚନ୍ଦ୍ରକଳାମୁକ ଦାମ ଶିଞ୍ଜଂ ବିଦ୍ୟୁଲ୍ଲତା କନକଲତିକା ତ ।
ଦମନକ କାଞ୍ଚନଯଷ୍ଟୀ ଦୀପଃ ସର୍ବେ ହ୍ୟୁତ୍ତମଯୋଷିଦ୍ବର୍ଣ୍ଣଃ ।
ତଡ଼ିଦ୍ୱର୍ଣ୍ଣୀ ତାରକା କନକ ଲତିକା ବା କ୍ଷମବଲ୍ଲୀ ଇତି ।
୩—ସୁନ୍ଦରଂ ରୁଚିରଂ ଚାରୁ ସୁସମଂ ସାଧୁ ଶୋଭନମିତ୍ୟମରଃ ।

ବୋଇଲା । ବାହୁଡ଼ାଅ ମହୀଜାମହୀକା ନେଇ ଯନ୍ତ ଯେ ।
ବୋଲିବା ତାକୁ ଭିଆଇ ଆଉ ଏକ ମୂର୍ତ୍ତି ଯେ ।୩୨।
ବୋଇଲା । ବଂଶଲୋଚନ ବଚନ ଦେହୁଁ ଜାତ ଗୁଣ ଯେ ।
ବର୍ଣ୍ଣ ସୁବର୍ଣ୍ଣ ହୋଇଲେ କଳା କାନ୍ତି ହୋଇ ଯେ ।୩୩।
ବୋଇଲା । ବାରି ସେ ନିବାରି ତୃଷାର୍ତ୍ତିର ତୃଷା ପାରେ ଯେ ।
ବଶ ହେବଇଁ ମୁଁ ମୃଗ ମୃଗତୃଷ୍ଣାଠାରେ ଯେ ।୩୪।
ବୋଇଲା । ବିଜ୍ଞାନ ନାଶେ ସୁଜ୍ଞାନ ଉଦୟୁ ଏମନ୍ତ ଯେ ।
ବନିତାଏ ଶୁଣ ଏବେ ନିତାନ୍ତ ଚରିତ ଯେ ।୩୫।

---

୩୨ଶ ପଦ—"ପୁଣି" ବୋଇଲା ମହୀଜା ( ପୃଥିବୀରୁ ଜନ୍ମିଥିବା ) ମହିଳା ( ସ୍ତ୍ରୀକୁ ) ବାହୁଡ଼ାଅ ( ବାହୁଡ଼ାଇ ଦିଅ ) ଯନ୍ତ ( ଜଣାଅଧିକା ) ନେଇ । ତାକୁ ( ସେହି ବିଦ୍ୟୁଜ୍ଜିହ୍ୱକୁ ) ବୋଲିବା 'ପୂର୍ବରେ ମାୟା ସୀତା ଗଢ଼ିଲାପରି" ଆଉ ଏକମୂର୍ତ୍ତି ( ଆଉ ଗୋଟିଏ ମାୟାସୀତା ) ଭିଆଇ ( ଗଢ଼ିଇ ) ତାକୁ ପ୍ରାଣ ମନୋବେଦନା ଦୂରକରି ଏହିଭଳି ।୩୨।

୩୩ଶ ପଦ—"ନାରକାସୁର ସ୍ଥିର କଥା ଶୁଣି" ବଂଶଲୋଚନ ( ରାବଣ ) ବଚନ ବୋଇଲା ( କଥାଏ କହିଲା ) ସୁବର୍ଣ୍ଣ "ପ୍ରାୟ" ବର୍ଣ୍ଣ ହୋଇଲେ ( ହୋଇଥିଲେ ସୁଦ୍ଧା ) ଦେହୁଁ ( ଦେହରୁ ) ଜାତ "ହେବା" ଗୁଣର କାନ୍ତି କଳା ହୋଇ ( ହୁଏ ) ଦେହର ବର୍ଣ୍ଣ ନ ହୁଏ । "ସେହିପରି ବିଦ୍ୟୁଜ୍ଜିହ୍ୱ ଗଢ଼ିବା ସୀତା ସୀତାସମାନ ହେବ ନାହିଁ ଏହିଭଳି" ।୩୩।

୩୪ଶ ପଦ—"ପୁଣି" ସେ (ରାବଣ) ବୋଇଲା ବାରି ( ଜଳ ) ତୃଷାର୍ତ୍ତିର ( ତୃଷାତୁର ଜନର ) ତୃଷା ନିବାରି ପାରେ । ମୁଁ ମୃଗ ( ପଶୁ କି ) ମୃଗତୃଷ୍ଣାଠାରେ ( ମରୀଚିକାଠାରେ ) "ଜଳଜ୍ଞାନ କରି" ବଶ ହେଲପରି ମାୟା ସୀତାଠାରେ "ସୀତାଜ୍ଞାନ କରି" ବଶୀ ହେବି କି ? "ମୋତେ ତୁ ଏମନ୍ତ ବୁଝୁଅଛୁ ମୁଁ ପଶୁ ନୁହେଁ ଏହିଭଳି" ।୩୪।

୩୫ଶ ପଦ—"ରାବଣର" ବିଜ୍ଞାନ ( ଅଜ୍ଞାନ ) ନାଶେ ( ନାଶଯାଇ ) ସୁଜ୍ଞାନ ଉଦୟୁ "ହୁଅନ୍ତେ" ଏମନ୍ତ ବୋଇଲା, ବନିତାଏ ( ଆଗୋ ବନିତାମାନେ ) ଏବେ ୧ ନିତାନ୍ତ ଚରିତ ( ଏକାନ୍ତ କଥା ) ଶୁଣ ।୩୫।

---

୧—ତ୍ରିବ୍ୱେ କାନ୍ତ ନିତାନ୍ତାଶୀତ୍ୟମ୍ବରଃ ।

ବୋଇଲା । ବନ୍ଧତ ନାହିଁ ଯେ ବନ୍ଦୀବତ ରଖ ଋଷି ଯେ ।
ବହୁ ମର୍ତ୍ତ୍ୟରୂପ ବହୁମୂଲ୍ୟ ରତ୍ନବେଶୀ ଯେ ।୪୪।
ବୋଇଲା । ବଇଦେହୀ ସେହି ରମା କ୍ଷମା ଜାତକଲା ଯେ ।
ବେଦବତୀ ବମନ୍ତ ଧର୍ଷଣେ ମୋର ଥିଲା ଯେ ।୪୫।
ବୋଇଲା । ବୋଲଥିଲା ମୋ ହେତୁଁ ଅମରଶତ୍ରୁ ମର ଯେ ।
ବନେ ବନେଶପ୍ରପର ଗୁପ୍ତ ଶ୍ରୀଶରୀର ଯେ ।୪୬।
ବୋଇଲା । ବିଷ୍ଣୁ ମୋ ମାରଣେ ଅଭିରାମ ରାମମୂର୍ତ୍ତି ଯେ ।
ବୈକୁଣ୍ଠ ସମ୍ପତ୍ତିକ ଏ ସମ୍ପତ୍ତି ବିପତ୍ତି ଯେ ।୪୭।

---

( ବିଷ୍ଣୁ ) ବୋଇଲେ ତୁମ୍ଭର ( ତୁମ୍ଭ ଦୁହିଙ୍କର ) ଲେଶେ ( ଛଳମାତ୍ର ) ଦୋଷ ନାହିଁତ "ଲକ୍ଷ୍ମୀ କାହିଁକି ଶାପ ଦେଲେ" । ୪୩ ।

୪୪ଶ ପଦ—"ପୁଣି" ବୋଇଲ "ନାରାୟଣ ଏମନ୍ତ" ଋଷି (କହିଲେ) "ବନାଦେଇଦେ ତୁମ୍ଭଙ୍କୁ ଲକ୍ଷ୍ମୀ ଶାପ ଦେବାରୁ" ତାକୁ ବନ୍ଧତ ( ସୁତକଶବ ) ନାହିଁ । ବନ୍ଦୀବତ ( ବନ୍ଦୀଜନ ସମାନରେ ) ରଖ । ଯେ ବହୁମୂଲ୍ୟ ରତ୍ନ-ବେଶୀ ( ବହୁମୂଲ୍ୟ ରତ୍ନ ଭୂଷିତା କମଳା ) ୧ ମର୍ତ୍ତ୍ୟରୂପ ( ମର୍ତ୍ତ୍ୟପୁରେ ଜନ୍ମି ମାନବୀରୂପ ) ବହୁ ( ଧାରଣ କରୁ ) । ୪୪ ।

୪୫ଶ ପଦ—ବୋଇଲ ( ରାବଣ କହିଲ ) ସେହି ରମା ( ଲକ୍ଷ୍ମୀଙ୍କୁ ) କ୍ଷମା (ପୃଥ୍ୱୀ) ବଇଦେହୀ ( ସୀତାରୂପେ ଜାତ କଲା । ବେଦବତୀ "କନ୍ୟା" ଧର୍ଷଣେ ଧର୍ଷଣରେ ) ମୋର ବମନ୍ତ ( ବଶୀଭୂତରେ ବୁଦ୍ଧି ) ଥିଲା । ୪୫ ।

୪୬ଶ ପଦ—ବୋଇଲା (ରାବଣ କହିଲା) "ମୁଁ ତାକୁ ଧର୍ଷଣ କରନ୍ତେ ସେ ବେଦବତୀ" ବୋଲଥିଲା ରେ ଅମରଶତ୍ରୁ ( ଦେବଶତ୍ରୁ ) ମୋ ହେତୁ ତୁ ମର ( ମୋ ଯୋଗୁଁ ତୁ ମରିବୁ ), ବନେ ( ବନ୍ତିରେ ) ବନେଶପ୍ର ପର ( ସର୍ପପ୍ରାପ୍ତ ) ଶ୍ରୀ ଶରୀର ( ଲକ୍ଷ୍ମୀମୂର୍ତ୍ତି ), ଗୁପ୍ତ "ହୋଇଅଛି" । ୪୬ ।

୪୭ଶ ପଦ—ବୋଇଲା ( ପୁଣି କହିଲା ) ବିଷ୍ଣୁ ମୋ ମାରଣେ ( ମୋତେ ମାରିବାପାଇଁ ) ଅଭିରାମ ( ମନୋରମ ) ରାମମୂର୍ତ୍ତି ( ଶ୍ୟାମ-ମୂର୍ତ୍ତି ) ହୋଇ ଅଛନ୍ତି । ବୈକୁଣ୍ଠ ସମ୍ପତ୍ତିକ ଏ ସମ୍ପତ୍ତି ବିପତ୍ତି ପ୍ରାପ୍ତ ମଣେ ॥

---

୧—ମନୁଷ୍ୟା ମାନୁଷୀ ମର୍ତ୍ତ୍ୟା ମନୁଜା ମାନବାନିବ୍ର ଇତ୍ୟମରଃ ।
ପୁଂସି ସ୍ତ୍ରୀତୌ ମଧ୍ୟଲୋକମର୍ତ୍ତ୍ୟାବଚ୍ଛ ନିକାଣ୍ଡ ଶେଷଃ ।

ବୋଇଲା । ଦ୍ୱାରରେ ଚତୁର ଚତୁର୍ଭୁଜ ଗୁରୁ ଯେ ।
ବହି କରେ ଶଙ୍ଖାରି ଶଙ୍ଖାରରୂପ ଧରୁଁ ଯେ । ୪୮ ।
ବୋଇଲା । ବର୍ଷ୍ମରେ କନ୍ଦର୍ପଦର୍ପ କରୁଥିଲୁଁ ଲୋପ ଯେ ।
ବହିଲୁଁ ସେହି ଉଭୟ ଭୟଙ୍କର ରୂପ ଯେ । ୪୯ ।
ବୋଇଲା ! ବୋଲଉ ହିରଣ୍ୟାସୁର ହିରଣ୍ୟାକ୍ଷ ପୂର୍ବେ ଯେ ।
ବହିନ୍ତ ନୃହରି ହରି ହରି ପ୍ରାଣ ତେବେ ଯେ । ୫୦ ।
ବୋଇଲା । ବହ୍ନିରେ ପକାଇ ନବ ଶିର ନବନବ ଯେ ।
ବିଧାନ ଲେଖନ-ଭାବ ପଠନ ସ୍ୱଭାବ ଯେ । ୫୧ ।

---

୪୮ଶ ପଦ—"ପୁଣି" ବୋଇଲା ଦ୍ୱାରପୁରେ ( ଦ୍ୱାରରକ୍ଷା କରିବା ଦ୍ୱାର-ଭୂମିରେ ) ଆମ୍ଭେ ଚତୁର ( ଦକ୍ଷ ), ଚତୁର ଭୁଜେ ( ଚାରି ବାହୁରେ ) ଗୁରୁ ( ମନୋହର ) "ଶୋଭାଇ" କରେ ( ହସ୍ତରେ ) ଶଙ୍ଖାରି ( ଶଙ୍ଖଚକ୍ର ) ବହି ( ଧରି ) ଶଙ୍ଖାରି ( ବିଷ୍ଣୁଙ୍କପ୍ରାୟ ) ରୂପ ଧରୁଁ ( ଧରିଥାଉଁ ) । ୪୮ ।

୪୯ଶ ପଦ—"ପୁଣି" ବୋଇଲା ବର୍ଷ୍ମରେ ( ଦେହ ଶୋଭାରେ ) କନ୍ଦର୍ପ ଦର୍ପ ( କାମର ଗର୍ବ ) ଲୋପ ( ନାଶ ) କରୁଥିଲୁଁ । ସେହି ଉଭୟ ( ଦୁଇଭାଇ ) "ଆମ୍ଭେ" ଭୟଙ୍କର "ରାକ୍ଷସ" ରୂପ ବହିଲୁଁ । ୪୯ ।

୫୦ଶ ପଦ—ବୋଇଲା ( ପୁଣି କହିଲା ) ପୂର୍ବେ ( ପୂର୍ବଜନ୍ମରେ ) ହିରଣ୍ୟାସୁର ହିରଣ୍ୟାକ୍ଷ ବୋଲଉଁ ( ବୋଲାଇଥିଲୁଁ ) ; ହରି ( ବିଷ୍ଣୁ ) ବହିନ୍ତ "ରୂପଧରି" ନୃହରି ( ନୃସିଂହ ରୂପ ଧରିବାରୁ ) ତେବେ "ଯାଇଁ ଆମ୍ଭ ଦୁହିଙ୍କର" ପ୍ରାଣହରି ( ଜୀବନ ନେଲେ ) । ୫୦ ।

୫୧ଶ ପଦ—"ପୁଣି" ବୋଇଲା "ଏ ଜନ୍ମରେ" ନବଶିରକୁ ( ମୋହର ନଅଗୋଟି ଶିର ) ନବ ନବ ( ନୂଆ ନୂଆ କରି ) ବହ୍ନିରେ ( ଅଗ୍ନିମଧ୍ୟରେ ) ପକାଇ ବିଧାନ ( ବିଧାତାର ) ଲେଖନଭାବ ( ଲେଖା ଅଭିପ୍ରାୟ ) ସ୍ୱଭାବ ( ସ୍ୱଭାବରେ ) ପଠନ "କରନ୍ତି" । "ବିଧାତା ଭାଲ-ପଟରେ କ ଲେଖିଛି ତାହା ପଢ଼ି ଜାଣିବା ସକାଶେ ନଅଗୋଟା ମୁଣ୍ଡ ଅଗ୍ନିରେ ପକାଇଲି ଏହି ଅଭିପ୍ରାୟ" । ୫୧ ।

ବୋଇଲି । ବର ମରକତ ଜାତରୂପ ରୂପ ଦୁଇ ଯେ ।
ବିଚିତ୍ର ଚିତ୍ରପଟକୁ ଲେଖାଇ ଦେଖାଇ ଯେ । ୨।
ବୋଇଲି । ବିଧାନ ନାୟକ ଏକ ପ୍ରଧାନ ପଦକ ଯେ ।
ବିଚ୍ଛେଦକ ମୁଁ ସୁନାରି ଲେଖି ଦକଦକ ଯେ ।୫୩।
ବୋଇଲି । ବୋଲଥିଲି ବିହ୍ନ ବିହ୍ନ ଏ ସ୍ୱର୍ଣ୍ଣଚୌରକ ଯେ ।
ବଂଶଯାକ ଦଣ୍ଡଧର ଦଣ୍ଡ ପାଅ ତର୍କି ଯେ ।୫୪।

---

୫୨ଶ ପଦ—ବୋଇଲି ( ରାବଣ କହିଲା ) ବର ( ଶ୍ରେଷ୍ଠ ) ମରକତ ( ମରକତମଣି ) ଜାତରୂପ ( ସୁବର୍ଣ୍ଣ ) "ପ୍ରାୟ" ଦୁଇରୂପ "ରାମ ସୀତା ଥିବା" ବିଚିତ୍ର ( ଆଶ୍ଚର୍ଯ୍ୟ ) ଚିତ୍ରପଟକୁ ପଟରେ ( ଭଲପଟରେ ) "ବିଧାତା" ଲେଖାଇ "ମୋତେ" ଦେଖାଇଲା । ୫୨ ।

୫୩ଶ ପଦ—"ପୁଣି" ବୋଇଲା "ସେ ଦୁଇ ମଧ୍ୟରେ" ଏକ "ଯେ" ନାୟକ "ସେ" ମଣି ( ମରକତ ମଣି ସଦୃଶ ଅଟେ ) "ଦ୍ୱିତୀୟ ନାୟିକା" ପଦକ ପ୍ରଧାନ ବିଧାନ ( ସେ ନାୟିକାର ଶ୍ରେଷ୍ଠ ସ୍ୱର୍ଣ୍ଣ ପଦକ ପ୍ରାୟ ) "ହୋଇ ଥିଲା" । ସୁନାରି ( ସୁନାରି ବଣିଆ ପ୍ରାୟ ) ମୁଁ ଲେଖି "ହୋଇ ସୁନାରୂପ" ସୁନାରି ( ସୀତାର ) ବିଚ୍ଛେଦକ ହେଲି (ରାମଠାରୁ ବିଚ୍ଛେଦ କଲି) "ତେଣୁ" ଦକ ଦକ "ହେଉଅଛୁ" । "ବଣିଆ ସୁନା ଚୋରି କରି ଭୟରୁ ଦକଦକ ହେଲା ପରି ସୀତା ଚୋରିକର ମମ ମୋତେ ମାର ଯେନ ଯିବେ ବୋଲି, ଦକଦକ ହେଉଅଛୁ ଏହିଭାବ" । ୫୩ ।

୫୪ଶ ପଦ—"ପୁଣି" ବୋଇଲା ବିହ୍ନ ( ବିଧାତା ) ବୋଲିଥିଲା ଏ ସ୍ୱର୍ଣ୍ଣ ( ଏ ସୁବର୍ଣ୍ଣ ପଦକର ) ଚୋରକ ବିହ୍ନ ( କହିଲା ) ବଂଶଯାକ ଦଣ୍ଡଧର ( ରାଜା ) "୧ ସୁନାଚୋରକୁ ଦଣ୍ଡିଲା ପାଏ" ଦଣ୍ଡଧର ( ଯମ ) ଦଣ୍ଡ ପାଅ । "ଏଣୁ ମୁଁ ନିଶ୍ଚୟ ମରିବ ଏମନ୍ତ" ତର୍କି ( ତର୍କଣା କରୁଛି ) । ୫୪ ।

---

୧—ବ୍ରହ୍ମହା ସ୍ୱର୍ଣ୍ଣହାରୀ ଚ ସୁରାପୋ ଗୁରୁତଳ୍ପଗଃ ।
ଚତ୍ୱାର ମହାପାପ.ସ୍ତସଂସର୍ଗସ୍ତୁ ପଞ୍ଚମ ଇତି ।

ବୋଇଲି । ବିଭୀଷଣ ପଳାଇଛନ୍ତି ଇଙ୍ଗିତଗତ କଥା ଯେ ।
ବଲ୍ଲଭ ବୋଲି ନ ଲଭ ମୋତେରେ ମନୋବ୍ୟଥା ଯେ ।୫୫।
ବୋଇଲି । ବିଳାସବତୀ ଯୁବତୀ ବିଷ୍ଣୁପୁରେ ମୋର ଯେ ।
ବଙ୍କା ଉପପତି ପରି ଉପପତି କର ଯେ ।୫୬।
ବୋଇଲି । ବିନାଶେନେ ହୁତାଶନେ ଝେବେ ଦେବ ଝାସ ଯେ ।
ବ୍ୟର୍ଥପ୍ରସଙ୍ଗ ମୋ ସଙ୍ଗ ପାଇବାର ଆଶ ଯେ ।୫୭।

---

୫୫ଶ ପଦ—ବୋଇଲି "ମୋର ସାନଭାଇ" ବିଭୀଷଣ ଗତ କଥା ଇଙ୍ଗିତ (ଏ ସମସ୍ତ କଥା ଜାଣିପାରି) ପଳାଇଛନ୍ତି । "ମୁଁ ଏହାଙ୍କ ସଙ୍ଗରେ ଥିଲେ ନିଶ୍ଚୟ ମରିବି ଏହା ଭାବି" । "ତୁମ୍ଭେ ଆମ୍ଭର" ବଲ୍ଲଭ "ବୋଲି" ମୋତେରେ (ମୋଠାରେ) ମନୋବ୍ୟଥା (ମନଦୁଃଖ) ନ ଲଭ (ନ ପାଅ) ।୫୫।

୫୬ଶ ପଦ—"ପୁଣି" ବୋଇଲି ବିଳାସବତୀ ଯୁବତୀ ବିଷ୍ଣୁପୁରେ (ବୈକୁଣ୍ଠରେ) ମୋର "ଅଛନ୍ତି" । ଆଗୋ ବଙ୍କା (ପଣ୍ଡିତାମାନେ) "ମୁଁ ତୁମ୍ଭର" ଉପପତି (ଜାର ପୁରୁଷ) ପରି "ମୋ ଅଭାବରେ ତୁମ୍ଭେମାନେ ଚିନ୍ତା ନକରି ଉପପତି (ଅନ୍ୟପୁରୁଷ) କର" । "ତୁମ୍ଭେମାନେ ବୋଲିପାର ଅନୁଗମନ କଲେ ୧ ତିନକୋଟି ପଞ୍ଚାଶସହସ୍ର ବର୍ଷ ତୁମ୍ଭସଙ୍ଗେ ସ୍ୱର୍ଗରେ ବସିବୁଁ ଅନ୍ୟ ପତି କରି କାହିଁକି ନରକରେ ପଡ଼ିବୁଁ ?" ।୫୬।

୫୭ଶ ପଦ—ବୋଇଲି ବିନାଶେନେ (ମୁଁ ମଲେ) "ତୁମ୍ଭେମାନେ" ଯେବେ ହୁତାଶନେ (ଅଗ୍ନି ମଧ୍ୟରେ) ଝାସ ଦେବ "ତେବେ" ମୋ ସଙ୍ଗ ପାଇବାର ଆଶ (ମୋ ସଙ୍ଗ ପ୍ରସଙ୍ଗ ପାଇବା ଆଶା ତୁମ୍ଭର) ବ୍ୟର୍ଥ (ବିଫଳ) ହେବ । "ମୁଁ ମଲେ ବୈକୁଣ୍ଠକୁ ଯିବି, ତୁମ୍ଭେମାନେ ସ୍ୱର୍ଗକୁ ଯିବ, ମୁଁ କେଉଁ ବାଟରେ ଯିବି ତୁମ୍ଭେ କେଉଁ ବାଟରେ ଯିବ ତୁମ୍ଭର ମୋହର ଆଉ ଭେଟ ହୋଇବ ନାହିଁ ଏହା ଭାବି" ✻ ।୫୭।

---

୧—ତିସ୍ରଃ କୋଟ୍ୟର୍ଦ୍ଧକୋଟିଶ୍ଚ ଯାନିଲୋମାନି ମାନୁଷେ ।
ତାବତ୍କାଲଂ ବସେତ୍ ସ୍ୱର୍ଗେ ଭର୍ତ୍ତାରଂ ଯାନୁଗଚ୍ଛତି । ଇତି ଧର୍ମଶାସ୍ତ୍ରେ ।
✻—ପରଲୋକଜୁଷାଂ ସ୍ୱକର୍ମଭିର୍ଗତୟୋ ଭିନ୍ନପଥାହି ଦେହିନାଂ ।
ଇତି ଅଜବିଳାପେ ।

ବୋଇଲା । ବାରଦ ବାରି ଦାନରେ ପ୍ରମତ୍ତ ଗୃତକା ଯେ ।
ବହନ୍ତୁଇ ସୁରନଦୀ ସୁରସେ ଆଉ କି ଯେ ।୫୮।
ବୋଇଲା । ବିପ୍ରରାଜପୂଜନ-ନାରାଜ ମୋକ୍ଷଦାତା ଯେ ।
ବିଭ୍ରମୁଁ ଜଗତେ ଗତେ ପାତାଳେ ମୁଁ ସ୍ଥିତା ଯେ ।୫୯।
ବୋଇଲା । ବିଲୋକିତ ଅଲୋକିତ ପୁର ମୁହିଁ ଡୋଳେ ଯେ ।
ବାମା ପୁଂସ ମଣ୍ଡପେ ମଣ୍ଡନ ପଶା ଖେଳେ ଯେ ।୬୦।
ବୋଇଲା । ବିଘ୍ରତିକ ଚନ୍ଦ୍ରମାର ରତି ମାର ମୂର୍ତ୍ତି ଯେ ।
ବାଣୀ ନ୍ୟାସେ କେ ଅନ୍ୟାସେ ସେ ଭାରଖି ରତି ଯେ ।୬୧।

---

୫୮ଶ ପଦ—ବୋଇଲା (ପୁଣି କହିଲା) ଦାରଦ (ମେଘ) ବାରି (ଜଳ) ଦାନରେ ଗୃତକା (ଚାତକା ଚଢ଼େଇ) ପ୍ରମତ୍ତ (ମତ୍ତା ହୋଇ) "ଅଛି"। "କିନ୍ତୁ" ସୁରନଦୀ (ଗଙ୍ଗାର) ସୁରସେ (ଉତ୍ତମ ଜଳରେ) ଆଉ ସେ ବହନ୍ତୁଇ କି ? (ବହନ୍ତି ନାହିଁ)। "ସେହିପରି ବୈକୁଣ୍ଠପୁର ସ୍ତ୍ରୀଙ୍କି ଛାଡ଼ି ତୁମ୍ଭ ପରି ବହନ୍ତିବେ ନାହିଁ ଏହି ଭାବ"। ୫୮ ।

୫୯ଶ ପଦ—ବୋଇଲା (ପୁଣି କହିଲା) ବିପ୍ରରାଜ ପୂଜନ (ଦ୍ୱିଜରାଜ ପୂଜିତ ନାରାୟଣଙ୍କର) ନାରାଜ (ନାରାଚ) "ମୋହର" ମୋକ୍ଷଦାତା (ମୋକ୍ଷପ୍ରଦ ଅଟେ)। "ରାମ ଶରେ ମଲେ ବୈକୁଣ୍ଠକୁ ଯିବ ଏହି ଭାବ"। ଗତେ (ପୂର୍ବ ଅବସ୍ଥାରେ) ଜଗତେ (ଜଗତ ମଧ୍ୟରେ) ମୁଁ ବିଭ୍ରମୁଁ (ଭ୍ରମଣ କରନ୍ତେ) ପାତାଳେ (ପାତାଳପୁରରେ) ସ୍ଥିତା (ରହିଲି)। ୫୯ ।

୬୦ଶ ପଦ—ବୋଇଲା (ପୁଣି କହିଲା) "ସେ ପାତାଳ ପୁରରେ" ମୁହିଁ ଡୋଳେ (ସ୍ୱଚକ୍ଷୁରେ) ଅଲୋକିତ (ଶୁଦ୍ଧି ନୁହଇ ଏମନ୍ତ) ପୁର ବିଲୋକିତ (ଦେଖିଲି) ତା ମଧ୍ୟରେ ମଣ୍ଡପେ (ଏକ ମଣ୍ଡପରେ) ମଣ୍ଡନ "ହୋଇ" ବାମା ପୁଂସ (ସ୍ତ୍ରୀ ପୁରୁଷ ଦୁଇଜଣ) ପଶାଖେଳେ (ଖେଳୁଛନ୍ତି)।।

୬୧ଶ ପଦ—"ପୁଣି" ବୋଇଲା "ସେ ପୁର" ଚନ୍ଦ୍ରମାର ବିଘ୍ରତିକ (ଚନ୍ଦ୍ର ପ୍ରଭା ପ୍ରାପ୍ତ ହୋଇଅଛି) "ଏହାଦ୍ୱାରା ଶୀତଳମନ୍ତ ପୁର ସୂଚିତ ହେଲା"। "ତୁମ୍ଭେ" କେ (କିଏ) ରତି ମାର (ରତି କାମ) ମୂର୍ତ୍ତି "ପ୍ରାପ୍ତ ହୋଇଛ" ?

ବୋଇଲ । ବିଷ୍ଣୁ ମହିମା ଏ ମସ୍ତବନ୍ଧା ଶର ବଶ ଯେ ।
ବେଦଖଣ୍ଡ ମସ୍ତଲତା ମହିଳା ପୁରୁଷ ଯେ ।୭୨।
ବୋଇଲ । ବଦୃଷ୍ଟି ଏ ଶ୍ରୁତିକଥା ଶ୍ରୁତିକଥା ପର ଯେ ।
ବନୋଧି ସାରଙ୍ଗରେ ଶାରଙ୍ଗ-ଶର-ଧାସ୍ତି ଯେ ।୭୩।

---

ଏମନ୍ତ ବାଣୀ ( ବଚନ ) ମୁଁ ନ୍ୟାସେ ( ବିନ୍ୟାସ କରନ୍ତେ ) ସେ "ଦୁହେଁ" ଅନ୍ୟାସେ ( ଅନାୟାସରେ ) ଋତିଶ ରତ୍ଯ (ପ୍ରୀତିକଥା) "ପ୍ରକାଶିଲେ" ।୭୧।

୭୨ଶ ପଦ—ବୋଇଲ ( ସେ ଦୁହେଁ ଏମନ୍ତ କହିଲେ ) ବିଷ୍ଣୁର ମହିମା ଏ ( ଏହି ) "ପୂର୍ବକାଳରେ ଆମ୍ଭେ" ମସ୍ତଲତା ( ଜାଆ )୭ "ଜନ୍ମ ପାଇଥିଲୁଁ" "ବିଷ୍ଣୁ ଦାନବ ମାରଣର" ବଶ ( ବଶୀଭୂତ )। "ହୋଇ" ଶର "ଗୋଟିଏ" ମସ୍ତ ବନ୍ଧା ( ମସ୍ତକ ବନ୍ଧିଲେ ) "ତହିଁରେ ଆମ୍ଭେ" ବେଳଖଣ୍ଡ "ହେଲୁ" । "ବଡ଼ଖଣ୍ଡ" ପୁରୁଷ "ସାନଖଣ୍ଡ" ମହିଳା (ସ୍ତ୍ରୀ) ହେଲୁ (ଆମ୍ଭେ ସେହି ସ୍ତ୍ରୀ ପୁରୁଷ ଏହିଭଳି) ।୭" ମୁଁ ତାଙ୍କ ପଶା ଖେଳ ଦେଖନ୍ତେ କାଠି ଗଡ଼ି ଯିବାରୁ ଆଣିଦିଅ ବୋଲି ମୋତେ କହିଲେ । ମୁଁ ଯଥାସାଧ୍ୟରେ ପଶାକାଠି ତୋଳି ନ ପାରି ଲଜ୍ଜିତ ହୋଇ କହିଲି ମୁଁ ଯାଉଛି, ସେ ହସି କହିଲେ ତୁ ବଣବାସ୍ତିଷି ପୁଅ । ମୁଁ କହିଲି ତୁମ୍ଭେ କିରୂପେ ଜାଣିଲ । ସେ କହିଲେ ତୁ ବିଷ୍ଣୁ ଭକ୍ତ ଅଳ୍ପଦୋଷରେ ମର୍ତ୍ତ୍ୟରେ ଜନ୍ମିଛୁ ତିରିଶି ଏପୁର ତୋତେ ଦେଖାଗଲି, ବିଷ୍ଣୁ ହସ୍ତରେ ମଲେ ମୋକ୍ଷ ପାଇବୁ । ଆମ୍ଭେ ଦୁହେଁ ଦେବଦେବୀ ଜାଣ ।" ଏ ଚରିତ ଲଙ୍କାକାଣ୍ଡରୁ ଉଦ୍ଧାର କଲୁଁ । ଗ୍ରନ୍ଥ ବିସ୍ତୃତ ଭୟରେ କବି ଲେଖି ନାହାନ୍ତି । ୭୨ ।

୭୩ଶ ପଦ—ବୋଇଲ ( ପୁଣି କହିଲ ) ବଦୃଷ୍ଟି ( ଦେଖିବା କଥାନୁହେ ) ଏ ଶ୍ରୁତିକଥା ପର ( ବେଦକଥାପ୍ରାୟ ) ଶ୍ରୁତିକଥା ( ଶୁଣିମା କଥା ) ଶାରଙ୍ଗ ଶରଧାସ୍ତି ( ବିଷ୍ଣୁ ) ୧ ଶାରଙ୍ଗରେ ( ଧରଣୀରେ ) ବନୋଧି ( କେଳିବନ୍ତ ) "ହେବେ" । ୭୩ ।

---

୧—ଧରଣୌ ଶାରଙ୍ଗଶବ୍ଦୋମଣୌ । ଇତି ଶବ୍ଦମାଳା ।

ବୋଇଲା । ବିଭେଦନେ ମାର୍ଗଣ ସେ ଗଣେ ଦିବ୍ୟଦେହୀ ଯେ ।
ବିହାୟସେ ବିହାରି ସେ ବିମାନ ଆରୋହି ଯେ ।୬୪।
ବୋଇଲା । ବନେ ଈକ୍ଷଣପତନେ ତତକ୍ଷଣ ବାଞ୍ଛି ଯେ ।
ବଡ଼ପାତକୀ ଆତଙ୍କୀ ମୁଁ ସୀତା ଆଣିଛି ଯେ ।୬୫।
ବୋଇଲା । ବିଶ୍ୱ ଚତୁର ଲପନ କଳପନ ଜାଣ ଯେ ।
ବ୍ରହ୍ମପ୍ରଳୟରେ ତାର କ୍ଷୟ ହୋଏ ପୁଣ ଯେ ।୬୬।
ବୋଇଲା । ବିତପନ ଆୟୁଷ ଛପନଗଣ୍ଡା ଯୁଗ ଯେ ।
ବାହୁଡ଼ାଇ ହୁଡ଼ିବିକି ଏଡ଼େ ଶୁଭ ଯୋଗ ଯେ ।୬୭।

---

୬୪ଶ ପଦ—"ପୁଣି" ବୋଇଲା "ସେ ବିଷ୍ଣୁଙ୍କର" ମାର୍ଗଣ (ଶରରେ) ବିଭେଦନେ (ତୁ ବିଦାରିତ ହୁଅନ୍ତେ) ସେ ଗଣେ (ବିଷ୍ଣୁଗଣ ମାନେ) ଦିବ୍ୟଦେହୀ (ଦିବ୍ୟ ଶରୀର ପାଇ) ବିମାନ (ବ୍ୟୋମଯାନ) ଆରୋହି (ଚଢ଼ି) ବିହାୟସେ (ଆକାଶରେ) ବିହାରି (ବିହାର କରି) "ବିଷ୍ଣୁପୁରକୁ ଯିବୁଁ" ସେ (ମହାତ୍ମା) "ମୋତେ ଏରୂପେ କହିଥିଲେ" ।୬୪।

୬୫ଶ ପଦ—ବୋଇଲା (ପୁଣି କହିଲା) ବନେ (ଦଣ୍ଡକାରଣ୍ୟରେ) ଈକ୍ଷଣ ପତନେ (ରାମଶରେ ମରିବା ମୃଗେ ବୈକୁଣ୍ଠ ଯିବାର ଚକ୍ଷୁରେ ଦେଖନ୍ତେ) ତତ୍କ୍ଷଣ (ସେହିକ୍ଷଣି) ବାଞ୍ଛି (ପୂର୍ବରେ ମହାତ୍ମା କହିଥିବା କଥାକୁ ବିଶ୍ୱାସି) ମୁଁ ବଡ଼ପାତକୀ "ଥିବାରୁ" ୧ ଆତଙ୍କୀ (ସନ୍ତାପୀ) ହୋଇ ସୀତା ଆଣିଛି ॥

୬୬ଶ ପଦ—ବୋଇଲା (ପୁଣି କହିଲା) ଚତୁର ଲପନ (ବ୍ରହ୍ମା) ବିଶ୍ୱକଳପନ (ସଂସାର କଳ୍ପନା କରିବା ଲୋକ) ଜାଣ ତାର ପୁଣ (ସେହି-ବ୍ରହ୍ମାର ମଧ୍ୟ) ବ୍ରହ୍ମ ପ୍ରଳୟରେ କ୍ଷୟ (ବିନାଶ) ହୁଏ । "ସେ ମଧ୍ୟ ଚିରାୟୁ ନୁହେ ଏହିଭାବ" । ୬୬ ।

୬୭ଶ ପଦ—ବୋଇଲା (ପୁଣି କହିଲା) "ଯିବଲି ବିଧାତା ମୋତେ ବରଦେବାରୁ ମୋର" ଆୟୁଷ ଛପନଗଣ୍ଡା ଯୁଗ ବିତପନ (ନଷ୍ଟପ୍ରାୟ) "ଏଥିରୁ ଆଉ ଅଧିକ ନାହିଁ ଏହିଭାବ" । "ଏହି ଭୋଗ ଶେଷରେ ମଲେ-ନରକ ଗତି, ବୈକୁଣ୍ଠ ପାଇବି ନାହିଁ ରାମ ହସ୍ତରେ ମଲେ ବୈକୁଣ୍ଠକୁ ଯିବି,

---

୧—ଆତଙ୍କୋ ରୋଗ ସନ୍ତାପ ଶଙ୍କାସୁରମୁରଜଧ୍ୱନୌ । ଇତି ମେଦିନୀ ।

ବୋଇଲା । ବଲ୍ଲୀଖିତ୍ରାତଙ୍କ ଅଶ୍ରୁ ଜ୍ୟାତକୁ ଅନାଇଁ ଯେ ।
ବହନ ଆତଙ୍କ ପର୍ଜନ୍ୟପାତକ ମୁହିଁ ଯେ ।୬୮।
ବୋଇଲା । ବହି ଚନ୍ଦ୍ରହାସ ଚନ୍ଦ୍ରହାସ ଝମକାଇ ଯେ
ବଚ୍ଛେଦବ ଶତ୍ରୁ ରଣେ ଶରଣ କେ ନାହିଁ ଯେ ।୬୯।
ବୋଇଲା । ବାର୍ଦ୍ଧିଦତ୍ତବାଳୀ ବାଳକ ସେ ଅଛି ବଧି ଯେ ।
ବାଳୀଶି ପ୍ରିୟା ତୁ କୂଟ କରି କୂଟୀ ବାନ୍ଧ ଯେ ।୭୦।

---

ଏଣୁ ସୀତା" ବାହୁଡ଼ାଇ ( ଫେରାଇ ଦେଇ ) ଏତେ ଶୁଭଯୋଗ ହୁଅବ କି ( ହୋଇବ କି ) ? "ସୀତା ଦେଲେ ରାମ ମୋତେ ନ ମାରିବେ ଏହି ନଷ୍ଟ-ସ୍ୱାର୍ଥ" । ୬୭ ।

୬୮ଶ ପଦ—ବଲ୍ଲୀଖିତ୍ରାତଙ୍କ ( ରାଣୀମାନଙ୍କର ) ଅଶ୍ରୁ ଜ୍ୟାତକୁ ( ଚକ୍ଷୁରୁ ଲୁହ ବହିବାର )° ଅନାଇଁ ( ଦେଖି ) ବୋଇଲା "ତୁମ୍ଭେ" ଆତଙ୍କ ( ସନ୍ତାପ ) ନ ବହ ( ନ କର ) "ଯେଣୁ" ମୁହିଁ ପର୍ଜନ୍ୟପାତକ ( ଶତ୍ରୁ ସଂହାରକ ) "ଅଟେ" । ୬୮ ।

୬୯ଶ ପଦ—"ରାଣୀମାନଙ୍କୁ ଏରୂପେ ବୋଧଦେଇ" ଚନ୍ଦ୍ରହାସ ( ଚନ୍ଦ୍ର ତୁଲ୍ୟ ହାସ୍ୟ ) ବହି ( ପ୍ରକାଶ କରି ) ଚନ୍ଦ୍ରହାସ "ନାମକଖଡ୍ଗ" ଝମକାଇ ବୋଇଲା ରଣେ ( ଯୁଦ୍ଧରେ )° ଶତ୍ରୁ ( ନର ବାନରଙ୍କୁ ) ବଚ୍ଛେଦବ ( କାଟିବି ) ୧ ଶରଣ ( ତାଙ୍କୁ ରକ୍ଷାକରିବାକୁ ) କେ ( କେହି ) ନାହିଁ । ୬୯ ।

୭୦ଶ ପଦ—"ରାବଣ ପ୍ରତିଜ୍ଞାଶୁଣି" ବାର୍ଦ୍ଧିଦତ୍ତ ( ସମୁଦ୍ର ପ୍ରଦତ୍ତ ) ବାଳୀ ( କନ୍ୟା ) "ଜାନ୍ତମତୀ" ବୋଇଲା ସେ ( ରାମ ) ବାଳିକ ( ମହାବଳୀ ବାନରରାଜା ବାଳୀ ) ବଧିଅଛି । "ଏହାଶୁଣି ରାବଣ କହିଲା" ରେ ପ୍ରିୟା ! ତୁ ୧ ବାଳୀଶ (°ପିଲା ବା ମୂର୍ଖବୁଦ୍ଧି ) "ଅଟୁ" । "ସେ ରାମ"°୨ କୂଟ

---

୧—ଶରଣଂ ଗୃହରକ୍ଷିତ୍ରୋ ଶତ୍ରବଧଃ ।

୧—ଶିଶୁମୂର୍ଖୌ । ତୁ ବାଳୀଶାଭିଧ କୋଷଃ ।

୨—କୂଟୋଽସ୍ତ୍ରୀନିଶ୍ଚଳେ, ରାଶୌ ଲୋହମୁଦ୍‌ଗରଦମ୍ଭୟୋଃ ।
ମାୟାଦ୍ରିଶୃଙ୍ଗୟୋଃ ସଞ୍ଚେ.ସୀରବୟବ ଦମ୍ଭୟୋଃ ।° ଇତ୍ୟମରଃ ।

ବୋଇଲା । ବ୍ୟାଘ୍ରବର, ଶବର ମାରନ୍ତି ଗୁଳଯୋଗେ ଯେ ।
ବିହନ୍ତି କି ଦନ୍ତିକି ବିବାଦ ରଚି ଆଗେ ଯେ ।୭୧।
ବୋଇଲା । ବାସ୍ତରପଦରେ ଗ୍ଭନ୍ଦ ଭଞ୍ଜ ଉପଇନ୍ଦ୍ର ଯେ ।
ବିସ୍ତର ଅନୁସରଣ ଅନୁପ୍ରାସେ ସାନ୍ଦ୍ର ଯେ ।୭୨।

—ଃ୦ଃ—

କରି ( କପଟରେ ) କୃଟୀ ବାନ୍ଧି ( ମାଟ୍ଟିକର ଛପିଲାପ୍ରାୟ ଛପି ) "ବାଳକ ମାରିଲ ସମ୍ମୁଖ ଯୁଦ୍ଧରେ ନୁହେ, ଏହା ତୁ ବୁଝି ନ ଥିବାରୁ କହିଲୁ ଏହି ଫଳିତାର୍ଥ" । ୭୦

୭୧ଶ ପଦ—"ପୁଣି" ବୋଇଲା ଶବର "ଲୁଚକରି" ଗୁଳଯୋଗେ ( ଗୁଳିମାରି ) ବ୍ୟାଘ୍ରବର ( ମହାବଳି ବାଘକୁ ) ମାରନ୍ତି । ଦନ୍ତୀ ( ଦନ୍ତାବଳ ହାତୀର ) ଆଗେ ( ଆଗରେ ) ବିବାଦ ରଚି ( କରି ) "ଶବରମାନେ" ବିହନ୍ତି କି ( ବିଶେଷରେ ମାରି ପାରନ୍ତି କି ? ) "ସେପରି ରାମ ଲୁଚି ବାଳିକି ମାରିଛି, ସମ୍ମୁଖଯୁଦ୍ଧରେ ମାରି ପାରନ୍ତା ନାହିଁ ମତେ ତୁ ଏହିପରି ଜାଣ ମୋ ଆଗରୁ ରାମ କେବେ ବଞ୍ଚିବ ନାହିଁ ଏହି ଫଳିତାର୍ଥ" । ୭୧ ।

୭୨ଶ ପଦ—ପନୁସରଣ ( ଅନୁଗତ ) ଅନୁପ୍ରାସେ ( ଅନୁପ୍ରାସ ଅଳଙ୍କାରରେ ) ସାନ୍ଦ୍ର ( ସୁନ୍ଦର ) ଗ୍ଭନ୍ଦ ବାସ୍ତରପଦରେ ଉପଇନ୍ଦ୍ର ( ଉପେନ୍ଦ୍ରଭଞ୍ଜ କବି ) ବୋଇଲା । ୭୨ ।

—ଃ✳ଃ—

## ଊନପଞ୍ଚାଶତ୍ ଛାନ୍ଦ

ରାଗ—ବଙ୍ଗଳାଶ୍ରୀ

ବରି ବିଘାବଘା ଥାଉଁ ଯେ ଦୈବାତରେ ସମ୍ପରେ ସୈନ୍ୟ ଅଣାଇ
ବକ୍ତ୍ରମାଳୀ ବକ୍ତ୍ର ମାଳୀ ଅସ୍ତ୍ର ଶସ୍ତ୍ର ବସ୍ତ୍ର ଅଳଂକାର ଦେଇ ।୧।
ବେଗେ ଉନ୍ନଦଗେ ଭିନ୍ନ ଭିନ୍ନ କରି କଷୀ ହରି ରଥ ପେଷି ।
ବହୁତ ମାହୁନ୍ତ ରାଉତ ସାରଥୀ ରଥୀ ବସି ଅସି କଷି ।୨।

---

## ଊନପଞ୍ଚାଶତ୍ ଛାନ୍ଦ

୧ମ ପଦ—ବକ୍ତ୍ରମାଳୀ ( ରାବଣ ) ବିଘାବଘା ( ରାକ୍ଷି ) ଥାଉଁ ଦୈବାତରେ ( ଦୈବଯୋଗେ ) ସମ୍ପରେ ( ଯୁଦ୍ଧ ସମ୍ପାରରେ ) ସୈନ୍ୟ ( ସୈନ୍ୟମାନଙ୍କୁ ) ବରି ( ବରଣକରି ) ଅଣାଇ ବକ୍ତ୍ର ( ସାଞ୍ଜୁ ) ୨ ମାଳୀ ( ରତ୍ନମାଳ ) ଅସ୍ତ୍ର ( ଶର ) ଶସ୍ତ୍ର ( ଖଡ଼୍ଗଆଦି ) ବସ୍ତ୍ର ୩ ଅଳଙ୍କାର ଦେଇ ( ଏମାନ ସବୁ ତାଙ୍କୁ ଦେଲ ) । ୧ ।

୨ୟ ପିଦ—"ଏକାନ୍ତରେ" ବେଗେ ଉନ୍ନଦଗେ ( ଶୀଘ୍ର ସମ୍ମୁଖ-ହୁଅନ୍ତଥିବା ଉନ୍ନଦଗଙ୍କୁ ) ଭିନ୍ନ ଭିନ୍ନ କରି କଷୀ ( କସ୍ତୀ ) ହରି ( ଅଶ୍ୱ ) ରଥ ପେଷି ( ପଠାଇଲ ) । "ହସ୍ତିଙ୍କ ଉପରେ" ମାହୁନ୍ତ, "ଅଶ୍ୱଙ୍କ ଉପରେ" ରାଉତ ( ସିପାହି ), "ରଥ ଉପରେ" ରଥୀ ବସି ସାରଥି ( ସାରଥିଙ୍କ ଦ୍ୱାରା-ରଥ ଚଳାଇ ) ଅସି ( ଖଣ୍ଡା ) କଷି ବହୁତ ( ଅନେକ ) ଗଲେ । "ପଦାତି ସୈନ୍ୟ ଆପେ ରଖିଲ ✱ ରୂପେ ଚତୁରଙ୍ଗଦଳ ସାଜିଲ ଏହିଭାବ" । ୨ ।

---

୧—ବକ୍ତ୍ରାସ୍ୟେ ଲପନଂ ତୁଣ୍ଡ ମିତ୍ୟମରଃ ।
୨—ମାଲାସ୍ତୁ ପଂକ୍ତି କାନନେ ଇତି ଶବ୍ଦମାଳା ।
୩—ଅଲଂକାରସ୍ତ୍ୱାଭରଣମିତ୍ୟମରଃ ।
✱ହସ୍ତ୍ୟଶ୍ୱରଥପାଦାତଂ ସେନାଙ୍ଗଂସ୍ୟାଚତୁଷ୍ଟୟଂ । ଇତ୍ୟମରଃ ।

ବାହୁମୀ ହୋଇ ବାହୁତ ଯାନମାନ ମାନବଶେ ପୁବମାନେ ।
ବୁଦ୍ଧି ଶାଖାମୃଗ ମୃଗ କରି ଜଗି ମାରିବା ବ୍ୟାଧସମାନେ ।୩।
ବଳ ପରବଳ ଗୃହ୍ନି ପରବଳ ମାର ମାର ଆଜ ଭଣେ ।
ବାନର ନର ସିନା କେତେ ମାତର ମନ୍ଥିବ ଥିବ ମୁଁ ରଣେ ।୪।
ବାଦ୍ୟବାଜଣା ଜଣାଅର୍ଥେ ନ କର ପରସ୍ପରେ କଥା ନୋହି ।
ବିପିନ ପୀନଶିଳାପଟଳେ ସେ ଦ୍ୱୀପୀ ପ୍ରାୟେ ଅବଦାତ ହୋଇ ।୫।

---

୩ୟ ପଦ—"ରାବଣର" ପୁବମାନେ ମାନବଶେ ( ଅଭିମାନ ପାଇ ) "ଆପେ" ବାହୁମୀ ( ବାହକ ) ହୋଇ ଯାନମାନ ( ରଥ ) ବାହୁତ ( ବାହିଲେ ) । ବ୍ୟାଧ ସମାନେ ବୁଦ୍ଧିକରି ( ବ୍ୟାଧପାୟ ଲୁଚି ରହି ) ମୃଗ ମାରିବାପ୍ରାୟ ଶାଖାମୃଗ ( କପିଙ୍କୁ ) ଜଗି ମାରିବା । "ଏହା ଘୋଷିଗଲେ" ।୩।

୪ର୍ଥ ପଦ—"ରାବଣ ଆପଣାର" ପରବଳ ( ପ୍ରବଳ ) ବଳ ଗୃହ୍ନି ( ସୈନ୍ୟଙ୍କୁ ଅନାଇ ) ଭଣେ ( କହେ ) ଆଜ ପରବଳ ( ଶତ୍ରୁସୈନ୍ୟଙ୍କୁ ) ମାର ମାର, ମୁଁ ରଣେ ( ଯୁଦ୍ଧରେ ) ଥିବି ବାନର ନର ସିନା କେତେ [1] ମାତର (ମାତ୍ର) ମନ୍ଥିବ (ମନ୍ଥି ପକାଇବ) "ତୁମ୍ଭେ କିଛି ଭୟକରନା" ।୪।

୫ମ ପଦ—ସେ ( ସୈନ୍ୟସବୁ ) ଜଣା ଅର୍ଥେ ( ରାମ ସୈନ୍ୟଜାଣି ପାରିବେ ଏଥିପାଇଁ ) ବାଦ୍ୟ ବାଜଣା ନ କରି ( ବାଜା ନ ବଜାଇ ) ପରସ୍ପରେ କଥାନୋହି ( ତୁନିହୋଇ ) ବିପିନ ପୀନଶିଳା ପଟଳେ ( ଅରଣ୍ୟରେ ବଡ଼ ବଡ ପଥର ପଟଳରେ ) ଦ୍ୱୀପୀ ( ବ୍ୟାଘ୍ର ) ପ୍ରାୟେ ଅବଦାତ ହୋଇ ( ଲୁଚି ରହିଲେ ) । ୫ ।

---

୧—ମାତ୍ରଂ କାର୍ତ୍ସ୍ନେ ଽବଧାରଣେ ଇତ୍ୟମରଃ ।

ବାହାରେ ବାହାରେ ହ୍ୱଂଶବାହା ବାନ୍ଧି ବଇରୀଙ୍କ ବିଭ୍ରାଟ ବାନା ।
ବସି ପୁଷ୍ପକରେ କରବାଳକରେ କରଇ ସୁରେ ତର୍ଜନା । ୬ ।
ବିଗ୍ରହ ରଙ୍ଗ ଚତୁର ଚତୁରଙ୍ଗ ସଙ୍ଗର ବହ୍ନି ସଙ୍ଗର ।
ବଳାଇ ଅନଳଗଡ଼ କର ମାର୍ଗ ଦୁର୍ଗମ ଦୁର୍ଗ ସତ୍ୱର । ୭ ।
ବିଗ୍ରାଧାର ଧନୁର୍ଦ୍ଧାରୀ ଜାମ୍ବବାନ ମଙ୍ଗଳାରୋପଣ ବହ୍ନି ।
ବଇରି ମାତ୍ରେ ଗଜଘଣ୍ଟା ଲଭ ବୋଲି ଗଜଘଣ୍ଟାବନ୍ଧକ ଦେଇ । ୮ ।

---

୬ଷ୍ଠ ପଦ—ହ୍ୱଂଶବାହା ( ରାବଣ ) ୧ ବଇରୀ ବିଭ୍ରାଟବାନା ( ଶତ୍ରୁ-ଜୟ ପତାକା ) ବାହାରେ ( ବାହୁରେ ) ବାନ୍ଧି ବାହାରେ ( ବାହାରିଲା ) । ପୁଷ୍ପକରେ ( ପୁଷ୍ପକ ବିମାନରେ ) ବସି କରବାଳକରେ ( ଖଡ୍ଗହସ୍ତହୋଇ ) ସୁରେ ( ଦେବତାଙ୍କୁ ) ତର୍ଜନା କରଇ ( ଭର୍ତ୍ସନାକଲା ) । "ତୁମ୍ଭର ଏ ସବୁ କୃତ ମୁଁ ଜୟକରି ଆସେ, ତୁମ୍ଭକଥା ବୁଝିବି ଏହିକ୍ଷଣ" । ୬ ।

୭ମ ପଦ—ସଙ୍ଗର ( ଯୁଦ୍ଧାର୍ଥେ ) ବିଗ୍ରହରଙ୍ଗ ( ଯୁଦ୍ଧରଙ୍ଗରେ ) ଚତୁର ( ଦକ୍ଷ ) ଚତୁରଙ୍ଗବଳ ସଙ୍ଗର ( ସଙ୍ଗରେ ) ବହ୍ନି ( ଘେନି ) ଅନଳଗଡ଼ ( ପବନଗଡ଼ ) କର ମାର୍ଗ "ସେନାପଥ" ଦୁର୍ଗମ ଦୁର୍ଗ ( ଦୁର୍ଗମ-ଗଡ଼କୁ ) ସତ୍ୱର ( ଶୀଘ୍ର ) ବଳାଇ । "ମାଲଦ୍ୱୀପ ଠଣା କରି ବଳିଗଲେ ଏହିକ୍ଷଣ" । ୭ ।

୮ମ ପଦ—"ରାବଣ ସହିତ ସୈନ୍ୟ ଆସିବା ଦେଖି" ବିଗ୍ରାଧାର (ରାମ) ଧନୁର୍ଦ୍ଧାରୀ "ହୋଇ ଯୁଦ୍ଧକୁ ବାହାରନ୍ତେ" ୧ଜାମ୍ବବାନ ( ମନ୍ତ୍ରୀ )

---

୧—ବଇରି ବିଭ୍ରାଟ ବାନା (ବୈରିବିଭ୍ରାଟବାନ) ଏମନ୍ତ କେହି କେହି ପଢ଼ନ୍ତି ।
ଅର୍ଥ ୧—ବୈରୀ ( ଶତ୍ରୁ ଯାହାକୁ ଦେଖି ) ବିଭ୍ର ( ବିଗତ ପ୍ରଭ ହୋଇ ) ଅଟ ( ଭୟଧ୍ୱନିକରି ) "ପଳାନ୍ତି ଏମନ୍ତ ଯେଉଁ" ବାନା ( ଧ୍ୱଜା )
ସୁପ୍ରଭାରୁଚୁ ଚିତ୍ୟୁ ତ୍ୱିଷ ଭାଭଚ୍ଛବିଦ୍ୟୁତି ଦୀପ୍ତୟଃ ଇତ୍ୟମରଃ । ଉକାଟଃ ଶଙ୍କରେ ତ୍ରାଣେ ଓଙ୍କାରେ ଧ୍ୱନିରୁଚ୍ୟତେ ଇତ୍ୟେକାକ୍ଷର କୋଷଃ ।

ବଜେ କନ୍ଦ୍ର କରୁ କରୁଣାସିନ୍ଧୁର ବେନପାଶେ ଦୃଷ୍ଟିପାତ ।
ବର୍ଣ୍ଣି ନୀଳ ଶ୍ୱେତ କଳିତ ସିନ୍ଧୁର ଘୋଟକ ଘୋଟକ ଏତ । ୯ ।
ବରୋଧେ ସାଗରରୋଧେ ବିଶେ ପଛେ ରଥମୟ ଏ ସମୟେ ।
ବିଭୀଷଣ କହି ଭୀଷଣ ରାବଣ କପଟ ଆଜ ଭିଆଏ । ୧୦ ।

---

ମଙ୍ଗଳାରୋପଣ "ବିଧି" ବିହି (କଲେ) । ବଇଶମାର (ଶାବ ସହାର) [୨] ଗଉରୀ (ଗୌରବର୍ଣ୍ଣା ଭାର୍ଯ୍ୟା) ଲଭି ବୋଲି ଗୌରୀ [୩] ଚନ୍ଦ୍ରକ (ଗୋରୋଚନାଚିତା) ଦେଇ (ଦେଲେ) । ୮ ।

୯ମ ପଦ—"ଯୁଦ୍ଧାର୍ଥେ" ବଜେ କରୂ କରୁ (ଆସୁ ଅସୁ) କରୁଣା-ସିନ୍ଧୁର (ଶ୍ରୀରାମଙ୍କର) ବେନପାଶେ (ଦୁଇପାଖରେ) ଦୃଷ୍ଟିପାତ ହେଲା, "ରାମ ଦୁଇପାଖକୁ ଦେଖିଲେ ଏହିଭାବ" । ନୀଳ ଶ୍ୱେତବର୍ଣ୍ଣି (ନୀଳବର୍ଣ୍ଣ (ଶ୍ୱେତବର୍ଣ୍ଣରେ) କଳିତ (ଶୋଭିତ) ସିନ୍ଧୁର (ହସ୍ତି) ଘୋଟକ (ଅଶ୍ୱ) ଏ ତ (ଏମାନେ ତ) ଘୋଟକ (ଆସି ଘୋଟିଲେ) । ୯ ।

୧୦ମ ପଦ—ଏ ସମୟେ (ହସ୍ତି ଅଶ୍ୱ ଦେଖିଲାବେଳେ) ସାଗର ରୋଧେ (ସମୁଦ୍ର ତୀରରେ) ରଥମୟ (ବହୁତରଥ) ବିରୋଧେ (ବିରୋଧ

---

୧—କେହିବା ବୋଲିବେ ମଙ୍ଗଳାରୋପଣ ଆଉ କେହି ନ କରି ଜାମ୍ବବ କାହିଁକି କଲେ ସେ ବ୍ରହ୍ମାଙ୍କର ପୁତ୍ରଥିବାରୁ କଲେ । ତଦୁକ୍ତଂ ବାଲ୍ମୀକି ରାମାୟଣେ ବାଲକାଣ୍ଡେ—

ପୂର୍ବମେବ ମୟା ସୃଷ୍ଟୋ ଜାମ୍ବବାନୃକ୍ଷପୁଙ୍ଗବଃ ।
ଜୃମ୍ଭମାଣସ୍ୟ ସହସା ମମବକ୍ତ୍ରାଦଜାୟତ ।

୨—ଗୌରୀ ଶିବପ୍ରିୟା ଗୌରୀ ଗୌରୀ ଗୋରୋଚନାସ୍ମୃତା ।
ଗୌରୀ କନ୍ୟାପ୍ରସୂତା ସ୍ତ୍ରୀ ଗୌରୀ ଶୁଦ୍ଧା ଭୂମ୍ୟାତ୍ମଜା ।
ଇତ୍ୟନେକାର୍ଥ ଧ୍ୱନିମଞ୍ଜର୍ଯ୍ୟାଂ ;

୩—ତମାଳପତ୍ରତିଳକ ଚନ୍ଦ୍ରକାଣି ବିଶେଷକ ଇତ୍ୟମରଃ ।

ବିଳାସରେ ନେତ୍ର ମାରୁତମାରର ଜାଣି ଉଲ୍ଲାସରେ ଧାଇଁ ।
ବନ୍ଦନ ବାଳିନନ୍ଦନ ହନୁମାନ ନଳ ଅଭିମାନ ଧାଇଁ ।୧୧।
ବିଗ୍ରହ ଗ୍ରହ ଯୂଥପତି ସେ ଯୂଥ ଯୂଥ କରି ସୈନ୍ୟ ନେଲେ ।
ବେଗେ ମିଶି ଗୋମୂତ୍ର ସର୍ବତୋଭଦ୍ରକ ଶୃଙ୍ଖଳାଛନ୍ଦ ମଞ୍ଜୁଳେ ।୧୨।

---

କରିବା ପାଇଁ ) ପଛେ ( ପଛରେ ) ଧାଇଁ । "ଏମନ୍ତ ଦେଖି" ବିଭୀଷଣ କହି ( କହିଲେ ) ଆଜ ରାବଣ ଭୀଷଣ ( ଭୟଙ୍କର ) କପଟ ଭିଆଏ ( ଭିଆଇଛି ) । ୧୦ ।

୧୧ଶ ପଦ—"ବିଭୀଷଣଠାରୁ ଏମନ୍ତ ଶୁଣି" ମାରୁତମାରର ( ରାମ-ଙ୍କର ) ୧ ନେତ୍ରବିଳାସରେ ( ଆଖିଠାରରୁ ) "ଯୁଦ୍ଧକୁ ଯିବା ମନ" ଜାଣି ବନ୍ଦନ ( ସୁଗ୍ରୀବ ) ବାଳିନନ୍ଦନ ( ଅଙ୍ଗଦ ), ହନୁମାନ୍ ନଳ ଏ ଚାରି ଜଣ ଅଭିମାନ ବୀର ଅହଂକାର ) ଧାଇଁ ( ମନରେ ଧରି ) ଉଲ୍ଲାସରେ ଧାଇଁ ( ଧାଇଁଲେ ) । ୧୧ ।

୧୨ଶ ପଦ—ଚାରି ୧ ଯୂଥପତି ( ସୁଗ୍ରୀବ ଅଙ୍ଗଦ ହନୁମାନ୍ ନଳ ) ବିଗ୍ରହ ( ବିଗ୍ରହ କରି ) ଯୂଥ ଯୂଥ ( ବୃନ୍ଦ ବୃନ୍ଦ ) କରି ସୈନ୍ୟ "ବାଣ୍ଟି" ନେଲେ । ବେଗେ ଗୋମୂତ୍ର ଛନ୍ଦ, ସର୍ବତୋଭଦ୍ରକ ଛନ୍ଦ, ଶୃଙ୍ଖଳାଛନ୍ଦ "ଏମା-ନଙ୍କରେ ମିଶି ମଞ୍ଜୁଳେ ( ମନୋହର ) "ଯୁଦ୍ଧ କଲେ" । ୧୨ ।

---

୧—ଆକାରୈ ରିଙ୍ଗିତୈର୍ଗତ୍ୟା ଚେଷ୍ଟୟା ଭାଷଣେନ ଚ ।
ନେତ୍ରବକ୍ତ୍ରବିକାରେଣ ଲକ୍ଷ୍ୟତେଽନ୍ତର୍ଗତଂ ମନଃ । ଇତି ଗ୍ରନ୍ଥାନ୍ତରେ ।
୧—ସଜାତୀୟୈଃ କୁଳଂ ଯୂଥଂ ତିରଶ୍ଚାଂ ପୁଂ ନପୁଂସକଂ ଇତ୍ୟମରଃ ।
ଯୂଥାଦିଃ ପୁଂକ୍ଲୀବ ସମୂହେ ସ୍ତ୍ରୀ ବୃନ୍ଦମାତ୍ରେ ଚ ଦୃଶ୍ୟତେ ଇତି ମେଦିନୀ ।

ଏ ପଦ ଗୋମୂତ୍ରଛନ୍ଦ

ବାଜି ବାଣ ହୃଦ ଘାତ କୁନ୍ତପାତ ଗର୍ତ୍ତ ଶବ ବାଧୀ ରନ୍ଧି ।
ବାଜିଗଣ ପାଦଧୃତ ହତଚେତ ଆର୍ତ୍ତିରବ ସାଧୀ ବନ୍ଧି ।୧୩।

ଏ ପଦ ସର୍ବଯମକ

ବିଦାରଣ ହେଲେ ସେ ବଳୀ କୁଞ୍ଜରେ ପ୍ରହାରଣେ କର ଦନ୍ତୀ ।
ବିଦାରଣ ହେଲେ ସେ ବଳୀ କୁଞ୍ଜରେ ପ୍ରହାରଣେ କରଦନ୍ତୀ ।୧୪।

ଏ ପଦ ଶୃଙ୍ଖଳା

ବିରଥୀ ରଥିର ମନ ମନ କପି କପୀଶ ଶ-ବଶ ବର ।
ବରଷ୍ଟକ ବର ଶକତି କତିର ତିରସ୍କର ଳର ବୀର ।୧୫।

---

୧୩ଶ ପଦ—"ଗୋମୂତ୍ର ଛନ୍ଦ" ବାଧୀ (ପ୍ରତିବାଧୀ) "ରାକ୍ଷସମାନଙ୍କ" ବାଣ "ବାନରଙ୍କ" ହୃଦ ( ହୃଦୟରେ ) ବାଜି ଘାତ "ବଳି" । କୁନ୍ତ ପାତ ( ରାକ୍ଷସଙ୍କ କୁନ୍ତଘାତରେ ) ୧ ଗର୍ତ୍ତ ( ଗାତ ) "ହେବାରୁ ବନରେ" ଶବ "ପ୍ରାୟ ନିଚେଷ୍ଟ ହୋଇ" ରନ୍ଧି ( ରନ୍ଧିଲେ ) । "ହୋଦେଖି ବାନରବୀରେ" ସାଧୀ ( ସିପାହିମାନଙ୍କର ) ବାଜିଗଣ ( ଅଶ୍ୱମାନଙ୍କର ) ପାଦ ଧୃତ ( ଧରି ଓଟାରନ୍ତେ ) ହତଚେତ ( ନିଚେଷ୍ଟ ହୋଇ ) ଆର୍ତ୍ତିରବ ( ଆର୍ତ୍ତିଧ୍ୱନି ) ବନ୍ଧି ( କଲେ ) । ୧୩ ।

୧୪ଶ ପଦ—"ସର୍ବଯମକ" କୁଞ୍ଜରେ ( ହସ୍ତୀମାନେ ) କରଦନ୍ତୀ ପ୍ରହାରଣେ ( ଶୁଣ୍ଢ ଦନ୍ତ ମାରିବାରେ ) ସେ ବଳୀ ( ବଳିଷ୍ଠ କପିମାନେ ) ବିଦାରଣ ( ବିଦାରିତ ) ହେଲେ । "ଏମନ୍ତ ଦେଖି" ସେ ବଳୀ ୧ କୁଞ୍ଜରେ ( ସେହି ରାମଙ୍କ ସୈନ୍ୟ ମଧ୍ୟରେ ପ୍ରଧାନ ବଳିଷ୍ଠମାନେ ) କର ( ହସ୍ତରେ ) ୨ ଦନ୍ତୀ ( ପର୍ବତ ସାନୁମାନଙ୍କୁ ) ପ୍ରହାରଣେ ( ପ୍ରହାରନ୍ତେ ) ରାକ୍ଷସ ବୀରେ ୩ ବିଦାରଣ ହେଲେ ( ବିନାଶ ହେଲେ ) । ୧୪ ।

୧୫ଶ ପଦ—କପୀଶ ( ସୁଗ୍ରୀବଙ୍କ ) ଶ ( ମଙ୍ଗଳର ) ବଶ ( ବଶବର୍ତ୍ତୀ ) ବର ( ପ୍ରଧାନ ) କପି ( ହନୁମାନ୍ ) ୧ ମନ ମନ ( ମନେ ମନେ ବିଚାରି )

---

୧—ଗର୍ତ୍ତାବଟୌ ଭୁବିଶ୍ୱଭ୍ରେ ସରନ୍ଧ୍ରେ ସୁଷିରଂ ଶିଷୁ ଇତ୍ୟମରଃ ।
୧—ସିଂହ ଶାର୍ଦ୍ଦୂଲ ନାଗାଦ୍ୟାଃ ପୁଂସିଶ୍ରେଷ୍ଠାର୍ଥବାଚକାଃ । ଇତ୍ୟମରଃ ।
୨—ଦନ୍ତୋଽପି କୁଞ୍ଜେ ଦଶନେ ଦନ୍ତସାନୁନି କଥ୍ୟତେ । ଇତି ମେଦିନୀ ।
୩—ମହେନ୍ଦ୍ର ମାନଦାରଣଂ ନମାମି କୃଷ୍ଣଦାରଣଂ । ଇତି ପ୍ରୟୋଗଃ ।
୧—ମନୁନୋ ବାନରେ ପୁଂସି ସ୍ୟାଦବ୍ୟକ୍ତେ ନପୁଂସକଂ ଇତି କୃମୁଦାକରଃ ।

ବିଲୋମ ଲୋମ
ବିଲୋମ ଲୋମ ମେଷଯୁଦ୍ଧ ପ୍ରକାରେ ସଂଗ୍ରାମ ପ୍ରଧାନ କରେ ।
ବୃଷ ଗଦା ଶର ସଦା ରୁଷ ରଷ ଅବିଶ୍ରାମରେ ପ୍ରହାରେ ।୧୬।
ବିଲୋମ ଅନୁଲୋମ
ବୀର ଯେତେ ସେନାବାର ରସା ସାର ରବା ନାଶେ ତେଜେରବି ।
ବିଦ୍ଧ ତଜ ପୁରତର ତମ ମତ ରତ ଶପୁଜିତ ହେବ ।୧୭।

---

✻ରଥିର (ରଥୀମାନଙ୍କୁ) ବିରଥୀ "କଲେ" । କଢର (ସମୀପରେ) ବର ଶକଢ (ପ୍ରଧାନ ପ୍ରଧାନ ଶକ୍ତ) ବର୍ଷକ (ବର୍ଷଣ) କରୁଥିବା ବୀର (ରାକ୍ଷସ ବୀରଙ୍କୁ) ତିରସ୍କର କର (ତିରସ୍କାର କଲେ) । ✻ "ଏ ପଦ ଶୃଙ୍ଖଳାଛନ୍ଦ" । ୧୫ ।

୧୬ଶ ପଦ—ବିଲୋମ-ଲୋମ (ବିଲୋମ ଅନୁଲୋମରେ) ମେଷଯୁଦ୍ଧ ପ୍ରକାରେ (ମେଷ ଯୁଦ୍ଧ କଲାପରି) ପ୍ରଧାନ (ପ୍ରଧାନ ରୂପେ) ସଂଗ୍ରାମ (ଯୁଦ୍ଧ) "କଲେ" । "ଏପାଖ ସେପାଖ, ସେପାଖ ଏପାଖ ହୋଇ ଟଣାଟଣି ଯୁଦ୍ଧ କଲେ ଏହାଭାବ" । ବୃଷ (ଭଲ୍ଲୂକମାନେ) ରଷ (ରାକ୍ଷସମାନେ) ସଦା (ସର୍ବଦା) ବୃକ୍ଷ ଗଦା ଶର ଅବିଶ୍ରାମରେ (ବିଶ୍ରାମ ନ କରି) ପ୍ରହାର "କଲେ" । ୧୬ ।

୧୭ଶ ପଦ—ବିଲୋମ ଅନୁଲୋମ ମେଷଯୁଦ୍ଧ—(ପଦର ଏପାଖରୁ ପଢ଼ିଲେ ଯାହା ସେପାଖରୁ ପଢ଼ିଲେ ତାହା ଯଥା—ରସାସାର) ତେଜେ (ତେଜରେ) ରବି (ସୂର୍ଯ୍ୟତୁଲ୍ୟ) ଯେତେ ବୀର ସେନାବାର (ସେନାସମୂହ) ରସା (ପୃଥ୍ୱୀରେ) ନାଶେ (ବିନାଶ କରିବାପାଇଁ) ସାରରବା (ବୀରଡାକ ଦେଇ) ପୁରତର (ପୁର-ତର୍କେ—ଆଗରେ) ତଜ (ତର୍ଜନା କରି) ତମ ମତ ରତ (କ୍ରୋଧଭରେ) ଶପୁଜିତ ହେବ (ଶତ୍ରୁକୁ ଜିଣିବ) ବୋଲି "ପରସ୍ପରରେ" ବିଦ୍ଧ (ଯୁଦ୍ଧ କରନ୍ତି) । ✻ "ଚିତ୍ର କବିତ୍ୱ ଯୋଗୁ କବି ଅନାୟତ୍ତ" । ୧୭ ।

---

✻—କର୍ମଠାରେ କ୍ଷ୍ମୂର୍ତ୍ତି ହୋଇଅଛୁ ।
✻—ଯଦୁକ୍ତଂ ସମସ୍ତଙ୍କ ପଦ୍ୟଂ—ଉକ୍ତଂ ନଗନ୍ତବିଦନୁଜ ଦନୁଜକୁଳାମିବ ମିତ ଶଶିଦୃଷ୍ଟେ ଦୃଷ୍ଟେ ପ୍ରଭବତ ଭବତ ଭବତ ନକଂ ଭବତରସ୍କାରଃ ॥
✻—କବି ଚିତ୍ରକବିତ୍ୱ ବୋଲିବାକୁ ଅନାୟତ୍ତ ହୋଇ ସଙ୍କେତରୂ ପ୍ରଣାରେ ଅର୍ଥ ଲଗାଇ ଦେଲି ।



(ବୃକ୍ଷବନ୍ଧ)

ବିଶାଳ ଶାଳ ତାଳଜାଳ
ଠେକ ଯେ କଣ୍ଟକ
ଶ୍ରୀବଧବ ସେ ।
ବନ୍ଧି କରେ କପି କଣ୍ଠାବିନ୍ତ
ବଢ଼ି ବରଷେ ବେଷେ
ଶେଷେ ସେ । ୧୮ ।

(ଏପଦର ଅର୍ଥ
ପୃ୯୮୭ଷ୍ଠାରେ ଦେଖ)

( ଗଦାବନ୍ଧ )

ବଦା ସଦା ମୋଦାଁ ଗଦା ଗରଧର ବର ତାର ତାହ୍ନିଁ ବିହ୍ନ



ବହ୍ନ ମହ୍ନ ମନ୍ଦ-ଦ୍ୱନ୍ଦ ଛନ୍ଦ କନ୍ଦ କହ୍ନ ନୋହ୍ନ ତାହ୍ନ ବହ୍ନ । ୧୯ ।

( ଏ ପଦର ଅର୍ଥ ପୃ ୯୮୭ ଷ୍ଠାରେ ଦେଖ )

(ଚୈରବନ୍ଧ)



ଖାଁର ଶରଭର ଖରଖଣ୍ଡି ଖର ଖରକର ତାରୁ·ଧାର ।
ଦ୍ୱାର ବାର ବାଜବାର ତର ତର ହଟି ହଟି ହର ହର । ୨୦ ॥

( ଏ ପଦର ଅର୍ଥ ପୃ ୫୮୭ ପୃଷ୍ଠାରେ ଦେଖ )

ସଙ୍ଘାତ ଦୈତ୍ୟରାଶିରେ ହୋଇଥିଲେ ଶତ୍ରୁର ପ୍ରମୁଖ ଗ୍ରହେ ।
ବର୍ତ୍ତମାନ ବଳେ ପ୍ରଧାନଙ୍କ ମେଳେ ଯୁଝିବାଗତିକ ବହେ ।୨୧।

୧୮ଶ ପଦ—ବୃକ୍ଷବନ୍ଧ ( ବୃକ୍ଷବନ୍ଧ ଛବରେ ଏପଦର ଅକ୍ଷର ନ୍ୟାସ କରାଯିବ), ଅନେକ ( ବଳରେ ଅଧିକ ) ଯେ ( ଯେଉଁ ) ଦାନବକ ( ଶତ୍ରୁମାନେ ) ଜୀବଧର ( ଯମତୁଲ୍ୟ ପ୍ରାଣହନ୍ତା ) ବଡ଼ କକ୍ଷାବନ୍ତ ( ସମର୍ଥ ) କପି ( କପି-ମାନେ ) ସେ ଶେଷେ ( ବୃକ୍ଷଯଙ୍କୁ ନିଃଶେଷ କରିବାପାଇଁ ) ବିଶାଳ (ବୃହତ୍) ଶାଳ "ଶାଖା" ତଳତାଳ ( ତାଳଗଛ ସମୂହ ) କରେ ବହି ( ହାତରେ ଧରି ) ରୋଷେ ବରଷେ ( କ୍ରୋଧରେ ବର୍ଷିଲେ ) । ୧୮ ।

୧୯ଶ ପଦ—ଗଦାବନ୍ଧ ( ଗଦାବନ୍ଧ ଛବରେ ଅକ୍ଷର ନ୍ୟାସ ହେବ ) । ମହୀ ( ପୃଥିବୀରେ ) ମନ୍ଦ ( ନାସ୍ତିକ ) ୧ କନ୍ଦ ( ମୂଳ ଖଣ୍ଡନକର୍ତ୍ତା ) "ଅସୁର ମାନେ" ଦ୍ୱନ୍ଦ୍ୱ ଛନ୍ଦ ( ଯୁଦ୍ଧ ଛନ୍ଦକୁ ) ବନ୍ଧି ( ବାନ୍ଧି କରି ) ଗରଧର ରେ ( ଅଜଗର ସାପ ପ୍ରାୟ ) ତାର ( ଦୀପ୍ତିମନ୍ତ ) ଗଦା ତାହିଁ ( ତାହାକୁ ) ୨ ମୋଦା ( ଆନନ୍ଦରେ ) ସଦା ( ସର୍ବଦା ) ବଦା "କଲେ" ( ମାରିଲେ ) "ତେଣୁ ବାନରଙ୍କର" ତାହି ( ସାହି ) ବନ୍ଧିକହିବାର ( କଥା ) କହି ନୋହି । "ସାହି ରାମ କହି ଉଚ୍ଚରେ ଆର୍ତ୍ତିଧ୍ୱନି କଲେ" । ୧୯ ।

୨୦ଶ ପଦ—ଶରବନ୍ଧ ( ଶରବନ୍ଧ ଛବରେ ଅକ୍ଷର ନ୍ୟାସ ହେବ ) "ଋକ୍ଷକପି ବୋଇଲେ" ହେ ଖରଖଣ୍ଡି ( ଖରହନ୍ତା—ରାମ ) ଖର କର ( ସୂର୍ଯ୍ୟପ୍ରାୟ ) ତାର ( ଦୀପ୍ତିମନ୍ତ ) ଶରଭ ( ରାକ୍ଷସଙ୍କ ଶରାଘାତଭୟରୁ ) ତାର ( ଉଦ୍ଧାର କର ) । "ସେ ଶରଜାଳ" ବାର ବାର ( ପୁନଃ ପୁନ ) ବାଜିବାର ( ବାଜିବାରୁ ) ହଟି ହଟି ( ଆମ୍ଭେମାନେ ପଛକୁ ହଟି ହଟି ଆସି ବୋଲୁଛୁ ) ତର ତର ( ବେଗରେ ) ୧ ହର ହର ( ବିନାଶ କର ବିନାଶ କର ) । ୨୦ ।

୨୧ଶ ପଦ—ଶତ୍ରୁର "ସେନାପତି" ପ୍ରମୁଖ ( ଆଦି ) "କପିମାନେ" ଶତ୍ରୁର ( ଶନିଗ୍ରହ ) ପ୍ରମୁଖ (ଆଦି ) ଗ୍ରହେ ( ନବଗ୍ରହ ) ହେଲେ "ଗ୍ରହେ"

୧—କଂ-ମୂଳଂ ଦ୍ୟତି-ଖଣ୍ଡୟତୀତି କନ୍ଦଃ ।
୨—ମୁତ୍ ପ୍ରୀତିପ୍ରମୋଦହର୍ଷ ପ୍ରମୋଦାମୋଦ ସମ୍ମଦା ଇତ୍ୟମରଃ ।
୧—ଆର୍ତ୍ତାର୍ଥେ ଦ୍ୱିରୁକ୍ତିରାବଶ୍ୟକ ।

ବିକମି ନୋହିଲା ପ୍ରମଥମଥନେ ମହାପାରୁଶ ପାରୁଶେ ।
ବସୁଧା ସୁଧା ପୂରିତ ହୋଇଗଲା ଯମଘଣ୍ଟ-ନାଦଯଶେ । ୨୨ ।
ବିକୁକ୍ଷିବଂଶୀ ଦେଖି ଭଷି ଅଦ୍ଭୁତସମ୍ଭୂତ ହେଲାତ ଏହି ।
ବୁଡ଼ଣା କୁଶଅଗ୍ର କୁଟବିନ୍ଦୁରେ ସିନ୍ଧୁରେ ଯାହାକୁ ନୋହି । ୨୩ ।

---

ରଣିରେ ବିଘାତ ହୋଇଥିଲେ "ଏମାନେ" ଦୈତ୍ୟର୍ଷିରେ ( ଦୈତ୍ୟ ସମୂହରେ ) ବିଘାତ ( ବିଶେଷରେ ଘାତିବନ୍ତ ) ହେଲେ । ବଳେ ( ସୈନ୍ୟମାନେ ) ପ୍ରଧାନଙ୍କ ମେଳେ ( ସେନାପତି ସହିତ ) ବଡ଼ ( ଅତିଶୟରେ ) ଦାନ ( ଛେଦନ ଯୋଗ୍ୟ ) ଦୂଷିବା ଗଣ୍ଡକ ଛିହି ( ଘୂଞ୍ଚି ପଳାଇଲେ ) ଗ୍ରହମାନେ ପ୍ରଧାନଙ୍କ ମେଳେ ( ଅବଳ ଗ୍ରହଙ୍କ ସହିତ ) ବଡ଼ ଦାନ ବଳେ ( ବଡ ବଡ଼ ଦାନ ଦେବା ବଳରୁ ) ଦୂଷିବା ଗଣ୍ଡକ ବିହି ( ଅନିଷ୍ଟ ନ କରି ଘୂଞ୍ଚି ପଳାନ୍ତି ) । ୨୧ ।

୨୨ଶ ପଦ—ମହାପାରୁଶ (ମହାପାର୍ଶ୍ୱ ଦୈତ୍ୟ) ପାରୁଶେ ( ପାଖରେଥିବା ) ପ୍ରମଥ "ଦୈତ୍ୟର" ମଥନେ ( ସୈନ୍ୟମନ୍ଥନରେ ) "ରାମ ସୈନ୍ୟରେ କେହି" ବିକମୀ ନୋହିଲ ପ୍ରମଥ ଆଗରେ ତେହି କମି ରହି ନ ପାରି ପଛଘୁଞ୍ଚା ଦେଲେ ଏହି ଭାବ" । ଯମଘଣ୍ଟ "ଦୈତ୍ୟର" ନାଦ ୧ଯଶେ ( ବୀରତାକ ଶୌର୍ଯ୍ୟାଦି ପ୍ରଭବ ରୂପ ) ୨ସୁଧା ( ଅମୃତରେ ) ବସୁଧା ( ପୃଥିବୀ ) ପୂରିତ ହୋଇଗଲ "ଯମଘଣ୍ଟା ରଡ଼ରେ ତ୍ରିଭୁବନ କମ୍ପିଲା ଏହିଭାବ" । "ଏହାଦ୍ୱାରା ଯମଘଣ୍ଟର ଯଶାତିଶଯ୍ୟ ସୂଚିତ ହେଲା" । ୨୨ ।

୨୩ଶ ପଦ—ବିକୁକ୍ଷିବଂଶୀ ( ରାମ ) "ଅଗ୍ରେ ଆପଣା ସୈନ୍ୟକୁ ମାରିବାର" ଦେଖି ଭଷି ( କହିଲେ ), ଏହି ( ଏ କଥା ) ଅଦ୍ଭୁତ

---

୧—ଯଶଃ କୀର୍ତ୍ତିଃ ସମଜ୍ଞା ଚ ଇତ୍ୟମରଃ । ଦାନାଦି ପ୍ରଭବା କୀର୍ତ୍ତିଃ ଶୌର୍ଯ୍ୟାଦିପ୍ରଭବଂ ଯଶଃ । ଇତି ।

୨—ସୁଧାପ୍ରସାଦେ ଭୂଦ୍ରବ୍ୟଂ ସୁଧୀ ବିଦ୍ୟୁତ୍ ସୁଧାମୃତଂ ।
ସୁଧୈବ ଲେଜନଂଜ୍ଞେୟଂ ସୁଧା ଧାତ୍ରୀ ସୁଧାମ୍ନୁଣ୍ମୀ । ଇତ୍ୟନେକାର୍ଥଧ୍ୱନିମଞ୍ଜରୀ । ସୁଧାପୀୟୂଷ ବସୁଧା ବାଣୀ କର୍ମଫଳେଷୁ ଚ ଇତିବିଶ୍ୱଃ ।

ବିଭୀଷଣ ଶୁଣି ଭୀଷଣ ମର୍କଟଜାଲରେ ମର୍କଟଜାଲ ।
ବନ୍ଧନ କରି ନିଧନ ବିସ୍ତରିବା ରହିବ ଏ କେତେକାଳ । ୨୪ ।
ବିପକ୍ଷ ମାରୁ ମାରୁତି ଯେଣୁ କପି ବାମେ ସେ ସାହା ମୋହର ।
ବାଜସ୍ଥୀ ଲକ୍ଷଣ ଅଙ୍ଗଦସ୍କନ୍ଧେଣ ଆଗେ ଆଗେ ବଜେକର । ୨୫ ।
ବିଚ୍ଛନ୍ଦ ଛନ୍ଦେ ଏହି ଏତେ ଚକବତେ ସ୍ୱନାମେ ଆପଣା ଦେହି ।
ବଜ୍ରପଞ୍ଜର କବଚ ସ୍ୱଗାନ୍ତରେ ପ୍ରଥମେ ଓଁ କାର ଦେଇ । ୨୬ ।

( ଆଶ୍ଚର୍ଯ୍ୟରୂପେ ) ସମ୍ଭୂତ ( ଜାତ, ହୋଇଥିବା ) ଯାହାକୁ ଯେ ସିନ୍ଧୁରେ ( ସମୁଦ୍ରରେ) ବୁଡ଼ଣା ନୋହି ( ନ ବୁଡ଼େ ) "ତାହାକୁ" (ସେ) କୁଶଅଗ୍ର ( କୁଶାଗ୍ରରେ ଲଗିଥିବା ) କୁଶବିନ୍ଦୁ ( ଜଳବିନ୍ଦୁରେ ) ବୁଡ଼ଣ ( ବୁଡ଼ିଗଲା ) "ତ୍ରିପୁର ବଳସ୍ଥୀ ମୋ ଥାଉଁ ଅସୁରେ ମାରିଲେ ଏହା ଆଶ୍ଚର୍ଯ୍ୟ ନୁହେଁ କି ? ଏହି ଫଳିତାର୍ଥ । ୨୩ ।

୨୪ଶ ପଦ—"ରାମଙ୍କର ଏରୂପ ବଚନ ବଚନ" ଶୁଣି ବିଭୀଷଣ ଭୀଷଣ ( କହିଲେ ) ୧ ମର୍କଟଜାଲ ( ବାନର ସମୂହକୁ ) ମର୍କଟଜାଲରେ ( ବୁଢ଼ିଆଣୀ ସୂତା ଜାଲରେ ) ବନ୍ଧନ କରି ( ବାନ୍ଧି ) ନିଧନ (ମାରିବା), ଏ (ଏପରି) ବିସ୍ତରିବା କେତେକାଳ ରହିବ ? ( ବହୁକାଳ ସ୍ଥାୟୀ ନୁହେ ) "ଏହିକ୍ଷଣି ବ ନରେ ଅସୁରଙ୍କୁ ମାରିବେ ଏହି ଭାବ" । ୨୪ ।

୨୫ଶ ପଦ—"ବିଭୀଷଣଙ୍କ କଥା ଶୁଣି ରାମ କହିଲେ" ମାରୁତି ( ହନୂମାନ୍ ) କପି ( ଏ ବାନରଙ୍କ ) ଯେଣୁ ବିପକ୍ଷ "ଅସୁରଙ୍କୁ" ମାରୁ, ସେ ( ମାରୁତି ଏକା ) ମୋହର ବାମେ ( ପ୍ରତିକଳରେ ବା ମନୋହର ରୂପରେ ) ସହା ( ସହାୟ ) "ଅନ୍ୟ କେହି ନାହିଁ" । "ଏମନ୍ତ ଶୁଣି" ବଳସ୍ଥୀ ଲକ୍ଷ୍ମଣ ଅଙ୍ଗଦ ସ୍କନ୍ଧେଣ ( ଅଙ୍ଗଦ କାନ୍ଧରେ ) ବିଜେ କରି ଆଗେ ଆଗେ ଗଲେ । " ପଛେ ରାମ ବିଜେ କରିବେ ଏହିଭାବ " । ୨୫ ।

୨୬ଶ ପଦ—ଦେହି ( ଦେହବନ୍ତ ରାମ ) ଆପଣା ବଜ୍ରପଞ୍ଜର କବଚ ( ଆପଣାର ବଜ୍ରପଞ୍ଜର କବଚକୁ ) ପ୍ରଥମେ ( ଆଦ୍ୟରେ ) ଓଁ କାର

୧—ମର୍କଟୋବାନରଃ କୀଟୋବିଶେଷୋ ଇତ୍ୟମରଃ । ଲୂତାସ୍ତ୍ରୀ ତନ୍ତୁବାୟୋର୍ଣ୍ଣନାଭ ମର୍କଟକାଃ ସମା ଇତ୍ୟପି ।

ବିଶ୍ୱାମିତ୍ର ଋଷି ଅନୁଷ୍ଟୁପ୍ଛନ୍ଦ ଶ୍ରୀରାମଚନ୍ଦ୍ର ଦେବତା ।
ବୀଜ ରାମ ଶକ୍ତି ସୀତା ତଦନ୍ତରେ ସତ୍ୱରେ କର ବିଦିତା । ୨୭ ।
ବିହି ଧ୍ୟାନ ଧ୍ୟାୟେ ନୀଳୋତ୍ପଳଶ୍ୟାମ ରାମ ରାଜୀବଲୋଚନ ।
ବୈଦେହୀ ଲକ୍ଷ୍ମଣ ସଙ୍ଗ ରଙ୍ଗକାରୀ ଜଟାମୁକୁଟମଣ୍ଡନ । ୨୮ ।
ବାଣ କମାଣ ତୂଣ ଅସିପାଣିକ ପାପଘ୍ନୀ ସର୍ବକାମଦା ।
ବନ୍ୟସ୍ତ ହସ୍ତ ରଖ ଶିର ରାଘବ ଭାଲ ଦାଶରଥି ସଦା । ୨୯ ।

ଦେଇ ବିହ୍ଲନଛନ୍ଦେ ( ଋଷି ଛନ୍ଦରେ ) ସ୍ୱନାମେ ( ଆପଣା ନାମରେ ) ସ୍ୱଗାଧରେ ( ନିଜ ଦେହକୁ ) ଏହି ବଚେ ( କହିବା ବଚନମାନଙ୍କରେ ) କବଚେ ( କଲଲେ ) । ୨୬ ।

୨୭ଶ ପଦ —"ସେହି କବଚର" * ଋଷି ବିଶ୍ୱାମିତ୍ର, ଛନ୍ଦ ଅନୁଷ୍ଟୁପ୍, ଦେବତା ଶ୍ରୀରାମଚନ୍ଦ୍ର, ବୀଜ ରାମ, ଶକ୍ତି ସୀତା, ତଦନ୍ତରେ ( ତତ୍ପରେ ) ସତ୍ୱରେ ( ଶୀଘ୍ର ) ବିଦିତା କର ( ପ୍ରକାଶ କରିବା ) । ୨୭ ।

୨୮ଶ ପଦ—ଧ୍ୟାନ ବିହି ( ଧ୍ୟାନ ବିଧାନ ) ଯଥା— ନୀଳୋତ୍ପଳ ଶ୍ୟାମ ( ନୀଳ ଉତ୍ପଳ ପ୍ରାୟ ଶ୍ୟାମବର୍ଣ୍ଣ ) ରାଜୀବଲୋଚନ ( ପଦ୍ମନେତ୍ର ) ବୈଦେହୀଲକ୍ଷ୍ମଣ "ଏ ଦୁହିଙ୍କ" ସଙ୍ଗ ରଙ୍ଗକାରୀ ( ସଙ୍ଗରେ କ୍ରୀଡ଼ା କରନ୍ତା ଅଟନ୍ତି ) ଜଟାମୁକୁଟ ମଣ୍ଡନ ( ଜଟା ମୁକୁଟ ଭୂଷଣ ) ରାମ ( ରାମଙ୍କୁ ) *ଧ୍ୟାୟେ ( ଧ୍ୟାନ କରୁଛି ) । ୨୮ ।

୨୯ଶ ପଦ—ବାଣ ( ଶର ) କମାଣ ( ଧନୁ ) ତୂଣ ( ତୂଣୀର ) ଅସି ( ଖଡ୍ଗ ) ପାଣିକ ( ଏମାନେ ହସ୍ତରେ ଯାହାର ) ପାପଘ୍ନୀ ( ପାପ-ନାଶକ ) ସର୍ବକାମଦା ( ସକଳ କାମନାଦାୟକ "ଏମନ୍ତ ରକ୍ଷା ମନ୍ତ୍ର

*—ଓଁ ରାମ କବଚସ୍ୟ, ବୃଦ୍ଧ ବିଶ୍ୱାମିତ୍ରଋଷିଃ, ଅନୁଷ୍ଟୁପ୍ଛନ୍ଦଃ, ଶ୍ରୀ ରାମଚନ୍ଦ୍ରୋ-ଦେବତା ଶ୍ରୀରାମଚନ୍ଦ୍ରୋବୀଜଂ,ସୀତାଶକ୍ତିଃ,ଶରୀରପରିରକ୍ଷାର୍ଥେ ବିନିଯୋଗଃ ।
*—ଧ୍ୟାୟେନ୍ନୀଳୋତ୍ପଳଂ ଶ୍ୟାମଂ ରାମଂ ରାଜୀବ ଲୋଚନଂ ।
ଜାନକୀ ଲକ୍ଷ୍ମଣୋପେତଂ ଜଟାମୁକୁଟ ମଣ୍ଡିତଂ ।

ବିମଳନୟନ କୌଶଲ୍ୟାପୁ ବିଶ୍ୱାମିତ୍ରପ୍ରିୟ ରଖ ଶ୍ରୁତି ।
ବିପୁଳ-ମଖରକ୍ଷଣ ଘ୍ରାଣ ତ୍ରାଣ ମୁଖ ସୌମିତ୍ରିସୁମତି ।୩୦।
ବିଦ୍ୟାନିଧି ଜିହ୍ୱା ଭରତବନ୍ଦିତ କଣ୍ଠ ଦିବ୍ୟାୟୁଧ ସ୍କନ୍ଧ ।
ବାହୁ ଈଶଧନୁଭଞ୍ଜି ସୀତାଈଶ କର ରକ୍ଷା କରୁ ସିନ୍ଧ ।୩୧।

---

ପତି" ଶିରୁ ( ମୋହର ମସ୍ତକ ) ସଦା ( ସର୍ବଦା ) ଭାଲ ( ମୋହର କପାଳ) ଦ୍ୱିତ୍ୟ ଦାଶରଥି ରଖ "କହି" ହସ୍ତ ବିନ୍ୟସ୍ତ "କରିବ"* (ଛୁଇଁବ) ॥

୩୦ଶ ପଦ—*କୌଶଲ୍ୟେୟ ( କୌଶଲ୍ୟାପୁତ୍ର—ରାମ ) ବିମଳ-ନୟନ ( ମୋହର ନିର୍ମଳ ଚକ୍ଷୁ ଦୁଇ ) ରଖ ( ରକ୍ଷାକର ) । ବିଶ୍ୱାମିତ୍ର ପ୍ରିୟ (ବିଶ୍ୱାମିତ୍ରଙ୍କର ପ୍ରିୟ ଶିଷ୍ୟ—ରାମ) ଶ୍ରୁତି ( ମୋହର ଦୁଇ ଶ୍ରବଣକୁ ) ରଖ ( ରକ୍ଷାକର ) । ବିପୁଳମଖ ରକ୍ଷଣ ( ମହାଯଜ୍ଞ ରକ୍ଷାକାରୀ—ରାମ ) ଘ୍ରାଣ ( ମୋ, ନାସାକୁ ) ତ୍ରାଣ ( ରକ୍ଷାକର ) । ସୌମିତ୍ରି ସୁମତି ( ଲକ୍ଷ୍ମଣଙ୍କଠାରେ ଉତ୍ତମ ବୁଦ୍ଧି ଯାହାଙ୍କର-ଏରୂପ ରାମ ) ମୁଖ ( ମୋହର ମୁଖକୁ ) ତ୍ରାଣ ( ରକ୍ଷକର ) । ୩୦ ।

୩୧ଶ ପଦ—ବିଦ୍ୟାନିଧି ( ସକଳ ବିଦ୍ୟାର ସ୍ଥାନ—ରାମ ) ଜିହ୍ୱା ( ମୋହର ଜିଭକୁ ) "ରକ୍ଷାକର" । ଭରତ ବନ୍ଦିତ (ଭରତ ପୂଜିତ—ରାମ) କଣ୍ଠ ( କଣ୍ଠଦେଶକୁ ) "ରକ୍ଷାକର" । ଦିବ୍ୟାୟୁଧ (ଦିବ୍ୟ ଆୟୁଧଧାରୀ—ରାମ) ସ୍କନ୍ଧ ( ଦୁଇ କାନ୍ଧକୁ ) "ରକ୍ଷାକର" । ଈଶ ଧନୁଭଞ୍ଜି ( ହର ଚାପ ଭଗ୍ନ-

---

*—ଧ୍ୟାତ୍ୱା ନୀଳୋତ୍ପଳଶ୍ୟାମଂ ରାମଂ ରାଜୀବଲୋଚନଂ । ... ସାସିତୂଣ ଧନୁର୍ବାଣପାଣିଂ ନକ୍ତଂଚରାନ୍ତକଂ ।
ସ୍ୱଲୀଲୟା ଜଗତ୍ତ୍ରାତୁ ମାବିର୍ଭୂତ ମଜଂ ବିଭୁଂ ।
ରାମରକ୍ଷାଂ ପଠେତ୍ପ୍ରାଜ୍ଞଃ ପାପଘ୍ନୀଂ ସର୍ବକାମଦା ।
ଶିରୋମେ ରାଘବଃ ପାତୁ ଭାଲଂ ଦଶରଥାତ୍ମଜଃ ॥
*—କୌଶଲ୍ୟେୟୋ ଦୃଶୌପାତୁ ବିଶ୍ୱାମିତ୍ରପ୍ରିୟଃ ଶ୍ରୁତିଂ ।
ଘ୍ରାଣଂ ପାତୁ ମଖତ୍ରାତା ମୁଖଂ ସୌମିତ୍ରିବତ୍ସଲଃ ।

ବକ୍ଷ କବନ୍ଧାରି ହୃଦ ଜାମଦଗ୍ନ୍ୟଜିତ ଗୀର୍ବାଣପୂଜିତ ।
ବେନସ୍ତନ ରଘୁପତି ପାର୍ଶ୍ୱକୁକ୍ଷି ଇକ୍ଷ୍ୱାକୁବଂଶୀରକ୍ଷିତ ।୩୨।
ବାଦ ଖରଧ୍ୱଂସୀ ମଧ୍ୟ ଜାମ୍ବବଦାଶ୍ରୟ ଯେ ନାଭି ଉଦ୍ଧରୁ ।
ବଦ୍ୟମିତ୍ର ପୁତ୍ରମିତ୍ର କଟି ହନୁମନ୍ତପ୍ରଭୁ ସକ୍ଥି ତାରୁ ।୩୩।

କାଣ୍ଡ ରାମ ) ବାହୁ (ଦୁଇ ବାହୁକୁ) "ରକ୍ଷାକର" । ମୈଥିଳୀଶ (ସୀତାପତି—ରାମ ) ସିଦ୍ଧ "ଦ୍ୱୋଇ" କର ( ଦୁଇ ହସ୍ତକୁ ) ରକ୍ଷାକରୁ ✻ ।୩୧।

୩୨ଶ ପଦ—କବନ୍ଧାରି ( କବନ୍ଧ ଦୈତ୍ୟହନ୍ତା—ରାମ ) ବକ୍ଷ ( ମୋ ଛାତି ) "ରକ୍ଷାକର" । ଜାମଦଗ୍ନ୍ୟଜିତ (ପଶୁରାମ ବିଜେତା—ରାମ ) ୧ ହୃଦ ( ମୋ ହୃଦୟକୁ ) "ରକ୍ଷାକର" । ଗୀର୍ବାଣପୂଜିତ ( ଦେବପୂଜ୍ୟ—ରାମ ) ✻ ବେନିସ୍ତନ (ମୋ ସ୍ତନଦ୍ୱୟକୁ) "ରକ୍ଷାକର" । ରଘୁପତି (ରଘୁବଂଶଶ୍ରେଷ୍ଠ—ରାମ ) ପାର୍ଶ୍ୱ ( ମୋ ଦୁଇପାର୍ଶ୍ୱକୁ ) "ରକ୍ଷାକର" । ଇକ୍ଷ୍ୱାକୁବଂଶୀ ( ଇକ୍ଷ୍ୱାକୁରାଜବଂଶୋଦ୍ଭବ—ରାମ ) କୁକ୍ଷି (ମୋହର ଉଦର) ରକ୍ଷିତ (ରକ୍ଷାକର) ।୩୨।

୩୩ଶ ପଦ—ବାଦଖରଧ୍ୱଂସୀ (ବିବାଦକାରୀ ଖର ରାକ୍ଷସର ବିନାଶକ—ରାମ ) ମଧ୍ୟ ( କଟିଭାଗକୁ ) ଉଦ୍ଧରୁ ( ରକ୍ଷାକରୁ ) । ଜାମ୍ବବଦାଶ୍ରୟ ( ଜାମ୍ବବର ଆଶ୍ରୟ ଯେ—ରାମ ) ନାଭି ( ମୋ ନାଭିକି ) "ରକ୍ଷାକରୁ" । ବଦ୍ୟମିତ୍ର ପୁତ୍ରମିତ୍ର ( ସୂର୍ଯ୍ୟପୁତ୍ର ନାମରେ ବିଖ୍ୟାତ ସୁଗ୍ରୀବର ମିତ୍ର—ରାମ ) କଟି ( ଅଣ୍ଟାକୁ ) ତାରୁ ( ରକ୍ଷାକରୁ ) । ହନୁମନ୍ତ ପ୍ରଭୁ (ହନୁମାନର ପ୍ରଭୁ—ରାମ) ୧ ସକ୍ଥି ( ଉରୁସନ୍ଧିକୁ ) "ରକ୍ଷାକରୁ" ।୩୩।

✻—କଣ୍ଠଂ ବିଦ୍ୟାନଧ୍ୟଃ ପାତୁ କଣ୍ଠଂ ଭରତ ବନ୍ଦିତଃ ।
ସ୍କନ୍ଧୌ ଦିବ୍ୟାୟୁଧଃ ପାତୁ ଭୁଜୌ ଭଗ୍ନେଶକାର୍ମୁକଃ ।
କରୌ ସୀତାପତିଃ ପାତୁ ହୃଦୟଂ ଜାମଦଗ୍ନ୍ୟଜିତ୍ ।
ସ୍ତନଦ୍ୱୟଂ ସର୍ବଦା ମେ ପାତୁ ଗୀର୍ବାଣ ବନ୍ଦିତଃ ।
୧—ଭୃଗ୍ୱାତ୍ମଜାଂସ ହୃଦୟଂ ହୃଷ୍ଟେଦସ୍ତୁ ବିପାବସା ଇତ୍ୟମରଃ ।
✻—ପାର୍ଶ୍ୱେ ରଘୂତ୍ତମଃ ପାତୁ କୁକ୍ଷିମିକ୍ଷ୍ୱାକୁରକ୍ଷକଃ ।
୧—ସକ୍ଥି କ୍ଲୀବେ ପୁମାନୂରୁସ୍ତତ୍ସନ୍ଧିଃ ପୁଂସି ବଙ୍କ୍ଷଣଃ ଇତ୍ୟମରଃ ।

ବିଶାଳଜାନୁ ସେତୁକୃତ ଦଶାସ୍ୟଜଘାନ ଜଂଘା ପ୍ରତାରୁ ।
ବିଭୀଷଣଶ୍ରୀଦ ପଦ ରଖୁ ରାମ ସବ୍ବବପୁ ରକ୍ଷାକରୁ । ୩୪ ।
ବିଗ୍ରହେ ଏମନ୍ତ କବଚବ ଯେହ୍ନ ଯନ୍ତ୍ରେ ଭୂର୍ଜପତ୍ରେ ଲିହ୍ନ ।
ବିହ୍ନଲେ ଶତ୍ରୁ ଅସ୍ତ୍ରବାସ ବିନାଶ ଯଶ ପର୍ବକାଶ ତହ୍ନିଁ । ୩୫ ।
ବଜାଇଲେ ଜୟକମ୍ବୁ ଏ ସମୟେ ତେଜୋମୟ ନିଜସୈନ୍ୟେ ।
ବଳବାନରେ ବାନରେ ପାଲଟିଲେ ଶଙ୍ଖ ଶଙ୍ଖ ଶଙ୍ଖସ୍ୱନେ । ୩୬ ।

---

୩୪ଶ ପଦ —* ସେତୁକୃତ (ସେତୁବନ୍ଧ କରାଇଥିବା—ରାମ) ବିଶାଳ-ଜାନୁ ( ମୋହର ବୃହତ୍ ଜାନୁଦ୍ୱୟକୁ ) ପ୍ରତାରୁ ( ରକ୍ଷାକରୁ ) । ଦଶାସ୍ୟ-ଜଘାନ ( ରାବଣହନ୍ତା—ରାମ ) ଜଙ୍ଘା ( ମୋହର ଦୁଇଜଂଘ ) ପ୍ରତାରୁ ( ରକ୍ଷାକରୁ ) । ବିଭୀଷଣ-ଶ୍ରୀଦ ( ବିଭୀଷଣର ରାଜ୍ୟ ଦାତା—ରାମ ) ପଦ ( ମୋହର ପାଦଦ୍ୱୟ ) ରଖୁ । ରାମ ସବ୍ବବପୁ ( ସର୍ବାଙ୍ଗ ଦେହଯାକ ) ରକ୍ଷାକରୁ । ୩୪ ।

୩୫ଶ ପଦ—ଯେହ୍ନ ( ଯେଉଁଲୋକ ) ଯନ୍ତ୍ରେ ( ଯନ୍ତ୍ରକାଠି ) ଭୂର୍ଜ-ପତ୍ରେ ( ଭୂର୍ଜପତ୍ରରେ ) ଲିହ୍ନ ( ଲେଖି ) ବିଗ୍ରହ ( ଦେହରେ ) ଏମନ୍ତ କବଚବ । ଶତ୍ରୁ ଅସ୍ତ୍ର ବାସ ବିହ୍ନଲେ ( ଶତ୍ରୁ ଅସ୍ତ୍ର ମାଇଲେ ) ବିନାଶ ( ସେ ବିନାଶ ହୁଏ ) । ତହ୍ନିଁ ( ତହିଁରେ ) ଯଶ ପର୍ବକାଶ ( ପ୍ରକାଶ ପାଏ ) । ୩୫ ।

୩୬ଶ ପଦ—ଏ ସମୟେ ନିଜ ସୈନ୍ୟେ ( ଏ କାଳରେ ଆପଣାର ସୈନ୍ୟ ମଧ୍ୟରେ ) ତେଜୋମୟ ( ରାମ ) ଜୟକମ୍ବୁ ( ଜୟ ଶଙ୍ଖ ) ବଜା-ଇଲେ । ଶଙ୍ଖ ସ୍ୱନେ ( ଶଙ୍ଖ ଶବ୍ଦ ଶୁଣି ) ବାନରେ ( କପିମାନେ ) ବଳ-

---

* —ପଶ୍ଚାତ୍ପାତୁ ତ କାକୁତ୍ସ୍ଥୋଽହର୍ନିଶ୍ୟା ଦୁଃଖ ବିନାଶକୃତ୍ ।
ମଧ୍ୟଂ ପାତୁ ଖରଧ୍ୱଂସୀ ନାଭିଂ ଜାମ୍ବବଦାଶ୍ରୟଃ ।
ସୁଗ୍ରୀବେଶଃ କଟିଂପାତୁ ସକ୍ଥିନୀଂହନୂମତ୍ ପ୍ରଭୁଃ ।
ଊରୁରଘୂତ୍ତମଃ ପାତୁ ଗୁହ୍ୟଂ ପାତୁ ଗୁହାନ୍ତକଃ ।
ଜାନୁନୀ ସେତୁକୃତ୍ ପାତୁ ଜଂଘେ ଦଶମୁଖାନ୍ତକଃ ।
ଆଦୌ ବିଭୀଷଣ ଶ୍ରୀଦଃ ପାତୁ ରାମୋଽଖିଳଂ ବପୁଃ ।
ଭୂର୍ଜପତ୍ରେ ତ୍ୱିମାଂ ବଦ୍ଧ୍ୟା ଗନ୍ଧଚନ୍ଦନ ଚର୍ଚ୍ଚିତାଂ ।
ନୃତ୍ୱା ବୈଧାରୟେଦ୍ୟସ୍ତୁ ସୋଽଭୀଷ୍ଟଫଲମାପ୍ନୁୟାତ ॥ ଇତି ॥

ବାସରାନ୍ତନଭ ଦୁର୍ଲ୍ଲଭ ସମାନ ଲଭ୍ୟକ ସେ ରଣସ୍ଥଳ ।
ବଳକ୍ଷ ଲକ୍ଷ ଋକ୍ଷଜ୍ୟୋତ ପ୍ରସୃରି ନିଶାଚର ଖଗକୁଳ ; ୩୭ ।
ବଳକର ରାମଲକ୍ଷ୍ମଣକରଜ ପ୍ରଭା ଆସଇ ପ୍ରକାଶି ।
ବରୂପାକ୍ଷସ୍ଥାନେ ଦରଶବଦ ଯେ ଦ୍ୱିବିଧ ଅର୍ଥରେ ଘୋଷି । ୩୮ ।

ବାନରେ ( ବଳବନ୍ତରେ ) ଶଙ୍ଖ ଶଙ୍ଖ ( ଶଙ୍ଖ ଶଙ୍ଖ ସଂଖ୍ୟକ ) ପାଳିଥିଲେ ( ନ ପଳାଇ ଲେଉଟି ଯୁଦ୍ଧକୁ ଚଳେ ) । ୩୬ ।

୩୭ଶ ପଦ—ସେ ରଣସ୍ଥଳ ଦୁର୍ଲ୍ଲଭ ( ଉତ୍ତମ ) ବାସରାନ୍ତନଭ ( ସନ୍ଧ୍ୟା ଆକାଶ ) ସମାନ ( ତୁଲ୍ୟତାକୁ ) ଲଭ୍ୟକ ( ଲଭିଲା ) । "ସାୟଂ-କାଳ ଆକାଶରେ" ବଳକ୍ଷ ( ଅଳକ୍ଷ ) ଲକ୍ଷ ୧ ଋକ୍ଷ ( ଲକ୍ଷ ଲକ୍ଷ ନକ୍ଷତ୍ରଙ୍କ ) ଜ୍ୟୋତ୍ତି "ଏବଂ" ନିଶାଚର ( ରାତ୍ରିଚର ଶ୍ୱେତ୍ ପ୍ରଭୃତ୍ତି ) ୨ ଖଗ କୁଳ ( ପକ୍ଷୀସମୂହ ) "ପ୍ରକାଶିଲା ପ୍ରାୟ ରଣ ଭୂମିରେ" ବଳକ୍ଷ ( ଅଳକ୍ଷ ) ୩ ଲକ୍ଷ ( ଲକ୍ଷ ସଂଖ୍ୟକ ) ଋକ୍ଷ ( ଭାଲୁଙ୍କର ) ଜ୍ୟୋତ୍ତ ( ତେଜ ) ପ୍ରକାଶିଲା । ନିଶାଚର ( ରାକ୍ଷସଙ୍କର ) ଖଗକୁଳ ( ବାଣସମୂହ ) ପ୍ରସୃର ( ସଞ୍ଚରଣ ) ହେଲା । "ସନ୍ଧ୍ୟା କାଳୀନ ଆକାଶରେ ଲକ୍ଷ ଲକ୍ଷ ଉତ୍ତମ ଅଲକ୍ଷିତ ନକ୍ଷତ୍ର ଜ୍ୟୋତ୍ତପ୍ରାୟ ଲକ୍ଷେକ ଭାଲୁ ତେଜୋବନ୍ତ ଦିଶିଲେ । ରାକ୍ଷସେ ରାତ୍ରିରେ ପକ୍ଷିଙ୍କ ପ୍ରାୟ ଶର ମାଇଲେ ଏହା ତାତ୍ପର୍ଯ୍ୟାର୍ଥ" । ୩୭ ।

୩୮ଶ ପଦ—"ସେହି ସାୟଂକାଳ ଆକାଶରେ" ବଳକର ( ବଳ-କାରକ ) ରାମ ଲକ୍ଷ୍ମଣ ( ଚନ୍ଦ୍ର ) ୧ କରଜ ( କିରଣ ଜାତ ) ପ୍ରଭା ପ୍ରକାଶି ଆସିଲା ପ୍ରାୟ । "ଏ ରଣ ଭୂମିରେ" ବଳକର ( ବଳକାରକ ) ରାମ ଲକ୍ଷ୍ମଣ "ଦୁଇ ଭାଇଙ୍କର" କରଜ ( ହସ୍ତଜାତ ) ପ୍ରଭା ( ଦୀପ୍ତି ) ପ୍ରକାଶି ଆସଇ । ଦରଶବଦ ( ଭୟ ଶବ୍ଦ ) ଯେ ଦ୍ୱିବିଧ ( ଦୁଇପ୍ରକାର ), ଅର୍ଥରେ ୨ ବରୂପାକ୍ଷ ସ୍ଥାନେ ( ମହାଦେବଙ୍କ ସ୍ଥାନରେ, ରାକ୍ଷସଙ୍କ ସ୍ଥାନରେ ) ଘୋଷି ( ଘୋଷିଲା )

୧—ଋକ୍ଷାଚ୍ଛଭଲ୍ଲଭଲ୍ଲୁକା ଇତ୍ୟମରଃ । ନକ୍ଷତ୍ରେ ମୃକ୍ଷଭଂ ତାରାଇତ୍ୟପି ।
୨—ଶରାବିହଗାଃ ଖଗା ଇତ୍ୟପି ।
୩—ଶତସହସ୍ରଲକ୍ଷଶବ୍ଦା ଆନନ୍ତ୍ୟ ବାଚିନଃ ।
୧— ବଳହସ୍ତାଂଶବଃ କିରା ଇତ୍ୟମରଃ ।
୨—ବରୂପାକ୍ଷୋ ମହାଦେବ ବାଭ୍ରବସ୍ତିକ୍ରୋରେଷ୍ୱପିଚ ଇତି କୋଷାନ୍ତରେ ।

ବିବେକ ଶତ୍ରୁର ଅଚଳ ଅଚଳ ପ୍ରଚଳ କରି ବିହିତ ।
ବିମାନ ଦଶକନ୍ଧରର ମନ୍ଦର ଗ୍ରହନେ ମନ୍ଦ ମରୁତ ।୩୯।
ବିଲୋମବିଲୋମଗଡରେ ମେଷଯୁଦ୍ଧବଶେ ଅଙ୍ଗଦ ପ୍ରଭବ ।
ବିର୍ ରଥକର ଭାବେ ରଚି ଶର ବେଧିରକ ଥର ରବ ।୪୦।
ବୋଲେ ବୋଲାଇ ଏ ପୁଷ୍ପକ ପୁଷ୍ପକ ତୋଳି ଫିଙ୍ଗିବି ସାଗରେ ।
ବୁଝଇ ଶିଖରିତିଳକ ତିଳକ ସମ କରି ଟେକିପାରେ ।୪୧।

---

"ଏମ ତେଜି ଦେଖି ବିରୂପାକ୍ଷ ଅସୁର ଡରିଲା ଓ ଲକ୍ଷ୍ମଣଙ୍କ ରୌଦ୍ର ତେଜରେ ରୁଦ୍ରଡରିଲେ ଏହି ଭାବ" । ଏ ଦୁଇପଦରେ ଅର୍ଥଶ୍ଳେଷ ଓ ଶବ୍ଦଶ୍ଳେଷ ମିଶିଅଛି ।

୩୯ଶ ପଦ—ଦଶ କନ୍ଧରର ( ରାବଣର ) ଅଚଳ ( ପର୍ବତପ୍ରାୟ ) ଅଚଳ ( ନିଶ୍ଚଳ ) ବିମାନ ( ରଥକୁ ) ପ୍ରଚଳ ( ଚଞ୍ଚଳ ) କରି ବିହିତ ( ଭାଙ୍ଗିବି )[1] ବିବେକ ( ଏମନ୍ତ ବିଚାର ) ଶତ୍ରୁର "ସେନାପତିର" ମନ୍ଦର "ପର୍ବତ" ଗ୍ରହନେ ( ଗ୍ରହବାରେ ) ମନ୍ଦ ମରୁତ ( ମନ୍ଦ ପବନ ତୁଲ୍ୟ ) "ହେଲା" । "ମନ୍ଦ ପବନ ମନ୍ଦର ପର୍ବତକୁ ଟାଳି, ନ ପାରିଲା ପ୍ରାୟ ଶତ୍ରୁର ସେନାପତିର ରାବଣରେ ରଥ ଭାଙ୍ଗିବା ବିଚାର ବିଫଳ ହେଲା ଏହି ଅଭିପ୍ରାୟ" । ୩୯ ।

୪୦ଶ ପଦ—ଏ ଉତ୍ତାରୁ ବିଲୋମ ବିଲୋମ ଗଡରେ ଅଙ୍ଗଦ ମେଷ ଯୁଦ୍ଧ ବଶେ ( ମେଷଯୁଦ୍ଧର ବଶୀଭୂତ ହୋଇ ) ପ୍ରଭବ ( ପରାକ୍ରମ, "ପ୍ରକାଶି" ) କରି [1]ଭାବେ ( ହସ୍ତ ବଳରେ ) ବିର ରଥ ( ରାବଣର ପୁଷ୍ପକ ବିମାନର ) ଥର ରବ ( କମ୍ପନଧ୍ୱନି ) ଶର ବେଧିରକ "କରି" ରଚି ( ରଚିଲେ ) । "ଅଙ୍ଗଦ ପୁଷ୍ପକରଥ ପେଲି ଦେବାରେ ରଥ ଘର ଘର ଧ୍ୱନି ବହୁକାଳ କରି ଦୂହିଁଗଲା" । "ରଚି ଶର" ଏ ପଦ ବିଲୋମ ଲୋମ ମେଷଯୁଦ୍ଧ ହେଲା । ୪୦ ।

୪୧ଶ ପଦ—ବୋଲେ ( ବିମାନ ପେଲିଦେଇ ଅଙ୍ଗଦ କହେ ) ଏ ( ରଥ ) ପୁଷ୍ପକ ବୋଲାଇ "ଏହାକୁ" [2]ପୁଷ୍ପକ ( ଫୁଲପ୍ରାୟ ) ତୋଳି ସାଗରେ ଫିଙ୍ଗିବି, ବୁଝଇ ( ଏମନ୍ତ ମନେ କରେ ) ଶିଖରି ତିଳକ ( କୈଳାସ

---

୧—ବିବେକଃ ସ୍ୟାଜ୍ଜଳଦ୍ରୋଣ୍ୟାଂ ପୃଥଗ୍‌ଭାବବିଚାରୟୋ ରିତି ମେଦିନୀ ।
୧—ଭାବଃ ସତ୍ତାସ୍ୱଭାବାଭିପ୍ରାୟଚେଷ୍ଟାତ୍ମ ଜନ୍ମସୁ ଇତ୍ୟମରଃ ।
୨—ପୁଷ୍ପକ ତିଳକ ଏ ଦୁଇଶବ୍ଦ ସ୍ୱାର୍ଥେ କ ପ୍ରତ୍ୟୟ ।

ବୋଲେ ଦଶଶିର ଧରି ବ୍ରହ୍ମଶର ବ୍ରହ୍ମସ୍ୱୀ ପ୍ରାଣଧନ ଦେ ।
ବନ୍ଧ ରଭସରେ ଶରେ ସଦୃଶରେ ଦୃଶରେ ଲକ୍ଷ୍ମଣ ଛେଦେ ।୪୨।
ବାହାରେ ଯୂଥପତିଗଣେ ତକ୍ଷଣେ ରଣାଙ୍ଗଣେ ସୁରଙ୍ଗରେ ।
ବପ୍ରବଧିରେ ବଧୀରେ ବେଢ଼ିଗଲେ ରଥପ୍ରାସାଦ ସାଦରେ ।୪୩।
ବାଖ୍ୟାଧଣସଙ୍ଗେ ଧାମେ ରାମ ରଙ୍ଗେ ରାମସଙ୍ଗେ ବ୍ୟାଧରୀତି ।
ବସ୍ତୁସ୍ଥ ମଯୂତନୟ ସେ ସମୟ ଗଲା ଧରା ଧରାପତି ।୪୪।

ପର୍ବତ ) ତୁଳକସମ ( ତୁଳସମାନ ) କର ଟେକଣାରେ । "ଏମନ୍ତ ଅାସ୍ଫୋ-ନ୍ଦତ ଦେଖାଇ କହୁଛେ ଏହ୍ନଭାବ" । ୪୧ ।

୪୨ଶ ପଦ—"ଏମନ୍ତ ଶୁଣି" ଦଶଶିର ବ୍ରହ୍ମଶର ଧରି ବୋଲେ "ମୋ ପୁତ୍ରର ପ୍ରାଣରୂପ ଧନକୁ ନେଇଅଛୁ ଏଣୁ ତୁ" ୧ବ୍ରହ୍ମସ୍ୱୀ ( ଋଣୀ ) "ଏବେ ତୋ" ପ୍ରାଣଧନ ଦେ "ଅରୁଣୀ ହେବୁ" । କମ୍ବା—ରେ ବ୍ରହ୍ମସ୍ୱୀ ( ରେ ତପସ୍ୱୀ ) "ତୋ" ପ୍ରାଣଧନ ଦେ । "ଏହା କହି" ସଦୃଶରେ ( ବ୍ରହ୍ମ-ଶର ସମାନ ) ଶରେ ( ଏକଶର ) ରଭସରେ (ବେଗରେ) ବନ୍ଧ ବନ୍ଧିଲା) । ଦୃଶରେ ( ସେ ଶର ଦୃଶ୍ୟ ହେବାମାତ୍ରେ ) ଲକ୍ଷ୍ମଣ ଛେଦେ ( କାଟି ପକା-ଇଲେ ) । ୪୨ ।

୪୩ଶ ପଦ—ଯୂଥପତିଗଣେ ତକ୍ଷଣେ ( ଯୂଥପତିମାନେ ସେହି ସମୟେ ) ରଣାଙ୍ଗଣେ ( ରଣ ଭୂମିରେ ) ସୁରଙ୍ଗରେ ( କ୍ରୀଡ଼ା କରି ) ବାହାରେ ( ବାହାରିଲେ ) । ବପ୍ର ବଧିରେ ( ବ୍ରାହ୍ମଣଙ୍କ ପ୍ରାୟ ) ବଧୀରେ ( ଚଞ୍ଚଳ ହୋଇ ) ରଥ ୧ ପ୍ରାସାଦ ( ଦେଉଳ ପ୍ରାୟ ରଥକ ) ସାଦରେ ( ଆଦର ପୂର୍ବକ ) ବେଢ଼ିଗଲେ । ୪୩ ।

୪୪ଶ ପଦ—ରାମ ( ରାମଚନ୍ଦ୍ର ) ରଙ୍ଗେ ( ଯୁଦ୍ଧାର୍ଥେ ) ବାଖ୍ୟାଧଣ ସଙ୍ଗେ ( ବାଖ୍ୟାଧଣଙ୍କୁ ଘେନି ) ରାମ ସଙ୍ଗେ ବ୍ୟାଧ ରୀତି ( ବ୍ୟାଧ ମୃଗ ସଙ୍ଗେ ଧାଇଁଲା ପ୍ରାୟ ) ଧାମେ ( ଧାଇଁଲେ ) ସେ ସମୟ ( ସେକାଳେ ) ମୟୂତନୟ

୧—ତପସ୍ୱୀ ବ୍ରହ୍ମବୃଷି ଚ ବ୍ରହ୍ମନ୍ ଶବ୍ଦବାଚ୍ୟଃ ଇତ୍ୟମର କବିଚନ୍ଦ୍ରଟୀକାୟାଂ ।
ବ୍ରହ୍ମପ୍ରୋକ୍ତଂ ତପୋଽଧ୍ୟାୟ ବେଦଙ୍କାନେଷୁ ପୁଂଲ୍ଭିଃ ।
ବହ୍ମାବରଷ୍ଟିଦ୍ୱିଜୟୋ ଋତ୍ୱିକ୍ ଚନ୍ଦ୍ରାର୍କୟୋଃ ପୁଂସ୍ୟୋଃ ଇତିକୋଷାନ୍ତରେ ।
୧—ଦେବଭୂଭୂକା ଇତ୍ୟମରଃ ।

ବେନି ବେନି ହୋଇ ଦ୍ୱିଦଗ ପ୍ରଧାନବୀର ବରଚଲେ ଯୁଦ୍ଧ ।
ବଜ୍ରରୁ ବଜ୍ର ବୃକ୍ଷ ଶିଳା ବର୍ଷଣ ମାର୍ଗଣଗଣ ଆୟୁଧ । ୪୫ ।
ବ୍ୟକ୍ତ ରକ୍ତକନନ୍ଦ କୋକନଦ ମଣ୍ଡିହେଲା ପ୍ରାୟ ପୃଥ୍ୱୀ ।
ବଳ ପ୍ରବଳ ତଳପଙ୍କ କଲେ ସେ ପନ୍ତ ପନ୍ତ ପିଣ୍ଡ ମନ୍ଥି । ୪୬ ।
ବ୍ରହ୍ମାଣ୍ଡ ଦର ଦରସ୍ଥ ଟନାଦର ଉଦର ଫାଟିବ ପରି ।
ବାସୁକୀ ଶଙ୍କି ଟେକ ଧର ଧରଣୀ ନୋହିବ ହୋଇ କ ଭରି ।୪୭।

---

( ମୟଦାନବ ପୁତ୍ର ମନ୍ଦୋଦରୀ ଭାଇ ) ବଜ୍ରସ୍ତୁ "ହୋଇ ବଗୃବଲ୍" ଧରିପନ୍ତ ( ରାବଣ ) ଧରି ଗଲ୍ କ ? । ୦୪ ।

୪୫ଶ ପଦ—ଦ୍ୱିଦଗ ( ଦୁଇପକ୍ଷର ) ପ୍ରଧାନବୀର ବେନି ବେନି ( ଦୁଇ ଦୁଇ ) ହୋଇ ଯୁଦ୍ଧ ବରଚଲେ ( କଲେ ) । "ରାମ ପକ୍ଷବାଦଗର ବୀରମାନେ" ବଜ୍ରରୁ ବଜ୍ର ( ବଜ୍ରଠାରୁ ଅଣ୍ଡ ) ବୃକ୍ଷ ଶିଳା ଏବଂ "ରାବଣ ପକ୍ଷ ଦଗର ବୀରମାନେ" ମାର୍ଗଣଗଣ ( ଶରସମୂହ ) ଆୟୁଧ ( ଖଡ୍ଗାଦ ) ବର୍ଷଣ ( ବୃଷ୍ଟି ) କଲେ । ୪୫ ।

୪୬ଶ ପଦ—"ସେକାଳେ" ୧ରକ୍ତନନ୍ଦା ( ରକ୍ତନଦୀ ) ବ୍ୟକ୍ତ "ହେବାରୁ" ପୃଥ୍ୱୀ କୋକନଦ ( ରକ୍ତୋତ୍ପଳ ) ମଣ୍ଡି ହେଲାପ୍ରାୟ "ଦଶିଲ୍" । ପ୍ରବଳ ବଳବନ୍ତ ) ସେ ( ସେହି ବୀରମାନେ ) ବଳପିଣ୍ଡ ( ସୈନ୍ୟମାନଙ୍କ ପିଣ୍ଡ ) ପନ୍ତ ପନ୍ତ ( ଧାଡ଼ିକି ଧାଡ଼ି ) ମନ୍ଥି "ପକାଇ" ତଳପଙ୍କ ( ରଣଭୂମିକ କାଦୁଅ ) କଲେ । ୪୬ ।

୪୭ଶ ପଦ—ଦରଦର ( ଅଳ୍ପଭୟରୁ ) ସ୍ଥ ଟ ( ବଂଲୁହେବା ) ନାଦର ( ବୀର ଡାକରେ ) ବ୍ରହ୍ମାଣ୍ଡ ଫାଟିବ ପରି ( ବ୍ରହ୍ମାଣ୍ଡ ଫାଟିଯିବା ପ୍ରାୟ ପ୍ରତୀତ ହେଲ ) । ହୋଇ କ ଭରି ( ବୀରଙ୍କ ପାଦଭାର ଅନବରତମୟ ହେବାରୁ ) ବାସୁକୀ ( ନାଗରାଜା ) ଧରଣୀ ଟେକ ଧର ନୋହିବ "ବୋଲି" ଶଙ୍କି ( ଭୟ କଲ ) ? ୦୭ ।

---

୧—ନଦଶବ୍ଦ ନଦୀବାଚକଃ—ତଥାହ୍ର ହନୁମନ୍ନାଟକେ—
ଗର୍ଜନ୍ତି ପ୍ରତପଦଶଂ ଘନମୃଳା ଚନ୍ଦନଗନ୍ଧକଶ୍ଚ ଜଳଧାରା ।
ସାକ୍ଷିମୂଳନଦକୂଳଶଯ୍ୟାନଃ କଂକରେଣ ବରିନେ ମମରାମଃ ।

ବିଚକ୍ଷଣେ ରଣେ ଲକ୍ଷ୍ମଣ ତୀକ୍ଷଣ ବାଣ କଠୋର କୁଠାର ।
ବିଚ୍ଛେଦ କଲ ଛେଦ ମହାପାରୁଶ ମହାଦ୍ରୁମ ପିଣ୍ଡ-ଶିର । ୪୮ ।
ବିକଟ ସୁଗ୍ରୀବ ସୁଗ୍ରୀବ ମୋଡ଼ିଲା ଯାଗପଶୁପରି ଧରି ।
ବାତସୁତ ମୁଷ୍ଟି ମହାଶନି ମହାଶନି ହନୁ-ସାନୁ ଚୂରି । ୪୯ ।
ବଳିଷ୍ଠ ପ୍ରଶସ୍ତ ପ୍ରଶସ୍ତ ଅଙ୍ଗଦ ଅଙ୍ଗଦତଳେ ହେଲା ।
ବିଚିତ୍ରକର୍ମା ଅପୂର୍ବ ନଳ ନଳ ଜରାସୁର ଭସ୍ମ କଲା । ୫୦ ।
ବିରୂପା ବିରୂପାକ୍ଷକୁ କଲା ମୀନ ପ୍ରକଟି କଟିକି ଭାଙ୍ଗି ।
ବୈଶାଖ ରିଷପତି ଦଧି ପ୍ରଥମ ପ୍ରମଥନବଶେ ରଙ୍ଗି । ୫୧ ।

୪୮ଶ ପଦ—ରଣେ ୧ବିଚକ୍ଷଣ ( ରଣପଣ୍ଡିତ ) ଲକ୍ଷ୍ମଣ ତୀକ୍ଷଣ (ତୀକ୍ଷ୍ଣ) ବାଣ ( ଶରରୂପ ) କଠୋର କୁଠାର ( କର୍କଶପରଶୁରେ ) ମହାଦ୍ରୁମ ( ମହାବୃକ୍ଷ ପ୍ରାୟ ଉଚ୍ଚ ) ମହାପାରୁଶ ( ମହାପାର୍ଶ୍ୱ ଦୈତ୍ୟର ) ଶିରଚ୍ଛେଦ ବିଚ୍ଛେଦ ( ଦୁଇଖଣ୍ଡ ) କଲା । "ଏ ପଦ୍ମ ଉପମାରୂପକ ହେଲା" । ୪୮ ।

୪୯ଶ ପଦ—ସୁଗ୍ରୀବ ( କପିରାଜ ) ବିକଟ "ଦୈତ୍ୟର" ସୁଗ୍ରୀବ ( ଶୋଭନଗ୍ରୀବାକୁ ) ଧରି ଯାଗପଶୁ ପରି ( ପ୍ରାୟ ) ମୋଡ଼ିଲା । "ଯାଗରେ ପଶୁର ବେକ ଧରି ମୋଡ଼ିଲା ପ୍ରାୟ ସୁଗ୍ରୀବ ବିକଟଦୈତ୍ୟ ବେକ ମୋଡ଼ି ପକାଇଲା. ଏହି ତାତ୍ପର୍ଯ୍ୟାର୍ଥ" । ବାତସୁତ ( ହନୁମାନ ) ମୁଷ୍ଟି ମହାଶନି ( ବଜ୍ର ବିଧାଏ ମାରି ) ମହାଶନି "ଦୈତ୍ୟର" ହନୁସାନୁ ( ପର୍ବତଶୃଙ୍ଗରୂପ ଗାଲକୁ ) ଚୂରି ( ଭାଙ୍ଗିଲା ) । ୪୯ ।

୫୦ଶ ପଦ—ବଳିଷ୍ଠ ପ୍ରଶସ୍ତ "ସେନାପତି" ପ୍ରଶସ୍ତ ( ପ୍ରଧାନ ) ଅଙ୍ଗଦ ( ବାଳି ପୁତ୍ରର ) ତଳରେ ( ଗୋଇଠାରେ ) ଅଙ୍ଗଦ -ହେଲ ( ଅଙ୍ଗଦେଲା—ମଲା ) । ବିଚିତ୍ରକର୍ମା ନଳ "କପି" ଅପୂର୍ବନଳ ( ଅନଳ ) "ହୋଇ" ଜରାସୁର ( ଜରା ଅସୁରକୁ ) ଭସ୍ମକଲା । ୫୦ ।

୫୧ଶ ପଦ—ମୀନ "କପି" ପ୍ରକଟି ( ପ୍ରବେଶ କରି ) ବିରୂପାକ୍ଷକୁ ( ବିରୂପାକ୍ଷଅସୁରକୁ ) କଟିକିଭାଙ୍ଗି ( ତା ଅଣ୍ଟା ଭାଙ୍ଗିଦେଇ ) ବିରୂପା ( କୁତ୍ସିତରୂପ ) କଲା । ରିଷପତି ( ଜାମ୍ବୁବ ) ବୈଶାଖ ( ଖୁଆ ଦହି-

୧—ଲବ୍ଧବର୍ଣ୍ଣୋ ବିଚକ୍ଷଣ ଇତ୍ୟମରଃ ।

ବଧା ବଧାନେ ସୁଷେଣ କାଳ କାଳ କାଳଘଣ୍ଟଧ୍ୱନିଲୀନ ।
ବଦାରେ କର କରକୁମ୍ଭ କୁମ୍ଭକ କେଶରୀ କେଶରୀ ଘେନ । ୫୨ ।
ବାର୍ତୀର ସମନ୍ଧ ମଧ୍ୟରେ ଗଡ଼ାଇ ମହେନ୍ଦ୍ର ମହାଶୂରକୁ ।
ବଶିଷ୍ଟ ଗବୟ ଗବୟ ପରସ୍ତରେ ଚିର କାଳକେତୁ ବୁକୁ । ୫୩ ।
ବଳୀ ବଇରଭାବରେ ଶରଭ ହେଲା ବକାସୁର-ବକେ ।
ବର୍ଦ୍ଧନ ଗବାକ୍ଷ ଗବାକ୍ଷ କଲେ ଯେ ବୃକାସୁରକୁ ଉତ୍ସୁକେ । ୫୪ ।

---

ହୋଇ ) ପ୍ରଥମ "ଦୈତ୍ୟ ରୂପ" ଦଧି ମଥନବଶେ ( ମନ୍ଥନରେ ବଶୀଭୂତ ହୋଇ ) ୧ ରଙ୍ଗି ( ହର୍ଷଯୁକ୍ତ ) ହେଲା । ୫୧ ।

୫୨ଶ ପଦ—କାଳ ( ଯମତୁଲ୍ୟ ) ସୁଷେଣ "କପି" ବଧା ବିଧାନେ ( ବଧମାରବାରେ ) କାଳଘଣ୍ଟ "ଅସୁରର" ୧କାଳ ( ମୃତ୍ୟୁ ) "ହେବାରୁ" ଧ୍ୱନିଲୀନ ( ନିଃଶବ୍ଦ ) "ହେଲ" । କେଶରୀ "କପିକ" କେଶରୀ ( ସିଂହ ତୁଲ୍ୟ ) ଘେନ । ସେ କୁମ୍ଭକ "ଅସୁରକୁ" କରକୁମ୍ଭ କର ( ଗଜର କୁମ୍ଭ କର ) ବଦାରେ "ସିଂହ ଗଜ କୁମ୍ଭ ବଦାରିଲା ପ୍ରାୟ ବଦାର ମାରିଲା ଏହିଭାବ" । ୫୨ ।

୫୩ଶ ପଦ—ମହେନ୍ଦ୍ର "କପି" ମହାଶୂରକୁ ( ମହାଶୂର ଦୈତ୍ୟକୁ ) ବାର୍ତୀର ସମ ୧( ପିଲ ଖେଳନା ବାଟିତୁଲ୍ୟ ) ମଧ୍ୟରେ ଗଡ଼ାଇ ( ମାରି-ଭୂଇଁରେ ଗଡ଼ାଇ ଦେଲ ) ହି ( ନିଶ୍ଚୟ ) । ବଶିଷ୍ଟ ( ପ୍ରଧାନ ) ଗବୟ "କପି" ଗବୟ ପଶରେ ( ୧ଗୟଳ ତୁଲ୍ୟ ଯାଇଁ ) କାଳକେତୁ "ଅସୁରର" ବୁକ ( ଗ୍ରୁଦ୍ଧକ ) ଚିର "ମାର ପକାଇଲ" । ୫୩ ।

୫୪ଶ ପଦ—ଶରଭ "କପି" ବଇରଭାବରେ ( ଶତ୍ରୁ ଛଞ୍ଚାଣ ପକ୍ଷୀ ସ୍ୱରୂପରେ ) ବକାସୁରବକେ ( ବକପକ୍ଷୀତୁଲ୍ୟ ବକାସୁର ଠାରେ ) ବଇରୀ ( ଶତ୍ରୁ ) ହେଲି । "ଛଞ୍ଚାଣ ବକକୁ ମାରିଲ ପରି ଶରଭ ବକାସୁରକୁ ମାରିଲ ଏହିଭାବ" । ଗବାକ୍ଷ ଯେ "କପି" ବର୍ଦ୍ଧନ ( ବଢ଼ାଇ ପ୍ରାୟ )

---

୧—ରଙ୍ଗୋରକ୍ତେ ରତ୍ନେ ହର୍ଷେ ଇତି କୋଷାନ୍ତରେ ।
୧—କାଲୋ ମୃତ୍ୟୌ ମହାକାଳେ ସମୟେ ଯମକୃଷ୍ଣୟୋଃ । ଇତି ମେଦିନୀ ।

ବଜ୍ରକବଚ ଗବାକ୍ଷକୁ ତାଗାକ୍ଷ କର କରତଳରେ ଚାରି
ବଦ୍ୟ ପନସ ପନସକୀଳପରି ବ୍ୟାଘ୍ରାକ୍ଷ ଅନ୍ତ ଓଟାରି । ୫୫ ।
ବରଳାକ୍ଷ ବକ୍ଷ ତାଳମ୍ବ ତାଳମ୍ବଫଳପରି ଫଟାଇଲା ।
ବଦ୍ୟ ଚନ୍ଦନ ଚନ୍ଦନତରୁ ମାରି ଯମଘଣ୍ଟେ ଲୋଟାଇଲା । ୫୬ ।
ବସନ୍ତ ବସନ୍ତବତ ବ୍ରଣ ଜାତ କଲା ପଞ୍ଚଶିରଦେହେଁ ।
ବକଶି କଞ୍ଚନ କଞ୍ଚନ ପାଟଳୀ ପାଟଳୀ ଫୁଟାଇ ଦିଏ । ୫୭ ।

---

୧ଉଷ୍ଟ୍ରକେ ( ଉଷ୍ଟ୍ରକ ଦ୍ୱୋଳ ) ବୃକାସୁରକୁ ୨ ଗବାକ୍ଷ ( ଜଳ କବାଟୀ ) କଲେ "ମାଂସ ଉଷ୍ଟ୍ରୀତ ପକ୍ଷୀ ଚଖିଦେଲ ଏହୁଷ୍ଟ୍ରବ" । ୫୪ ।

୫୫ଶ ପଦ—ତାଗାକ୍ଷ "କପି" ବଜ୍ର କବଚ ଗବାକ୍ଷକୁ କର କରତଳରେ ( ହସ୍ତରୂପ କର୍ତ୍ତରିରେ ) ଚାରି "ପକାଇଲା" । ବଦ୍ୟ ( ବଦ୍ୟମାନ ) ପନସ "କପି" ବ୍ୟାଘ୍ରାକ୍ଷ "ଦୈତ୍ୟର" ଅନ୍ତ ( ଅନ୍ତବୃକୁଳାକୁ ) ପନସ କୀଳପରି ( ପଣସରଭଣ୍ଡି ଓଟାରିଲା ପ୍ରାୟ ) ଓଟାରି "ଆଣିଲା" । ୫୫ ।

୫୬ଶ ପଦ—ତାଳମ୍ବ "କପି" ବରଲାକ୍ଷ "ଦୈତ୍ୟର" ବକ୍ଷ (ଗ୍ରୁଡକା) ତାଳମ୍ବ ଫଳପରି ଫଟାଇଲା । "ବରଲାକ୍ଷ ତାଳମ୍ବ କପି ଆଘାତରେ ଗ୍ରୁଡ ଫାଟିମଲା" । ବଦ୍ୟ ( ବୀରଙ୍କମଧ୍ୟେ ବିଦ୍ୟମାନ ) ଚନ୍ଦନ "କପି" ଚନ୍ଦନତରୁ ( ଚନ୍ଦନ ବୃକ୍ଷରେ ) ଯମଘଣ୍ଟେ ( ଯମଘଣ୍ଟ ଗବାକ୍ଷକୁ ) ମାରି "ଭୂମିରେ" ଲୋଟାଇଲା । ୫୬ ।

୫୭ଶ ପଦ—ବସନ୍ତ "କପି" ବସନ୍ତ ବତ ( ବସନ୍ତ ରୋଗ ବ୍ରଣଜାତ କଲା ପ୍ରାୟ ) ପଞ୍ଚଶିର "ଦାନବର" ଦେହେଁ ( ଦେହରେ ) ବ୍ରଣଜାତ କଲା । କଞ୍ଚନ "କପି" କଞ୍ଚନ "ପୁଷ୍ପପ୍ରାୟ" ବକଶି ପାଟଳୀ "ପୁଷ୍ପରୂପ" ପାଟଳୀ "ଦୈତ୍ୟକୁ" ଫୁଟାଇ ଦିଏ । "କଞ୍ଚନ କପି ଆଘାତରେ ପାଟଳୀ ଦୈତ୍ୟର ଦେହ ଫୁଟିଯାଇ ମଲାଏହୁଷ୍ଟ୍ରବ" । ୫୭ ।

---

୧—ଲକ୍ଷାର୍ଥେ ଯୁକ୍ତ ଉଷ୍ଟ୍ରକ ଇତ୍ୟମରଃ ।
୨—ବାତାୟନଂ ଗବାକ୍ଷଃସ୍ୟାଦିତ୍ୟପି । ଜାଲଂ ସମୂହ ଆନାୟୋ ଗବାକ୍ଷ କ୍ଷାରକାବପି ଇତ୍ୟପି ।

ବଦୁ୍ୟକ୍ଷ ହ୍ମ ଜହ୍ନ ଉତ୍ପାଟି କୁମୁଦ କୁ-ମୁଦ ଦେଲା ବସ୍ତାର ।
ବନ୍ଧାଇଁ ରକ୍ତନଦେ ଶବ ପ୍ରବାହୁ ଶରସେତୁ ସେତୁ କର । ୫୮ ।
ବଭଙ୍ଗେ ଇକ୍ଷୁଦଣ୍ଡପର ପ୍ରଜଙ୍ଘଜଙ୍ଘକୁ ଗନ୍ଧମାଦନ ।
ବବଧ ବବଧ ମାଡ଼ ମାର ମାରପକାଇ ସୁମିହ୍ନଘନ । ୫୯ ।
ବଂଶପ୍ରାପ୍ତ କଲା ଦ୍ୱିବଧ ଦ୍ୱିବଧ ସିଂହନାଦ ମୃତ୍ୟୁ ପାଞ୍ଚ ।
ବୃଷ୍ଟି କରୁଁ ପନଶୀଳ ଶିଳ ଲୁଚ ଉଲୁକ ନ ପାର ବଞ୍ଚ । ୬୦ ।
ବନଧବ-ଶତବଳ ଶତବଳ ହସ୍ତିକର୍ଣ୍ଣକୁ ମାଇଲା ।
ବମନ ଦୁର୍ମୁଖ ମୁଖରୁ ରୁଧିର ଋଷଭତଳରେ ହେଲା । ୬୧ ।

---

୫୮ଶ ପଦ—କୁମୁଦ "କପି" ବଦୁ୍ୟକ୍ଷିହ୍ନ "ଦୈତ୍ୟର" ଜହ୍ନ ( ଜଉ ) ଉତ୍ପାଟି ( ଉପାଡ଼ି ) କୁ ( ପୃଥ୍ବୀର ) ମୁଦ ( ଆନନ୍ଦ ) ବସ୍ତାରି ଦେଲା । "ବଦ୍ୟୁକ୍ଷିହ୍ନ ମରବାରୁ ମହୀ ଉଶ୍ୱାସ ପାଇ ଆନନ୍ଦ ହେଲ ଏହ୍ଲଭାବ" । ଶର-ସେତୁ "କପି" ପ୍ରବାହୁ "ଦାନବଙ୍କ" ଶବ ରକ୍ତନଦେ ( ରକ୍ତନଦୀରେ ) ସେତୁ ( ବନ୍ଧ ) କର ବନ୍ଧାଇ "ଦେଲ" । ୫୮ ।

୫୯ଶ ପଦ—ଗନ୍ଧମାଦନ "କପି" ପ୍ରଜଂଘ "ଦୈତ୍ୟର" ଜଂଘକୁ ଇକ୍ଷୁଦଣ୍ଡ ପର ବଭଙ୍ଗେ ( ଆଖୁ ଗଛକୁ ଧରି ଭାଙ୍ଗିଲା ପ୍ରାୟ ଭାଙ୍ଗିଦେଲ ) । ବନ୍ଧଧ "କପି" ସୁମିହ୍ନଘନ (ସୁମିହ୍ନ ଦୈତ୍ୟକୁ) ବବ୍ବଧ ( ନାନାପ୍ରକାର ) ମାଡ଼ମାର ମାର ପକାଇ ( ମାର ପକାଇଲ ) । ୫୯ ।

୬୦ଶ ପଦ—ଦ୍ୱିବଧ ( ଦ୍ୱିବଦ୍ର କପି ) ସିଂହନାଦ "ଅସୁରର" ମୃତ୍ୟୁ ପାଞ୍ଚ ( କେମନ୍ତେ ମୃତ୍ୟୁ ହେବ ଏରୂପ ବଚ୍ଚାର ) ବଂଶପ୍ରାପ୍ତ ( ବାଉଁଶକୁ ଦୁଇ-ଫାଳ କଲା ପ୍ରାୟ ) ଦ୍ୱିବଧ (ଚିର ଦ୍ୱିଫାଳ କଲା) । ପନଶୀଳ "କପି" ଲୁଚ ( ଗୁପ୍ତ ହୋଇ ) ଶିଳ ( ପଥର ) ବୃଷ୍ଟି କରୁଁ ( କରନ୍ତେ ) ଉଲୁକ "ଦୈତ୍ୟ" ବଞ୍ଚି ନ ପାର ( ମଲ ) । ୬୦ ।

୬୧ଶ ପଦ—ବନଧବଶତବଳ (ଶତସିଂହପରାକ୍ରମୀ) ଶତବଳ "କପି" ହସ୍ତି କର୍ଣ୍ଣକୁ ମାଇଲା । "ହସ୍ତିକ ସିଂହ ମାରେ ଏହ୍ଲଭାବ" । ଋଷଭ "କପିର" ତଳରେ ( ଗୋଡ଼ତଳେ ) ଦୁର୍ମୁଖ "ଦୈତ୍ୟର" ମୁଖରୁ ରୁଧିର ବମନ ( ରକ୍ତ-ବାନ୍ତ ହେଲ ) । "ରକ୍ତବାନ୍ତ କର ମଲ ଏହ୍ଲ ଭାବ" । ୬୧ ।

ବିଖ୍ୟାଷଣ ବିଖ୍ୟାଷଣ କରବାଳେ କୁରବାଳେ ଯୁକ୍ତ କର ।
ବିଭିନ୍ନ ଅମିତ୍ର ମିତ୍ରଧନଶିର ଯଜ୍ଞୋପବୀତଚ୍ଛନ୍ଦର । ୬୨ ।
ବର୍ଣ୍ଣିବାକୁ ନିୟମରେ କି କରିବା ପୁନ ନାଟ ସର୍ବ ହତ ।
ଧ୍ୱଂଶ ବାହାର ବାହାର ଚଉଁ ଗର୍ବ ଲୌକିକତ ଏ ଅଲୌକିକତ । ୬୩ ।
ବିଧାତା ଗୁଡ଼ିଲ ଏଥର ଏ ଥର ଉପୁଜିଗଲ ତା ଅଙ୍ଗେ ।
ବିଶ୍ୱରେ ଚଉଦପୁର ପୁରସ୍କାର ଉଦୟେ କେ ଥିଲ ସଙ୍ଗେ ।୬୪।

---

୬୨ଶ ପଦ—ବିଖ୍ୟାଷଣ ( ରାବଣ ଖ୍ୟାତି ) ବିଖ୍ୟାଷଣ ( ଅତି ଭୟଙ୍କର ) କରବାଳେ ( ଖଡ୍ଗକୁ ) କର ( ଦକ୍ଷିଣ ହସ୍ତରେ ) ଯୁକ୍ତ "ଧରି" ବାଳେ ( ମିତ୍ରଘ୍ନ ଅସୁରର କେଶକୁ ) କର ( ବାମ ହସ୍ତରେ ) "ଧରି" ଅମିତ୍ର ( ଶତ୍ରୁ ) ମିତ୍ରଧନ ଶିର ( ମିତ୍ରଘ୍ନ ଦୈତ୍ୟ ମୁଣ୍ଡକୁ ) ଯଜ୍ଞୋପବୀତ ଛନ୍ଦର ( କାନ୍ଧରେ ପଇତା ପଡ଼ିଥିବା ପ୍ରକାରେ ) ବିଭିନ୍ନ ( ଛେଦନ ) କଲ । "କାନ୍ଧକୁ ବଙ୍କେଇ କାଟିବାରୁ ସେ ମଲ ଏହିଭାବ" ।୬୨।

୬୩ଶ ପଦ—"କିଛି କହିଲେ ରାବଣରେ" ପୁନି ନାଟ ସର୍ବହତ ( ସମସ୍ତେ ମଲେ ) "ତାହାସବୁ" ନିୟମରେ ( ଗଣନା କ୍ରମରେ ) ବର୍ଣ୍ଣିବାକୁ କି କରିବା ଏତେ ତେତେ ( ଗଣନା କରି କି ବର୍ଣ୍ଣିବା ) ? ଏ ଅଲୌକିକତ ( କର୍ମ ଲୌକିକତ ନୁହେଁ ) । "କିନ୍ତୁ ଏହା" ବିଶବାହାର ( ରାବଣର ) ଏଲୌକିକତ "ହେଲ" "ରାବଣ ଏହା ଦେଖି" ଚଉଁ ( ତା ମନରୁ ) ଗର୍ବ ବାହାର "ହେଲ" । "ଅହଂକାର ତେଜିଲା" ଏହିଭାବ । ୬୩ ।

୬୪ଶ ପଦ—ବିଶ୍ୱରେ ( ରାବଣ ମନ ମଧ୍ୟରେ ଖେଳଇ ) ଏଥର "ମତେ" ବିଧାତା ଗୁଡ଼ିଲ ଏ ( ଏମନ୍ତ ) ଥର ( କମ୍ପ ) ତା ଅଙ୍ଗେ ( ତାହାର ସର୍ବାଙ୍ଗରେ ) ଉପୁଜି ଗଲ ( ଜାତ ହେଲା ) । "ପୁଣି ବିଶ୍ୱରେ" ଚଉଦପୁର ( ଚଉଦ ଭୁବନରେ ) "ମୋହର" ପୁରସ୍କାର ( ପୌରୁଷ ) ଉଦୟେ ( ଉଦୟ ହେବା କାଳରେ ) କେ ( ପୁତ୍ର ନାତି କେହି ) ସଙ୍ଗେ ଥିଲ କି ? ( ନ ଥିଲ ) "ମୁଁ ଏକାକେ ତିପୁର ଜୟୀ ହୋଇଥିଲି ଏଥିପାଇଁ ଚିନ୍ତା କାହିଁକି ଏହିଭାବ" । ୬୪ ।

ବୃତ୍ର ନମୁଚି ସମର ଭୁକ୍ତକର ତ୍ରିପୁରେ କାହ୍ନି ସହଜ ।
ବଡ଼ ଅନ୍ଧକରେ ସମସ୍ତ ଲୋକରେ ବନ୍ଧା ଯା କଲା ନାରାଜ । ୭୫ ।
ବଅର୍ଥ ନୋହେ ଏ ଦ୍ୱିଅର୍ଥ ଭାବନା ଶକ୍ର ହର ଅନୁସରେ ।
ବିଭୀଷଣ ରାମ ଲକ୍ଷ୍ମଣ ସୁଗ୍ରୀବ ସେନାଙ୍କୁ ଯୁଝେ ଏକାରେ । ୭୬ ।

---

୭୫ଶ ପଦ—"ଏହି ଭାବ ରାବଣ" ସମସ୍ତ ଲୋକରେ (ସମସ୍ତଙ୍କୁ ଏକାବେଳକେ) ନାରାଜ (ଲୋହମୟ ଶର) ଯା ବନ୍ଧାକଲା (ଯାହାକୁ ବାନ୍ଧିଲା) ସେ ବଡ଼ ଅନ୍ଧକରେ (ତହିଁରେ କାହାର ଚକ୍ଷୁକୁ ଦିଶିଲା ନାହିଁ) ବୃତ୍ର (ବୃତ୍ରାସୁର) ନମୁଚି "ଦାନବ" "ଏ ଦୁହେଁଙ୍କ" ସମର (ଯୁଦ୍ଧକୁ) ଭୁକ୍ତ କର (ଏହାର ଯୁଦ୍ଧ ତାଙ୍କ ଯୁଦ୍ଧ ଅପେକ୍ଷା ଅଧିକ) ତ୍ରିପୁରେ (ସ୍ୱର୍ଗ-ମର୍ତ୍ତ୍ୟ ପାତାଳରେ) ସହଜ (ସହଜରେ) "ତା ସମାନ ଆଉ କେହି ନାହିଁ" । "ରାବଣ ଶରମାନ ଯେପରି ଦଶଦିଗ ଅନ୍ଧାର କରିଦେଲା ଏପରି ପୂର୍ବେ କେହି କରି ନ ଥିଲେ । ଇନ୍ଦ୍ର ବୃତ୍ର ଓ ନମୁଚି ସଙ୍ଗେ ଏବଂ ହର ତ୍ରିପୁର ଓ ଅନ୍ଧକ ସଙ୍ଗେ ଯେଉଁ ଯୁଦ୍ଧ କରିଥିଲେ ସେ ଏହା ସଙ୍ଗେ ସମାନ ହେବ ନାହିଁ ଏ ରାବଣ ତାଙ୍କ ଅପେକ୍ଷା ଅଧିକ ଏହି ସରଳାର୍ଥ" । ୭୫ ।

୭୬ଶ ପଦ—ଏ ଦ୍ୱିଅର୍ଥ "ଭାବନା" (ଏ ଯେଉଁ ଦୁଇ ଅର୍ଥର ଭାବନା) ଏ ବଅର୍ଥ (ବ୍ୟର୍ଥ) ନୋହେ । କାହିଁକି ନା ? ଶକ୍ର (ଇନ୍ଦ୍ର) ହର (ମହା-ଦେବ) "ଏ ଦୁହିଁଙ୍କଠାରେ" ଅନୁସରେ (ଅନୁଗତ ହୋଇଅଛି) "କବି ଏମନ୍ତ ଚହ୍ଲାଇ ଦେଲା" । ଏକାରେ (ଏକାକେ ରାବଣ) ବିଭୀଷଣ ରାମ ଲକ୍ଷ୍ମଣ ସୁଗ୍ରୀବ "ଏବଂ" ସେନାଙ୍କୁ (ଅଷ୍ଟସେନାଙ୍କ ସଙ୍ଗେ) ଯୁଝେ । "କାରଣ" ବୃତ୍ର ଓ ନମୁଚି ସଙ୍ଗେ ଏକା ଇନ୍ଦ୍ର ତ୍ରିପୁର ଓ ଅନ୍ଧକ ସଙ୍ଗେ ଏକା ହର ଯୁଦ୍ଧ କରୁଥିଲେ ଏଣୁ ରାବଣ ତାଙ୍କଠାରୁ ମହାବୀର ଅଟେ ଏହୁ ଫଳିତାର୍ଥ" । ୭୬ ।

ବର୍ତ୍ତି ଶାରଙ୍ଗ ମହୋଜ୍ଜ୍ୱଳ ଛବରେ ସ୍ଥିର ବିମାନ ଧରରେ ।
ବିଟପୀ ସ୍ପର୍ଶନେ ଶମ୍ବରାଲମ୍ବନ ସଦା ବିଳସେ ନଭରେ । ୬୭ ।

---

୬୭ଶ ପଦ—"ପୁଣି ସ୍ରବଣ" ଶାରଙ୍ଗ ( ମେଘପ୍ରାପ୍ତ ) ମହୋଜ୍ଜ୍ୱଳ ଛବରେ ( ଅତି ଉଜ୍ଜ୍ୱଳ ଛବି ଧରିଥିବା ) ସ୍ଥିର ବିମାନ ( ସୁସ୍ଥିର ପୁଷ୍ପକ ଯାନ ରୂପ ) ଧରରେ ( ପର୍ବତରେ ) ବର୍ତ୍ତି ( ରହିଲା ) । ବିଟପୀ ( ରମ୍ଭା ଅପ୍ସରାକୁ ) ସ୍ପର୍ଶନ ( ହରଣ କରିଥିଲା ) । ୧ ଶମ୍ବରାଲମ୍ବନ ( କାଣ୍ଡର ଅଶ୍ରାପ୍ତ ନେଇ ଅଛି ), ସଦା "ସତ୍+ଆ" ( ଉତ୍ତମରୂପେ ସର୍ବତୋଭାବରେ ) ନଭରେ ( ଆକାଶରେ ) ବିଳସେ ( ବିହରେ ) ।- ବାଚ୍ୟାର୍ଥ ଯଥା—"ମେଘ ଯେରୂପ" ମହୋଜ୍ଜ୍ୱଳ (ସବୁ ରସଠାରୁ ବଡ଼ ଶୃଙ୍ଗାର ରସର) ଛବି (କାନ୍ତିରେ) ସ୍ଥିର "ହୋଇ" ଧରରେ ( ପର୍ବତ ଉପରେ ) ବର୍ତ୍ତି ( ରହେ ) ବିଟପୀ ( ବୃକ୍ଷଙ୍କୁ ) ସ୍ପର୍ଶନେ ( ସ୍ପର୍ଶ କରେ ) ଶମ୍ବରାଲମ୍ବନ ( ଜଳର ଆଶ୍ରୟ ) ସଦା ( ସର୍ବଦା ) ନଭରେ ( ଗଗନରେ ) ବିଳସେ ( କ୍ରୀଡ଼ାକରେ ) । ବ୍ୟଙ୍ଗ୍ୟାର୍ଥ ଯଥା—ଶାରଙ୍ଗ ( ଚାତକ ପକ୍ଷୀ ) ମହୋଜ୍ଜ୍ୱଳ ( କନ୍ଦର୍ପରସର ଛବି ପ୍ରାପ୍ତ ) ଛବରେ ବର୍ତ୍ତି ( ପ୍ରବର୍ତ୍ତି ) ସ୍ଥିର ( ସୁସ୍ଥିର ) ବିମାନ ଧର ( ଘନଜଳ ବିନା ଅନ୍ୟ ଜଳପାନ ନ କରିବା "ଏହି ଅଭିମାନକୁ ବିଶେଷରେ ଧରି ) ବିଟପିଂ ( ବୃକ୍ଷଙ୍କୁ ) ସ୍ପର୍ଶନେ ( ସ୍ପର୍ଶ କରେ ) । "ଧରରେ ଏ ପଦରେ ଶବ୍ଦ ଏଠାରେ ନିରର୍ଥକ" । ଶମ୍ବରାଲମ୍ବନ ( ଜଳ ଯାହାର ଆଶ୍ରୟ ) ସଦା ( ସର୍ବଦା ) ନଭରେ ( ଆକାଶରେ ) ବିଳସେ ( ଥାଇ ଶୋଭାପାଏ ) * । ୬୭ ।

---

୧—ଶମ୍ବରସ୍ତେଜନକେ କାଣ୍ଡେ ଶରଂ ଚ ସଲିଲେ କ୍ୱଚିଦିତି କୁମୁଦାକରଃ ।
*—ବାଚ୍ୟାଦତିଶୟିନି ବ୍ୟଙ୍ଗ୍ୟେ ଧ୍ୱନିସ୍ତତ୍କାବ୍ୟ ମୁତ୍ତମମିତି ସାହିତ୍ୟେ
ବାଚ୍ୟାର୍ଥାପେକ୍ଷୟା ଅତିଶୟ ଚମତ୍କାରକାରିଣି ବ୍ୟଙ୍ଗ୍ୟେସତି ଧ୍ୱନିଃ
ସ୍ୟାତ୍ । ଚିତ୍ୟକ୍ତୋଗ୍ରାମରଣୋଲସ୍ୟ ଜୁଗୁପ୍ସାବ୍ୟଭିଚ୍ଛରିତଃ ।
ସ୍ତ୍ରୀ ପ୍ରିୟେବୋରିତଃ ଶ୍ୟାମବର୍ଣ୍ଣୋଽସ୍ୟଂ ବିଷ୍ଣୁ ଦୈବତଃ ଇତ୍ୟଲଙ୍କାରେ ॥

ବଦନ ଦଶ ଭିନ୍ନ ଭିନ୍ନ ଏକାଙ୍ଗ ଦଶଦିଗପାଳ କି ସେ ।
ବଜ୍ର ମୁଦ୍ଗର ଦଣ୍ଡ ଖଡ୍ଗ ପାଶ ଯେ ଗଦା ତହୁଁ ଶୂଳ ପେଷେ ।୬୮।
ବରଦାନରେ କୁଶଳ ଫୁଫୁକାର ସ୍ୱନ କରଇ ନିରତ ।
ବହୁନେହ ତେଜ ସ୍ୱୟଂ କାଳମୟ ପୁଣ୍ୟଜନସାର ସ୍ୱତ । ୬୯ ।

୬୮ଶ ପଦ—* ବଜ୍ର ମୁଦ୍ଗର ଦଣ୍ଡ ଖଡ୍ଗ ପାଶ ଗଦା ଶୂଳ "ଏ ଅସ୍ତ୍ରମାନଙ୍କୁ" ଯେ ( ରାବଣ ) "ଏକାବେଳେ" ପେଷେ ( ମାରେ ) "ଏଣୁ" ସେ ( ରାବଣ ) ଦଶଦିଗପାଳ ଏକାଙ୍ଗକି ( ଦଶଦିଗ୍‌ପାଳ ସଂଙ୍କ ଏକତ୍ରେ ରାବଣ ରୂପ ଧରିଛନ୍ତି କି ) "ଏମନ୍ତ ଉତ୍ପ୍ରେକ୍ଷା" । "ରାବଣର" ବଦନ (ମୁଖ) ଦଶ ଗୋଟା ଭିନ୍ନ ଭିନ୍ନ (ଆକୃତି ଏକା ପଂକ୍ତିମୁଖ ଅଲଗା ଅଲଗା) "ଦଶଦିକ୍‌ପାଳଙ୍କର ଦଶଗୋଟା ମୁଖ ଭିନ୍ନ ଅର୍ଥାତ୍ ଭିନ୍ନାକୃତି ଅଲଗା ଅଲଗା" "ଯେପରି ପଞ୍ଚାନନ ଈଶ୍ୱର, ଚତୁରାନନ ବ୍ରହ୍ମା, ସହସ୍ରାନନ ଅନନ୍ତ ଏମାଙ୍କ ମୁଖଙ୍କୁ କବି ଭିନ୍ନ ଭିନ୍ନ ବର୍ଣ୍ଣନ କରେ ତଦ୍ରୂପେ ଦଶ ବଦନକୁ ଭିନ୍ନ ଭିନ୍ନ ମୁଖ ବର୍ଣ୍ଣନ ଗଲି" । ୬୮ ।

୬୯ଶ ପଦ—"ରାବଣ" ବର (ବଡ଼ କରି) ଦାନରେ ( ଛେଦନ କରିବାରେ ) କୁଶଳ ( ସମର୍ଥ ) "ଏଣେ କରି" ବର ( ଈପ୍‌ସିତ ବସ୍ତୁ ) ଦାନରେ (ଦେବାରେ) କୁଶଳ ବ୍ରହ୍ମାଙ୍କ ତୁଲ୍ୟ ହେଲା । "ରାବଣ" ନିରତ ( ସର୍ବଦା ) ଫୁଫୁକାର ସ୍ୱନ ( ଧ୍ୱନି ) କରଇ । "ଏଣୁ କରି ଫୁ ଫୁକାର ସ୍ୱନ ନିରତ କରୁଥିବା ଅନନ୍ତ ଦେବଙ୍କ ତୁଲ୍ୟ ହେଲା" । ବହୁନେହ "ରାବଣରେ" ଥିବାରୁ ବହୁନେହ ( ଇନ୍ଦ୍ରତୁଲ୍ୟ ) "ହେଲା" । "ରାବଣରେ" ତେଜ ( ପ୍ରତାପ ) ତେଜ ( ଅଗ୍ନିତୁଲ୍ୟ ) "ହେଲା" । ସ୍ୱୟଂ ( ନିଜେ ) କାଳମୟ ( କାଳ ସ୍ୱରୂପ ) "ଏଣୁ ଯମ ତୁଲ୍ୟ ହେଲା" । ସ୍ୱତ ( ସ୍ୱତଃ ସ୍ୱଭ ) "ଯେ ରାବଣ" ପୁଣ୍ୟଜନସାର ( ରାକ୍ଷସଙ୍କଶ୍ରେଷ୍ଠ ଥିବାରୁ ) ପୁଣ୍ୟଜନସାର ( ନୈର୍ଋତ ତୁଲ୍ୟ ) "ହେଲା" । ୬୯ ।

*—ଯଦୁକ୍ତଂ ଶୀଳାଦ୍ରି ମହୋତ୍ସବେ—ଇନ୍ଦ୍ରାୟ ବଜ୍ରହସ୍ତାୟ, ମୁଦ୍ଗରହସ୍ତାୟ ଅଗ୍ନୟେ, ଦଣ୍ଡହସ୍ତାୟ ଯମାୟ, ଖଡ୍ଗହସ୍ତାୟ ନୈର୍ଋତାୟ, ପାଶହସ୍ତାୟ ବରୁଣାୟ, ଗଦାହସ୍ତାୟ ବାୟବେ, ଚକ୍ରହସ୍ତାୟ କୁବେରାୟ, ଶୂଳହସ୍ତାୟ ଈଶାନାୟ ନମଃ । ଏହାଦ୍ୱାରା ରାବଣରେ ଅଷ୍ଟଦିକ୍‌ପାଳଙ୍କ ଆୟୁଧ ଧରିବା ସୂଚିତ ହେଲା ॥

ବାର୍ଦ୍ଧିମଧ୍ୟସ୍ଥ ସଦାଗତି ପୁଷ୍ପକଆରୋହୀ ଭୀମଶକତ ।
ବିଖ୍ୟାତ ଯାର ବ୍ରହ୍ମଲୋକେ ପ୍ରଜ୍ୱଳ ଅଧୋଭୁବନେ ଉଦିତ । ୭୦ ।
ବାଳି-ଅନୁଜ-ତନୁଜଙ୍କରେ ଦନୁଜ ବାଳବୁଦ୍ଧି ଉପୁଜାଇ ।
ବିଗ୍ରହରେ ଘୋଟକ ସେ ବେନି ମାନସ ଷ ଭେଦେ ମହୀଶ ମୁହିଁ ।୭୧।

---

୭୦ଶ ପଦ—"ରାବଣ" ବାର୍ଦ୍ଧିମଧ୍ୟସ୍ଥ ( ସମୁଦ୍ର ମଝିରେ ଥିବାରୁ ) ବାର୍ଦ୍ଧି ମଧ୍ୟସ୍ଥ ( ବରୁଣ ତୁଲ୍ୟ ) "ହେଲା" । ୧ସଦାଗତି ( ସନ୍ଧାନ ସର୍ବଦା ଗତି କରୁଥିବାରୁ ) ସଦାଗତି ( ବାୟୁତୁଲ୍ୟ ) "ହେଲା" । ପୁଷ୍ପ ଆରୋହୀ ( ପୁଷ୍ପକ ବିମାନ ଚଢ଼ିବାରୁ ) ପୁଷ୍ପ ଆରୋହୀ ( କୁବେର ତୁଲ୍ୟ ) "ହେଲା" । ୨ଭୀମ ( ଭୟଙ୍କର ) ଶକତ ( ପରାକ୍ରମୀ ) "ଥିବାରୁ" ଭୀମ ଶକ୍ତ ( ଈଶାନ ତୁଲ୍ୟ ) "ହେଲା" । ବ୍ରହ୍ମଲୋକେ ( ବ୍ରହ୍ମଲୋକରେ ) ପ୍ରଜ୍ୱଳ ( ଉଜ୍ଜ୍ୱଳ ) ବିଖ୍ୟାତ ( କୀର୍ତ୍ତି ) ଯାର (ଯେଉଁ ରାବଣର) ଥିବାରୁ (ବ୍ରହ୍ମାତୁଲ୍ୟ) "ହେଲା" । ଅଧୋ୩ଭୁବନେ (ପାତାଳରେ) "ରାବଣ" ଉଦିତ "ହେବାରୁ" (ଅନନ୍ତ ତୁଲ୍ୟ) ହେଲା । "ଏଣୁକରି ରାବଣର ଦଶଦିକ୍‌ପାଳଙ୍କ ଏକାଙ୍ଗତ୍ୱ ସୂଚିତ ହେଲା" । "ଏପଦ ପ୍ରକୃତ ଶ୍ଳେଷ ହେଲା" । ୭୦ ।

୭୧ଶ ପଦ—ଦନୁଜ ( ରାବଣ ) ବାଳି ଅନୁଜ ତନୁଜଙ୍କରେ ( ବାଳି-ରାଜାର ଅନୁଜ ( ସୁଗ୍ରୀବ ) ତନୁଜ (ଅଙ୍ଗଦ) ଏ ଦୁହିଁଙ୍କଠାରେ ) ୪ବାଳବୁଦ୍ଧି ( ଘୋଡ଼ାଙ୍କୁଆ ଏ ଏମନ୍ତ ବୁଦ୍ଧି ) ଉପୁଜାଇ ମାନସ ( ମନରେ ) ବିଗ୍ରହରେ ସେ ବେନି ( ଅଙ୍ଗଦ ସୁଗ୍ରୀବ ଦୁଇ ) ଘୋଟକ ( ଘୋଡ଼ା ) "ହେଲେ" । ମୁହିଁ ୫ମହୀଶ ( ରାଜା ) ଷଂଭେଦେ ( ଷ କାର ଭେଦରେ ) ମହିଷ ( ମଇଁଷି ) "ହେଲି" । "ମଇଁଷି ଘୋଡ଼ାକୁ ବିଦାରିଲା ପରି ମୁଁ ଏ ଦୁହିଙ୍କି ବିଦାରିବି ଏହି ତାତ୍ପର୍ଯ୍ୟାର୍ଥ" । ୭୧ ।

---

୧—ଶ୍ୱସନଃ ସ୍ପର୍ଶନୋ ବାୟୁ ର୍ମାତରିଶ୍ୱା ସଦାଗତିଃ ଇତ୍ୟମରଃ ।
୨—ଘୋରଂ ଭୀମଂ ଭୟାନକ ମିତ୍ୟପି ।
୩—ଲୋକୋଦର୍ଶନମାତ୍ରେ ସ୍ୟାତ୍ତ୍ ସଂସାରେ ଭୁବନେ ଜନେ ଇତି କୁମୁଦାକରଃ ।
୪—ବାଲ କିଶୋର ବାମ୍ୟଶ୍ୱୋ ବଡ଼ବା ବାଡ଼ବଙ୍କ ଗଣେ ଇତ୍ୟମରଃ ।
୫—ମହାନ୍ ଈଶଃ—ମହୀଶଃ । ମହିଷ ଶବ୍ଦସ୍ତ୍ରୁ ମୂର୍ଦ୍ଧନ୍ୟାଷକାର ।

ବଦତ କରାଇ ଶର ଭର ପ୍ରଭା କେଶରତନଯ୍ଯ ତହିଁ ।
ବରାବ କରେ ଆଷାଢ଼ମେଘୁଁ ଟାଣେ ଘୋଟି ନିରନ୍ତରେ ସେହି ।୭୨।
ବଂଶାକ୍ଷ କରେ ସର୍ବ ସେନାପତିରେ ହାରାବୁଦ୍ଧି ଘରଷଣେ ।
ବଜ୍ରଦୁର୍ଗ ପ୍ରାୟେ ସେ ମାନେ ବେଷ୍ଟିତ ହୋଇଛନ୍ତି ଅନୁକ୍ଷଣେ ।୭୩।
ବାର ନୋହିଲା ପ୍ରବଳର ନିଶାମଯ୍ଯ ମମାଶା ସେ ନିଶାଚର ।
ବିଶୀର୍ଣ୍ଣ ଶରଧି ଶରଧି ଅତୁଟ କାଣ୍ଡ କାଣ୍ଡ ଉଲ୍ଲୋଳର ।୭୪।

---

୭୨ଶ ପଦ—ସେହି ( ରାବଣ ) ନିରନ୍ତରେ ( ଅନବରତ ) ଘୋଟି (ବ୍ୟାପି) ଆଷାଢ଼ମେଘୁଁ (ଆଷାଢ଼ମାସର ମେଘ ଗର୍ଜନଠାରୁ) ଟାଣେ(ଟାଣରେ) ବରାବ କରେ ( ରଡ଼ିଘୁଣ୍ଡେ ) କେଶରତନଯ୍ଯ ( ହନୁମାନ୍ ) କେଶରତନଯ୍ଯ ( ସିଂହଛୁଆ ) "ହେଲ" । ତହିଁ ( ତା ଉପରେ ) ଶରଭର (ଶରଜାଲର ) ପ୍ରଭା ( ଦୀପ୍ତି ) ଶରଭର ( ଅଷ୍ଟାପଦ ସିଂହହନ୍ତାର ) ପ୍ରଭା ( ତ୍ରାସପ୍ରାୟ ପ୍ରଭା ) ବଦତ କରାଇ ( ପ୍ରକାଶ କରାଇଲା ) । "ଆଷାଢ଼ ମେଘ ଗର୍ଜନକୁ ସିଂହନାଦ ମନେ କରି ଶରଭ ପ୍ରଭା ପ୍ରକାଶ କଲେ ତଦ୍ରୂପ ରାବଣ ହନୁମାନ ଉପରେ ଶରପ୍ରଭା ପ୍ରକାଶକଲା ଏହି ଭାବ" । ୭୨ ।

୭୩ଶ ପଦ—ବଜ୍ରଦୁର୍ଗପ୍ରାୟ ( ବଜ୍ରଦୁର୍ଗ ଯେରୂପ ଦୁର୍ଜୟ ତଦ୍ରୂପ ମୁଁ ) "ଏହି" ୧ମାନେ (ଗର୍ବବନ୍ତ) ସେ ବଂଶାକ୍ଷ (ରାବଣ) ଅନୁକ୍ଷଣେ ( ସର୍ବଦା ) ବେଷ୍ଟିତ ହୋଇଛନ୍ତି ( ବେଢ଼ିଥିବା ) ସର୍ବ ସେନାପତିରେ ( ସବୁ ସେନାପତିଙ୍କ ଠାରେ ) ୨ ହାରା ବୁଦ୍ଧି ( ଏମାନେ ପିମ୍ପୁଡ଼ିଧାର ଏମନ୍ତ ବୁଦ୍ଧି କରି ତାଙ୍କୁ ) ଘରଷଣେ ( ମର୍ଦ୍ଦନେ ) "ପିମ୍ପୁଡ଼ିଧାରକୁ ଗୋଡ଼ରେ ଘଷିବା ବେଳେ ପରିଶ୍ରମ ନ ହେଲାପରି ସେନାପତିଙ୍କୁ ମର୍ଦ୍ଦିଲ ଏହି ଭାବ" । ୭୩ ।

୭୪ଶ ପଦ—ସେ ନିଶାଚର (ରାବଣ ) ୧ନିଶାମଯ୍ଯ ( ନିଶାସ୍ୱରୂପକୁ )

---

୧—ଅହମିବ କୋଽପିନାସ୍ତୀତି ମାନଃ । ପ୍ରଣତଯୋଗ୍ୟେଷୁ ଉନ୍ନତ କନ୍ଧରତ୍ୱଂ ବାମନଃ ।
୨—ହାରା ପିପୀଲିକା ଲକ୍ଷ୍ମୀ ବଦତର୍ବିଶ୍ୱଃ ।
୩—ଯଦୁକ୍ତଂ ବ୍ୟାକରଣଟୀକାୟାଂ ପାଦେ—ପ୍ରାଚୁର୍ଯ୍ୟ ବିକାର ପ୍ରାଧାନ୍ୟାଦଷୁ ମୟଟ୍ ପ୍ରତ୍ୟୟଃ ଯଥା—ଅନ୍ନମୟୋ ଯଜ୍ଞଃ, ମୃଣ୍ମୟୋ ଘଟଃ, ସ୍ତ୍ରୀମୟୋ ଜାଲ୍ମଃ

ବିଶେଷ ଜ୍ୟା-ଘୋଷେ ଜ୍ୟାପୂର୍ତ୍ତି ସଙ୍କେତ ନିକେତନ କରି ରହି ।
ବିମାନତଳେ ବିଭୀଷଣ ଭୀଷଣ ଦସ୍ୟୁସ୍ୱଭାବକୁ ବହି । ୭୫ ।
ବିଚେତ ହେଲ ଲଙ୍କାରାଜେ ନାରାଜେ ବାହୁ ଛେଦିବାକୁ ତାର ।
ବାହୁଁ ବାହୁଡ଼ାଇ ବନ୍ଦନ ସ୍ୟନ୍ଦନ ଜୀରନାମା ମନ୍ତ୍ରିବର । ୭୬ ।

—ପ୍ରଚୁର ( ବାହୁଳ୍ୟରେ ) ମନ୍ମଥ ( ମନାସିଳ ) ତେଣୁ ରାମ ଲକ୍ଷ୍ମଣା-ଦିଙ୍କୁ" ବାର ହୋଇଲା "କପିମାନେ ରାବଣଙ୍କୁ ରାମ ଲକ୍ଷ୍ମଣ ମର୍ଦ୍ଦନ କଲେ ଏହିଭଳି" । ୩ଶରଧି ( ସମୁଦ୍ରରେ ) ଅତୁଟ ( ଅସରନ୍ତ ) କାଣ୍ଡ କାଣ୍ଡ ( ପ୍ରଚୁର ଜଳରେ ) ଉଲ୍ଲୋଳର ( ଲହଡ଼ି ଉଠିଲାପ୍ରାୟ ) "ରାବଣର" ଶରଧି ( ତୂଣୀଦ୍ୱୟରେ ) ଅତୁଟ ( ପୂର୍ଣ୍ଣିଭାବରେ ଥିବା ) ୪କାଣ୍ଡ କାଣ୍ଡ ( ବାଣ ସମୂହର ) ୫ଉଲ୍ଲୋଳ ( ଚଞ୍ଚଳ ପ୍ରହାରରେ ) ବିଶୀର୍ଣ୍ଣ ( ଶୂନ୍ୟ କରିଦେଲା ) "ରାବଣ ରାମ ଲକ୍ଷ୍ମଣାଦିଙ୍କି ଶର ମାରି ତୂଣୀର ଖାଲି କରିଦେଲା" । ୭୪ ।

୭୫ । ୭୬ । ୭୭ଶ ପଦ—"ଏଠାରେ ରହି ଯୁଦ୍ଧ କରିବ ଏମନ୍ତ" ସଙ୍କେତ ( ସଙ୍କେତସ୍ଥାନକୁ ) ନିକେତନ ( ଗୃହ ) କରି ରହି "ରାବଣ" ବିଶେଷ ( ବହୁତଥର ) ଜ୍ୟା ଘୋଷେ ( ଗୁଣଟଙ୍କାର ଶବ୍ଦରେ ) ଜ୍ୟା (ପୃଥ୍ୱୀ) ପୂର୍ତ୍ତି "କଲା" । "ସେକାଳେ ରାବଣଙ୍କୁ ରାଗି ସ୍ୱରୂପ ଦେଖି" ଭୀଷଣ (ଦାରୁଣ) ୧ଭୀଷଣ ବିମାନତଳେ (-ରାବଣର ରଥତଳେ ) ଦସ୍ୟୁ ସ୍ୱଭାବକୁ ବହି ( ଖସୁ ପ୍ରାୟ ଲୁଚି ରହି ) ନାରାଜେ ( ଗୋଟିଏ ଲୋହମୟ ଶରରେ ) ଲଙ୍କାରାଜେ

ଅମୃତମୟସ୍ୱଚ୍ଛନ୍ଦଃ । ସ୍ୱାର୍ଥରେ ମଧ୍ୟମୟଟ୍ ହୁଏ ଯଥା—ଜଗଦ୍ଜନମୟଂ ଲୁବ୍ଧାଃ କାମୁକାଃ କାମିନୀମୟଂ । ନାରାୟଣମୟଂ ଧୀରାଃ ପଶ୍ୟନ୍ତି ପରମାର୍ଥିନଃ । ଇତି ଗ୍ରନ୍ଥାନ୍ତରେ ।

୨—ବାହୁଳ୍ୟଂ ପ୍ରଚୁରଂ ପ୍ରାଜ୍ୟମଦଭ୍ରଂ ବହୁଳଂ ବହୁ ଇତ୍ୟମରଃ ।
୩—ତୂଣୋପାସଙ୍ଗତୂଣୀରନିଷଙ୍ଗାଇଷୁଧିର୍ଦ୍ୱୟୋଃ । ଇତ୍ୟମରଃ ।
ଶରସ୍ତେଜନକେ କାଣ୍ଡେ କ୍ଷରଂ ଚ ସଲିଳେ କ୍ୱଚିତ୍ ଇତି ଶବ୍ଦାର୍ଣ୍ଣବଃ ।
୪—କାଣ୍ଡୋଽସ୍ତ୍ରୀଦଣ୍ଡ ବାଣାର୍ବବର୍ଗାବସର ବାରିଷୁ ଇତ୍ୟମରଃ ।
୫—ମହତ୍ସୁ କ୍ଲେଲକଲ୍ଲୋଲୌ ଇତ୍ୟପି ଅମରେ ।

ବସେ କ୍ଷାନବଶେ ଭାଷେ ଶଚୀବରେ ଶଚୀବରେ ମୁଁ ଅଜେୟ ।
ବେଗେ ଦାଶରଥିସନ୍ନିଧିକ ନିଧିପତି-ବିମାନକୁ ନିଅ । ୭୭ ।
ବୋଲେ ମୂର୍ଚ୍ଛିତ କୁସ୍ତି ତଶରେ କ୍ଷିତିକ୍ଷିତ ହେ ବିଭୀଷଣର ।
ବଡ଼ତମମୟ ରାତି ଅରାତିରେ ଏ ଦର କରାଇ ଦୂର । ୭୮ ।
ବାଦ ଯୁଦ୍ଧ ଯେତେ ମନୋରଥ ରଥ ଚେକାଲ ଏମନ୍ତ କହିଁ ।
ବଚ୍ଛେ କୋଟି କୋଟି ସାଯୂକ ସାଯୂକ ମସ୍ତକପରେ ବୁଲାଇ । ୭୯ ।

( ରାବଣକୁ ) ବିଚେତ ( ନିଚେଷ୍ଟ ) କଲା । "ତା ଦେଖି ବିଭୀଷଣ ପୁଣି" ତାର ( ରାବଣର ) ବାହୁ ଛେଦିବାକୁ "ଯାନ୍ତେ" ଶ୍ରୀର ନାମା ମନ୍ତ୍ରିବର ( ଶୁକନାମା ମନ୍ତ୍ରିଶ୍ରେଷ୍ଠ ) ବନ୍ଦନ ସ୍ୟନ୍ଦନ ( ପୁଷ୍ପକ ଯାନକୁ ) ବାହୁଡ଼ାଇ ( ଫେରାଇ ) ତାହୁଁ ( ବାହୁ କ୍ଷ୍ୟନ୍ତେ ) "ଏ ସମସ୍ତେ ରାବଣ" କ୍ଷାନବଶେ ( ଚେତା ପାଇ ) ବସେ । ଶଚୀବରେ ( ମନ୍ତ୍ରିବରକୁ ) ଭାଷେ ( କହେ ) ଶଚୀବରେ ( ଇନ୍ଦ୍ର ଠାରେ ) ମୁଁ ଅଜେୟ "ଇନ୍ଦ୍ର ମୋତେ ଯୁଦ୍ଧରେ ପାରି ନାହିଁ ତୁ ଯୁଦ୍ଧରୁ ରଥ ଲେଉଟାଇ ପରାକ୍ରମ ମ୍ଳାନ କରାଇଲୁ ଏହିଭାବ" । "ଏବେ" ଦାଶରଥି ସନ୍ନିଧିକ ( ରାମ ନିକଟକୁ ) ବେଗେ ନିଧିପତି (କୁବେର) ବିମାନକୁ ନିଅ । ୭୫ । ୭୬ । ୭୭ ।

୭୮ଶ ପଦ—"ରାବଣ କୋଧରେ ଏମନ୍ତ କହିବାର ଶୁଣି, ମନ୍ତ୍ରୀ" ବୋଲେ ହେ କ୍ଷିତିକ୍ଷିତ ! ( ପ୍ରଭୋ ) ବିଭୀଷଣର କୁସ୍ତି ଶରେ "ତୁମ୍ଭେ" ମୂର୍ଚ୍ଛିତ "ହେଲ" । ରାତି ବଡ଼ ତମମୟ ( ଅନ୍ଧକାର ) "ହୋଇଥିବାରୁ" ଅରାତିରେ ( ଶତ୍ରୁପ୍ରତି ) ଏ ଦର ( ମୋହର ଭୟ ) "ଏରୂପ ଜନ୍ମିବାରୁ" ତୁମ୍ଭଙ୍କୁ ଦୂର କରାଇ ( ନେଇଗଲି ) । ୭୮

୭୯ଶ ପଦ—"ହେ ବିଭୋ ! ତୁମ୍ଭର" ଯେତେ ମନୋରଥ ( ଇଚ୍ଛା) ଅଛି "ତେତେ" ଯୁଦ୍ଧ ବାଦ ( କର ) ଏମନ୍ତ କହି ରଥ "ରାମ ନିକଟକୁ" ଚେକାଲା "ତା ଦେଖି ରାବଣ" ସାଯୂକ (ଖଡ୍ଗ) ମସ୍ତକପରେ (ଶିରଉପରେ) ବୁଲାଇ ୧ ସାଯୂକ ( ଶର ) କୋଟି କୋଟି ବର୍ଷେ । ୭୯ ।

୧—ଶରେ ଖଡ୍ଗେଚ ସାୟକଃ ।

ବଶିଷ୍ଟ ସୈନ୍ୟଗଣର ଗଣନା କି ଏକାମାର୍ଗଣରେ ଛେଦ ।
ବରବ ରବଣ କରଇ ଛିଷ୍ଟପି କରିବ ଆଜ ସପାଦ । ୮୦ ।
ବୋଇଲେ କୋଦଣ୍ଡଧର ଦଣ୍ଡଧରପୁରକୁ ଯିବା ନିକଟ ।
ବାନରେ ସାଦରେ ପାଦରେ ମର୍ଦ୍ଦିବେ ତୋଶିର ରତ୍ନମୁକୁଟ । ୮୧।
ବିଧୁ ବିବୁଧପତି ବୁଧ ବୁଦ୍ଧିରେ ବଧିରେ ବଧିରେ କଥା ;
ବନ୍ଧି ମତ୍ସ୍ୟ ଯଥା ଧୀବର ନାବରେ ରଥେ ଲଙ୍କପତି ତଥା । ୮୨ ।

---

୮୦ଶ ପଦ—ରାବଣ ଏକାମାର୍ଗଣରେ (ଏକା କାଣ୍ଡକରେ) ବଶିଷ୍ଟ (ପ୍ରଧାନ) ସୈନ୍ୟଗଣର ଗଣନା କି ? (ଗଣନା ନାହିଁ) ଛେଦ "ଅଗଣିତ ପ୍ରଧାନ ପ୍ରଧାନ କପି ସୈନ୍ୟ ଗୋଟିଏ ବାଣରେ ଛେଦ ପକାଇଲି ଏବେଭାବ" । ୧ରବଚ (ଭୟଙ୍କର ଧ୍ୱନି) କରଇ ଆଜ ସପାଦ (ଖୋଜ) ଛିଷ୍ଟପି କରିବ । "ରାବଣ ବଡ଼ପାଟିରେ କହିଲା ସବୁ କପି ଆଜି ଖୋଜି ମାରିବି ଗୋଟିଏ ନ ରଖିବ ଏହିଭାବ"। ୮୦ ।

୮୧ଶ ପଦ—"ରାବଣ ପ୍ରତିଜ୍ଞା ଶୁଣି" କୋଦଣ୍ଡଧର (ରାମ) ବୋଇଲେ "ରେ ଦୂଷଣ ଭ୍ରାତାର" ଦଣ୍ଡଧର (ଯମ) ପୁରକୁ ଯିବା ନିକଟ "ହେଲା" । ବାନରେ (କପିମାନେ) ସାଦରେ (ଆଦର ସହିତ) ତୋ ଶିର ରତ୍ନ ମୁକୁଟ (ତୋହର ଶିର ଓ ରତ୍ନମୁକୁଟକୁ) ପାଦରେ ମର୍ଦ୍ଦିବେ (ମଳିବେ)। ୮୧ ।

୮୨ଶ ପଦ—"ଏ ରାମ" ବିଧୁ (ବିଷ୍ଣୁ) "ଏମନ୍ତ ବିଗୁଣି" ବିବୁଧପତି (ଇନ୍ଦ୍ର) ବୁଧବୁଦ୍ଧିରେ (ପଣ୍ଡିତ ବୁଦ୍ଧିରେ) ବଧିରେ (ବଧବଶରୁ) ବଧିରେ (ସ୍ଥିର ହୋଇ) କଥା (ଦେବତା ମାନଙ୍କ ସହିତ ଏରୂପ କଥା-

---

-୧—ଆରବାରବ ସରବ ବରବା ଅଥ ମର୍ମରଃ । ଇତ୍ୟମରଃ ।

ବାତୂଳ ପ୍ରସୂର ବ୍ୟୋମଗୃହ ଖଗେ ପନି ଗତିକର ତଥା ।
ବହ୍ନରେ ମାରୀଚମାରୀ ଚରଣରେ ଆତ୍ମପାଇଁ ପାଇ ବ୍ୟଥା । ୮୩ ।
ବନସ୍ପେ ଅନାଇ ସେ ଲପ୍ସେ ଅଣାଇଁ କହ୍ନ ନନ୍ଦୀ ସନ୍ନିଧିକୁ ।
ବସାଇଁ ଚକ୍ରରେ ରସାଇ କହିଲେ ସେ ସର୍ଜନ ଗର୍ଜନକୁ । ୮୪ ।

---

ବାହ୍ନି ହେଲେ ) । ଧୀବର ( କୈବର୍ତ୍ତ ) ଜାଲରେ "ରନ୍ଧ୍ର" ମତ୍ସ୍ୟ ( ମୀନ-ମାନଙ୍କୁ ) ଯଥା ( ଯେରୂପେ ) ବାନ୍ଧି "ପକାଏ" ତଥା ( ସେରୂପେ ) ଲଙ୍କାପତି ( ରାବଣ ) ରଥେ ଥାଇଁ ଶର "ବାନ୍ଧଇ" । "ଏହା ଯୁକ୍ତିଯୁକ୍ତ ନୁହେଁ" କାରଣ ? । ୮୨ ।

୮୩ଶ ପଦ—ବ୍ୟୋମଗୃହ ( ଗଗନବିହାରୀ ) ଖଗେ ( ପକ୍ଷୀଙ୍କୁ ) ବାତୂଳ ପ୍ରସୂରି ( ମାଇଲେ ) "ଯଥା" ଗତି କର ( ଯାଇ ନ ପାରେ ) "ତଥା ରାମଙ୍କ" ପନି ( ଶରସବୁ ) ଗତି କର୍ନ୍ତି ( ରାବଣ ପାଖକୁ ଯାଇ ନ ପାରେ ) । ମାରୀଚ ମାରୀ ( ମାରୀଚ ହନ୍ତା ରାମ ) ଆତ୍ମ ପାଇଁ ( ଆତ୍ମ ସକାଶେ ) ବ୍ୟଥା ( ଦୁଃଖ ) ପାଇ ଚରଣରେ ବହ୍ନନ୍ତିର ( ପାଦଗାମୀ ହୋଇଛନ୍ତି ) । "ରାବଣ ରଥରେ ଅଛି, ରାମ ତଳେ ଅଛନ୍ତି ଏହାଭାବ" । ୮୩ ।

୮୪ଶ ପଦ—ଲପ୍ସେ ( ଇନ୍ଦ୍ର ) ଲପ୍ସେ ( ଏକମନା ହୋଇ ) ନନ୍ଦୀ ( ଶିବ ଦ୍ୱାରପାଳ ନନ୍ଦୀ ବୀରକୁ ) ସନ୍ନିଧିକୁ ( ପାଖକୁ ) ଅଣାଇ ଅନାଇ ବନସ୍ପେ କହ୍ନ ( ବିନୟ ଭାବରେ କହି ) ଚକ୍ରରେ ( ରଥଚକ୍ର ଉପରେ ) ବସାଇ ରସାଇ ( ତା' ମନ ରଞ୍ଜାଇ ) "କହିଲେ ତୁ" ଗର୍ଜନ ସର୍ଜନ ( କରବୁ ) "ତୋ ଗର୍ଜନ ଶୁଣି ରାବଣ ଭୟ କରିବ ଏହିଭାବ" । ସେ ( ନନ୍ଦୀ ) "ସେହିରୂପ କଲା" । ୮୪ ।

ବାହ-ତୂଣାଦ-ବାସ ଦେଇ ବାହବ ସ୍ୱସୂତେ କହେ, ଘରଣୀ ।
ବସି ବଶୀଭୂତ ଅମର୍ତ୍ତ୍ୟପାଶରୁ କରାଇଲା ମର୍ତ୍ତ୍ୟଗତି । ୮୫ ।
ଦ୍ୱଦୃଶ ପାଶଜନ ତମ ରଞ୍ଜନ ରଜମାର ଜାତ ଜ୍ୟୋତି ।
ବର୍ତ୍ତନ ପଞ୍ଚଭାଷାରେ ବୁଝି ଜନେ ଯୁକ୍ତ ରଥବନ୍ଧ ଗୀତ । ୮୬ ।

---

୮୫ଶ ପଦ—ବାହବ ( ଇନ୍ଦ୍ର ) ୧ବାହ ( ଶୈବ ସୁଗ୍ରୀବାଦ ଗ୍ରଭ-ଗୋଟି ଅଶ୍ୱ ) ୨ ତୂଣାଦ ( ଧନୁ ତୂଣୀର ) "ଯହାର" ବାସ ( ସ୍ଥାନ ) "ସେହି ନନ୍ଦୀଘୋଷ ରଥକୁ" ଦେଇ ୩ସ୍ୱସୂତେ ( ଆପଣାର ସାରଥି ମାତଳିଙ୍କୁ ) ଘରଣୀ କହେ ( କହିଲେ ) "ଏ ନନ୍ଦୀଘୋଷ ରଥକୁ ନେଇ ରାମଙ୍କୁ ଦିଅ ଏହି ଅଭିପ୍ରାୟ" । "ମାତଳି ଇନ୍ଦ୍ରଙ୍କ କଥାରେ" ବଶୀଭୂତ "ହୋଇ" "ରଥରେ" ବସି ୪ଅମର୍ତ୍ତ୍ୟ ପାଶରୁ ( ଦେବତାଙ୍କ ପାଖରୁ ) ମର୍ତ୍ତ୍ୟ ( ମର୍ତ୍ତ୍ୟ-ମଣ୍ଡଳକୁ ) ଗତି ( ରଥ ଗତିକି ) କିରାଇଲା । ୮୫ ।

୮୬ଶ ପଦ—"ମାତଳି ଯୁଦ୍ଧଭୂମିରେ ରଥ କଲାବେଳେ ରାମଙ୍କ ପାଖରେ ଥିବା ଲୋକଙ୍କୁ" ଦ୍ୱଦୃଶ ( ଅଦୃଶ୍ୟ ) "ହେଲା" "ଯେଣୁ" ତମ ( ଅନ୍ଧକାରରେ ) ରଞ୍ଜନ ( ଶୋଭମାନ ) ରଜମାର ( ରାବଣର ) ଜ୍ୟୋତି ଜାତ "ହୋଇଅଛି" । ଜନେ (ଜନମାନେ) ରଥବନ୍ଧ ଗୀତ ବୁଝି "ଏ ବନ୍ଧ" ପଞ୍ଚ ଭାଷାରେ ( ସଂସ୍କୃତ, ହିନ୍ଦୀ, ତେଲିଙ୍ଗ, ମୋରଠା, ବଙ୍ଗ, ଏହି ପାଞ୍ଚ-ଗୋଟି ଭାଷାରେ ) ଯୁକ୍ତ "ହୋଇ" ବର୍ତ୍ତନ "ହେବି" । ୮୬ ।

---

୧—ତୁରଗାଃ ଶୈବ ସୁଗ୍ରୀବି ମେଘପୁଷ୍ପ ବଳାହକାଃ ଇତି ହୈକାଣ୍ଡଶେଷଃ ।
୨—ତୂଣୋପାସଙ୍ଗ ତୂଣୀର୍ ନଷଙ୍ଗା ଇଷୁଧିର୍ଦ୍ୱୟୋଃ ଇତ୍ୟମରଃ ।
୩—ସୂତଃ କ୍ଷତ୍ତା ଚ ସାରଥି ଶତ୍ୟମରଃ ।
୪—ଅମର୍ତ୍ତ୍ୟା ଅମୃତାନ୍ଧସଃ ।

ଏଠାରୁ ଗୃତ୍ପଦ ରଥବନ୍ଧ

ବଦ୍ୟ ରମ୍ୟ ଓକ ଚିର ଚଳଇତ ରୂପାପବ୍ୱତ ଉନ୍ନତ ।
ବିଷ୍ଣୁ ଲଭ୍ୟ ଶୁଭ ଅନଘିତ ଶଶି ପ୍ରଭ ସାରସ୍ୱତ ନିତ୍ୟ । ୮୭ ।
ବଦୋଷକାଶ୍ରଯ୍ୟାପ୍ରଲଘୁ ତନିତ ହେବ ଖସି ପ୍ରଭା ନଭୁଁ ।
ବିନାୟକମାନ୍ୟ ତାପସଂହରକ ଉଦଯୁକ ସମରଭୂ । ୮୮ ।
ବ୍ୟାକୁଳୁଁ ରାବଣ ମନ ଛନ୍ନକାରୀ ପୁଷ୍ପକ ପୂରେ ବିଘସୁଁ ।
ବାମେ ଧୈବସୃତ ପ୍ରିୟବାହ ଗୃର ଗୃଳନ କିଳାରଭସୁଁ । ୮୯ ।

---

୮୭ଶ ପଦ—ଏଠାରୁ ଗୃଶପଦ ଅର୍ଥାତ୍ ୯୦ ପଦ ପର୍ଯ୍ୟନ୍ତ ରଥବନ୍ଧ । "ସେ ରଥ" ବଦ୍ୟ ( ବଦ୍ୟମାନ ) ରମ୍ୟ ( ମନୋରମର ) ଓକ ( ସ୍ଥାନ ) ଚିର ( ଚିହ୍ନରେ ପତାକା ) ଚଳଇତ ( ଉଡଇତ ) ରୂପାପବ୍ୱତ ( କୈଳାସ-ଗିରି ପ୍ରାୟ ) ଉନ୍ନତ ( ଉଚ୍ଚ ) ବିଷ୍ଣୁ ଲଭ୍ୟ ( ବିଷ୍ଣୁଙ୍କର ପ୍ରାପ୍ୟ ) ଶୁଭ ( ମଙ୍ଗଳମୟ ) ଅନଘିତ ( ପ୍ରଶଂସ୍ୟ ) ଶଶୀ ( ଚନ୍ଦ୍ରତୁଲ୍ୟ ) ପ୍ରଭ (ଦୀପ୍ତିମନ୍ତ) ସାର ( ଶ୍ରେଷ୍ଠ ) ସ୍ୱତ ( ସ୍ୱତଃସିଦ୍ଧ ) ନିତ୍ୟ ଅଟେ । ୮୭ ।

୮୮ଶ ପଦ—ତନିତ ( ମେଘଗର୍ଜନ ) ଅପ୍ରଲଘୁ ( ଅଳ୍ପ ଲଘୁ ) ହେବ "ସେ ରଥରଧ୍ୱନି ମେଘଧ୍ୱନିଠାରୁ କିଛି ନ୍ୟୂନ ହେବ" । "ଏମନ୍ତ" ୧ ବଦୋଷକ (ବିଶେଷ ଧ୍ୱନିର) ଆଶ୍ରୟ "ନେଇଛି" । ନଭୁଁ ( ଆକାଶରୁ ) ପ୍ରଭା "ଖସିଲା ପ୍ରାୟ" ଖସି "ଆସିଲା" । ୨ ବିନାୟକମାନ୍ୟ ( ଟଢର ଅଧିକତା ଥିବାରୁ ଗରୁଡ଼ର ମାନନୀୟ କମ୍ବା ଶ୍ରେଷ୍ଠ ଏବଂ ମାନନୀୟ ) । ତାପ ସଂହରକ (ସନ୍ତାପହରଣ କାରୀ) "ଏରୂପ ନିର୍ଦ୍ଦୋଷ ରଥ" ସମରଭୂ (ସମର ଭୂମିରେ) ଉଦୟୁକ ( ଉଦୟ ହେଲ ) । ୮୮ ।

୮୯ଶ ପଦ—ପୁଷ୍ପକ "ଯାନିରି" ପୁରେ ( ଅଗ୍ରତରେ ) ବିଘସୁଁ ( ବଳଯନ୍ତ୍ରେ ) ବାମେ ( ପ୍ରତିକୂଳ ହୋଇ ) ଧୈବସୃତ ( ମାତଳଦ୍ୱାରା ) ପ୍ରିୟବାହ ( ଭଲ ହୋଇଥିବା ଶୈବ୍ୟ ସୁଗ୍ରୀବାଦ ଅଶ୍ୱ ) ଗୃର ( ଗୃରଙ୍କ )

---

୧—ବଦୋଷକ, ଉଦୟୁକ, ସ୍ୱାର୍ଥେ କ ପ୍ରତ୍ୟୟ ।
୨—ବିନାୟକସ୍ତୁ ହେରମ୍ବେ ତାର୍କ୍ଷେ ବିଘ୍ନକେ ଗୁରୌ ।
ନାୟକୋ-ନେତରି ଶ୍ରେଷ୍ଠେ ହାରମଧ୍ୟ ମଣୌ ପ୍ରୀତ ବାଶୁ ।

ବିବରବରିଶୈକ ତୁଙ୍ଗାସାର ଧ୍ୱଜ ଭୁରିତାବହନ୍ନ ଛବି ।
ବିବିଧରେ ଭୂଲ ତରୁଖର ବ୍ୟୂହ ପ୍ରକାଶ ବରୁଚି ରବି । ୯୦ ।
ବିକମି ସାରଥିବାକ୍ୟେ ଦାଶରଥି ରଥାରୋହୁଁ ବିଭୀଷଣ ।
ବିଲୋକିଲା ନେନେ ନିର୍ବାଣେ ଜଡ଼ିଲା ଜୟ ଭଷିଲେ ଗୀର୍ବାଣ ।୯୧।
ବୁଝ ଚିତ୍ତ ଦେଇ ଉଚିତ ଏ ଗୀତ ରଚିତ ସର୍ବକୋବିଦେ ।
ବୋଲେ ଉପଇନ୍ଦ୍ର ଭଞ୍ଜ ଶେଷ ହେଲା ଛାନ୍ଦ ବସ୍ୱାଣୋଇପଦେ ।୯୨।

—୫✳୫—

ଗ୍ଳାନ ( ଚଳାଇବା ) ଳୀଳା ( ବିଳାସର ) ରଭସୁଁ ( ବେଗରୁ ) ଶ୍ରବଣ ବ୍ୟାକୁଳି ( ବ୍ୟାକୁଳ ହେବ ରେ ) ମନ ଛନ୍ନକାରୀ "ହେଲା" । "ଶ୍ରବଣର ମନରେ ଭୟ ବ୍ୟାକୁଳ ଜନ୍ମିଲା ଏହାଭାବ" । ୮୯ ।

୯୦ଶ ପଦ—ବିନର ବଶି ( ଗରୁଡ଼ ତାହାର ବଶୀଭୂତ ) ଏକ (ମୁଖ୍ୟ) ତୁଙ୍ଗ ( ଉଚ୍ଚ ) ଆସାର ( ସର୍ବତୋଭାବରେ ଶ୍ରେଷ୍ଠ ) ଧ୍ୱଜ ( ପତକା-ବିଶିଷ୍ଟ ) ଭୁରିତ ( ବେଗରେ ) ଆବହନ୍ନ ଛବି ( ଯେ ସ୍ନିଗ୍ଧ ଛବିକି ବହୁଛି ) [୧] ବରୁଚ ( ଅଖୁଜ୍ଜ୍ୱଳ ) ରବି ( ସୂର୍ଯ୍ୟତୁଲ୍ୟ ) ପ୍ରକାଶ "ଧାଉଥିବା ରଥକୁ ଘେନି" ତରୁଖର ବ୍ୟୂହ ( ମର୍କଟ ସମୂହ ) ବିବିଧରେ ( ନାନା ପ୍ରକାରେ ) ଭୂଲ ( ଭୂଲିଗଲେ ) । ୯୦ ।

୯୧ଶ ପଦ—ସାରଥି ( ମାତଳିର ) ବାକ୍ୟେ ( କଥାରେ ) ଦାଶରଥି ( ରାମ ) ବିକମି ( ଡେଇଁଯାଇଁ ) ରଥାରୋହୁଁ ( ରଥ ଚଢ଼ନ୍ତେ ) ବିଭୀଷଣ ନେନେ ବିଲୋକିଲା ( ଦେଖିଲା ) । ନିର୍ବାଣେ ( ମୁକ୍ତିରେ ) ଜଡ଼ିଲା । ଗୀର୍ବାଣ ( ଦେବତାମାନେ ) ଜୟ ଭଷିଲେ । "ରଥରେ ଶ୍ରୀରାମଙ୍କୁ ଦର୍ଶନକରି ଦେବତାଙ୍କ ଜୟଧ୍ୱନି ଶୁଣି ବିଭୀଷଣ ଜାଣିଲା ଶ୍ରୀବିଷ୍ଣୁ ଦର୍ଶନକଲି ନିଶ୍ଚୟ ମୋକ୍ଷହେବ ଏହାଭାବ" । ୯୧ ।

୯୨ଶ ପଦ—ସର୍ବ କୋବିଦେ ( ପଣ୍ଡିତମାନେ ) ଉଚିତ ରଚିତ ( ଅନୁଚିତ ରଚନା ନୋହେ ) ଏ ଗୀତ ଚିତ୍ତ ଦେଇ ବୁଝ । ବସ୍ୱାଣୋଇ ପଦେ ( ବସ୍ୱାନବେ ପଦରେ ) ଏ ଛାନ୍ଦ ଶେଷହେଲା ଉପେନ୍ଦ୍ର ଭଞ୍ଜ କବି ବୋଲେ ( ବୋଇଲେ ) । ୯୨ ।



[୧]—ସ୍ୱୀୟ ପ୍ରଭାରୁଚ୍ଚିତ୍ରିତ ଦିଗ୍ଭାଗ ଇତ୍ୟର୍ଥଃ ଇତ୍ୟନ୍ୟରଃ ।

# ପଞ୍ଚାଶୀତ୍ ଛାନ୍ଦ

## ରାଗ — ଭୈରବ

ବଂଶ୍ରବାନନ୍ଦନ ତପ ଉଦିତ ପର୍ବତରୂପ ପ୍ରତାପଦାବାଗ୍ନି ଲୋପ ସ୍ୟନ୍ଦନ ଦୃଶେ ବରଷାକାଳ ତା କଲ୍ପେ ବଳାହକ ମେଘପୃଷ୍ଠେ ଶୋଭା ଘୋଷଚଟକ ବ୍ୟାପେ ପ୍ଲବଗ ତୋଷେ । ବନ୍ଦ୍ୟଘନେ । ବିରାଜ ରାମ

---

## ପଞ୍ଚାଶତ୍ ଗୁନ୍ଦ

୧ମ ପଦ—"ଯୁଦ୍ଧଭୂମିରେ" ସ୍ୟନ୍ଦନ ( ନନ୍ଦଘୋଷରଥ ) ଦୃଶେ ( ଦୃଶ୍ୟ ହୁଅନ୍ତେ ) ବରଷାକାଳ ତା କଳ୍ପେ ( କବି ତାକୁ ବର୍ଷାକାଳ କଳ୍ପନା କଲା ) । "ସେହିରଥରୂପ ବୃଷ୍ଟିରେ' ୧ ପର୍ବତରୂପ (ଦଶସ୍ଥ ପର୍ବତ) ବଂଶ୍ରବା-ନନ୍ଦନ ( ରାବଣର ) ତପ ( ତପସ୍ୟାରୂପ ନିଦାଘକାଳରୁ ) ଉଦିତ ( ଜାତ-ହେବା ) ପ୍ରତାପ ଦାବାଗ୍ନି ( ତେଜରୂପ ବନାଗ୍ନି ) ଲୋପ "ହେଲ" । "ରଥ ଦେଖି ଗ୍ରୀଷ୍ମ ନଷ୍ଟ ହେଲା ଏହି ଭାବ" । "ବର୍ଷାକାଳ" ବଳାହକ ୨ ମେଘପୃଷ୍ଠେ ( ମେଘ ଆଉ ଜଳରେ ) ଶୋଭା "ପାଉଥାଏ" । ଘୋଷଚଟକ ( ଘନଗର୍ଜନ ଶବ୍ଦରେ ) ବ୍ୟାପେ ( ବ୍ୟାପିଥାଏ ) । ୩ ପ୍ଲବଗ ( ବେଙ୍ଗ-ମାନଙ୍କୁ ) ତୋଷେ । ଘନେ ( କବିତ୍ୱରେ ) ବନ୍ଦ୍ୟ ( ବନ୍ଦ୍ୟମାନ ହୋଇ-ଥାଏ ) ରାମ ୪ ଲକ୍ଷ୍ମଣ ( ଚନ୍ଦ୍ରମା ) ଗର୍ଭେ ( ମେଘ ଗର୍ଭରେ ) ବିରାଜ ( ବିରାଜୁଥାଏ ) । ଇନ୍ଦ୍ରଚାପ ( ଇନ୍ଦ୍ର ଧନୁରେ ) ବିଭ୍ରାଜଇ ( ଶୋଭାପାଉ-ଥାଏ ) । ଶର ପୂର୍ତ୍ତିରେ ( ଜଳ ପୂର୍ତ୍ତି କରିବାରେ ) ୫ ଲେଲୁପ ( ଲୋଭୀ-

---

୧—ପ୍ରଶସ୍ତଃ ପର୍ବତଃ ପର୍ବତରୂପଃ—ଯଥା—ଦୁର୍ଗସ୍ତୋ ବସ୍ତ୍ରାକରଶ୍ଚ ସ୍ତ୍ରେ କଚ୍ଛରୂପଃ ।

୨—ମେଘପୃଷ୍ଠ ଘନରଙ୍ଗ ମିତ୍ୟମରଃ । ଭୁଜଗାଃ ଶୈବ ସୁଗ୍ରୀବ ମେଘପୃଷ୍ଠ ବଳାହକା ଇତି ହୈକାଣ୍ଡଶେଷଃ ।

୩—ପ୍ଲବଗୋ ବାନରେ ଭେକେ ସାରଥୌ ଶ୍ଲେଷ୍ମ ଘାଖ୍ୟତେ ଇତିମେଦିନୀ ।

୪—ସ୍ୟାଲ୍ଲକ୍ଷ ଲକ୍ଷ୍ମଣଂ ପୁଂସି ସୌମିତ୍ରୌ ଶ୍ରୀମତି ହିସ୍ରୂ ଇତି ଶାଶ୍ୱତଃ ।

୫—ଲେଲୁପଂ ଲୋଲୁଭଂ ଲୋଲଂ ଲମ୍ପଟଂ ଚଞ୍ଚଳାଚଳ ମିତି ଚଭସଃ ।

ଲକ୍ଷ୍ମଣ ଗର୍ବେ । ବିଭ୍ରାଜଇ ବୃଷାଗ୍ରୁପ ଶରପୂର୍ତ୍ତିରେ ଲୋଲୁପ ଚପଳା ଗତି ସଂକ୍ଷେପ ନଭେ କି ଶୋଭେ । ୧ ।

ବହ୍ନି ଶରଦଲକ୍ଷଣ ବିଦିତ ରାମ ଲକ୍ଷ୍ମଣ ବିରାଜିତ ଋକ୍ଷଗଣ କୁମୁଦ ତୋଷେ । ବଳ ହିମନ୍ତ ପର୍ବତ ପ୍ରବଳ ବାତଜନିତ ହେବାରୁ

ହୋଇଥାଏ ) ନଭେ ( ଆକାଶରେ ) ଚପଳା ( ବିଜୁଳିମାନଙ୍କ ) ଗତି ( ସଂଗ୍ରତି ) ସଂକ୍ଷେପ ( ସଂକ୍ଷେପରେ ) କି ( କିରୂପେ ) ଶୋଭେ ( ଶୋଭି-ପାଉଥାଏ ) ? "ଅନଙ୍ଗଚମ୍ପୂ ଶୋଭାଧରେ ଏହିଭାବ" । "ଏ ରଥରେ" ବଳାହକ "ଅଶ୍ୱ" ମେଘପୁଷ୍ପ "ନାମା ଅଶ୍ୱଥିବାରୁ" ଶୋଭା "ପାଏ" । ଘୋଷଚକେ ( ନଦୀର ଗର୍ଜନ ସମୂହରେ ) ବ୍ୟାପେ । ପ୍ଲବଗ ( ମର୍କଟ-ମାନଙ୍କୁ ) ତୋଷେ ( ସନ୍ତୋଷ କରେ ) । ବିଦ୍ୟ ( ବିଦ୍ୟାମାନେ ) ଘନ ( ସାନ୍ଦ୍ର ) ଲକ୍ଷଣ ( ସୁଲକ୍ଷଣ ଯୁକ୍ତ ) ରାମ ( ରାମଚନ୍ଦ୍ର ) ଗର୍ବେ ( ଯାହାର-ଗର୍ବରେ ) ବିରାଜ ( ବିରାଜୁଛନ୍ତି ) । ବୃଷ ରୂପ ( ଇନ୍ଦ୍ରଦତ୍ତ ଧନୁରେ ) ବିଭ୍ରାଜଇ ( ଶୋଭାପାଉଛି ) । ଶରପୂର୍ତ୍ତିରେ ( କାଣ୍ଡ ପୂର୍ତ୍ତି କରିବାରେ ) ଲୋଲୁପ ( ଲୋଭୀ ହୋଇଅଛି ) । ନଭେ ( ଆକାଶରେ ) ଚପଳା ( ଚଞ୍ଚଳ ) ଗତି ( ଗମନର ) ସଂକ୍ଷେପ ( ସଂକ୍ଷେପରେ ) କି ଶୋଭେ ( କି ସୁନ୍ଦର ଶୋଭାପାଉଛି ) ✻ । ୧ ।

୨ୟ ପଦ—"ପୂର୍ଣ୍ଣି ଚୈତ୍ରରଥ" ଛାଡ଼ନ୍ଦ ( ଶରତ୍କାଳ ) ଲକ୍ଷଣ ବହ୍ନି ବିଦିତ "ହେଲ" । "ଶରଦୃତୁ" ରାମଲକ୍ଷ୍ମଣରେ ( ଚନ୍ଦ୍ରମାରେ ) ବିରାଜିତ ( ନିର୍ମଳ ଚନ୍ଦ୍ରରେ ଶୋଭିତ ) । ଋକ୍ଷଗଣ ( ନକ୍ଷତ୍ରଗଣଙ୍କୁ ) କୁମୁଦ ( ଏବଂ କଇଁଫୁଲକୁ ) ତୋଷେ ( ସନ୍ତୋଷ କରାଏ ) । ବଳ ( ବଳବାନ୍ ) ହିମନ୍ତ ପର୍ବତ ( ହିମାଳୟରୁ ) ପ୍ରବଳରେ ( ପ୍ରବଳରୂପେ ) ବାତ ( ପବନ ) ଜନିତ ( ଜାତହେବାରୁ ) ଋକ୍ଷସଙ୍ଘଶେ ( ପକ୍ଷିସମୂହ ) ସାଞ୍ଜୁ ( ପକ୍ଷ ) ଓଡ଼ି ( ଉହାଡ଼ି ) "ହୁଅନ୍ତି" ତ "ଶୀତଭୟରେ ପକ୍ଷଉହାଡି ବସନ୍ତି ଏହିଭାବ" ।

✻—ଏପଦ ଶ୍ଳେଷୋପମାହେଲ—ଯତ୍ର ଶ୍ଳେଷନବନ୍ଧନଂ ସାମ୍ୟଂ ସା ଶ୍ଳେଷୋପମା । ଯଥା—ତମାଳପତ୍ରାଭରଣା ରାଜନ୍ତେ ବାଲସନ୍ଧ୍ୟୟଃ । ବାଲେଦ୍ବୋଦ୍ୟାନମାଲେୟଂ ସାଲକାନନ ଶୋଭିନ ଇତ୍ୟଳଂକାରେ ।

ସାଞ୍ଜ ଓଡ଼ିତ ରାକ୍ଷସବଂଶେ । ବିଶେଷରେ । ବଶିଷ୍ଟରେ ଇଷି ଇଷି ଭଷି । ବିଗ୍ରହରେ ଏହି ସୁରଠାରୁ ତ ଅସୁରପର ନୋହିଲେ କି ରଥବର ମିଳନ୍ତା ଆସି । ୨ ।

ବଚ୍ଛ ହୃଚ୍ଛମଣି ମଣି ବଶୁଁ ପୁଣି ଆଣି ଆଣି ଶଙ୍କା ଦୂର ସେହିକ୍ଷଣି ଲଙ୍କାରାଜନ । ବିପୁଳେ କରି ଗର୍ଜନ ସେ ଧନୁର୍ଗୁଣ ମାର୍ଜନ ରହ ରେ

"ପୁଣି" ବିଶେଷରେ ବଶିଷ୍ଟରେ (ବଶିଷ୍ଟଭାବରେ) ଇଷି ଇଷି "ଏହିଶବ୍ଦ ଶୀତଡ଼ରେ" ଭଷି (ଭଷନ୍ତି) "ରଥ" ଲକ୍ଷଣ (ଲକ୍ଷଣବନ୍ତ) ରାମ (ରାମ-ଚନ୍ଦ୍ରରେ) ବିରାଜିତ "ହୋଇ" ଋକ୍ଷଗଣ (ଭାଲୁମାନଙ୍କ) କୁମୁଦ 'ବାନ-ରକୁ" ଚୋଷେ (ବ୍ରୋଧ କରାଏ) । ବଳ (ପରାକ୍ରମରେ) ହିମନ୍ତ ହିମାଳୟ ପର୍ବତ 'ତୁଲ୍ୟ" ପ୍ରବଳ (ମହାବଳ) ବାତଜନିତ (ହନୁମାନ୍) "ଉପଗତ" ହେବାରୁ ରାକ୍ଷସବଂଶେ (ରାକ୍ଷସସମୂହ) ସାଞ୍ଜ (କବଚ) ଓଡ଼ି ତ "ଭୟରେ ଦେହରେ ଲୁହାର ସାଞ୍ଜୁ ପିନ୍ଧି ହୁଅନ୍ତୁ ନବର୍ତ୍ତିଲେ ଏହି-ଭାବ" । ବିଶେଷରେ ବଶିଷ୍ଟରେ (ପ୍ରଧାନ ଅସୁରମାନେ) ଇଷି ଇଷି "ଶବ୍ଦ-କଷ୍ଟପାଇ" ଭଷି (ଭଷିଲେ) । 'ରାମଙ୍କ ରଥରେ ଦେଖି ରାବଣ" ବିଗ୍ର-ହେଲ ଏହି (ପୁରୁଷ) ସୁର (ଦେବତାଙ୍କଠାରୁ) ଅସୁର (ଅସୁରଙ୍କଠାରୁ) ତ ପର (ପ୍ରଧାନ) ନୋହିଲେ କି ଏ ରଥ ଆସି ମିଳନ୍ତା ? ।୨ ।

ତାପ୍ତ ପଦ—'ରାବଣ ଗର୍ବଶୂନ୍ୟ ହୋଇ" ବଚ୍ଛ (ବକ୍ଷସ୍ଥଳରେ) ସ୍ୱଚ୍ଛ (ନିର୍ମଳ) ମଣି (ମଣିଶ୍ରେଷ୍ଠ-ମୋଳ୍ପ ମଣି) ବଶୁଁ (ବଶରୁ) ସେହିକ୍ଷଣି ପୁଣି ଆଣି (ଗର୍ବକୁ) ଆଣି ଶଙ୍କା (ଭୟ) ଦୂର "କଲ" । ତା ହୃଦ-ୟରେ ମୁଁ ରାମଙ୍କ ମାରିବି ଏମନ୍ତ ଦମ୍ଭ ଉଦୟ ହେଲା । ବିପୁଳେ (ବିଶେ-ଷରେ) ଗର୍ଜନ କରି ସେ (ରାବଣ) ଧନୁର୍ଗୁଣ "ଯୁଦ୍ଧାର୍ଥେ" ମାର୍ଜନ କରି (ଟଙ୍କାର) ରେ ଦେବେ (ଆରେ ଦେବଗଣ) ରହ "ତୁମ୍ଭର ଏ ପ୍ରବୃତ୍ତି ପଛେ ବୁଝିବି ଆଗ ରାମକୁ ମାରେ ଏମନ୍ତ ବୋଲି" ତର୍ଜନ ଗର୍ଜନ କରି ବହୁବାହୁ (ବିଂଶବାହୁରେ) ଶର ଶରାସନ (ଧନ) ଧରି (ଧରି) ତହିଁ (ସେହି ଯୁଦ୍ଧଭୂମିରେ) ୧କୋଟି ଷଣ୍ଡ (ମର୍କଟରୂପ ଗ୍ରୁରଙ୍କୁ)

୧—ମର୍କଟା ବାନରଃ କୀଶୋ ବନୌକା ଇତ୍ୟମରଃ ।

ଦେବେ ସର୍ଜନ କରି ତର୍ଜନ । ବହୁବାହୁ । ବହ୍ନି ତହିଁ ଶରେ ଶରାସନ । ବଢ଼ାଇଲା ବେଗେ ଚଣ୍ଡୀପତି ଖଣ୍ଡି ଖଣ୍ଡି ରକ୍ତପାନ ପାନବୋଳେ ଓଷ୍ଠ ରଞ୍ଜନ । ୩ ।

ବିଜୟି ନନ୍ଦିଘୋଷରେ ବିଜୟୀ ଧନୁଘୋଷରେ କଇଳାସ ବିଳାସ ଛୁଡ଼ାଇ ଅଣାଇଁ । ବାଛି ସାର ଯୋଦ୍ଧାବ୍ରାତ ମୂର୍ଦ୍ଧାଫାଳ

ଖଣ୍ଡି ( ଛେଦ୍ଦ ) ବେଗେ ଚଣ୍ଡୀପତି ( ଦୁର୍ଗେଶ୍ୱରଙ୍କୁ ) ବଢାଇଲା । ରକ୍ତ ପାନ "ରୂପକ" ପାନ ବୋଳେ ( ପାନର ଢ଼ୋବାଳରେ ) ଓଷ୍ଠ ( ଅଧରଦ୍ୱୟ ) ରଞ୍ଜନ ହେଲା । "ଦୁର୍ଗେଶ୍ୱରକୁ ଲୋକେ ବେଶି ପାନଖାଇ ଓଷ୍ଠକୁ ରଙ୍ଗ କରନ୍ତି ବହୁତ ଛାଗବଳି ଦିଅନ୍ତି ଏଠାରେ ତଦ୍ରୂପ ଅନେକ ମାନଙ୍କୁ ମଲେ ରୁଧିରୋପମାନେ ରକ୍ତପାନ କରି ଓଷ୍ଠକୁ ରଙ୍ଗବର୍ଣ୍ଣ କଲେ ହେଉଛି"।

୪ର୍ଥ ପଦ—"ରାବଣ ଚଣ୍ଡୀପତି ବଢ଼ାଇବା ଦେଖି" ବିଜୟୀ ( ରାମ ) ନନ୍ଦୀଘୋଷରେ ( ନନ୍ଦିଘୋଷ ରଥରେ ) ବିଜୟି ( ବିଜେକରି ) ଧନୁ-ଘୋଷରେ ( ଧନୁ ଟଙ୍କାର ଶର ମାରୁନ୍ତେ ) "ଚଣ୍ଡୀଗଣ ଶୁଣି ବିଚାରିଲେ ରାମ ରାକ୍ଷସଙ୍କୁ ମାଇଲେ ଆମ୍ଭେ ରୁଧିର ପିଇବା ଏମନ୍ତ ଭାଳି" କୈଳାସ ବିଳାସ (କୈଳାସପୁରର କ୍ରୀଡ଼ାକୁ) "ଛାଡ଼ିଅଇଲେ" ରାମ "ତାଙ୍କୁ" ଛାଡ଼ାଇ "ଦେଲେ" । ସାର ( ଶ୍ରେଷ୍ଠ ) ଯୋଦ୍ଧାବ୍ରାତ (ଯୋଦ୍ଧାସମୂହର ) ମୂର୍ଦ୍ଧା ( ମସ୍ତକ ) ବାଛି "କରି" ଫାଳଫାଳ କରି ( ଫାଳ ଫାଳ କରେ ) । "ତାଙ୍କ" ବକ୍ଷ (ଛାତି) ଚିରି ବପା ( ମାଂସ ) "ସେହି ଯୋଦ୍ଧାଙ୍କ ମୁଣ୍ଡରୁ" ପିତ୍ତ ମାଜ୍ଜ ଭକ୍ଷାଇ ( ଖୁଆଇ ଦେଲେ ) "ଚଣ୍ଡୀଗଣ ଯୋଦ୍ଧାଙ୍କର ଛାତିମାଂସ ଓ ମୁଣ୍ଡରୁ ପିତ୍ତ ଖାଇଲେ" । ବାଜିକାମ୍ଭ ( ପକ୍ଷିର ବାଜନାମ ଶରର ବାଜ ନାମ ଥିବାରୁ ) ବିଷ୍କିରେ (ଗୃଧ୍ରପକ୍ଷୀ) "ଜାଣିପାରି" ମୈତ୍ରତା କରି ( ଶରଙ୍କ ସଙ୍ଗେ ମୈତ୍ର ହେବାରୁ ) "ଶରମାନଙ୍କ" ଶବ ( ମଡ଼ାକୁ ) ଯେଜ ବିଯୁତେ ( ଆକାଶରେ )

୧—ମେଦସ୍ତୁ ବପା ବସା ଇତ୍ୟମରଃ ।

୨—ମାଂସ କାଁସ୍ତେ ଘଣ୍ଟ ଧାରୁଣେ । ଇତ୍ୟପି

୩—ବାଜିନୋଃଶ୍ଚେଷୁ ପକ୍ଷିଣ ଇତ୍ୟମରଃ ।

୪—ବିବିଷ୍କିର ପତତ୍ରୟଷ୍ଟି ଇତ୍ୟପି ।

ଫାଳକୃତ ବକ୍ଷ ଶର ବପାପିତ୍ତ ମାତ୍ର ଭକ୍ଷାଇଁ । ବାଜିନାମ୍ନୁଁ । ବିଷ୍ଟିରେ ଜାଣି ମିତ୍ରତା କରି । ବିହଙ୍ଗି ଶବ ବପୁଟେ ଯେମନ୍ତ ସେ ତୋଷେ ଭକ୍ଷନ୍ତେ ଭ୍ରମୁଥିଲେ ରକ୍ତେ ପଶି ନ ପାରି । ୪ ।

ବାଣେ ବାଣ ପରିତାଳ ଜ୍ୟୋତି ଜାତ କି ଅନଳ ଭାନୁ ଚିତ୍ର-ଭାନୁ ମିତ୍ରଭାବେ ସେ ମେଳ । ବିଘାତ ହେବା ସମୟେ କି ଉତ୍ପାତ ଉଲ୍‌କାମୟେ ଜଗତଯାକରେ ହୋଏ ସେହି ମଞ୍ଜୁଳ । ବିନାଶନ । ବଶିଷ୍ଟଜ୍ୟୋତି ଲବକୁ ଲବ । ବର୍ଷା ନିଶାରେ ଖଦ୍ୟୋତ ଦିଶି ନ ଦିଶିଲାବତ ମନକୁ ଆସେ ତେମନ୍ତ ମ୍ଳାନ ଉଦ୍ଭବ । ୫ ।

---

ବିହଙ୍ଗ ( ବିହଙ୍ଗମନ୍ତେ ) ସେ ( ଗୃଧ୍ରପକ୍ଷୀଏ ) ରକ୍ତେ ( ରୁଧିରମଧ୍ୟରେ ) ପଶି ନ ପାରି ଭ୍ରମୁଥିଲେ ( ଶୂନ୍ୟରେ ଉଡ଼ୁଥିଲେ ) ମଡ଼ା ଧରି ଭକ୍ଷନ୍ତେ ( ଖାଇ ) ତୋଷେ ( ସନ୍ତୋଷ ହେଲେ ) । ୪ ।

୫ମ ପଦ—କି ( ଏମନ୍ତ ତର୍କୁଥାଇ ) ବାଣେ ( ରାମଙ୍କ ବାଣରେ ) ବାଣ ( ରାବଣର ବାଣ ) "ବାଜି" ପରିତାଳ ( ସଙ୍ଘର୍ଷ ଭାବରେ ଧକ୍କା କରନ୍ତେ ) "ତହିଁରୁ" ଜ୍ୟୋତି ( ସୂର୍ଯ୍ୟ ) ଅନଳ ( ଅଗ୍ନି ) ଜାତ "ହୋଇ" ମିତ୍ରଭାବେ ( ସଖାଭାବରେ ) ଭାନୁ ( ସୂର୍ଯ୍ୟ ) ଚିତ୍ରଭାନୁ ( ଅଗ୍ନି ) ସେ ଦୁହେଁ ମେଳ ( ସଙ୍ଗ ) "ହେଲ ପ୍ରାୟ ଦିଶିଲେ" । "ରାମଙ୍କ ବାଣରୁ ଭାନୁ ରାବଣ ବାଣରୁ ଅଗ୍ନି ଜାତ ହେଲ ଏହି ଭାବ" । "ତାହା ନ ହେଲେ ଏହା ଅବା ହୋଇପାରେ" ବିଘାତ ହେବା ସମୟେ ( ରାବଣ ନାଶହିବାକାଳରେ ) ଉଲ୍‌କାମୟେ (ଉଲ୍‌କାମୟ) ଉତ୍ପାତ ହୋଇଥି କି ? ସେହି ( ଉତ୍ପାତ ) ଜଗତଯାକରେ ମଞ୍ଜୁଳ ( ସୁନ୍ଦର ) ହୋଏ । ବିଶିଷ୍ଟ ( ବିଶେଷଭାବରେ ) ଜ୍ୟୋତି ( ବହ୍ନିକଣା ) ଲବକୁ ଲବ ବିନାଶନ ( ନାଶ ) ହୁଏ । ବର୍ଷା ନିଶାରେ ( ବର୍ଷାକାଳ ରାତିରେ ) ଖଦ୍ୟୋତ ( ଜୁଳୁଜୁଳିଆ ପୋକ ଜ୍ୟୋତି ) ଦିଶି ନ ଦିଶିଲାବତ ( ସମାନ ) ମ୍ଳାନ ଉଦ୍ଭବ ତେମନ୍ତ ମନକୁ ଆସେ । "ଜୁଳୁ-ଜୁଳିଆ ପୋକର ଜ୍ୟୋତି କ୍ଷଣ କ୍ଷଣ ଜାତ ହୋଇ ମ୍ଳାନ ହେଲ ପ୍ରାୟ ବାଣରୁ ଅଗ୍ନିକଣା ଜାତ ଓ ମ୍ଳାନ ହୁଏ ଏହି ଭାବ" । ୫ ।

ଧାକାରେ ହୁଁ କାରେ କରି ରାବଣ ଭଲ୍ଲୀକ ମାରି ଭଲେ ରାମ
ବେନିଜଙ୍ଘ ଫୁଟାଇ ଦେଲା । ବିଭେଦନ ରମ୍ଭା ପୂର୍ବେ ଭେଦ ନ
ରମ୍ଭାକୁ ଏବେ ଅର୍ଗଳୀ ଉପମା ଥିଲା ସୁସମା ହେଲା । ବର୍ଦ୍ଧମାନ ।
ବିବେକ ବିଗ୍ରହି ବିଷ୍ଣୁ ମୁହିଁ । ବିରାଟମୁକୁଟ ସେହି ବିରାଟ-
ଧ୍ୱଜରେ ରହି ବିରାଟମୂର୍ତ୍ତିରେ ସ୍ପଷ୍ଟ ହୋଇଲେ ତହିଁ । ୬ ।

ବ୍ୟୋମ କୁନ୍ତଳ କରାଇ ଶୀରଷ ସେକାଳେ ଯାଇଁ ରସାତଳ-
ତଳସ୍ଥାୟୀ ଚରଣ ଦୁଇ । ବକ୍ଷସ୍ଥମଣିକ ମଣିପଦକ ଦ୍ୟୁମଣି ମଣି

---

୬ଷ୍ଠ ପଦ—"ଧ୍ୱଣି" ରାବଣ ଧାକାରେ (ବିକୃତ ମୁଖରେ) ହୁଂକାରେ କରି (ହୁଙ୍କାରକରି) ଭଲ୍ଲୀକ (ଏକ ଭଲ୍ଲଅସ୍ତ୍ର) ମାରି ଭଲେ (ଉତ୍ତମ କରି) ରାମ (ରାମଙ୍କର) ବେନିଜଙ୍ଘ ଫୁଟାଇଦେଲା । ପୂର୍ବେ (ପୂର୍ବକାଳରେ) ରମ୍ଭାକୁ (ରମ୍ଭା ଅପ୍ସରାକୁ) ବିଭେଦନ "କରି ଥିଲ" ଏବେ (ବର୍ତ୍ତମାନ) "ରାମଙ୍କଉରୁ ରମ୍ଭାକୁ" ଭେଦନ କଲା । ଅର୍ଗଳୀ ଉପମାଥିଲା "କାନ୍ଥ ସେ ଉପମା ହୋଇ ନ ଥିଲା କାନ୍ଥରେ ଭଲ୍ଲଫୁଟି ଲାଗିରହିବାରୁ" ସୁସମା (ରାମଙ୍କ ଉରୁରେ ସେ ଉପମା ଉତ୍ତମରୂପେ ସମାନ) ହେଲା । "ରାବଣ ଭଲ୍ଲମାରି ଜଙ୍ଘ ଫୁଟାଇ ଦେବାରୁ ରାମଙ୍କର" ବିବେକ (ସଦ୍‌ଜ୍ଞାନ) ବର୍ଦ୍ଧମାନ (ବଢ଼ିଲା) ବିଗ୍ରହି (ମନେ କଲେ) ମୁହିଁ ବିଷ୍ଣୁ ।[1] ବିରାଟମୁକୁଟ (ସର୍ବସ୍ୱମୁକୁଟ) ସେହି (ରାମ) ବିରାଟଧ୍ୱଜରେ (ଗରୁଡ଼ଧ୍ୱଜ ରଥରେ) ରହି ତହିଁ (ସେ ସ୍ଥାନରେ) ବିରାଟ ମୂର୍ତ୍ତିରେ ସ୍ପଷ୍ଟ ହୋଇଲେ (ବିରାଟମୂର୍ତ୍ତି ଧଇଲେ) ।୬।

୭ମ ପଦ—ସେକାଳେ (ବିରାଟମୂର୍ତ୍ତି ହେବା କାଳରେ) ଶୀରଷ (ମସ୍ତକ) ଯାଇ ବ୍ୟୋମ (ଆକାଶକୁ) କୁନ୍ତଳ (କେଶ) କରାଇ (କରାଇଲା) । "ରାମଙ୍କ ବିରାଟମୂର୍ତ୍ତିର କେଶ ଆକାଶ ସ୍ପର୍ଶକଲା ଏହିଭାବ" । ଚରଣଦୁଇ ରସାତଳ (ପାତାଳ) ସ୍ଥାୟୀ ହେଲା । "ପାଦଦୁଇ ଯାଇ ପାତାଳରେ ଲାଗିଲା ଏହିଭାବ" । ବକ୍ଷସ୍ଥ ମଣି (ବକ୍ଷସ୍ଥଳରେ ଥିବା ସୀତାଙ୍କମଥାମଣି) ମଣିପଦକ (ରତ୍ନପଦକ ପ୍ରାପ୍ତ) ଦ୍ୟୁମଣି (ସୂର୍ଯ୍ୟ) ମଣି (ମନେକରି) ରାକ୍ଷସମଣି (ରାବଣ) ବିଲୋକି (ବିରାଟ ମୂର୍ତ୍ତି ଦେଖି) ବେଢ଼ି (ଆସେ)-

---

୧—ବାହୁଜଃ କ୍ଷତ୍ରିୟୋ ବିରାଟ୍ ଇତ୍ୟମରଃ ।

ଖର୍ବେକ ଗ୍ରାଷ୍ଟପମଣି ସେହ୍ନି ବଢ଼ଇ । ବାଞ୍ଛେ ଯଥା । ବାମନ ମନ ଲାଙ୍ଗଳୀଭୁଙ୍ଗେ । ଦ୍ୱିବୁଧାଳୟର ପରା ହେବା ଇଚ୍ଛା କଲେ ଖରା ହୋଏ କି ଏ ପରଂପରା ହୋଇ ତା ସଙ୍ଗେ । ୭ ।

ବିଶାରଦ ମହାଦ୍ରୁମ ଅଗ୍ରତେ ଯେମନ୍ତ ଦ୍ରୁମ ତଥା ଅପୂର୍ବ ସଂଗ୍ରାମ ଶ୍ରୀରାମ ରଚେ । ବାଜି ନିଯୁତେ ଅୟୁତେ ଗଜ ରଥ ଲକ୍ଷଶତେ ଦଶକୋଟି ପତ୍ତି ହତେ କବନ୍ଧେ ନାଚେ । ବିଳସିଲେ । ବ୍ୟବସ୍ଥିତରେ କବନ୍ଧ କୋଟି । ବହରେ ରେକାର ଗିରେ ଖେଚର କୋଟି ସଂଖ୍ୟାରେ ଏକଘଣ୍ଟି କୋଦଣ୍ଡରେ ତଥାପି ରହି । ୮ ।

---

ବଢ଼ଇ ( ବଢ଼ିଲା ) । "ଏ ଯେରୂପ ବଢ଼ୁଛି ମୁଁ ବଢ଼ିବି ଏମନ୍ତ ଖଳ ବଢ଼ନ୍ତେ" ବାମନ ( ଖର୍ବଲୋକ ) ଲାଙ୍ଗଳୀ ( ନାରିକେଳ ବୃକ୍ଷଅଗ୍ର ) ଭୁଙ୍ଗେ ( ଡ଼ିଇଁ ହେବାକୁ ) ମନ ( ମନରେ ) ଯଥା ( ଯେରୂପ ) ବାଞ୍ଛେ ( ଇଚ୍ଛେ ) "କିନ୍ତୁ ସେ ନ ହେଲା ପ୍ରାୟ ଏ ସମାନ ନ ହେଲ" । 'ପୁଣି" ୧ ଖରା ( ପିମ୍ପୁଡ଼ି ) ଦ୍ୱିବୁଧାଳୟର ( ମେରୁ ) ପର ( ପ୍ରାର୍ଥ ) ହେବା ଇଚ୍ଛା କଲେ ତା ସଙ୍ଗେ ( ମେରୁ ସଙ୍ଗେ ) ପରମ୍ପରା ( ପରିପାଟୀ ) ହୋଏ କି ? (ହୋଇ ନ ପାରେ) ଏ ( ରାବଣ ସେରୂପ ) । ୭ ।

୮ମ ପଦ—ବିଶାରଦ ( ଉତ୍କୃଷ୍ଟ ବିସ୍ତାରବନ୍ତ ମହାଦ୍ରୁମ (ମହାତରୁ) ଅଗ୍ରତେ ( ଆଗରେ ) ଦ୍ରୁମ ( ସମାନ୍ୟ ଦ୍ରୁମ ) ଯେମନ୍ତ "ବିରାଟ ମୂର୍ତ୍ତି ରାମଙ୍କ ଆଗରେ ରାବଣ ତଥା ( ତେମନ୍ତ )" । ଅପୂର୍ବ ( ଚମତ୍କାର ) ସଂଗ୍ରାମ ଶ୍ରୀରାମ ରଚେ ( କଲେ ) ନିଯୁତେ ( ନିଯୁତ ସଂଖ୍ୟକ ) ୧ ବାଜି ( ଅଶ୍ୱ ) ଅୟୁତେ ( ଅୟୁତ ସଂଖ୍ୟକ ) ଗଜ ଲକ୍ଷଶତେ ରଥ ( କୋଟିଏ ରଥ ସହିତ ରଥୀ ) ଦଶକୋଟି ପତ୍ତି ( ପାଇକ ) ହତେ ( ମାରିହେନ୍ତେ ) କବନ୍ଧେ (ଗୋଟିଏ କବନ୍ଧ ) ନାଚଇ । ବ୍ୟବସ୍ଥିତରେ ( ଏହି ବ୍ୟବସ୍ଥା ପ୍ରମାଣେ ) କୋଟି ( କୋଟିଏ ) କବନ୍ଧ ବିଳସିଲେ ( ନାଚିଲେ ) । "ଏହିରୂପେ" କୋଟି ସଂଖ୍ୟାରେ ଖେଚର ( କବନ୍ଧ ) ରେକାର ( ରେ ରେ କାର ) ଗିରେ ( କହି )

---

୧—ଖରା ପିପୀଲିକା ଲକ୍ଷ୍ମୋ ଇତି ବିଶ୍ୱଃ ।

୧—ହସ୍ତ୍ୟଶ୍ୱରଥପାଦାତଂ ସେନାଙ୍ଗଂ ସ୍ୟାତ୍ ଚତୁଷ୍ଟୟଂ । ଇତି ମଃ ।

ବାଜିଲେ ସପତଘଣ୍ଟି ତୁଟିଏ ତାହିଁ ନ ତୁଟି ସପତବଦନ ପ୍ରକଟି ରଣେ ଏସନ । ବଖାନ ଲେଖୁଁ ଗହନ ବଂଶାକ୍ଷିକୁ କଲେ ଧନ୍ୟ ରଖିଥିଲା ଏତେ ସୈନ୍ୟ ଏବେହେଁ ଘେନ । ବର୍ଦ୍ଧ୍ୟଂଶିଲା । ବାନର ଯୋଦ୍ଧାନୁକୂଳ କୃତ । ବୃଷ୍ଟି ହୋଇଣ ଆପଣ ଦିଗଶୂଳ ଶୂଳଗଣ ଲକ୍ଷ-ଣାରେ ତମୋଗୁଣ ଗ୍ରସ୍ତ ପୌଲସ୍ତ୍ୟ । ୯ ।

---

ବହରେ ( ନାରେ ) ଭଆଧି (ନାଚିଲା ପର) କୋଦଣ୍ଡରେ (ରାମଙ୍କ ଧନୁରେ) ଏକ ଘଣ୍ଟି ( କୋଟିଏ ଘଣ୍ଟା ) ରଟି ( ରଟଇ ) । ୮ ।

୯ମ ପଦ—ଏରୂପେ ରାମ ରାବଣର ଚତୁରଙ୍ଗ ବଳ ମାରନ୍ତେ ତାହିଁ ( ସେହି ରଣଭୂମିରେ ) ହ୍ରତିଏ ( ଲଡାଏ ) ନ ତୁଟି ( ନ ହଟି ) ସପତବଦନ ( ସାତବଦନ ପର୍ଯ୍ୟନ୍ତ ) ପ୍ରକଟି ସପତ ୧ ଘଣ୍ଟି ( ସାତଗୋଟି ଘଣ୍ଟା ) ରଣେ ( ଯୁଦ୍ଧରେ ) ଏସନ ( ଏରୂପେ ) ବାଜିଲେ । "ରାମ ଯେତେ ସୈନ୍ୟ ମାଇଲେ ତାହା" ବଖାନ ( ତାହା ) ଲେଖୁଁ ( ଲେଖନ୍ତେ ) ଗହନ ( ଅଗୋଚର ) ହେଲା "ଲେଖି ନ ପାରିଲେ ଏହିଭାବ" । "ତେଣୁ" ବଂଶାକ୍ଷକୁ ଧନ୍ୟ ( ପ୍ରଶଂସା ) କଲେ କହିଲେ ଘେନ ( ସ୍ୱୀକାର କର ) "ପୂର୍ବରୁ ଯାହା ମରିଛନ୍ତି ତାହା ଛାଡ଼" ଏବେହେଁ ( ବର୍ତ୍ତମାନ ମଧ୍ୟ ) ଏତେ ସୈନ୍ୟ ରଖିଥିଲା । "ରାମଙ୍କର ବଚନ ମାରଣ ଦେଖି" ପୌଲସ୍ତ୍ୟ ( ରାବଣ ) ତମୋଗୁଣ ଗ୍ରସ୍ତ ( କ୍ରୋଧଗଣ ବା ଶୋକ ଗୁଣ ବଦ୍ଧ ) ୨ ବୃଷ୍ଟି ହୋଇଣ ଆପଣ ( ବୃଷ୍ଟି ରୂପରେ ଆପେ ) ଶୂଳଗଣ ( ଶୂଳସମୂହ ) ୩ ଦିଗଶୂଳ ( ଦିକ୍‌ଶୂଳ )

---

୧—ନାଗାନାମଯୁତଂ ତୁରଙ୍ଗନିୟୁତଂ ସାର୍ଦ୍ଧଂ ରଥାନାଂ ଶତଂ ।
ପତ୍ତୀନାଂ ଶତକୋଟୟୋ ନିପତନେ ନୃତ୍ୟନ୍ତି କବନ୍ଧୋରଣେ ।
ତେଷାଂ କୋଟିନିବନ୍ଧ ନର୍ତ୍ତନବିଧୌ ଖେଳାଚରନ୍ତ୍ ଖେଚର-
ସ୍ତେଷାଂ ନର୍ତ୍ତନପାତନେ ରଘୁପତେଃ କୋଦଣ୍ଡଘଣ୍ଟାରବଃ ।
ଇତି ହନୁମନ୍ନାଟକେ ।

୨—ବୃଷ୍ଟିଭୂ ଜଙ୍ଗମାକାରଃ କେଚଦିଚ୍ଛନ୍ତି ଦାରୁଣଂ ।
ଭୁଜଙ୍ଗସ୍ୟ ମୁଖେ ଶୃଙ୍ଗନ୍ତିରୁଂପୁଚ୍ଛେ କଦାଚନ ! ଇତି ଜ୍ୟୋତିଃଶାସ୍ତ୍ରେ ।

୩—ଅର୍କଃ ଶୁକଃ କୁଜୋ ମନ୍ଦୋମନ୍ଦଶ୍ଚନ୍ଦ୍ରୋ ବୁଧୋଗୁରୁଃ ।
ଅଗ୍ରତଃ ଶୋଭନା ଯାତ୍ରା ପୃଷ୍ଠତୋ ମରଣଂ ଧ୍ରୁବଂ ! ଇତି ଦିକ୍‌ଶୂଳ ଲକ୍ଷଣଂ

ବାଲମୀକି ଉକ୍ତିସାର ଗଗନ ଗଗନାକାର ସାଗରତୁଲ୍ୟ ସାଗର ଯେଉଁ ପ୍ରକାରେ । ବିଶ୍ରୁତ ବିଲୋକନ କର ରାମ ରାବଣ ସମର ରାମ ରାବଣ ସମର ଖ୍ୟାତ ସଂସାରେ । ବିଗ୍ରହିଲେ । ବିଲୋକି ରାମରଣ ଜାମ୍ବବ । ବୟସ ଗଳନ ସରି ଯୁଝି ଯୁଝିଲାର ପରି ଏସଙ୍ଗେ ବିରୋଧ କରିବାର ଉଦ୍ଭବ । ୧୦ ।

---

ଲକ୍ଷଣାରେ ( ପୃଷ୍ଠ ଗଡରେ ) ଅନୁକୂଳ କୃତ ( ଯୁଦ୍ଧକୁ ଅନୁକୂଳ କରିଥିବା ) ବାନର ଯୋଦ୍ଧା ( କପି ବୀରଙ୍କୁ ) ବିଧ୍ୱଂସିଲ ( ବିନାଶିଲ ) । ୯ ।

୧୦ମ ପଦ—ବାଲମୀକି ( ବାଲ୍ମୀକିଋଷିର ) ଉକ୍ତି ସାର ( ସାରବାକ୍ୟ ଏ ) ୧ଗଗନ ଗଗନାକାର ( ଗଗନୋପମ ) ଯେଉଁପ୍ରକାରେ ସାଗର ତୁଲ୍ୟ ସାଗର, ସଂସାରେ ରାମ ରାବଣ ସମର ( ସମାନରେ ) ଖ୍ୟାତ (ବିଖ୍ୟାତ) ରାମ ରାବଣ ସମର ( ଯୁଦ୍ଧ ) ବିଶ୍ରୁତ ବିଲୋକନ କର ( ଶୁଣାନାହିଁ ଦେଖା ନାହିଁ ) "ଯେରୂପ ଗଗନର ଉପମା ଗଗନ, ସାଗରର ଉପମା ସାଗର, ଅନ୍ୟ ହୋଇ ନ ପାରେ ସେହିପରି ରାମ-ରାବଣ ଯୁଦ୍ଧର ଉପମା ରାମ ରାବଣର ଯୁଦ୍ଧ ଅନ୍ୟଯୁଦ୍ଧ ହୋଇ ନ ପାରେ ଏହିଭାବ" । ଜାମ୍ବବ "ମନ୍ତ୍ରୀ" ରାମରଣ (ରାମଙ୍କର ଅଲୌକିକ ଯୁଦ୍ଧ ) ବିଲୋକି ( ଦେଖି ) ବିଗ୍ରହିଲେ ବୟସ ସରି ଗଲାକି ( ଆମ୍ଭେ ବୁଢ଼ା ହେଲୁଣି ) ଏ ସଙ୍ଗେ ( ଏହି ବୀର ସଙ୍ଗେ ) ବିରୋଧ କରିବାର ( ବିରୋଧୀ ହୋଇ ) ଯୁଝି ( ଯୁଦ୍ଧ କଲେ ) ଯୁଝିଲାର ( ଯୁଦ୍ଧ କଲା ପରି) "ଜଣା ଯାଉ" । "ଏରୂପ ଯୁଦ୍ଧକୁ" ୨ଉଦ୍ଭବ (ଯୁଦ୍ଧୋଦ୍ଭବ) "କହିବ"। "ଏହ ଦ୍ୱାରା ଭାବ ଯୁଦ୍ଧକ ମନା ସୂଚିତ ହେଲ" । ୧୦ ।

---

୧—ଗଗନଂ ଗଗନାକାରଂ ସାଗରଃ ସାଗରୋପମଃ ।
ରାମ ର ବଣୟୋର୍ଯୁଦ୍ଧଂ ରାମ ରାବଣୟୋରିବ ।
ଏ ଯୁଦ୍ଧ କାଣ୍ଡର ଶ୍ଳୋକ ପୂର୍ବାର୍ଦ୍ଧରେ ଯୋଡ଼ା ହୋଇ ଅନନ୍ୱୟାଲଂକାର ଦୃଷ୍ଟାନ୍ତରରୂପରେ ଅଛି । ଉତ୍ତରାର୍ଦ୍ଧରେ ମଧ୍ୟ ଗୋଟିଏ ଅନନ୍ୱୟାଲଂକାର ଦୃଷ୍ଟାନ୍ତର ଅଛି । ଧ୍ୱନି ମର୍ଯ୍ୟାଦାରେ ଅଳଂକାରରୁ ଅଳଂକାରାନ୍ତର ଧ୍ୱନି ମଧ୍ୟ ଆସଇ । ୦ ।

୨—କଦୋଽଥ କ୍ଷଣମଙ୍କର୍ଷୋ ମହଦୁଦ୍ଧବ ଉଦ୍ଭବଃ ଇତ୍ୟମରଃ ।

ବୈଦେହୀରତ ଚକ୍ରୀ ତ ସେହ୍ନ ଚକ୍ରିବିଧାନକୁ ବନ୍ଧ ଶରସୂତ୍ରେ ସୂତ୍ରେ କଣ୍ଠାଭ୍ୟନ୍ତର ତ୍ରୁଟେ । ବିଚ୍ଛେଦ କୋପେ ରାଘବ ଦଶଗ୍ରୀବ ଦଶଗ୍ରୀବ ବିଚ୍ଛେଦ ନୋହିଲେ ଲବ ଲାଗେ ତତ୍କାଳେ । ବିଘଟିତ । ବୁଦ୍ଧି ହୋଏ ଏହି ଉପମାରେ । ବାରି ନୋହେ ଭିନ୍ନକର ଯଥା ଖରତର ବାରି ପୁନଃପୁନ ତରବାରିମାନ ପ୍ରହାରେ । ୧୧ ।

ବରବର ବର୍ଣ୍ଣି ତହିଁ ବୀରବର ବୋଲେ ମୁହିଁ ଶିରଚ୍ଛେଦେ ନ ମରଇ ସାହସ ତେଜ । ବିଜୟୀ ହୋଇଛି ସୁରଗଣରେ ଆନ ଅସୁର ନୋହେଁ ବୁଡ଼ାଇବ ଶୂରପଣ ତୋ ଆଜ । ବିଷ୍ଣୁ ଚକ୍ର । ବାଜ

---

୧୧ଶ ପଦ—ସେହ୍ନ (ରାମଚନ୍ଦ୍ର) ବୈଦେହୀରତ (ସୀତାରେ ରତ) ଚକ୍ରୀ (ନାରାୟଣ) ଚକ୍ରିବିଧାନକୁ (କୁମ୍ଭାରସୂତ୍ରଙ୍କ) ବନ୍ଧ (ଧରି) ସୂତ୍ରେ କଣ୍ଠାଭ୍ୟନ୍ତର ତ୍ରୁଟେ (କଣ୍ଠାହାଣ୍ଡିକି କୁମ୍ଭାର ସୂତାରେ କାଟିଲାପରି) ରାଘବ (ରାମ) କୋପେ (କ୍ରୋଧରେ) ଦଶଗ୍ରୀବ (ରାବଣର) ଦଶ ୧ ଗ୍ରୀବ (ଦଶଗୋଟା ଶିରକୁ) ବିଚ୍ଛେଦ (କାଟିଲେ) "କିନ୍ତୁ" ଲବ (ଲେଶମାତ୍ର) ବିଚ୍ଛେଦ ନୋହିଲେ (ଛେଦନ କରିବାକୁ ସମର୍ଥ ନୋହିଲେ) ତତ୍କାଳେ (ସେହିକ୍ଷଣି) "ସେ ମୁଣ୍ଡମାଳ" "କୁମ୍ଭାର କାଟିବା କଣ୍ଠାହାଣ୍ଡି ନ ପଡ଼ି ଲାଗିଥିଲାପ୍ରାୟ କଟିଯାଇ କନ୍ଧରେ" ଲାଗେ (ଲାଗିଯାନ୍ତି) । ଏହି ଉପମାରେ (ଏ ଯେଉଁ ଉପମା ଏଥିରେ) ବୁଦ୍ଧି ବିଘଟିତ ହୋଏ (ବିଶେଷରେ ଘଟିଲା) । ଯଥା (ଯେରୂପ) ଖରତର (ଅତ୍ୟନ୍ତ ଲହରିଯୁକ୍ତ) ବାରି (ଜଳକୁ) ତରବାରିମାନ (ଖଣ୍ଡା ୨) ପୁନଃପୁନଃ (ବାରମ୍ବାର) ପ୍ରହାରେ (ପ୍ରହାରକଲେ) ଭିନ୍ନକରି ବାରି ନୋହେ । ୧୧ ।

୧୨ଶ ପଦ—ତହିଁ (ଶିରଚ୍ଛେଦବା ସମୟରେ) ବରବର (ବିଶେଷ ବର) ବର୍ଣ୍ଣି (ବର୍ଣ୍ଣନ କରି) "ରାବଣ" ବୋଲେ ମୁହିଁ ବୀରବର (ବୀରଶ୍ରେଷ୍ଠ) ଶିରଚ୍ଛେଦେ ନ ମରଇ "ଶିର କାଟିଲେ ମରେ ନାହିଁ ଏ ଯେଉଁ" ସାହସ "ତାହା" ତେଜ (ଗୁଣ) । ମୁଁ ସୁରଗଣରେ (ଦେବଗଣମଧ୍ୟରେ) ବିଜୟୀ ହୋଇଛି ଆନ (ଅନ୍ୟ ସାମାନ୍ୟ) ଅସୁର ନୋହେଁ ତୋ ଶୂରପଣ

---

୧—କଣ୍ଠୋ ଗଳୋଽଥ ଗ୍ରୀବାୟାଂ ଶିରୋଧିଃ କନ୍ଧରେତ୍ୟପି ଇତ୍ୟମରଃ ।

ହୃଦେ ଚର୍ମରେ ନ ଗଳି । ବନ୍ଧ ଦାଢ଼ ମୂନ ନାଶ ଚୂର୍ଣ୍ଣ ଭଜେ ଦୁର୍ଗା
ଈଶ ଇନ୍ଦ୍ର ଖଡ଼୍ଗ ଶୂଳ ବଜ୍ର ନ ମରେ ତୋଳି । ୧୨ ।

ବୋଲୁଁ ରାମ କୋପେ ଥରେ ଅଷ୍ଟୋତ୍ତର ଶତଥରେ ଛେଦନେ
ପାତ ପଥରେ ତା ମୁଣ୍ଡ ନୋହି । ବ୍ୟଥିତ ଭଜି କଥିତ ଅଗ୍ରେ ଯେ
ମାତଳି ସ୍ଥିତ ଏ ଦୈତ୍ୟ ଅଦ୍ଭୁତ ଭୂତଭବିଷ୍ୟେ ନାହିଁ । ବର୍ତ୍ତମାନ ।
ବିଖ୍ୟାତ ଏତ ମରିବ କେହି । ବ୍ରହ୍ମାସ୍ତ୍ରେ ସାର ଋଷିଙ୍କୁ ବ୍ରହ୍ମାସ୍ତ୍ରେ ଭେଦ
ହୃଦୟୁ ଦେଇଛୁ କୁମ୍ଭତନୟୁ ମାତଳି କହିଁ । ୧୩ ।

---

( ତୋହର ସ୍ମରପଣ ) ଆଜ କୁଡ଼ାଳବ ବିଷ୍ଣୁ ଚକ୍ର ( ସୁଦର୍ଶନ ) ହୃଦେ
( ମୋ ହୃଦୟରେ ) ବାଜି ଚର୍ମରେ ନ ଗଳି ( ଚମ ନ ଭେଦିଲା ), ଦୁର୍ଗା
( ଚଣ୍ଡୀଙ୍କ ) ଖଡ଼୍ଗ ( ଖଣ୍ଡାର ) ଦାଢ଼ (ଧାର) ବନ୍ଧଭଜି (ବଙ୍କା ହୋଇଗଲା)
ଈଶ ( ମହାଦେବଙ୍କ ) ଶୂଳ ( ତ୍ରିଶୂଳର ) ମୂନ ନାଶ ଭଜେ ( ମୂନମୋଡ଼ି
ହୋଇଗଲା ) ଇନ୍ଦ୍ର ବଜ୍ର "ମୋ ଦେହରେ ବାଜି" ଚୂର୍ଣ୍ଣ "ହେଲା" । ଏଣୁ
ଏ ଅସ୍ତ୍ରମାନଙ୍କୁ "ସେମାନେ" ତୋଳି ନ ମାରେ (ଟେକି ମାରନ୍ତିନାହିଁ) ।୧୨।

୧୩ଶ ପଦ—ବୋଲୁଁ ( ରାବଣ ଏରୂପ କହିଲନ୍ତେ ) ରାମ କୋପେ
ଥରେ ( କ୍ରୋଧରେ ରାମଚନ୍ଦ୍ର ଥରେ ) । "ତେଣୁ" ଅଷ୍ଟୋତ୍ତରଶତଥରେ
(ଶଏଆଠଥର) ଛେଦନେ ( ଛେଦିବାରେ ) ତା ମୁଣ୍ଡ ପଥରେ ( ଯଥାମାର୍ଗରେ
ଭୂମିରେ ) ପାତନୋହି ( ନ ପଡ଼ିଲେ ) "ତେଣୁ" ବ୍ୟଥିତ ଭଜି ( ଜାତ
ବ୍ୟଥାକୁ ଭଜିଲ—ବ୍ୟଥା ପାଇଲ) ଅଗ୍ରେ (ତାଙ୍କର ଆଗରେ) ସ୍ଥିତ (ରହିଥିଲା)
ଯେ ମାତଳି "ତାହାକୁ" କଥିତ ( କହିଲେ ) ଏ ଦୈତ୍ୟ ( ରାବଣ ) ଅଦ୍ଭୁତ
( ଆଶ୍ଚର୍ଯ୍ୟ ) "ଅଟେ" । "ଏହାପ୍ରାୟ" ଭୂତଭବିଷ୍ୟେ ନାହିଁ ( ନଥିଲା
ନୋହିବ ) ବର୍ତ୍ତମାନ ଏତ ( ଏରୂପେ ଏହି ) ବିଖ୍ୟାତ । କେହି ( କରୂପେ )
ମରିବ ? ମାତଳି କହି ( କହିଲେ ) ହେ ବ୍ରହ୍ମାସ୍ତ୍ରେ ସାର ଋଷିଙ୍କୁ ( ରାମ )
କୁମ୍ଭତନୟୁ ( ଅଗସ୍ତ୍ୟମୁନି ) ଦେଇଛୁ ( ତୁମ୍ଭଙ୍କୁ ଦେଇଥିବା ) ବ୍ରହ୍ମାସ୍ତ୍ରେ
( ବ୍ରହ୍ମଶରରେ ) ହୃଦୟୁ ( ଏହାର ହୃଦୟକୁ ) ଭେଦ ( ଫୋଡ଼ିଦିଅ ) ।୧୩।

ବିନ୍ଧିବାକୁ ନାଗେ ନାକେ ମର୍ତ୍ତ୍ୟେ କେ ଲାଗିବ ଲାଖେ ତେଜେ
ବସାଉଁ ପିନାକେ ଜନ୍ତୁ ସେ ଥିଲା । ବାଧା ତ୍ରିପୁର ତ୍ରିପୁରଜିତର ହୁଅନ୍ତେ
ହର ପ୍ରୟୋଗେ ତୁମ୍ଭେ ପାତ୍ରର ମୋତେ ଦିଶିଲା । ବରାଧାର । ବାଣୀ
ତାର ଶୁଣି ତତପର । ବଡ଼ବାନଳ ସାଗରୁ ଉଦ୍ଧର ଧରିବାଗ୍ରରୁ
ବାହାର କଲେ ତୂଣୀରୁ ସେ ବ୍ରହ୍ମଶର । ୧୪ ।

ବାର ଆଦିତ୍ୟ ଉଦିତ ଏକତ୍ୱ ହୋଇ ବ୍ୟକ୍ତ ଏକମଣ୍ଡଳେ
ଉଦ୍‌ବତ କୋଦଣ୍ଡ ମଧ୍ୟେ । ବସାଇଣ ଆମଞ୍ଚନେ ଗୁଣେ ପୁଷ୍କ

---

୧୪ଶ ପଦ—ହର ( ମହାଦେବ ) ତ୍ରିପୁ-ଜିତ ( ତ୍ରିଭୁବନଜୟକାରୀ ) ତ୍ରିପୁର ( ତ୍ରିପୁରାସୁରର ) ବାଧା ( ବାଧାହୁଅନ୍ତେ ) ପିନାକେ ( ଅଜଗବ-ଧନୁରେ ) "ଏ ବ୍ରହ୍ମଶର" ବିନ୍ଧିବାକୁ ବସାଉଁ ( ବସାନ୍ତେ ) ତେଜେ ( ଶରତେଜରେ ) ସେ ( ଧନୁ ) ଜଳୁଥିଲା । ମୋତେ ଦିଶିଲା ନାଗେ ( ନାଗଲୋକରେ ) ନାକେ ( ସ୍ୱର୍ଗଲୋକରେ ) ମର୍ତ୍ତ୍ୟେ ( ମର୍ତ୍ତ୍ୟଲୋକରେ ) କେ ( କେଉଁଲୋକ ) ଲାଖେ ଲାଗିବ ( ବଳାଇବ ନାହିଁ ) ପ୍ରୟୋଗେ ( ଏ ଶର ପ୍ରୟୋଗ କରିବାକୁ ) ତୁମ୍ଭେ ୧ ପାତ୍ରର ( ପାତ୍ର—ଯୋଗ୍ୟଅଛ ) । "ଏବ୍ରହ୍ମଶର ତେଜରେ ହରଙ୍କ ପିନାକ ଜଳିଗଲା ସେ ମାରିପାରିଲେ ନାହିଁ ମୁଁ ଜାଣେ ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ତୁମ୍ଭେ ଏକା ଏ ଶର ମାରିବାକୁ ସମର୍ଥ ଆଉ କେହି ନାହିଁ ଏହା ଆଶୟାର୍ଥ ।"୨ ବରାଧାର (ବରାମି) ତାର ( ମାତଳିର ) ବାଣୀ ଶୁଣି ୨ ତତପର ( ହେଉକ୍ଷଣି ) ସେ ବ୍ରହ୍ମଶର ତୂଣୀରୁ ବାହାରକଲେ ସାଗରୁ ( ସମୁଦ୍ରରୁ ) ବଡ଼ବାନଳ ( ବାଡ଼ବାଗ୍ନି ) ଉଦ୍ଧର ଧରିବା ଗ୍ରରୁ ( ମନୋହର ) "ଦିଶିଲା" । ୧୪ ।

୧୫ଶ ପଦ—ଏକ ମଣ୍ଡଳେ ( ଗୋଟିଏ ପରିଧିରେ ) ବାର ଆଦିତ୍ୟ ( ଦ୍ୱାଦଶସୂର୍ଯ୍ୟ ) ଏକତ୍ୱ ( ଏକଯେ ) ବ୍ୟକ୍ତ ( ବ୍ୟକ୍ତ ) ହୋଇ ଉଦିତ ଉଦ୍‌ବତ ( ଉଦୟହେଲା ପ୍ରାୟ ) କୋଦଣ୍ଡ ମଧ୍ୟେ (ମଣ୍ଡଳାକାର ଧନୁମଧ୍ୟରେ) ବସାଇଣ ( ସେ ଶରକୁ ଗୁଣରେ ବସାଇ ) ଆମଞ୍ଚନେ ( ଓଟାରନ୍ତେ )

---

୧—ପାତ୍ରଂ ଭାଜନଂ ଯୋଗ୍ୟଶ୍ଚ ଶବ୍ଦମରଃ ।
୨—ତତ୍ପରେ ପ୍ରସିତାସକ୍ତା ବତ୍ୟମରଃ ।

ବମାନେ ପୁଷ୍ପକ ହେବାର ଆଜଉ ଯୁଝେ । ବତରଣ । ବାଣ କଲ
ଭୁଜା କର ତୂଣ । ବାହ୍ଣୁ ଏଥୁ ଭଲ ଜଣେ ମାର ପାରବାକ ରଣେ
ଚରେ କାଟି ବାରପଣେ ରହିବ ପୁଣ । ୧୫ ।

ବ୍ରହ୍ମାସ୍ତ୍ର ବ୍ରହ୍ମାସ୍ତ୍ର ପରେ ଚକ୍ର ଚକ୍ର କୋଦଣ୍ଡରେ କଉଣିକ
ଭ୍ୱରିତରେ ଗୁଣ ଖଣ୍ଡନେ । ବିଭୀଷଣ ହନୁମନ୍ତେ କପିବର ବାଳୀସୁତ
ଶକ୍ରପଦ୍ମେ ଶୂଳ କେତେ ସେନା ଖଣ୍ଡନେ । ବଧାନକ । ବଳ ଯେତେ
ତାଙ୍କୁ କାଣ୍ଡେ କାଣ୍ଡେ । ବନ୍ଧଶ ଦଶ ଅଦୂଶ୍ୟ ଶଲ୍ୟକ ସ୍ମୃତକ ଦଂଶ
ଝାଡ଼ ଝାଡ଼ କ ରଭସ ଗଣ୍ଡ ପ୍ରଚଣ୍ଡେ । ୧୬ ।

"ଗ୍ରବର୍" ପୁଷ୍ପକବିମାନେ "ଥାଇ" ଆଜର ଯୁଝିବେ "ମୋତେ" ୧ ପୁଷ୍ପକ
( ନେଇଦେବେଗ ) ହେବାର ହେବେ । "ଖ୍ବାଲା ଅଜର ଯୁଦ୍ଧ ମୋତେ ଅନ୍ଧାର
ଦିଶିଲା ଏହି ଫଳତାର୍ଥ" । "ଏହାଶ୍ରବ ଗ୍ରବଣ" ତୂଣ (ତୂଣୀର) ଭୁଜା (ଖାଲି)
କର ବାଣ ବତରଣକଲା "ତୁଣୀରେ ଯେତେ ଶରଥିଲା ସବୁ ବନ୍ଧଲା ଏହି-
ଗ୍ରବ" । ଏଥୁଁ ( ଏ ବାନରବୀରଙ୍କ ମଧ୍ୟରୁ ) ବାହ୍ଣୁ "କରି" ଭଲ ଜଣେ
ରଣେ ( ଯୁଦ୍ଧରେ ) ମାରପାରବ କ ? "ମାରପାରଲେ" ବାରପଣେ ( ବୀର
ପଣିଅରେ ) ପୁଣ "ମୋଦର" କାଟି ଚରେ ( ଚରକାଳ ) ରହିବ । ୧୫ ।

୧୬ଶ ପଦ—"ଏମନ୍ତ ବଳ୍ଚି ଗ୍ରବଣ" ବ୍ରହ୍ମାସ୍ତ୍ରପରେ ( ବ୍ରହ୍ମଶର
ଉପରକୁ ) ବ୍ରହ୍ମାସ୍ତ୍ର ( ବ୍ରହ୍ମଶର ) "ପେଷିଲ" ଚକ୍ର ( ରଥରଚକଉପରକୁ )
ଚକ୍ର ଅସ୍ତ୍ର "ମାଇଲା" । କୋଦଣ୍ଡରେ ( ଧନୁରେଥିବା ) ଗୁଣ ଖଣ୍ଡନେ
( ଛେଦିବାପାଇଁ ) ତ୍ୱରିତରେ ( ଶୀଘ୍ର ) କଉଣିକ ( କଉଣ୍ଠବାଣ )
"ପେଷିଲା" । ବିଭୀଷଣ ( ବିଭୀଷଣକୁ ) ହନୁମନ୍ତେ ( ହନୁମାନକୁ ) କପିବର
( ସୁଗ୍ରୀବକୁ ) ବାଲିସୁତ ( ଅଙ୍ଗଦକୁ ) ଶକ୍ରପଦ୍ମେ ( ପଦ୍ମସଂଖ୍ୟକ ଶକ୍ତି )
"ମାଇଲା" । ସେନା ଖଣ୍ଡନେ ( ସେନାଙ୍କୁ କାଟିବାପାଇଁ ) ଶୂଳ କେତେ
(ଅଗଣିତ ଶୂଳ) "ମାଇଲା" ।ବଳ (ଅଉସୈନ୍ୟ) ଯେତେ "ଥିଲେ" ତାଙ୍କୁ
କାଣ୍ଡେ କାଣ୍ଡେ ବଧାନକ "ହେଲା" "ପ୍ରତ୍ୟେକଙ୍କୁ ଗୋଟିଏ ଗୋଟିଏ" ଶର

୧—ପୁଷ୍ପକଂ କ୍ଷୀଣକାନେହ ରେଚସ୍ତ୍ରୋଜ୍ଜ୍ୱଳଙ୍କଣେ ।
କ୍ଳବେରସ୍ୟ ବିମାନେ ତ ଷଢ ପୁଷ୍ପେ ଚସାଞ୍ଜନେ । ଇତି ବିଶ୍ୱଃ ।

ବ୍ୟାଘ୍ରଙ୍କ ମକ୍ଷିକା ଗ୍ରାସେ ଲକ୍ଷ୍ମଣବାଣ ସଦୃଶେ ଖରଜିତ ବାମ-ହସ୍ତ ଦକ୍ଷିଣେ ବୋଲେ । ବିଦେହ କନ୍ୟା ଯୋଗରେ ଆଗ କର୍ବୁର ଦାନରେ ଯୋଗ ହେଉ ପଛେ ଯାଉ ସମର କାଳେ । ବାମେ ସେହି । ବାକ୍ୟରେ ଦକ୍ଷିଣ ପାଣି ଛଳେ । ବିଦେହ କନ୍ୟା ଯୋଗରେ ଯୋଗେ କର୍ବୁର ଦାନରେ ବନ୍ଦେ କୃପାଳୁ ସମ୍ମତେ ଶ୍ରୀ ଭଞ୍ଜ ଚଳେ । ୧୭ ।

---

ମାଇଲା ଏହିଭାବ" । ବିଦ୍ଧଶଦ୍ଧଶ ( ଦ୍ଧଗ ବିଦ୍ଧଗଲୁ ) "ଶର ବିଦ୍ଧ" ଅଦୃଶ୍ୟ "କଲା" । "ଚକ୍ଷୁକି କବି ଏମନ୍ତ ଉତ୍ପ୍ରେକ୍ଷାକଲା" ୧ଶଲ୍ୟ ( ଝିଙ୍କପକ୍ଷୀ ) ୨ ସ୍ୱଶଳବଂଶ ( ଆପଣାର ଲୋମସମୂହ ) ଝାଡ଼ିଝାଡ଼ି ରଭସ ( ବେଗରେ ) ପ୍ରଚଣ୍ଡେ ଗତ ( ପ୍ରଚଣ୍ଡେ ଗମନ କଲେ କି ? ) । "ତଦ୍ରୂପ ଦେଖିଲା ଏହିଭାବ" । ୧୬ ।

୧୭ଶ ପଦ୍ୟ—ଲକ୍ଷ୍ମଣ ବାଣ ବ୍ୟାଘ୍ର ସଦୃଶେ ( ଲକ୍ଷ୍ମଣଙ୍କ ଶର ବ୍ୟାଘ୍ର-ତୁଲ୍ୟ ଯାଇ ) ମକ୍ଷିକା ( ମାଛିସ୍ୱରୂପ ) "ରାବଣ ବାଣସମୂହ" ଗ୍ରାସେ ( ଗ୍ରାସିଲା କି ? ) "ଏମନ୍ତ ଉତ୍ପ୍ରେକ୍ଷା" । "ଏହିସମୟେ" ଖରଜିତ ( ରାମଙ୍କ ) ବାମହସ୍ତ ଦକ୍ଷିଣେ ( ରାମଙ୍କ ଦକ୍ଷିଣହସ୍ତକୁ ) ବୋଲେ ବିଦେହ କନ୍ୟା ୧ଯୋଗରେ ( ସୀତାଙ୍କୁ ଧରିବାକାଳେ ) କର୍ବୁର (ସୁବର୍ଣ୍ଣ) ଦାନରେ (ଦାନଦେବାବେଳେ) ଆଗ "ହୋଇ" ଯୋଗହେଉ ଏବେ ସମରକାଳେ ( ଯୁଦ୍ଧସମୟରେ ) ପଛେ ( ଶେଷକୁ ) ଯାଉ । "ତୁ ଏତେ ଭଲ୍ୟାଲୁ ଏହିଭାବ" । ସେହି ବାକ୍ୟରେ ଦକ୍ଷିଣପାଣି ବାମେ (ବାମହସ୍ତକୁ) ଛଳେ ( ଛଳନାକରି କହେ ) । ତୁ ଯାହା କହିଲୁ ବିଦେହକନ୍ୟା (ଜାମପତ୍ନୀ ରତ୍ନ) ଯୋଗରେ ଆଗ "ହୋଏ ମୁଁ ସତ ଏ" ୨କର୍ବୁର ( ରାକ୍ଷସଙ୍କ ) ଦାନରେ (ଛେଦନ ସମୟରେ) ଆଗ "ହୋଇ"

---

୧—ଶ୍ୱାବିତ୍ତୁ ଶଲ୍ୟସ୍ତଲ୍ଲୋମ୍ନି ଶଲଲଂ ଶଲ ମିତ୍ୟମରଃ ।

୨—ବଂଶ ଶବ୍ଦଃ ସମୂହବାଚକଃ ।

୧—ଯୋଗଃ ସଂହନନୋପାୟଧ୍ୟାନ ସଙ୍ଗତି ଯୁକ୍ତିଷୁ ଇତ୍ୟମରଃ ।

ଗାତ୍ରଂ ବପୁ ସଂହନନଂ ଶରୀରଂ ବର୍ଷ୍ମ ବିଗ୍ରହ ମିତ୍ୟପି ।

୨—କର୍ବୁରେ ରାକ୍ଷସାମ୍ବୁଜ ମିତ୍ୟପି ।

ତପନୀୟଂ ଶାତକୁମ୍ଭଂ ଗାଙ୍ଗେୟଂ ଭର୍ମ କର୍ବୁର ମିତ୍ୟପି ।

ବ୍ରହ୍ମସୂଜିତ ସୁନ୍ଦର ପରଂବ୍ରହ୍ମ ବ୍ରହ୍ମଶର ପ୍ରୟୋଗୀ ଏସମୟର ଉର ଉପରେ । ବୁଡ଼ି-ହଂସ ପାରାବାରେ ଯେମନ୍ତ ବାହାରେ ଖରେ ଫୁଟି ତଥା ତରମରେ ସ୍ଥିତ ତୂଣୀରେ । ଵଦୃଶ୍ୟତା ଵିମଳାକ୍ଷ ଅନାଉଁ ତମରେ । ବିଧ୍ୱଂସି ଦେଲ ତତ୍ପର ମାତଳି ଅନ୍ଦତ୍ୟଗିର ସ୍ୱନାମ ତାରକସାର ଉଦିତ କରେ । ୧୮ ।

---

ଯୋଗ "ହୁଏ ଏହାହତ" "ତଥାପି" ବଦେ ( କହୁଛୁ ) ୩ କୃପାଳୁ ( ରାମଙ୍କ ) ସମ୍ମତେ ( ସମ୍ମତପାଇଁ ) "ଦେହାଙ୍କୁ ରାମ ରାବଣେ ମାରିବାକୁ ସମ୍ମତି ଦେବେ କି ନାହିଁ ଏଥିପାଇଁ ଏହାଭାବ" । ଶ୍ରୁତିକ ( କାନପାଖକୁ ) ଚଳେ ( ଯାଉଛୁ ) । ✻"ରାମଙ୍କକାନରେ କହିବ ଏହାଭାବ" । ୧୭ ।

୧୮ଶ ପଦ—ଏ ସମୟର ( ଏ ସମୟରେ ) ବ୍ରହ୍ମସୃଜିତ ( କନ୍ଦର୍ପ-ଜିତ ) ସୁନ୍ଦର ପରଂବ୍ରହ୍ମ ( ରାମ ) ବ୍ରହ୍ମଶର "ରାବଣର" ଉରଉପରେ ( ଛାତିରେ ) ପ୍ରୟୋଗୀ "ହେଲେ" ( ମାରିଲେ ) "ସେ ଶରଯାଇ" ଯେମନ୍ତ ହଂସ ପାରାବାରେ ( ସମୁଦ୍ରରେ ) ବୁଡ଼ି ଖରେ ଫୁଟି ବାହାରେ ତଥା ତରମେ ( ରାବଣ ପିଠିରେ ) "ଫୁଟି ବାହାର ହୋଇ" "ରାମଙ୍କ" ତୂଣୀରେ ସ୍ଥିତ "ହେଲ" । "ରାବଣ ମରିବାରୁ ରାମଙ୍କର" ବିମଳାକ୍ଷ ( ନିର୍ମଳ ଚକ୍ଷୁରେ ) ଅନାଉଁ ( ଗୃହାନ୍ତେ ) ତମରେ ( ବ୍ରହ୍ମହତ୍ୟା ପାପରୂପ ଅନ୍ଧକାରରେ ) ବଦୃଶ୍ୟତା ( ରାମଙ୍କୁ ନ ଦିଶିଲ ) । "ସେ-ସମୟେ" ମାତଳି ଅନନ୍ୟ "ପ୍ରାପ୍ତ" ସ୍ୱନାମ ତାରକ ସାର ( ଶ୍ରେଷ୍ଠ ରାମତାରକ ମନ୍ତ୍ର ) "ସ୍ମରଣେକର ଏହା କହିଦେବା" ଗିର ( ବାକ୍ୟରୂପ ) ଉଦିତକରେ ( ଉଦିତ କରଣରେ ) ତତ୍ପର ( ସେହିକ୍ଷଣି ) "ସେ ତମକୁ" ବିଧ୍ୱଂସି ଦେଲ ( ବିନାଶ କରି-

---

୩—ସାଦୟାଳୁଃ କାରୁଣିକଃ କୃପାଳୁଃ ସୁରତଃ ସମାଭିତ୍ୟମରଃ ।

✻—ତଥାହି ହନୁମନ୍ନାଟକେ—

ରେ ରେ ଦକ୍ଷିଣହସ୍ତ ସଦ୍ରତ ସଦା ଲୋକ୍ୟୁ ଭୁବିାନଗ୍ରଣୀ
ଯୁଦ୍ଧେ ମାଂ ପୁରସ୍କୃତୋ ବହାସ୍ୟ-ସହସୀ କଂ ପୃଷ୍ଟତୋ ଗମ୍ୟତେ ।
ନୈକ୍ଷ ବାମ ଦକ୍ଷାନଧେ ଚସ୍ପତେଃ କର୍ଣ୍ଣସ୍ୟ ମୂଳଂ ଗତଃ ।
ପୃଚ୍ଛାମ୍ୟେନମସଂଶୟଂ ଦଶଶିରଃ କିଂ ବଧ୍ୟତେ ବା ନବା ।

ବତାସେ ଉପୁଡ଼ ଗିରିପରୁଁ ମହାଦ୍ରୁମ ପୁର ମହାପତନ ସୁରାର ବିମାନୁଁ ଭିଜେ । ବଲ୍କଳ କବଚ ଫଳ ଶାଖା ଶିର ଭୁଜଜାଳ ତେଜ ପ୍ରାଣ ପକ୍ଷୀମେଳ ଗଡ଼ ସହଜେ । ବାଜି ହତ । ବାଜି ଗଜ ରଥ ଯେ ଅସୁର । ବଞ୍ଚିଲେଁ ତୋଷରତି ବାନରେ ସଧୀରେ ନାଚ ରଣସ୍ଥାନେ ପୁଷ୍ପ ସିଞ୍ଚ ବିଲୋକ ସୁରେ । ୧୯ ।

ବାହୁଡ଼ ମାତଳି ଯାଇ ରଥ ଘେନ ଆଜ୍ଞା ପାଇଁ ବିଭୀଷଣ

---

ଘେଲା ) । "ରାମ ତାରକମନ୍ତ୍ର ସ୍ମରିବାମାତ୍ରେ ପାପାନ୍ଧକାର ଛୁଟିଗଲା ଏହ୍ନ-ଙ୍ଘବ" । ୧୮ ।

୧୯ଶ ପଦ—"ରାବଣ ମର ତଳେ ଖସି ପଡ଼ିବାରୁ କବି ଏମନ୍ତ ଉତ୍ପ୍ରେକ୍ଷା କଲେ" । ମହାଦ୍ରୁମ ( ମହାତରୁ ) ବତାସେ ( ବତାସରେ ) ଉପୁଡ଼ି ଗିରିପରୁ ( ପର୍ବତ ଉପରୁ ) ଖସି ମହା ପତନପରି ( ଭୂମିରେ ପଡ଼ିଲାପ୍ରାୟ ) ସୁରାର ( ରାବଣ ) "ବ୍ରହ୍ମଶର ଆଘାତେ" ବିମାନୁ ( ରଥରୁ ) ଖସି ମହାପତନ ଭଜେ ( ଭୂମିରେ ପଡ଼ିଲା ) "ବୃକ୍ଷରେ" ବଲ୍କଳ ( ବକଳା ) ଫଳ ଶାଖା (ଡାଳ) ପକ୍ଷୀ "ଏମାନେ ଥାନ୍ତି" ଏ ରାବଣରୂପ "ମହାଦ୍ରୁମରେ" କବଚ ( ସାଞ୍ଜୁରୂପ ବକଳ ) ଶିର ଭୁଜଜାଳ (ମୁଣ୍ଡମାଳ ରୂପ ଫଳ ଓ ଭୁଜ ସମୂହରୂପ ଶାଖାରେ) ମେଳ "ହୋଇଥିବା" ପ୍ରାଣ "ରୂପ" ପକ୍ଷୀ "ବୃକ୍ଷ" ତେଜ ( ଛାଡ଼ି ) ସହଜେ ( ସହଜରେ ) ଗଡ ( ଗଲା ) "ଏ ଦୁଇପାଦ ସାଙ୍ଗ ରୂପକହେଲା" । "ରାବଣର ଦେହ" ବାଜି ( ଆଘାତ ପାଇ ) ବାଜ ( ଅଶ୍ୱ ) ଗଜ ରଥ ଅସୁର ଯେ ( ପଦାର୍ଥ ) ହତ ( ମଲେ ) । "ଏମନ୍ତ ଦେଖି" ବାନରେ ( କପିପଲ ) ବଞ୍ଚିଲେଁ ( ଅସୁର ମୁଖରୁ ଉଦ୍ଧରିଲେ କହ ) ସଧୀରେ ( ଧୀରେ ଧୀରେ ) ନାଚ ( ନାଚିଲେ ) । ସୁରେ ( ଦେବତାମାନେ ) ବିଲୋକ ( ଦେଖି ) ରଣସ୍ଥାନେ ( ରଣଭୂମିରେ ) ପୁଷ୍ପ ସିଞ୍ଚ ( ପୁଷ୍ପ ବୃଷ୍ଟି କଲେ ) । ୧୯ ।

୨୦ଶ ପଦ—ମାତଳି "ରାମଙ୍କ" ଆଜ୍ଞାପାଇ ରଥଘେନ ବାହୁଡ଼ି ଯାଇ ( ସ୍ୱର୍ଗକୁ ଗଲା ) । ବିଭୀଷଣ ଲୋକ ଆଗ୍ରେ ( ଲୋକଙ୍କୁ ଦେଖାଇବା ପାଇଁ )

ଶୋକବହ୍ନି ଦେଲ ଆଗୁରେ । ବାତେ ଉଡ଼ି ପୁଷ୍ପଲତାପରି ରାବଣ ବନିତା ଆସି ରଣାଙ୍ଗଣେ ସ୍ଥିତା କହନ୍ତେ ଦୂତେ । ବାଳାସିନ୍ନୀ । ବୃନ୍ଦ ବୃନ୍ଦ ପଦ୍ମିନୀ ମାଏ ତହିଁ । ବନ୍ଦେ ମକରନ୍ଦ ଜଳ ନୟନ ଫୁଲ୍ଲକମଳ ଲାଗି ରହିଁଛି ଭ୍ରମର ଡୋଳା ହୋଇ ଯହିଁ । ୨୦ ।

ବାଳିକା ହସ୍ତିନୀଗଣ ଆକୁଳ ହରି ଦାରୁଣ ହାରମୋତି ଝରଣ ସ୍ତନ କୁମ୍ଭରୁ । ଝଟଣେ ଥିଲେ ଶଙ୍ଖିନୀ କଣ୍ଠମାଳୀ ଶୋଭ-

---

ଶୋକବହ୍ନ ( ରୋଦନ କଲ ) । ଦୂତେ "ଲଙ୍କାରେ ଯାଇ ରାବଣ ମରିବା-କଥା" କହନ୍ତେ ରାବଣ ବନିତା ( ରାଣୀମାନେ ) ଆସି ବାତେ (ପବନରେ) ଉଡ଼ି ଆସି ପୁଷ୍ପଲତା ପରି ( ପୁଷ୍ପଲତା ସବୁ ପଡ଼ିଲାପ୍ରାୟ ) ରଣାଙ୍ଗଣେ ( ରଣଭୂମିରେ ) ସ୍ଥିତା "ହେଲେ" । ତହିଁ ( ତା ମଧ୍ୟରେ ) ବାଳାସିନ୍ନୀ ( ବାଳାଯୁବତୀ ) ବୃନ୍ଦ ବୃନ୍ଦ ପଦ୍ମିନୀଏ ( ପଦ୍ମିନୀଜାତୀୟା ସ୍ତ୍ରୀମାନେ ) ପଦ୍ମିନୀ ( ପଦ୍ମଲତାପ୍ରାୟ ହେଲେ ) ତାଙ୍କ ନୟନ ( ନେତ୍ରସବୁ ) ଫୁଲ୍ଲକମଳ ( ଫୁଟିଲା ପଦ୍ମଫୁଲ ପ୍ରାୟ ହେଲେ) । ଯହିଁ (ଯେଉଁ ନୟନ କମଳମାନଙ୍କରେ) ଲାଗି ରହିଛି ( ଲାଗି ରହିଥିବା ) ଡୋଳା "ସବୁ" ଭ୍ରମର ( କଳାଭ୍ରମର ପ୍ରାୟ ହେଲେ ) "ତହିଁରୁ" ଜଳ ( ଲୋତକ ) ମକରନ୍ଦ ରୂପରେ ବନ୍ଦେ ( ବନ୍ଧପଡ଼େ ) । "ଏ ପଦ ବ୍ୟର୍ଥ ସମସ୍ତ" "ସୋହାଗ ପଦ୍ମିନୀ ଜାତୀୟା ସ୍ତ୍ରୀମାନେ ନେତ୍ର କମଳରୁ ଲୋତକ ମୁଞ୍ଚିବା ସ୍ଫୁଟହେଲା" । "ପଦ୍ମରେ ମକରନ୍ଦ ଭ୍ରମର ଥାନ୍ତି ଏମାନଙ୍କ ଡୋଳା ଓ ଲୁହକୁ କବି ଭ୍ରମର ମକରନ୍ଦ କଳ୍ପନା-କରି ପଦ୍ମିନୀ ଲକ୍ଷଣ ଯୁକ୍ତକଲା" । ୨୦ ।

୨୧ଶ ପଦ—୧ ବାଳିକା ( ବାଳା ) ହସ୍ତିନୀଗଣ ( ହସ୍ତିନୀ ସମୂହ ) ହରି ( ସିଂହରୂପ ରାମଚନ୍ଦ୍ରଙ୍କ ) ଦାରୁଣ ( ନିଦାରୁଣ ଭାବ ଦେଖି ) ସ୍ତନ-

---

୧—କବି ଏଠାରେ ଅନୁରାଗିଣୀଗଣ ଅର୍ଥେ ବନିତା ଶବ୍ଦ ପ୍ରୟୋଗ କରିଛନ୍ତି । ବନିତା ଜନିତାତ୍ୟର୍ଥାନୁରାଗାୟାଂ ଚ ଯୋଷିତି ଇତ୍ୟମରଃ ।

୧—ନାଳିକା ବାଳୁକା ବାଳା ପିଞ୍ଛୋଲା କର୍ଣ୍ଣଭୂଷଣା ଇତି କୁମୁଦାକରଃ ।

ଯେନ ପ୍ରକାଶିତ ଉଛଧ୍ୱନ ସେ ତାଦନ୍ତରୁ । ବନୋଦ୍ଧମା । ବର୍ଗ ବର୍ଗ ଚନ୍ଦ୍ରିଣୀଏ ଥିଲେ । ବସୁଧାମଣ୍ଡିନୀ ଚନ୍ଦ୍ର ରଜନକରରେ ଗାନ୍ଧ ଗୃହଜାତ ନାଗ୍ରୀ ସାର୍ଥ ଲକ୍ଷଣ ହେଲେ । ୨୧ ।

---

କୁମ୍ଭରୁ ( କର କୁମ୍ଭରୂପ ସ୍ତନରୁ ) ହାର ମୋତି ( ମୋତିମାଳକୁ ) ଆକୁଳ "ହୋଇ" ଉତାରଣ ( ତ୍ୟାଗକଲେ ) । "ହସ୍ତିନୀଜାତୀୟା ସ୍ତ୍ରୀ ତା ମଧ୍ୟରେ ଯେତେଥିଲେ ସେମାନେ ବୈଧବ୍ୟଦଶା ଲଭ କେଲରୁ ମୋତିମାଳ କାଢ଼ି ଫୋପାଡ଼ି ଦେଲେ ଏହାଭାବ" । "ଏ ପଦ ସମସ୍ତରୂପକ ହେଲା" । ବିଶେଷ ( ବହୁତ ) ଶଙ୍ଖିନୀ "ଜାତୀୟା ସ୍ତ୍ରୀ" ଥିଲେ ସେ ଶଙ୍ଖିନୀ ( ମାଲୁଣୀଙ୍କପ୍ରାୟ ) ମାଳ ( ମାଳାରୂପ ମାଳଙ୍କୁ ) ଯେନ ୨ କଣ୍ଠ ( ଦର—ଶଙ୍ଖରେ ) ଅଦନ୍ତରୁ ( ଅଧୈର୍ଯ୍ୟରୁ ) ଉଛଧ୍ୱନ ପ୍ରକାଶିତ "କଲେ" । "ଶଙ୍ଖିନୀ ଜାତୀୟା ସ୍ତ୍ରୀମାନେ ବଡ଼ପାଟିରେ ବାହୁନଲେ ଏହାଭାବ" । ବନୋଦ୍ଧମା ( ବନୋଦବଶା ) ଚନ୍ଦ୍ରିଣୀଏ ( ଚନ୍ଦ୍ରିଣୀ ଜାତୀୟା ସ୍ତ୍ରୀମାନେ ) ଚନ୍ଦ୍ରିଣୀ ( ଚନ୍ଦ୍ରକାରଣୀ ସ୍ତ୍ରୀଙ୍କପ୍ରାୟ ) ୩ ବର୍ଗ ବର୍ଗ ( ବୃନ୍ଦବୃନ୍ଦ ) "ହୋଇ" ଥିଲେ ସେ ବସୁଧାମଣ୍ଡିନୀ ( ପୃଥ୍ୱୀମଣ୍ଡନା ହେବାରୁ—ଭୂମିରେ ଲେଟିବାରୁ ) ରଜନ-କର ( ଚନ୍ଦ୍ର କର୍ପୂର ) ରଜନକର ( ଧୂଳି ପଟଳରେ ) ଗାନ୍ଧ ( ଦେହକୁ ) ଚିତ୍ର "କଲେ" । "ଚନ୍ଦ୍ରିଣୀ ଜାତୀୟା ସ୍ତ୍ରୀମାନେ ପୂର୍ବରେ କର୍ପୂରରେ ଗାନ୍ଧ ଚିତ୍ର କରଥିଲେ ବର୍ତ୍ତମାନ ଧୂଳିରେ ଚିତ୍ରକଲେ ଏହାଭାବ" । ୪ ଗୃହଜାତ ନାଗ୍ରୀ ( ପଦ୍ମିନୀ ହସ୍ତିନୀ ଶଙ୍ଖିନୀ ଚିତ୍ରିଣୀଙ୍କ ) ଲକ୍ଷଣ ସାର୍ଥ ( ଯୁକ୍ତ ) ହେଲେ "ସିଂହର ଆଘାତରେ ଗଜମୁକ୍ତା ତ୍ୟାଗକରେ ଏଠାରେ ରାମରୂପୀ ସିଂହ ରାବଣରୂପ ଗଜକୁ ମାରିବାରୁ ହସ୍ତିନୀ ମୁକ୍ତାମାଳ ତ୍ୟାଗକଲେ ଶଙ୍ଖିନୀଙ୍କ କଣ୍ଠ ଶଙ୍ଖପ୍ରାୟ ଶବ୍ଦକଲା" ଏହି ତାତ୍ପର୍ଯ୍ୟ । ୨୧ ।

---

୨—କଣ୍ଠ ଦର ଅର୍ଥ କରିବାରେ ସାଧିବସାନା ହେଲା ତଦୁକ୍ତ ମଲଂକାରେ—

ଲଜ୍ଜାମୂଳେ ଯାନୋ ହରଣ ପରସ୍ତାଣୋ ଭ୍ରମକରଃ ।

ସ୍ଫୁରଦ୍ରବିକାରବିହତ ଜଳଧାରା କୁବଳୟାଦତ ।

୩—ବୃନ୍ଦଭେଦାଃ ସମେ ବର୍ଗସଂଘସାର୍ଥୌ ତୁ ଜନ୍ତୁଭ ରତ୍ୟମ୍ବରଃ ।

୪—ପଦ୍ମିନୀ ପଦ୍ମଗନ୍ଧାଚ ମଦଗନ୍ଧା ଚ ହସ୍ତିନୀ ।

ଶଙ୍ଖିନୀ କ୍ଷୀରଗନ୍ଧାଚ ମୀନଗନ୍ଧାଚ ଚିତ୍ରିଣୀ । ଇତ୍ୟ ।

ବିଜୁଳୀ ରୁଚି ରୁଚିର ଏ ଯେନ ଅତି ଅଧୀର ହରିଣୀ ଲକ୍ଷ, ଭ୍ରମର ବାଳ ଚଳାଇଁ । ବାଣିଜ ହାହାପଦକ କୃତରୁ ସୁନାଙ୍ଗ ଠେକ ବାଳା କ୍ଷିତିରେ କନ୍ଦୁକ କୁଚ ଖେଳାଇ । ବୋଲାଇଲେ ସେ । ବେଶରେ ମହିଷୀ ହେବଦନରେ । ବିଗ୍ରହ ମଜ୍ଜାଇ ଦେଇ ଘନରସଦେ, ଆଶାପୂରି ମହାସନ୍ତାପିତ ହୋଇ ସେ ନିରନ୍ତରେ । ୨୨ ।

---

୨୨ଶ ପଦ—ବିଜୁଳୀ [2]ରୁଚି ( ବିଜୁଳୀ ପ୍ରଭାପ୍ରାୟ ) [1]ରୁଚିର ( ଶୋଭନା ), ଏ ଯେନ ( ବିଜୁଳୀ ପ୍ରଭା ଯେନବାରୁ ) ଅତି ଅଧୀର ( ଚଞ୍ଚଳା ବା କାତର ) ହରିଣୀଲକ୍ଷ ( ମୃଗୀ ସଦୃଶରେ ) ବାଳଭ୍ରମର ଚଳାଇଁ ( ମୃଗୀର ଚଉଁରୀ ହଲନ୍ତି ପ୍ରାୟ କେଶମୁକୁଳା ହେବାରୁ ହଲୁଛି ), ବାଣିଜ ( ବଣିକର କର୍ମପ୍ରାୟ ) ହା ହା ପଦକ ( ହା ନାଥ ହା ନାଥ "ଏହି" [3]ପଦକ ସୁବର୍ଣ୍ଣପଦକ ହେଲା ତାହା ) କୃତରୁ ( କରିବାରୁ ) ସୁନାଙ୍ଗ ( ମନ୍ଦୋଦରୀ ) "ସୁନାର ବଣିଆଚି" ଠେକ "ରଖିଲ" । ବାଳା ( ବାଳିକା ) କ୍ଷିତିରେ ( ଭୂମିରେ କନ୍ଦୁକ ( ଖେଳନା ପଦାର୍ଥ ଯେନ ) ଖେଳାଇ ( ଖେଳାଇଲା ପ୍ରାୟ ) ଏ ବାଳା କ୍ଷିତିରେ "ଲୋଟି" କୁଚ କନ୍ଦୁକ ଖେଳାଇ ( ଖେଳାଇଲ ) । "ରାବଣ ଅଭାବରୁ ବିଜୁଳୀପ୍ରାୟ ଚଞ୍ଚଳା ଏବଂ ହରିଣୀ-ପ୍ରାୟ ମୁକୁଳିତ ଚଳିତ କେଶା ହୋଇ ହା ନାଥ ହା ନାଥ କହି ଭୂମିରେ ପଡ଼ିଗଡ଼ିଲ ଏହି ଫଳିତାର୍ଥ" । ବେଶରେ ( ବେଶଗତ ) ସେ ( ମନ୍ଦୋଦରୀ ) [4]ମହିଷୀ ( କୃତାଭିଷେକା—ପାଟ ମହାଦେଈ ) ବୋଲାଇ, [5]ମହିଷୀ ( ମଇଁଷି ) ନରେ ( ଜଳରେ ) ବିଗ୍ରହ ( ଦେହକୁ ) ମଜ୍ଜାଇ ( ବୁଡ଼ାଇ ) ଦେଇ ନିରନ୍ତରେ ( ସର୍ବଦା ) ମହାସନ୍ତାପିତ ( ଅତ୍ୟନ୍ତ ତାପଯୁକ୍ତ )

---

୧—ସ୍ୟୁଃ ପ୍ରଭାରୁଗ୍ ରୁଚିସ୍ତ୍ୱିଡ୍ ଭାଭାଶ୍ଛବି ଦ୍ୟୁତିଦୀପ୍ତୟଃ ଇତ୍ୟମରଃ ।

୨—ସୁନ୍ଦରଂ ରୁଚିରଂ ଚାରୁ ସୁଷମଂ ସାଧୁ ଶୋଭନମିତ୍ୟପି ।

୩—ପଦ ଏବ ପଦକଃ ସ୍ୱାର୍ଥେ କ ପ୍ରତ୍ୟୟଃ ।

୪—କୃତାଭିଷେକା ମହିଷୀତ୍ୟମରଃ ।

୫—ଲୁଲାୟୋ ମହିଷୋ ବାହଦ୍ୱିଷତ୍କାସରସୈରିଭା ଇତ୍ୟମରଃ ।
ମହିଷସ୍ୟ ସ୍ତ୍ରୀ ମହିଷୀ ।

ବର ରତନ ଅୟନ ପତନ ଦେଖି ନୟନ ମନ୍ଦୋଦରୀ କ
ଉଦିତ୍ର ଧଇଲା ତୋଳି । ବୋଇଲା ଶୋଭୃଙ୍ଗୀ ଭଙ୍ଗି ବାଣୀକ
ଏଦଶା ରଙ୍ଗୀ ଦୀନ ହେଲୁଁ ସୂର୍ଯ୍ୟବଂଶୀ ଉଦିତେ ଝଳି । ବୋଧ
ଅର୍ଥେ । ବଭୀଷଣ ପ୍ରସାରେ ଭରିଣ । ବୋଲ ଯା ସତ କାମିନୀ
ତୁଟିଲା ପାପରଜନୀ ଦିବସ ପଦକୁ ଘେନ ରଚ ସୁଗତି । ୨୩ ।

---

ହୋଇ ଘନରସଦେ ( ମେଘଜଳକୁ ) ଆଶାସ୍ଥୀ ( ଆଶାକରେ ) "ଏ-
ମନ୍ଦୋଦରୀ" ସ୍ୱେଦନୀରେ ( ଝାଳରେ ) ବଗ୍ରହ ( ଦେହ ) ମଜ୍ଜାଇ ( ବୁଡ଼ାଇ )
ଦେଇ ନିରନ୍ତରେ ( ସର୍ବଦା ) ସନ୍ତାପିତ ( ଅତ୍ୟନ୍ତ ଦୁଃଖିତ ) ହୋଇ
ଘନରସଦେ (ନିବଡ଼ ଶୃଙ୍ଗାରରସ ଦେବା ବିଷୟରେ) ଆଶାସ୍ଥୀ (ଆଶାକଲା) ॥

୨୩ଶ ପଦ୍ୟ—କ ( କବି ଏମନ୍ତ ବର୍ଣ୍ଣିଲେ ) ଦଶଦ୍ର "କନ" ଅୟନ
ପତନ ( ବାଟରେ ପଡ଼ିଥିବା ) ବରରନ୍ନ ( ନୀଳରନ୍ନ ) ନୟନେ ( ନୟନରେ )
ଦେଖି ତୋଳି ଧଇଲା "ତ୍ରାସ୍ୟ" ମନ୍ଦୋଦରୀ "ନୀଳରନ୍ନ ତୁଲ୍ୟ ରାବଣକୁ"
ନୟନରେ ଦେଖି ତୋଳି ଧଇଲା । ପୁଣି ସେ ଶୋଭାଙ୍ଗୀ ( ସର୍ବାଙ୍ଗସୁନ୍ଦରୀ )
ବୋଇଲା "ହେ ନାଥ" ବାଣୀକ ( ଅମ୍ଭ ମନାକରିବା କଥାକୁ ) ଭଙ୍ଗି
( ନ ମାନି ) ଏ ଦଶା ( ଦଶମ ଦଶା—ମରଣ ଦଶାରେ ) ରଙ୍ଗୀ ହେଲୁ ମଲୁ
ଏହି ଭାବ । ସୂର୍ଯ୍ୟବଂଶୀ ( ରାମଚନ୍ଦ୍ରଙ୍କ ) ଝଳି ( ତେଜ ) ଉଦିତେ ( ଉଦିତ
ହୋଇଅନ୍ତେ ) "ଆମ୍ଭେ ଦୀନ" ( ଦୁଃଖୀ ହେଲୁଁ ) । "ଏପରି ମନ୍ଦୋଦରୀ
ବୋଲନ୍ତେ" ବିଭୀଷଣ ବୋଧ ଅର୍ଥେ ( ମନ୍ଦୋଦରୀଙ୍କ ବୋଧ କରିବାକୁ )
ଭାରତୀ ପ୍ରସାରେ ( କହିବାକୁ ଲାଗିଲା ) "ଗୋ କାମିନୀ" ଯା ବୋଲ ( ସୂର୍ଯ୍ୟ-
ବଂଶୀପ୍ରଭୁ ଉଦିତ ହେବାରୁ ଆମ୍ଭେ ଦୀନ ହେଲୁ ଯାହା କହିଲ ) "ତାହା"
ସତ । "ରଜନୀ ତୁଟିଲା ଦିନ ହୁଏ ଏବେ" ପାପ ରଜନୀ ( ପାପନିଶା )
ତୁଟିଲା ଦିବସ ( ପୁଣ୍ୟ ଦିବସ ) "ହେଲା" ପଦକୁ ଘେନ "ଅନ୍ତଃପୁରକୁ"
ସୁଗତି ରଚ ( ଗମନ କର ) । "ଅନ୍ଧକାର ରାତ୍ରି ତୁଲ୍ୟ ପାପ ରାବଣ ନାଶଗଲା
ପୁଣ୍ୟ ଦିବସ ତୁଲ୍ୟ ସୂର୍ଯ୍ୟବଂଶୀ ରାମ ଉଦିତ ହୋଇଲେ ଏବେ ଅନ୍ତଃପୁରକୁ ସୁଖେ
ଚାଲିଯାଅ ଏହି ତାତ୍ପର୍ଯ୍ୟାର୍ଥ" । ୨୩ ।

ବନିତାଗଣେ ପଣ୍ଡିତା ଦେବର ବାଣୀ ବଦିତ ଶ୍ରୁତି ପ୍ରଶ୍ନରେ ତୋଷିତା ଗଲେ ଭବନେ । ବନ୍ଧୁବର୍ଗ ରୁଣ୍ଡ ବଣେ ଦଶାନନକୁ ରଭସେ ଦହନ ସଂଯୋଗ ଶେଷେ ମଜ୍ଜିଲେ ସ୍ନାନେ । ବଇକୁଣ୍ଠେ ବଳୟ ପାଶେ ପ୍ରବେଶ ଜୟ ! ବୈଦେହୀ ଶ୍ରୀରାମ ଶୋକ ତେଜି ନେଲେ କି ଅଶୋକ ବନେ ଛନ୍ତି ପରସ୍ପରେ କଥା ଉଦୟ । ୨୪ ।

ବଇରଭାବେ ନିବଧି ମୋକ୍ଷଦାତା ଦୟାନିଧି ସ୍ୱବଲ୍ଲଭିରେ ସଂପାଦ ଯେତେ କଷଣ । ବସି ବେନି ପ୍ରଶଂସିତ ସୁଜ୍ଞଜନମାନେ ଚରିତ୍ର ନିଷ୍କଳ-

---

୨୪ଶ ପଦ—ବନିତାଗଣେ ( ବନିତାଙ୍କ ମଧ୍ୟରେ ) ପଣ୍ଡିତା ( ବିଜ୍ଞା ) "ମନ୍ଦୋଦରୀ" ଦେବର ( ଦିଅର ବିଭୀଷଣ ) ବଦିତ ( ପ୍ରକାଶିତ ) ବାଣୀ ( ବଚନ ) ଶ୍ରୁତି ( ଶ୍ରବଣରେ ) ପ୍ରଶ୍ନରେ ( ପ୍ରଶ୍ନର ଉତ୍ତରରେ ) ତୋଷିତା ( ଆନନ୍ଦିତା ) "ହୋଇ" ଭବନେ ( ଅନ୍ତଃପୁରକୁ ) ଗଲେ । "ତଦନ୍ତେ" ବନ୍ଧୁବର୍ଗ ରୁଣ୍ଡ ବଣେ ( ଏକାଠି ହୋଇ ତାଙ୍କ ଆଦ୍ଧ୍ୱରରେ ) ଦଶାନନକୁ "ରଖି" ରଭସେ ( ଶୀଘ୍ର ) ଦହନ ( ଅଗ୍ନି ) ସଂଯୋଗ "କରି" ଶେଷେ ( ଦହନ ଶେଷରେ ) ସ୍ନାନେ ମଜ୍ଜିଲେ ( ସ୍ନାନକଲେ ) । ବଇକୁଣ୍ଠେ ( ବୈକୁଣ୍ଠରେ ) ବଳୟ ( କୁମ୍ଭକର୍ଣ୍ଣର ) ପାଶେ ( ପାଖରେ ) ଜୟ ( ରାବଣ ) ପ୍ରବେଶ "ହେଲ" । "କୁମ୍ଭକର୍ଣ୍ଣ ମରିଯାଇଁ ବୈକୁଣ୍ଠରେ ଦ୍ୱାରୀ ହୋଇଥିଲ ପଛେ ରାବଣ ମରିବାରୁ ଯାଇଁ ତା ପାଖରେ ମିଳିଲି ଏହା ଭାବ" । "ବଳୟ ଜୟକୁ ଦେଖି ପଚାରିଲେ" ଶ୍ରୀରାମ ଶୋକ ତେଜି ବୈଦେହୀ (ସୀତାଙ୍କୁ) କି ନେଲେ କି ? "ଜୟ କହିଲ" ଅଶୋକବନେଛନ୍ତି ( ଅଶୋକ ବନରେ ଅଛନ୍ତି ) । "ଏମନ୍ତେ" ପରସ୍ପରେ କଥା ଉଦୟ ( ପରସ୍ପରରେ କଥାବାର୍ତ୍ତା ହେଲେ ) । ୨୪ ।

୨୫ଶ ପଦ—ଦୟାନିଧି ( ରାମ ) ନିବଧି ( ତିନି ପ୍ରକାରରେ ) ମୋକ୍ଷଦାତା "ଅଟନ୍ତି ଦେଖ" ବଇରି ଭାବେ ( ଶତ୍ରୁ ଭାବରେ ) ସ୍ୱବଲ୍ଲଭିରେ ( ଆପଣାର ପ୍ରିୟାଠାରେ ) ଯେତେ କଷଣ ( କଷ୍ଟ ) ସଂପାଦ ( ଦେଲାଇଁ ) "ତାହା ନ ଘେନି ଆମ୍ଭଙ୍କୁ ମୋକ୍ଷ ଦେଲେ କାହିଁକି ନା ସେ ନିବଧି ମୋକ୍ଷଦାତା, ତାଙ୍କଠାରେ ବୈରଭାବ ଭକ୍ତଭାବ ସେବକ ଭାବ ଦେଖାଇଲେ ମୁକ୍ତି

କରଣ ଚନ୍ଦ୍ର କ ପ୍ରଭୁପଦ । ବରଗିଲେ । ବଶ୍ରବାସୁତ କର ଛିତୀଶ । ଧୀର ଶ୍ରୀରାମ ଅନୁଜ ସହିତେ ବାନରରାଜ ବାଳସୁତ ବାତାତ୍ମଜ ଲଙ୍କାପ୍ରବେଶ ।୨୫।

ବାରତା ମନ୍ଦୋଦରୀଙ୍କରେ ସଲକ୍ଷଣ ଅଙ୍ଗଦରେ ଯୁକ୍ତ ହୋଇଣ ସୁଗ୍ରୀବେ ଗନ୍ଧବହଜେ । ବିଭୀଷଣ ଚୂଡ଼ଦେବ ଇନ୍ଦ୍ର ପଦରେ ବସିବ ବାମା ଗୁରୁଧାରାପଗା ତୁମ୍ଭେ ହେବ ଯେ । ବୋଲୁଛନ୍ତି । ବୋଲି ଅନ୍ତନ୍ତି ଅଯୋଧ୍ୟାରାଜେ । ବୋଲ ସପତ୍ନୀସହରେ ସଲକ୍ଷଣ ଅଙ୍ଗଦରେ ଯୁକ୍ତ ହୋଇଣ ସୁଗ୍ରୀବେ ଗନ୍ଧବହ ଯେ ।୨୬।

---

ଦଅନ୍ତୁ ଏଣୁ ଆମ୍ଭେ ବୈକୁଣ୍ଠବ ଦେଖାଇବାରୁ ମୋକ୍ଷଦେଲେ ଏମନ୍ତେ" ବେନ ଭାଇ ବସି ପ୍ରଶଂସିତ ( ପ୍ରଶଂସା କଲେ ) । ହେ ସୁଜନମାନେ ଚିତ୍ତ ନିଶ୍ଚଳ କରିଣ ( ମନ ସ୍ଥିର କର ) କ ( ଅନବଚ୍ଛିନ୍ନ ) ପ୍ରଭୁପଣ ( ପ୍ରଭୁ ପଦକୁ ) ଚନ୍ତ ( ସ୍ମରଣ କର ) । ଧୀର ଶ୍ରୀରାମ ବଶ୍ରବାସୁତ ( ବିଭୀଷଣକୁ ) ଛିତୀଶ ( ରାଜା ) କରି ( କରିବା ପାଇଁ ) ଅନୁଜ ( ଲକ୍ଷ୍ମଣଙ୍କ ) ବାନର ରାଜ ( ସୁଗ୍ରୀବ ) ବାଳସୁତ ( ଅଙ୍ଗଦ ) ବାତାତ୍ମଜ ( ହନୁମାନ୍ ) ସହିତେ ( ଏ ତିନଙ୍କ ସହିତରେ ) ଲଙ୍କା ( ଲଙ୍କାପୁରରେ ) ପ୍ରବେଶ "ହେଲେ" । ୨୫ ।

୨୬ଶ ପଦ— ଅଙ୍ଗଦରେ ସୁଗ୍ରୀବେ ଗନ୍ଧବହଜେ ( ଅଙ୍ଗଦ ସୁଗ୍ରୀବ, ହନୁମାନ୍ ଏ ତିନିରେ ) ଯୁକ୍ତ ହୋଇଣ ୧ ସଲକ୍ଷଣ ( ଲକ୍ଷଣବନ୍ତ ଲକ୍ଷ୍ମଣ ) "ଲଙ୍କାକୁ ଯାନ୍ତେ" ମନ୍ଦୋଦରୀରେ ( ମନ୍ଦୋଦରୀ ନିକଟରେ ) "ଏହି" ବାରତା "ନେଇ ମୁକୁସୁଲୀମାନେ ଦେଲେ" ଚୂଡ଼ଦେବ ( ରାବଣ ପ୍ରାପ୍ତ ) ବିଭୀଷଣ ଇନ୍ଦ୍ରପଦରେ ( ଇନ୍ଦ୍ର ପ୍ରାପ୍ତ ସିଂହାସନରେ ) ବସିବ, 'ସମସ୍ତ" ବାମା ତୁମ୍ଭେ ଚାରୁଧାରା ( ଇନ୍ଦ୍ରାଣୀ ପ୍ରାପ୍ତ ) "ତାଙ୍କ ରାଣୀ" ହେବ । ଅଯୋଧ୍ୟା ରାଜେ ( ରାମ ) ବୋଲି ଅଛନ୍ତି 'ଏହା ଏମାନେ" ବୋଲୁଛନ୍ତି । ସପତ୍ନୀ ସହରେ (ସଉତୁଣୀଙ୍କ ସହିତ) ସ ଲକ୍ଷଣ ( ଅଥବା ଲକ୍ଷଣରେ ) ୨ ଅଙ୍ଗଦରେ

---

୧—ଭରଣା ଭରତଂ ନାମ ଲକ୍ଷ୍ମଣଂ-ଲକ୍ଷ୍ମଣାନ୍ୱିତଂ ।
ଶତ୍ରୁଘ୍ନଂ ଶତ୍ରୁହନ୍ତାରମେବଂ ଗୁରୁରଭାଷତ । ଇତି ବାଲ୍ମୀକିରାମାୟଣେ ।
୨—କେୟୂର ମଙ୍ଗଦଂ ତୁଲ୍ୟେ ଇତ୍ୟମରଃ ।

ବିଳୋଡ଼ିଲେ ନାହିଁ ଆନେ ବିବେକୀ ପ୍ରଭୁସମାନେ ନାହିଁ ବସ ସିଂହାସନେ ଅଭିଷେକରେ । ବଢ଼ିବ ସତ୍ତାସମ୍ପଦ ଅପୂର୍ବ ନ ଘେନ ହୃଦ ରହିଲା ଙ୍ଗିଁ ଅହଲ୍ୟା ତାରୁଁ ସଂସାରେ । ବାଳଜାଯ୍ୟା । ବିଳ-ସିଲ୍ ସୁଗ୍ରୀବର ଜାନୁ । ବଳାଇ ମନ ଏଗିରେ ନନନ୍ଦା କଥା ବିଗ୍ରହରେ ସେ ସ୍ଥାନେ ପ୍ରବେଶ କର ସୁବେଶ ତନୁ ।୨୭।

ବନ୍ଦାଇ ସୁମିତ୍ରାସୁତ ତାରାଭବ ରାମମିତ୍ର ଆଞ୍ଜନେୟ ସୁହରଷ ଯୁତ ସମେଳେ । ବୃହାଇଣ ରତ୍ନକୋଷ ରଥଆଦି ଗଜ ଅଶ୍ୱ ସ୍ୱଦାରା-

ଯୁକ୍ତ ହୋଇଣ ( ବାହୁରେ ସୁବର୍ଣ୍ଣର ତାଡ କଙ୍କଣ ଆଦି ଘେନ ) ସୁଗ୍ରୀବେ ( ଗ୍ରୀବା ଦେଶରେ ) ଗନ୍ଧବନ୍ଧ ( ଚନ୍ଦନ ) ବଦ୍ଧ ( ବୋଲିହୁଅ ) ବୋଲ୍ ବୋଲ୍ ( ତାଙ୍କୁ ତୁମ୍ଭେ ଯାଇ ଏ କଥାମାନ କହ ) । ୨୬ ।

୨୭ଶ ପଦ—"ଏହା ଶୁଣି ସଜତ୍ରୁଣୀଏ ମନ୍ଦୋଦରୀଙ୍କ କହିଲେ" ଆନେ ( ଆନ ପୁରୁଷ ସଙ୍ଗେ ) ବିଳୋଡ଼ିଲେ ( ବିଳସାଇଲେ ) ନାହିଁ "ଯାହା ଏଣୁ" ପ୍ରଭୁ ସମାନେ ( ରାମଙ୍କ ତୁଲ୍ୟ ) ବିବେକୀ ( ବିଗ୍ରହବନ୍ତ ) ନାହିଁ ( ଆଉ କେହି ନାହିଁ ) । ସିଂହାସନରେ ( ଅଭିଷେକରେ ଯାଇଁ ) ବସ । ହୃଦ ( ହୃଦୟ ମଧ୍ୟରେ ) ଅପୂର୍ବ ( ଅକାର ପୂର୍ବ ) ସତ୍ତା ( ସତ୍ତାର ) ସମ୍ପଦ ବଢ଼ିବ, "ଏହା କଲେ ଅସତ୍ତା କହିବେ ଏହିଭାବ" ନ ଘେନ ( ଏହା ନ ଙ୍କାଭର ) ଅହଲ୍ୟା ( ଗୌତମଋଷି ପତ୍ନୀ ) "ବିଂଭିଗ୍ରଣୀ ହୋଇଥିଲା ତାକୁ" ତାରୁଁ ( ଉଦ୍ଧାର କରିବାରୁ ) ସଂସାରେ "ରାମଙ୍କ" ଙ୍ଗିଁ ରହିଲା । ବାଳଜାଯ୍ୟା ( ତାରା ) ଏଗିରେ ( ରାମଙ୍କର ଏହି କଥାରେ ) ମନ ବଳାଇ ସୁଗ୍ରୀବର ଜାନୁ ବିଳସିଲା ( ଜାନୁରେ ବସିଲା ) । ନନନ୍ଦା ( ନଣନ୍ଦ ସୂର୍ପଣ-ଖାର ) କଥା ( ରାମଙ୍କ କଥା ନ ମାନି ନାସା କର୍ଣ୍ଣ ଛେଦନ ହେବା କଥାକୁ ) ବିଗ୍ରହରେ ( ନ ମାନିଲେ ହେହିପରି ବିଗ୍ରହ କରନ୍ତି ଜାଣି ) "ଏଣୁ" ତନୁ ( ଦେହକୁ ) ସୁବେଶ କର ସେ ସ୍ଥାନେ ( ଅଭିଷେକ ସ୍ଥାନରେ ) ପ୍ରବେଶ "ହୁଅ" । ୨୭ ।

୨୮ଶ ପଦ—"ସଜତ୍ରୁଣୀଙ୍କ କଥା ମାନି ମନ୍ଦୋଦରୀ ସୁବେଶ ହୋଇ ବିଭୀଷଣର କୋଳରେ ବସନ୍ତେ" ତାରାଭବ ( ଅଙ୍ଗଦ ) ରାମମିତ୍ର ( ସୁଗ୍ରୀବ ) ଆଞ୍ଜନେୟ ( ହନୁମାନ ) ସୁ ହରଷଯୁକ୍ତ ( ଅତିଆନନ୍ଦରେ ) ସମେଳେ

ସନ୍ଧ ସୁବେଳେ ଗଲେ ସୁବେଳେ । ବିଭୁ ତହିଁ । ବିଲୋକ ମୟୂଜା ସୁଶୋଭିତ । ବିଗୃର ଏତେଡ଼ ଆରମ୍ଭା ଥାଉଁ ରସିଲ ଏ ରମ୍ଭାଭୋଗକୁ ରାବଣ ଯାହା ମଧୁପ ସତ । ୨୮ ।

ବିଶ୍ରେ ଏ ସୁରଭି ଅଙ୍ଗ କାନ୍ତି ଅଙ୍ଗୁଳି ସାରଙ୍ଗ ଗମନ ଅଳକା

( ମିଳିତ ଦୋଷ , କ୍ରୁମିଥା ସୂତ ( ଲକ୍ଷ୍ମଣ ) "ବିଭୀଷଣ ମନ୍ଦୋଦରୀଙ୍କି" ଦେଇଲେ ( ଅଭିଧେଜ ବନ୍ଦାପନାଦ କଲେ ) "ତଦନ୍ତେ ବିଭୀଷଣ" ସ୍ୱଦାର ( ମନ୍ଦୋଦରୀ ) ସନ୍ଧ (ସନ୍ଧିତରେ) ନ୍ୟସ୍ତ ଗଜ ଅଂଶ ଆଦି "ଗହଣରେ" ରତ୍ନ କୋଷି ( ରତ୍ନଭଣ୍ଡାର ) ବୃନ୍ଦାଇଣ ( ଲୋକଙ୍କ ହସ୍ତରେ ଦେଇ ) ସୁବେଳେ ( ଶୁଭବେଳାରେ ) ସୁବେଳେ ( ସୁବେଳ ପର୍ବତକୁ ) "ପ୍ରଭୁ ଦର୍ଶନାର୍ଥେ" ଗଲେ । ତହିଁ ( ସେହି ପର୍ବତରେ ଥିବା ) ବିଭୁ (ରାମ) ମୟୂଜା ( ମନ୍ଦୋଦରୀର ) ସୁଶୋଭିତ ( ସୌନ୍ଦର୍ଯ୍ୟ ) ବିଲୋକ ( ଦେଖି କରି ) ବିଗୃର ( ବିଗୁଣିଲେ ) "ଶୋଭାରେ" ଏତେଡ଼ ଆରମ୍ଭା ( ଅତି ସୁନ୍ଦରୀ ) ଥାଉଁ ( ଥାନ୍ତେ ) ଏ ( ରାବଣ ). ଯାହା ରମ୍ଭା "ଅପ୍ସରା" ଭୋଗକୁ ରସିଲ ( ଇଚ୍ଛିଲା ) "ଏଥୁ ଜଣାଯାଏ ୧ ମଧୁପ ( ଭ୍ରମର ସେ ) "ଏହା" ସତ (ମିଛ ନୁହେଁ) "କାରଣ ମଧୁପ ମଦ୍ୟପକୁ ଓ ଭ୍ରମରକୁ କହନ୍ତି, ରାବଣ ତ ମଦୁଆ ଏବଂ ଭ୍ରମରତୁଲ୍ୟ ରସିକ, ଭ୍ରମର ସବୁଫୁଲରେ ବସେ ବାରଣ ତାର କିଛି ନ ଥାଏ, ମଦୁଆର ସେହିପରି ଭଲ ମନ୍ଦ ବାରଣ ନ ଥାଏ ଏହି ତାତ୍ପର୍ଯ୍ୟାର୍ଥ । ୨୮ ।

୨୯ଶ ପଦ—ବିଶ୍ୱେ ( ସଂସାର ମଧ୍ୟରେ ) ଏ ( ମନ୍ଦୋଦରୀର ): ୧ ସୁରଭି ୨ ଅଙ୍ଗ ( ମନୋରମ ) ୩ କାନ୍ତି ସୁରଭି ( ଚମ୍ପାପରି ) ଅଙ୍ଗୁଳି

୧—ମଧୁ ମଦ୍ୟେ ପୁଷ୍ପରସେ ବସନ୍ତେ ଚୈତ୍ରକେ ମଧୁଃ ।
୧—ସୁରଭିଃ ଶଲ୍ଲକୀ ମାତୃଭେଦ୍ରୁ ଗୋଷୁ ଚ ସ୍ତ୍ରିୟାଂ ।
ଚମ୍ପକେ ଚ ବସନ୍ତେ ଚ ତଥା ଜାତିଫଲେ ପୁମାନ୍ ।
ସ୍ୱର୍ଣ୍ଣେ ଗନ୍ଧଫଲେ କ୍ଲୀବଂ ସୁଗନ୍ଧ କାନ୍ତଯୋ ସ୍ତ୍ରିଷୁ ।
୨—ଅଙ୍ଗକୁ ଏରୂପେ ବର୍ଣ୍ଣନ କରାଯାଏ ଯଥା ଅଲଂକାରେ—
ଚନ୍ଦ୍ରକଳାମୃକ ଧାମଣିମ୍ପଂ ବିଦ୍ୟୁଲ୍ଲତା କନକ ଲତାଚ ।
ଦମନକ କାଞ୍ଚନ ଯଷ୍ଟି ରୂପୈରେଭି ର୍ଯୌଷିଦଙ୍ଗବର୍ଣ୍ଣ୍ୟା ।
୩—କାନ୍ତିବର୍ଣ୍ଣନ—କୌଚନାସ୍ୱର୍ଣ୍ଣବିଦ୍ୟୁଦ୍ଭିର୍ହରିଦ୍ରାଭିର୍ବରାଟକୈଃ ।
ଚମ୍ପକୈର୍ହେମତେ କନ୍ୟା ବର୍ଣ୍ଣ୍ୟତେ ତତ୍ତନୋଦ୍ୟୁତିଃ ।

କଣ୍ଠ ନେତ୍ର ଭ୍ରୂଲତା । ବିଶେଷ ହରି ମନକୁ ମୁଖ ସମ ସେ ପୂର୍ଣ୍ଣିକୁ
ନାସା ଓଷ୍ଠ ମଧ୍ୟ ବେଣୀ ତଥା ରାଜତା । ବିଡ଼ମ୍ବନ । ବହ୍ନିଲ ମୋତେ
ସୁନ୍ଦରୀ କହ୍ନ । ବୋଧିଲେ ପୁଣ୍ଡରୀକାକ୍ଷ ତାର କର ଧରି ମୁଖ୍ୟ
ସାଧ୍ୱୀରେ ଲେଖା ପ୍ରତ୍ୟକ୍ଷ ହୋଇବୁ ତୁହ୍ନ ।୨୯।

---

ସୁରଭି ( ଗନ୍ଧଫଳ ପ୍ରାପ୍ତ ) ଗମନ ( ଗତି ) ୪ସାରଙ୍ଗ ( ମତ୍ତହସ୍ତୀ ଗତି-ପ୍ରାପ୍ତ ) ଅଳକା ( ଚୂର୍ଣ୍ଣକୁନ୍ତଳା ) ସାରଙ୍ଗ ( ଭ୍ରମରପରି ) କଣ୍ଠ ସାରଙ୍ଗ ( କୋକିଳ ସ୍ୱରପରି ) ନେତ୍ର ସାରଙ୍ଗ ( କୁରଙ୍ଗ ନେତ୍ରପରି ) ଭ୍ରୂଲତା ସାରଙ୍ଗ ( କାମ ଧନୁପ୍ରାପ୍ତ ) ମୁଖ "ଯେ" ସେ ବିଶେଷ ( ବିଶେଷଭାବରେ ) ହରିପୂର୍ଣ୍ଣିକୁ ( ପୂର୍ଣ୍ଣଚନ୍ଦ୍ର ପ୍ରାପ୍ତ ) ସମ ( ତୁଳନାରେ ) ମନକୁ ହରି ( ହରଣ-କରେ ) ନାସା ହରି ( ଶୁକପକ୍ଷି ନାସାପ୍ରାପ୍ତ ) ତଥା ( ସେହିପରି ମନକୁ-ହରଣକରେ ) ଓଷ୍ଠ ହରି ( ବାଳହର୍ଷି ପ୍ରାପ୍ତ ) "ମନକୁ ହରଣକରେ" । ମଧ୍ୟ ( କଟୀ ) ହରି ( ସିଂହ କଟୀପ୍ରାପ୍ତ ) "ମନକୁ ହରଇ" ବେଣୀ ହରି ( ସର୍ପପ୍ରାପ୍ତ ) ରାଜନ୍ତା ( ଶୋଭନ୍ତି ) "ଅଛେ" । "ଏମନ୍ତ ରାମଙ୍କ ମୁଖୁ ଶୁଣି" ସୁନ୍ଦରୀ ( ମନ୍ଦୋଦରୀ ) କହ୍ନ ( କହିଲା ) ମୋତେ ବିଡ଼ମ୍ବନ ବହ୍ନିଲ ( ଅଚଳାଳ ) । ପୁଣ୍ଡରୀକାକ୍ଷ ( ରାମ ) ତାରକର ଧରି ବୋଧିଲେ ପ୍ରତ୍ୟକ୍ଷ ( ସାକ୍ଷାତରେ ) ମୁଖ୍ୟ ( ଶ୍ରେଷ୍ଠ ) ୫ ସାଧ୍ୱୀରେ ( ପତିବ୍ରତାଙ୍କ ମଧ୍ୟରେ ) ତୁହ୍ନ ଲେଖା ହୋଇବୁ । ୨୯ ।

---

୪—ସାରଙ୍ଗଃ ପୁଂସି ହରିଣେ ଶ୍ରୁତକେଚ ମତଙ୍ଗଜେ । ଶବଲେ ତ୍ରିଷୁମେଦାନୀ ।
ଶାରଙ୍ଗ ଷ୍ଟଚକ୍ରେ ଭୃଙ୍ଗେ କୁରଙ୍ଗେ ଚ ମତଙ୍ଗଜେ ଇତି ବୈଜୟନ୍ତୀ ।
ଚନ୍ଦ୍ରେ ହିଙ୍କେ ଭ୍ରମରେଽପି ଚନ୍ଦ୍ରନ ପିକେ ସିଂହେ ମରୂଦ୍ଧିବାହକେ ।
କର୍ପୂରେ ଜଳଦେ ଶୁଚୌ ଚ କଠନେ ଦୃପେ ଘୃରେ ସାଦ୍ବକେ ।
ସ୍ତ୍ରୀଣାସ୍ତ୍ରାମପି କଞ୍ଚନେ ସରସିଜେ ପୁଷ୍ପେ କଚେ ଶଙ୍ଖକେ ।
ଶୁକ୍ଳେ ହେମ୍ନି ମରାଳଏବ ଧରଣୌ ସାରଙ୍ଗ ଶବ୍ଦୋ ମଣୌ ।
ଇତ୍ୟନେକାର୍ଥ ଧ୍ୱନିମଞ୍ଜରୀ ।
୫—ଅହଲ୍ୟା ଦ୍ରୌପଦୀ ତାରା କୁନ୍ତୀ ମନ୍ଦୋଦରୀ ତଥା ।
ପଞ୍ଚକନ୍ୟାଃ ସ୍ମରେନ୍ନିତ୍ୟଂ ମହାପାତକ ନାଶନଂ । ଇତି ।

ବିଷ୍ଣୁଲକ୍ଷଣ ସଙ୍ଗେ ରାଜ ଥିବାଯାକ ଚନ୍ଦ୍ରସୂର୍ଯ୍ୟ ତୋ ବୟସ ସଉ-ନ୍ଦର୍ଯ୍ୟ ନ ତୁଟି ଲବେ । ବାହୁଡ଼ାଇ ନିଅ ଧନ ଏଥିରେ କି ପ୍ରୟୋଜନ ଆଣ ମୋର ପ୍ରାଣଧନ ଜାନକୀ ଏବେ । ବନବାସୀ । ବିଧୂରତା କରି ରାଜଭୂତି । ବଗୃହ ମୁକ୍ତିଦାୟୀ ମୁଁ କତ ଗୁଡ଼ିଲ ନାହିଁ ଯାହାରେ ବିହାର ସେହି କରେ ମୋ ମତି । ୩୦ ।

ବୈଦେହୀ ଅମୃତାଧାରୀ ଗୃତକ ଚକୋର ପରି ବିରହ ଜ୍ୱରରେ ଘାରି ସ୍ନେହବିଧାନ । ବୋଲୁଁ ସେ ଯାଇଁ ସସୈନ୍ୟେ ପ୍ରବେଶ ଅଶୋକ-

୩୦ଶ ପଦ—"ପୁଣି ରାମ ମନ୍ଦୋଦରୀଙ୍କ ଏମନ୍ତ ବର ଦେଲେ" ଚନ୍ଦ୍ର ସୂର୍ଯ୍ୟ ଥିବାଯାକ ( ଯାଏ ) ବିଷ୍ଣୁଲକ୍ଷଣ ସଙ୍ଗେ ରାଜ ( ଶ୍ରୀଭ୍ରାଥ ) ତୋ ବୟସ ସଉନ୍ଦର୍ଯ୍ୟ ( ତୋହର ଯୌବନ ଓ ସୌନ୍ଦର୍ଯ୍ୟ ଏ ଦୁହେଁ ) ଲବେ ( ଲବମାତ୍ର )ନ ତୁଟି । ଧନ ବାହୁଡ଼ାଇ ନିଅ ଏଥିରେ କି ପ୍ରୟୋଜନ ? "ତୁମ୍ଭ ଧନ ତୁମ୍ଭେ ଘେନଯା ମୁଁ ନେବନାହିଁ ଦେଖି ସନ୍ତୋଷ ହେଲି ଏହି-ଗ୍ରାବ" । ମୋର ପ୍ରାଣଧନ ଜାନକୀ ( ସୀତାକୁ ) ଏବେ "ଯାଇଁ" ଆଣ । ରାଜଭୂତି ( ରାଜସମ୍ପତ୍ତି ) ବିଧୂରତା ( ତ୍ୟାଗ ) କରି ବନବାସୀ ହୋଇ-ଅଛୁ । "ରାଜ ସମ୍ପତ୍ତିରୁ ସେ ଧନ ଅଧିକ ହୋଇଥିବ" । ମୁକ୍ତିଦାୟୀ ( ମୁକ୍ତି ପ୍ରଦାୟିନୀ ) ବଗୃହ ମୁଁ କତ ( ନିକଟରୁ ) ଗୁଡ଼ିଲି ନାହିଁ ସେହି "ଏକା" ମୋ ମତ "ମୋହର ବୁଦ୍ଧିରେ" ବିହାର ( ବନ୍ଦଶବ୍ଦରେ ବିହାରପ୍ରାପ୍ତ ) ବିହାର କରେ ( ଅତ୍ୟନ୍ତ ବିହାର କରୁଛି ) । ୩୦ ।

୩୧ଶ ପଦ—ବୈଦେହୀ ( ସୀତା ) ଅମୃତାଧାରୀ ( ଜଳାଧାରୀ—ମେଘ ) "ସେ ପୁଣି" ଅମୃତାଧାରୀ ( ସୁଧାର ଆଧାରୀ—ଚନ୍ଦ୍ର ) "ଘନକୁ" ଗୃତକ "ପରି" "ଚନ୍ଦ୍ରକୁ" ଚକୋରପରି ସ୍ନେହ ବିଧାନେ ( ସେହି-ବିଧିରେ ) ମୁଁ ବିରହଜ୍ୱରରେ ଘାରି "ହେଉଅଛୁ" । "ଗୃତକ ମେଘଜଳ ବିରହରେ ଚକୋରପକ୍ଷୀ ଚନ୍ଦ୍ରକିରଣ ବିରହରେ ଘାରହେଲା ପ୍ରାୟ ମେଘଜଳ ଆଉ ଚନ୍ଦ୍ରକିରଣର ସ୍ଥାନସ୍ୱରୂପା ସୀତାର ବିରହରୂପ ଜ୍ୱରରେ

୧—ବିହାରତ୍ ବିହାର ବିହାରଃ ଅତ୍ୟର୍ଥେ ।

୧—ଅମୃତଂ ଧନ୍ତି ଶୀଳମସ୍ୟାସ୍ତୀତି ଅମୃତାଧାରୀ ।
ପୀୟୂଷମମୃତଂ ସୁଧା ଇତ୍ୟମରଃ ।

ବନେ ହୋଇଲେ ଅଶୋକମନେ ଯାଇଁ ବହନ । ବାନ୍ଧିା ଦେଲେ । ବିରହ ନବମଦଶା ଭୋଗ । ବିଖ୍ୟାତ ମଇଥିଳୀରେ ଲେଟିଲି ମହୀ- ସ୍ଥଳୀରେ କରି ଦଶା ଦଶାନନ ଦଶମ ଭୋଗ ।୩୧।

ବଜେଜକର କାନ୍ତପାଶେ ହେମରତ୍ନ କାନ୍ତବଶେ ମଣ୍ଡନ୍ତୁ ସ୍ତ୍ରୀଏ ତୋଷେ ମୋନାମେ କହ । ବୋଇଲ ସମର୍ପା ଯାଇଁ ବିଭୀଷଣ ଯାହା କହି ବିସ୍ତାର କରିବାପାଇଁ ହରଷବ୍ୟୂହ । ବେଢିଗଲେ । ବେଗେ

ଘାର ହେଉଅଛୁ ଏହିଭାବ" । ବୋଲି ( ରାମ ଏମନ୍ତ ବୋଲନ୍ତେ ) ସେ ( ବିଭୀଷଣ ) ସସୈନ୍ୟେ ( ସୈନ୍ୟ ସହିତରେ ) ଯାଇଁ ଅଶୋକବନେ ( ଅଶୋକବନରେ ) ପ୍ରବେଶ ହୋଇଲେ । ଅଶୋକ ମନେ ( ଆନନ୍ଦ- ମନରେ ) ବହନ ଶୀଘ୍ର ) ଯାଇଁ ବାନ୍ଧିା ଦେଲେ । ବିରହ ୨ ନବମଦଶା ( ମୋହ ଦଶା ) ମଇଥିଳୀରେ ( ଭୂମିଠାରେ ) ବିଖ୍ୟାତ କରି ଦଶାନନ ଦଶମଦଶା ( ମରଣଦଶା ) ଭୋଗକରି ମହୀସ୍ଥଳୀରେ ( ଭୂମିରେ ) ଲେଟିଲା ॥

୩୨ଶ ପଦ—କାନ୍ତବଶେ ( ମନୋହର ବଶରେ ) ସ୍ତ୍ରୀଏ ( ସ୍ତ୍ରୀ- ମାନେ ) ତୋଷେ ( ସନ୍ତୋଷରେ ) ହେମରତ୍ନ ( ସୁବର୍ଣ୍ଣ ଓ ରତ୍ନଅଳଙ୍କାର ) ମଣ୍ଡନ୍ତୁ ( ମଣ୍ଡନ କରନ୍ତୁ ) "ଆପଣ ବେଶଭୂଷା ହୋଇ" କାନ୍ତପାଶେ ( ସ୍ୱାମିଙ୍କ ନିକଟକୁ ) ବଜେକର ( ବଜେ କରନ୍ତୁ ) ମୋ ନାମେ କହ ( ବିଭୀଷଣ କହିଲେ ବୋଲି ଯାଇଁ କହ ) । "ବିଭୀଷଣ ଏମନ୍ତ କହିବାର ଶୁଣି" ସମର୍ପା "ସ୍ତ୍ରୀଷର୍ଯୀ" ପଲ "ସୀତାଙ୍କ" ହରଷବ୍ୟୂହ ( ଆନନ୍ଦସମୂହ ) ବିସ୍ତାର କରିବାପାଇଁ ( ବଢ଼ାଇବା ନିମନ୍ତେ ) ବିଭୀଷଣ ଯାହା କହି ( କହି- ଥିଲେ ) "ତାହା ସବୁ" ବୋଇଲା । "ଏ ସମୟରେ" ମହାଦେବୀଏ ( ମହା- ଦେଈମାନେ ) ବେଗେ ଉଠି ( ସୀତାଙ୍କ ପାଦରେ ପ୍ରଣମି ) ବେଢ଼ିଗଲେ ( ସୀତାଙ୍କୁ ଘେରିଗଲେ ) । ଉପଇନ୍ଦ୍ର ଭଞ୍ଜ ( ଉପେନ୍ଦ୍ର ଭଞ୍ଜ କବି ) ଚିତ୍ତେ ( ମନରେ ) ଶ୍ରୀରାମ ଧ୍ୟାଏ ( ଚିନ୍ତି ) ବନ୍ଦିଶପଦେ ଏ ଛାନ୍ଦ "ରଚିଲେ" ।

୨—ଦୃଙ୍‌ମନଃ ସଙ୍ଗ ସଂକଳ୍ପ ଜାଗରଃ କୃଶତା ରତିଃ । ହ୍ରୀତ୍ୟାଗୋନ୍ମାଦ ସମ୍ମୋହ୍ରୌ ମରଣଂଚ ଦଶାଦଶ ଇତ୍ୟଲଂକାରଶେଖରେ ।

ଓଳଗି ମହାଦେବୀଏ । ବହିଶପଦେଂଏ ଛାନ୍ଦ ବୁଝିବ ସର୍ବକୋବିଦ
ଚିତ୍ତେ ଭଞ୍ଜଉପଇନ୍ଦ୍ର ଶ୍ରୀରାମ ଧ୍ୟାଏ । ୩୨ ।



## ଏକପଞ୍ଚାଶତ୍ ଛାନ୍ଦ

ରାଗ—କନଡ଼ା

ବଲ୍ଲଭ ଦୁର୍ଲ୍ଲଭ ସନ୍ଦେଶ ଲଭନ୍ତେ ସୀତା ଈଷିତ-ହାସ-ବଶ ।
ବେଶ ହେବାରେ ନୋହିଲା ଆବେଶ । ବିଚ୍ଛେଦ-ବିପତ୍ତି ଦରଶନେ

---

ସର୍ବକୋବିଦ ( ବିଦ୍ୱାନ୍ ଜନମାନେ ) "ଏଥିରେ ଶ୍ରମ କେତେ ତାହା"
ବୁଝିବ * । ୩୨ ।

---

ଏକପଞ୍ଚାଶତ୍ ଛାନ୍ଦ

୧ମ ପଦ—ବଲ୍ଲଭ ( ରାମଙ୍କର ) ଦୁର୍ଲ୍ଲଭ ସନ୍ଦେଶ (୧ରାବଣବଧବାର୍ତ୍ତା) ଲଭନ୍ତେ (ବିଭୀଷଣଠାରୁ ପାଇ) ସୀତା ଈଷିତହାସ ୧ବଶ (ବଳାତ୍କାରରେ ଅଳ୍ପ ଅଳ୍ପ ହସିଲେ ) ମହୋଲ୍ଲାସ ହୃଦୟରେ ଜାତହେବାରୁ ଏହି ଭାବ ୨ଂ ବେଶ ହେବାରେ ଲାଳସ ( ଲାଳସା ) ନୋହିଲା ପତିବିଚ୍ଛେଦ ବିପତ୍ତି ( ସ୍ୱାମି ବିରହ ବିପଦ ) ଦରଶନେ ( ଦେଖିବାଅର୍ଥେ ) ମତିକି ( ବୁଦ୍ଧିକି ) ପ୍ରବେଶ କର ( କଲେ ) "ମୁଁ ସୁବେଶ ହେଲେ ମୋହର ବେଶ ଦାଗାଦି ଅଙ୍ଗର କୃଶତା ଏମାନ କିଛି ନ ଦେଖିବେ ପ୍ରଭୁ" । ବରାଙ୍ଗୀ ( ସୀତା ) ସୁଖ ସନେ ( ଶିବିକାରେ ) ବସି ଗମନ କରୁଁ ( ଗମନକରନ୍ତେ ) ରାବଣ ମହାଦେଇମାନ ( ରାବଣର ମହାଦେଈ ମାନେ ) ବେଢ଼ି ବରହି ବରହ ( ମୟୂର ପଙ୍ଖା ) ଭ୍ରମର

---

* ବିଦ୍ୱାନେବ ହି ଜାନାତି ବିଦ୍ୱଜ୍ଜନପରିଶ୍ରମଂ ।
ନହି ବନ୍ଧ୍ୟା ବିଜାନାତି ଗୁର୍ବୀଂ ପ୍ରସବବେଦନାଂ ।

୧—ବଶ ଆୟତ୍ତତାୟାଂ ଚ ଇତି ବିଶ୍ୱଃ ।

୨ଂ ମଦର୍ଥେ ସନ୍ଦେଶ ମୃଣାଳିନୀମନ୍ଥର ପ୍ରିୟେ କିମୁଦ୍ଗୁର ଇତସ୍ତ ସ୍ୟୋଦିତେ
ଇତି ନୈଷଧେ ।

ପତ୍ତି ମସ୍ତକ କରି ପ୍ରବେଶ ସେ । ଦ୍ୱାରାଙ୍ଗୀ । ବସି ସୁଖାସନେ କରୁଁ
ଗମନ । ବେଢ଼ି ରାବଣ ମହାଦେଈମାନ । ବରହ୍ୱବରବ ଚାମର
ଆଲଟ ଝଲା କରନ୍ତି ଚାଳନ ସେ । ବନିତା ୧ ।

ବାହାର ବାରିଧିଲହରୀ ଯେମନ୍ତ ତହୁଁ ବାହାରଶିରୀ ଆସେ ।
ବନଜମାଳତା କି ପାଶେ ଭାସେ । ବଟସତରଣୀ ମଞ୍ଜୁଳଧାରିଣୀ
ହାନ୍ଦୋଳାନ୍ଦୋଳାୟିତ ସେ ଯେ । ବିଦୁଷେ । ବେସକର ଗତି

---

ଆଲଟ ( ପଙ୍ଖା ) ଝଲା "ଏମାନ" ଚାଳନ କରନ୍ତି ( ପକାନ୍ତି ) *"ଏହି ଦ୍ୱାରା ସୀତାଙ୍କଠାରେ ମହାରାଜୋପଚାର କରଣେଚ୍ଛା ସୂଚିତ ହେଲା" । ୧ ।

ମିଶ୍ର ପଦ୍ୟ—ହେ ବିଦୂଷେ ( ପଣ୍ଡିତମାନେ) ବାରିଧି (ସମୁଦ୍ରରୁ) ବାହାର ( ବାହାର ଆସୁଥିବା ) ଲହରୀ ( ଲହରୀମାନଙ୍କରେ ) ଶିରୀ ( ଲକ୍ଷ୍ମୀ) ବାହାର ଆସେ ( ଆସନ୍ତି ) ଯେମନ୍ତ ଶୋଭାଦିଶେ "ସୀତା ଅଶୋକ ବନବାଟିରୁ ବାହାରି ସୁଖାସନ ଲହରୀରେ ବାହାର ଆସନ୍ତେ ତେମନ୍ତ ଶୋଭା ଦିଶଇ" । ଚାମରାଦି ଚାଳୁଥିବା ମହାଦେଈମାନେ ବନଜମା ଲତା ( ପଦ୍ମମା ଲତା-ସ୍ୱରୂପରେ ) "ସୀତାରୂପ ଲକ୍ଷ୍ମୀଙ୍କ" ପାଶେ ( ପାଖରେ ) ଭାସେ କି ( ଭାସୁଛନ୍ତି କି ) ? ହାନ୍ଦୋଳାନ୍ଦୋଳାୟିତ (ହାନ୍ଦୋଳା ଦୋହଲିବା) ବଟସତରଣୀ ( ବଟସନୌକାର ) ମଞ୍ଜୁଳ ଧାରିଣୀ ( ମନୋହରକୁ ଧାରଣ କରିଅଛି ) । ବେଣିକର ( ଖୁଣ୍ଟିଆମାନଙ୍କର , ଗତି ( ଆଡ଼େ କଢ଼ାଇବା ଚାଲି ) ମହିମ ଚହଟ ( ମହିମଙ୍କ ପ୍ରାପ୍ତ ଚହଟଇ ) । ମହିମା ବୋଲିବାର ( ସେମାନଙ୍କର ମହିମା ମହିମା ଡାକ ) ଭେକାରଟ (ଭେକଙ୍କ ବୋବାଇଲା ପ୍ରାପ୍ତ ହୋଇଅଛି ) "ଏମନ୍ତ ଜାଣି" ରାମ ଦ୍ୱିବଦବାନରଙ୍କୁ ନେଇଗଲେ ବେଗରେ ଚାଲିଇ ଆଣ

---

* ଏ ପଦରେ କବି ଶବ୍ଦଗୁଣରୁ ସଂକ୍ଷେପ ଗୁଣକୁ ରଖିଲେ । ତଦୁକ୍ତ ମଲଂକାର-
ଶାସ୍ତ୍ରେ ସଂକ୍ଷିପ୍ତତ୍ୱ ମୁଦାରତ୍ୱ ପ୍ରସାଦୋକ୍ତ ସମାଧୟଃ ।
ଅର୍ଥବାକ୍ୟ ସମାବେଶାତ୍ତ ପଞ୍ଚଶବ୍ଦ ଗୁଣାଃ ସ୍ମୃତାଃ ।

ତତ୍ର ସଂକ୍ଷେପଃ—ସ୍ୱଳ୍ପାକ୍ଷରୈ ର୍ଭୂୟୋଽର୍ଥ କଥନଂ । ତେ ହି ମାଲାୟାମ୍ ଆମନ୍ତ୍ୟ ପୁନଃ ପ୍ରାପ୍ୟ ଚ ଶୁଲ୍କନଂ । ସିଦ୍ଧମନ୍ତ୍ରେ ନାହିବେଦ୍ୟାର୍ଥଂ ତଦ୍‌ବସ୍ତୁଷ୍ଟା ମୁଦା ସଯୁଃ । ଇତି ।

ମହାମ୍ୟଚନ୍ଦନ୍ତି । ବୋଲଇବାର ମହିମା ଭେଲଇରନ୍ତି । ବୋଇଲେ ରାମ
ଚଳାଇଁ ଆଣି ଦେଖି ପାସୋରନ୍ତୁ ସର୍ବେ କଷ୍ଟ ଯେ । ବେଗରେ । ୨ ।

ବାଟେ ଦ୍ୱିବଦ କହ୍ୱାଇ ଏ ଉଦନ୍ତ ସୁଦନ୍ତଶୋଭି ଶୁଣି ଭାବିଲେ ।
ବଭ୍ରୂ ବିରାଗୀ ମୋହଠାରେ ହେଲେ । ବନଜଙ୍ଘାଦଳେ ଗର୍ଭାଳସୀ
ହଂସୀ ଚାଲିବା ଚାଳିକି ଦଳେ ସେ । ବରାଙ୍ଗୀ । ବାସେ ଲେଖି ହୋଇ
ଭୃଙ୍ଗମଣ୍ଡଳୀ । ବୁଲେ ଚନ୍ଦ୍ରଛବିରେ ଘୋଷଶାଳୀ । ବିଶେଷ ଶୋଭାରେ
କାନ୍ତିକ ବୃତ୍ତ ଏ ରଡ଼ରେ ଛେଦେ ଭାଲି ସେ । ବିଦୁଷେ । ୩ ।

( ସୀତାଙ୍କୁ ପାଲିଙ୍କିରେ ନ ଆଣ ) । ସର୍ବେ ( ସମସ୍ତେ ) ଦେଖି "ମନରୁ"
କଷ୍ଟ ପାସୋରନ୍ତୁ । "ଯେଉଁ ସୀତାସକାଶେ ଏ ସମସ୍ତେ ଏତେ କଷ୍ଟ ପାଇଲେ
ତାଙ୍କୁ ଦେଖନ୍ତୁ ଏହି ଗର୍ଭେ କ୍ରି ସୂଚିତ ହେଲା" । ୨ ।

୩ୟ ପଦ—ଦ୍ୱିବଦ "କପି" ବାଟେ ( ବାଟରେ ) ଏ ଉଦନ୍ତ ( ରାମ-
ଙ୍କର ଆଜ୍ଞା ସୀତା ଚାଲି ଆସନ୍ତୁ ଏ ବାର୍ତ୍ତା ) ସୁଦନ୍ତଶୋଭି ( ସୀତା ) ଶୁଣି
ଭାବିଲେ ( ମନରେ ଭାଳିଲେ ) ବଭ୍ରୂ ( ଦ୍ରୁଭଙ୍ଗ ) ମୋହଠାରେ ( ମୋଠାରେ )
ବିରାଗୀ ( ଅନୁରାଗହୀନ ) ହେଲେ । "ତାହା ନ ହେଲେ ଚାଲିଆସିବାକୁ
କାହିଁକି କହିବେ, ଏମନ୍ତ ବିଚାରି ବିରସ ଜାତହେବାରୁ" ବରାଙ୍ଗୀ ( ସୀତା )
ବନଜଙ୍ଘା ଦଳେ ( ନଳିନୀପତ୍ରରେ ) ଗର୍ଭାଳସୀ ( ଗର୍ଭଭାରରେ ଆଳସୀ
ହୋଇଥିବା ) ହଂସୀ ( ରାଜହଂସୀର ) ଚାଲିବା ଚାଳିକି ଦଳେ ( ଦଳନ
କରେ ) । "ସୀତାଙ୍କ ଚାଲି ସ୍ୱଭାବରେ ମନ୍ଦ ବିରସରୁ ଅତିମନ୍ଦଗତି କଲେ
ଏହି ଭାବ" । ଭୃଙ୍ଗମଣ୍ଡଳୀ ( ଭୃଙ୍ଗଶ୍ରେଣୀ ) ବାସେ ( ଅଙ୍ଗ ସୁବାସରେ )
ଲେଖି ହୋଇ ଘୋଷଶାଳୀ ( ଝଙ୍କାରଧ୍ୱନି ଯୁକ୍ତ ) ଚନ୍ଦ୍ର ( ଚନ୍ଦ୍ରାକାର )
ଛବିରେ ବୁଲନ୍ତି ( ଉଡ଼ନ୍ତି ) । "ଏହାଦ୍ୱାରା ପଦ୍ମିନୀ ଜାତୀୟା ସ୍ତ୍ରୀ ଲକ୍ଷଣ
ସ୍ଫୁଟ ହେଲା" । ହେ ବିଦୁଷେ ( ହେ ପଣ୍ଡିତମାନେ ) ଭାଳି ( ଭାଳୁଥାଇଁ )
ବିଶେଷ ଶୋଭାରେ ସେ ( ସୀତା ) ରତ୍ନ ( କାମ ପତ୍ନୀର ) କାନ୍ତିକ
( କାନ୍ତି ଶୋଭାକୁ ) ୧ ରଡ଼ଏ ( ରଡ଼ ପ୍ରମାଣରେ ) ଛେଦେ କି ( କାଟି-
ଦିଏ କି ) ? । ୩ ।

୧—କାଣି ବିଶ୍ୱା ରଡ଼ ଚନା ମାଢ଼ ତୋଳା ସୁନା ( ଝଡ଼ିବିଦ୍ୟା )

ବିସ୍ମରିଲେ ସର୍ବେ ନେତ୍ରପାତ ମାତ୍ରେ ବିଧାନ କଲା କେ ଏହାକୁ । ବିଲୋକନ ନ କଲେଁ ତାହାକୁ । ବୋଲନ୍ତି ଯାହାକୁ ଭୂଷଣ ଭୂଷଣା ଆନ ଉପମା ଏହାକୁ ହେ । ବିଧାତା । ବୁଦ୍ଧି କେତେ ତୋ ନିର୍ମାଣ ଏହାର । ବଶା ଧୈର୍ଯ୍ୟ ଉର୍ବଶୀରେ ଯାହାର । ବାସ୍ତୋଷ୍ପତି ଯେବେ ଦରଶନେ କଲୁ ନ କଲୁ ସେହି ପ୍ରକାର ହେ । ବିଧାତା । ୪ ।

---

୪ର୍ଥ ପଦ— ନେତ୍ରପାତ ମାତ୍ରେ ( ନେତ୍ରପଡ଼ିଲା ମାତ୍ରକେ—ସୀତାଙ୍କ ରୂପ ଦେଖିଲା ମାତ୍ରେ ) ସର୍ବେ ( ସମସ୍ତେ ) ବିସ୍ମରିଲେ ଏହାକୁ କେ ( କେଉଁଲୋକ ) ବିଧାନ କଲା ( ଗଢ଼ିଲା ) । ତାହାକୁ ବିଲୋକନ ନ କଲେଁ ( ଯେଉଁ ଲୋକକୁ ଆମ୍ଭେମାନେ ଦେଖିପାରିଲେ ନାହିଁ ) । ଯାହାକୁ ( ଯେଉଁ ସ୍ତ୍ରୀକୁ ) ଭୂଷଣ ଭୂଷଣା ( ଅଳଂକାରର ଅଳଂକାର ସ୍ୱରୂପା ) ବୋଲନ୍ତି ସେ ଏହାକୁ ( ଏ ସୀତାଙ୍କୁ ) ଆନ ଉପମା ( ଉପମା ନୁହେ— ତାଠାରୁ ଏ ଅଧିକ ) * । ହେ ବିଧାତା "ଏହାକୁ ତୁ ଗଢ଼ିଛୁ ବୋଲି ବୋଲନ୍ତେ ତାହା ନୁହେଁ କାହିଁକି" ? ଏହାର ( ଏ ସୀତା ) ନିର୍ମାଣ (ନିର୍ମାଣକରିବାରେ) ତୋ ବୁଦ୍ଧି କେତେ । ଯାହାର ଉର୍ବଶୀ ( ସ୍ୱର୍ଗ ଅପସରାକୁ ) "ଦେଖିବାରେ" ଧୈର୍ଯ୍ୟ ବଶା ହେଲା । ଯେଣୁ ତୁ ତାହାର ସୁନ୍ଦରପଣ ଦେଖି ସେ ଉର୍ବଶୀରେ ରତ ହେଲୁ ଅତଏବ ଅଳ୍ପକ ବୁଦ୍ଧି ତୁ କାହୁଁ ଏ ସୀତାକୁ ନିର୍ମାଣ କରିପାରିବୁ ଏଣୁ ଜଣାଯାଏ ଏ ସୀତା ବିଧି ନିର୍ମିତା ନୁହେଁ ଏହି ତାତ୍ପର୍ଯ୍ୟାର୍ଥ" । "ସେ ଉର୍ବଶୀକି ଦେଖିବାପାଇଁ" ବାସ୍ତୋଷ୍ପତି (ଇନ୍ଦ୍ରଙ୍କର) "ସହସ୍ରଲୋଚନ ସୃଷ୍ଟି" କଲୁ । ହେ ବିଧାତା ସେହି ପ୍ରକାର "ଯେବେ ତୁ" ଆମ୍ଭଙ୍କୁ "ଏହି ସୀତାକୁ" ଦରଶନେ ( ଦେଖିବା ପାଇଁ ) ବାସ୍ତୋଷ୍ପତି ( ଇନ୍ଦ୍ରଙ୍କ ସହସ୍ରନେତ୍ର ) ନ କଲୁ "ଏଣୁ ତୋତେ ଧିକ୍" "ଦୁଇ ଚକ୍ଷୁରେ କେତେ ଦେଖିବୁ ଏହି ଛବି" । ୪ ।

---

*—ଅଧିକ ଗୁଣବତ୍ତୟା ସମ୍ଭାବ୍ୟମାନ ମୁପମାନଂ । ନିକୃଷ୍ଟ ଗୁଣବତ୍ତ୍ୱୟା ସମ୍ଭାବ୍ୟମାନମୁପମେୟଂ ଇତ୍ୟଳଂକାରେ ।

୧—ପ୍ରକାଣ୍ଡେ ଭେଦଂ ମ୍ଲାତୃଶୌ ଇତି କୋଷାନ୍ତରେ ।

ବାମଦେବ କମ୍ପା ଗଉରାଙ୍କ କାଳୀ ବୋଲନ୍ତି ଥିଲା ଏ ସଂଶୟ ।
ବଳେ ସୁବର୍ଣ୍ଣ ଶତେଗୁଣ କାୟ । ବାଳୀରତ୍ନ ଗ୍ଲାନିକ ଅନୁଯାୟୀ
ଯେଣୁ ହେବେ ଉପମେୟ ହେ । ବିଧାତା । ବିଶ୍ୱେ ଏମନ୍ତ ପଣରେ
ତାହାଙ୍କୁ । ବାମା ନାହିଁତ ଉପମା ଦେବାକୁ । ବିସର୍ଜିଲା ପ୍ରାଣ ନ ମୁଞ୍ଚି
ତ୍ରିବଣ ତ୍ରିପୁରେ ଭ୍ରମି ଥିବାକୁ ହେ । ବିଧାତା । ୫ ।

ବଦନଶୋଭାକୁ ଗ୍ରହିଁ ମଇଁକାର କାଳକର ନାମ ବହିଲା ।
ବିଧି ଏତେ ବିବେକ ନ ରହିଲା । ବେଦଜଡ଼ ସିନା ଅନନ୍ତେ ପୁଚ୍ଛିବ-

---

୫ମ ପଦ—ବାମଦେବ ( ମହାଦେବ ) କମ୍ପା ( କାହିଁକି ) ଗଉରାଙ୍କ ( ଗୌରାଙ୍ଗ ) କାଳୀ ବୋଲନ୍ତି ଏ ସଂଶୟ ଥିଲା । “ଏ ସୀତାଙ୍କର” କାୟ ( ଦେହ ) ସୁବର୍ଣ୍ଣ “ଅପେକ୍ଷା” ଶତେ ( ଶହେ ) ଗୁଣ ବଳେ ( ଅଧିକ ) ବାଳୀରତନ ( ଏ ବାଳୀରତ୍ନର ) ଗ୍ଲାନିକ ଅନୁଯାୟୀ ଉପମେୟ ହେବେ ଯେଣୁ ( ଏ ନାରୀରତ୍ନସୀତାର ଗ୍ଲାନିତୁଲ୍ୟ ଉପମା ହେବାରୁ ଗୌରାଙ୍କ କାଳୀ ବୋଲନ୍ତି ଏହା ଏବେ ଜାଣିଲୁ ) । “ଗ୍ଲାନିକଲା ଏହିଭଳି” । ହେ ବିଧାତା “ଯାହାଙ୍କୁ” ବିଶ୍ୱେ ( ସଂସାରମଧ୍ୟରେ ) ଏମନ୍ତ ପଣରେ ( ଏହିରୂପେ ) ବାମା ( ମନୋରମା ହୋଇ ) ଉପମା ଦେବାକୁ ନାହିଁ ତାହାଙ୍କୁ ତ୍ରିବଣ ତ୍ରିପୁରେ ( ତ୍ରିଜଗପୁର ମଧ୍ୟରେ ) ଭ୍ରମି ଥିବାକୁ ( ବୁଲି ଦେଖି ଥିବାରୁ ) ନ ମୁଞ୍ଚି ( ନ ଛାଡ଼ି ) ପ୍ରାଣ ବିସର୍ଜିଲା ( ମଲା ) । “ଏ ତ୍ରୈଲୋକ୍ୟ ସୁନ୍ଦରୀ ଶିରୋମଣି ଏହିଭଳି” । ୫ ।

୬ଷ୍ଠ ପଦ—ମଇଁକାର ( ସୀତାଙ୍କର ) ବଦନ ଶୋଭାକୁ ( ମୁଖ-ଛବିକି ) ଗ୍ରହିଁ ତୁହିଁ ( ବିଧାତା ) “ଚନ୍ଦ୍ରଠାରେ” କଳାକର ( ଶୋଭାର ଆକର ) “ବା ସୀତା ମୁଖ ଅପେକ୍ଷା” କଳାକର (ଏକକଳା ମାତ୍ର ଶୋଭା ) “ମନେକରି” କଳାକର ନାମ ବହିଲା ( ରଖିଲ ଯାହା ) ଏତେ ( ଏତେକେ ) କଳାଙ୍କ ( କଳଙ୍କର ଆକର ) “ଏମନ୍ତ” ବିବେକ “ତାହାର” ନ ରହିଲା “କାହିଁକନା ବିଧାତା” ବେଦଜଡ଼ ( ବେଦ ପଢ଼ାରେ ମଜ୍ଜି ଜଡ଼ ପ୍ରାପ୍ତ ହୋଇ ଯିବାରୁ ) ସିନା “ବେଦକଥା କେବଳ ତାକୁ ଜଣା ଅଛି ଅନ୍ୟକଥା ଜଣା ନ ଯିବାରୁ ଏହିଭଳି” । “ସୀତା ମୁଖଛବି” ତାକୁ ( ସେ ବ୍ରହ୍ମାକୁ ) ଅନନ୍ତ (ଅସୀମ)

ଅନନ୍ତ ତାଙ୍କୁ ହୋଇଲେ ନେ । ବିଧାତା । ବୋଲିବାକୁ ସ୍ତ୍ରୀ ପଦରେ
ସମ୍ଭବେ । ବିନାୟକମତରୁ ସୀତାଠାବେ । ବରବର୍ଣ୍ଣିନା ବରାରୋହା
ଉତ୍ତମା ରମା ହୋଇଛନ୍ତି ତା ଭାବେ ନେ । ବିଧାତା । ୭ ।
ବାଛି ବାଛି ଲଙ୍କାପତି ଆଣିଥିଲେ ସଂସାର-ସାର ସୁନ୍ଦରୀଙ୍କି ।
ବିଦେହଜା ତହିଁ ରାଜାଭିଷେକା । ବିଚାରୁ ଏସନ ତା ଚାରୁ ଦର୍ଶନ
ଲଭେ ରାମସନ୍ନିଧିକ ସେ । ବରାଙ୍ଗୀ । ବୋଲେ ସତ୍ୟବାଦୀ ତହିଁ ଏ

---

ହୋଇଲେ "ଗୁରୁମୁଖରେ କହି ନ ପାରିଲେ ଏହି ଭାବ" । ଅନନ୍ତେ (ଶେଷ-ଦେବଙ୍କ) ପୁଚ୍ଛିବ (ପଚାରିବ) "ସହସ୍ରମୁଖ ତାଙ୍କର ଥିବାରୁ ସେ ଅବା କହିବେ ଏହି ଭାବ" । "ଯେ ଯାହା ଜାଣି ନ ପାରେ ସେ ତା ଅପେକ୍ଷା ବଡ଼ଙ୍କୁ ଯାଇଁ ପଚାରେ ଏ ଫଳିତାର୍ଥ" । ହେ ବିଧାତା ସ୍ତ୍ରୀ ପଦରେ ବୋଲିବାକୁ ସୀତାଠାରେ "ଏକା" ସମ୍ଭବେ (ସୀତାଠାରେ ସ୍ତ୍ରୀ ପଦ ସମ୍ଭବେ ଅନ୍ୟ ସ୍ତ୍ରୀ ଠାରେ ସମ୍ଭବ ନ ହୁଏ) । ହେ ବିଧାତା ! ୧ ବିନାୟକ (ଅମର କୋଷ-କାରକଙ୍କ) ମତରୁ "ଜଣାଯାଏ" ୨ ବରବର୍ଣ୍ଣିନା (ବର—ଶ୍ରେଷ୍ଠ, ବର୍ଣ୍ଣ—ରୂପ ଅଛି ଏହାର) ବରାରୋହା (ବର—ଶ୍ରେଷ୍ଠ ଆରୋହ—ନିତମ୍ବ ଅଛି ଯାହାର) ଉତ୍ତମା (ଯାହାଠାରୁ ଉତ୍ତମ ନାହିଁ) ରମା (ମନୋରମା) "ଏ ଶବ୍ଦସବୁ ସ୍ତ୍ରୀପର୍ଯ୍ୟାୟରେ ବର୍ଣ୍ଣିତ" ହୋଇଛନ୍ତି ତା ଭାବେ (ତାହା ମୁଁ ମନେ କରୁଛି) "ଏ ସୀତା ବରବର୍ଣ୍ଣିନା ବରାରୋହା ଉତ୍ତମା ରମା ଅନ୍ୟ ସ୍ତ୍ରୀ ନୋହେ" ।୭।

୮ମ ପଦ—ଲଙ୍କାପତି (ରାବଣ) ସଂସାରସାର ସୁନ୍ଦରୀଙ୍କି ବାଛି ବାଛି ଆଣିଥିଲେ । ତହିଁ (ସେମାନଙ୍କ ମଧ୍ୟରେ) ବିଦେହଜା (ସୀତା) ରାଜା-ଭିଷେକା (ଶ୍ରେଷ୍ଠା), ତା ଚାରୁ (ତାହାର ଶୋଭାକୁ) ଦର୍ଶନ (ଲୋକେ ଦେଖି) ଏସନ ବିଚାରୁ (ଏମନ୍ତ ବିଚାରନ୍ତେ) ସେ ବରାଙ୍ଗୀ (ସୀତା) ରାମସନ୍ନିଧିକ (ରାମସମୀପ) ଲଭେ (ଲଭିଲେ) । ତହିଁ (ସେଠାରେ) "ତାଙ୍କ ଚାହିଁ" ସତ୍ୟବାଦୀ (ରାମ) ଏ ଶ୍ଳେଷକରଗିର (ଏ ଶ୍ଳେଷାର୍ଥବଚନ) ବୋଲେ (କହିଲେ) ବୀରଧୂର୍ଜୁ (ମୋହର ବୀରପଣିଆ) "ରଖିବାପାଇଁ"

---

୧—ଷଡ଼ଭିଜ୍ଞୋ ଦଶବଲୋ ଦ୍ୱୟବାଦୀ ବିନାୟକଃ ଦିଗମ୍ବରଃ ।

୨—ବରାରୋହା ମତ୍ତକାଶିନ୍ୟୁତ୍ତମା ବରବର୍ଣ୍ଣିନୀ ଇତ୍ୟମରକୋଷେ ସ୍ତ୍ରୀପର୍ଯ୍ୟାୟେ ।

ଗିର । ଗିରଧୂଳିକୁ ବିନାଶ କଲା ପରି । ବିଭାବସୂପତି ପଦ୍ମିନୀ ମଧୁପେ ରସିତା ଏ ଶ୍ଳେଷକର ଟେ । ବରାଙ୍ଗି ।୭।

ବୈଦେହୀ ଗୁଣଗର୍ବିତା ହୋଇ ଭଷେ ସୁବର୍ଣ୍ଣ ବର୍ଣ୍ଣନା ଯାହାରେ । ବୋଲୁଁ ଶୁଣି ହୃଡ଼ ଅଛୁ ତହିଁରେ । ବୋଧିଲେ ଲେଖକେ ସିନା ହୋଇ ମୁହିଁ କହିଁଛୁ ଆନ ପ୍ରକାରେ ହେ । ବରୃର । ଖାତହୋନେ ପରୀକ୍ଷା

---

ପର ( ଗିରି ) ବିନାଶ କଲ । ବିଭାବସୁ ପତି ( ସୂର୍ଯ୍ୟ ଯାହାର ପତି ସେ ଥାନ୍ତେ ) ଏ ପଦ୍ମିନୀ ( ନଳିନୀ ) "ଆପଣା ପତିଙ୍କ ଛାଡ଼ି" ମଧୁପେ ( ଭ୍ରମର-ଠାରେ ) ରସିତା ( ରତା ) ହୁଏ । ଶ୍ଳେଷାର୍ଥ---ଟେ ବରାଙ୍ଗି ! ମୁଁ ବିଭାବସୁ-ପତି ( ସୂର୍ଯ୍ୟବଂଶୀ ରାଜା ) ତୁମ୍ଭେ ପଦ୍ମିନୀ (ପଦ୍ମିନୀ ଜାତୀୟା ସ୍ତ୍ରୀ) ମୁଁ ତୁମ୍ଭର ପତି ଥାଉଁ ଥାଉଁ ମଧୁପେ ( ମଦ୍ୟପି ରାବଣଠାରେ ) ରସିତା ( ରତା ) ହୋଇଥିଲ ପ୍ରାୟ ଅନ୍ୟ ତାଦୃଶ ପୁରୁଷଙ୍କ ଭଜ । "ସୀତା ଗ୍ରହଣରେ ରାମଙ୍କର ଅପ୍ରୀତି ବ୍ୟକ୍ତ ହେଲା" । ୭ ।

୮ମ ପଦ---ବୈଦେହୀ ( ସୀତା ) ଗୁଣ ( ପତିବ୍ରତା ଗୁଣରେ ) ଗର୍ବିତା ହୋଇ ଭଷେ ( କହିଲେ ) "ମୁଁ ମହାସତୀ ମୋତେ ଅସତୀ କହିଲେ ଏହି ଭାବ" ଯାହାରେ ସୁବର୍ଣ୍ଣ ବର୍ଣ୍ଣନା (ଯାହାଙ୍କୁ ଲୋକେ ସୁବର୍ଣ୍ଣ ବୋଲି ବର୍ଣ୍ଣନା କରନ୍ତି) "କନକ ଅଶୁଦ୍ଧ ହୁଏ" "କାହିଁକି ନା" ୧ସୁବର୍ଣ୍ଣ ବପୁ ଏ ଦୁହେଁ ସଦାଶୁଚ ଚଣ୍ଡାଳ ଘରେ ଥିଲେ ମଧ୍ୟ ଶୁଦ୍ଧ, ସେହିପରି ମୁଁ ରାକ୍ଷସ ଘରେ ଥିଲେ ମଧ୍ୟ ଶୁଦ୍ଧା" ବୋଲି ( ସୀତା ଏମନ୍ତ କହନ୍ତେ ) "ରାମ" ଶୁଣି "କହିଲେ" ତହିଁରେ (ସେ ସୁବର୍ଣ୍ଣରେ---ଉତ୍ତମ ଅକ୍ଷରରେ) ହୃଡ଼ ଅଛୁ । "ଶ୍ଳେଷାର୍ଥ---ଉତ୍ତମ ବର୍ଣ୍ଣ ଯେ ତୁମ୍ଭେ ତୁମ୍ଭଠାରେ ସେହିପରି ହୃଡ଼ ଅଛୁ" । ଶୁଣି ସୀତା ରାମଙ୍କୁ ଏମନ୍ତ ବୋଧିଲେ ଲେଖକେ ସିନା ( ଲେଖିବା ଲୋକଙ୍କର ସିନା ) "ହୃଡ଼" ହୋଇ ( ହୁଅନ୍ତି ) "ଉତ୍ତମ ବର୍ଣ୍ଣର ନୁହନ୍ତି । ଲେଖକ ତୁଲ୍ୟ ତୁମ୍ଭେ ତୁମ୍ଭର ଏ ହୃଡ଼ ମୋହର ନୁହେଁ ଏ ଶ୍ଳେଷାର୍ଥ" । ହେ "ନାଥ" ମୁହିଁ ଆନ ପ୍ରକାରେ କହିଁଛୁ ବରୃର ( ସୁବର୍ଣ୍ଣର ଅର୍ଥ ସୁନା, ଉତ୍ତମ ଅକ୍ଷର ନୁହେ ବରୃର କର ) !

---

୧---ହେମ ବପୁଃ ସଦାଶୁଚ ଇତି ।

ଜଣା ତାର । ବୋଲନ୍ତି ସାଧ୍ୱୀ କଲେ ସୀଉକାର । ବଣିକଭାବେ ଇନ୍ଧନକୂଟେ ଅଗ୍ନି ଯୋଗେ ଖାସିଲେ ସତ୍ୱର ସେ । ବରାଙ୍ଗୀ ।୮।

ବିକଳେ ସକଳେ ଭଜେ କି କରୁଣା ନ ଜାଣେ ଏ ବଡ଼ ଦାରୁଣ । ବେଧାବିଧାନ ହୁଅଇ ପ୍ରମାଣ । ବନ୍ଧୁ ବନ୍ଧୁ ବୋଲି କରୁଣ ଜଳାଇ ସେକାଳେ କଲେ କରୁଣ ସେ । ବୀରେନ୍ଦ୍ର । ବିଭାକର ମଣି

---

"ରାମ କହିଲେ ଯେପରି ସୁନା" ତାର (ତାହାର ଭଲ ମନ୍ଦ) ସିଦ୍ଧହୋଇଥାଏ (ଅଗ୍ନିରେ) ପରୀକ୍ଷା (ପୋଡ଼ିଲେ) ଜଣା "ଯାଏ" * ବୋଲନ୍ତି (ରାମ ଏମନ୍ତ ବୋଲନ୍ତେ) ସାଧ୍ୱୀ (ସାଧ୍ୱୀ ସୀତା) ସୀଉକାର (ସ୍ୱୀକାର) କଲେ "ସୀତା ଅଗ୍ନିରେ ପରୀକ୍ଷା ଦେବେ ଏହା ଜାଣି" ବଣିକ ଭାବେ (ସୁନ ସୁବର୍ଣ୍ଣିଆ ଭାବରେ) "ରାମ" ଇନ୍ଧନକୂଟେ (କାଷ୍ଠରାଶିରେ) ଅଗ୍ନି ଯୋଗେ (ଅଗ୍ନି-ସଯୋଗ କରନ୍ତେ) ସେ ବରାଙ୍ଗୀ (ସୀତା) ସତ୍ୱର (ଶୀଘ୍ର) ଖାସିଲେ । "ବଣିଆ ଅଗ୍ନି ରାଶିରେ ସୁନାପୋଡ଼ି ଭଲମନ୍ଦ ଜାଣିପାରିଲା ପ୍ରାୟ ରାମ ସୀତାଙ୍କ ଶୁଦ୍ଧାଶୁଦ୍ଧ ଜାଣିବାପାଇଁ ଅଗ୍ନିରେ ପ୍ରବେଶ କରାଇଲେ ଏହିଫଳିତାର୍ଥ" । ୮ ।

୯ମ ପଦ—"ସୀତା ଅଗ୍ନିରେ ପ୍ରବେଶ କରନ୍ତେ" ସକଳେ (ସମସ୍ତେ) ବିକଳେ (ବ୍ୟାକୁଳ ହୋଇ) ଭଜେ (ଭଜିଲେ) ଏ (ରାମ) କି (କଣ) କରୁଣା (କୃପା) ନ ଜାଣେ ବଡ଼ ଦାରୁଣ (କର୍କଶ) "ଜାଣିଥିଲେ ଏହା କରନ୍ତା କି ?" । "ପୁଣି ବିଚାରିଲେ" ବେଧା (ବିଧାତାର) ବିଧାନ ପ୍ରମାଣ ହୁଅଇ (ବିଧି ଲେଖିଥିବା କଥା ଅନ୍ୟଥା ନୋହେ) । ସେ କାଳେ (ସୀତା ଅଗ୍ନିରେ ପଶିବା ସମୟରେ) ହେ ବୀରେନ୍ଦ୍ର (ରାମ) । କରୁଣ (ସୀତାଙ୍କ-ପ୍ରତି କରୁଣ ଭାବ ଧରିଥିବା କଥାକୁ) ଜଳାଇ (ଚପିଦେଇ) ୧ ବନ୍ଧୁ ବନ୍ଧୁ ବୋଲି କରୁଣ (ରୋଦନ କଲେ) । ସେ (ରାମ) "ଇତ୍ଥମରେ" ବିଭା-କର ମଣି (ସୂର୍ଯ୍ୟକାନ୍ତ ମଣି ପ୍ରାୟ କଷ୍ଟୁର) ହୋଇଥିଲେ । ପୁଣି । ବିଧୁମଣି

---

*—ହେମ୍ନଃ ସଂଲକ୍ଷ୍ୟତେହ୍ୟଗ୍ନୌ ବିଶୁଦ୍ଧିଃ ଶ୍ୟାମିକାପିବା ଇତି ରଘୁବଂଶେ ।

୧—ଏଠାରେ ଆର୍ତ୍ତାର୍ଥେଦ୍ୱିପ୍ରୟୋଗ ବନ୍ଧୁ ଶବ୍ଦ ପ୍ରିୟୋଚ୍ଚାରିକ ଯଥା ମେଘଦୂତେ—ଚେତନାର୍ତ୍ତିହ୍ୟଂ ତ୍ୱୟି ବିଦ୍ଧବସା ଦୂରବନ୍ଧୁର୍ଗତୋଽହଂ ।

ସେ ହୋଇଥିଲେ । ସୂର୍ଯ୍ୟମଣିଭାବ • ପୁଣି ବୁଝୁଥିଲେ । ବଙ୍କବକ୍ତ୍ରରେ ପ୍ରୀତିରେ ଦୁଇ କଥା ଜଳିଲେ ପୁଣି ଦ୍ରବିଲେ ସେ । ବକଳେ ।୯।

ବାଳିଶବଚନେ ଜୀବନ ତେଜିବା ଉଚିତ ହୋଇଲା ତୋହର । ବୁଡ଼ିଗଲା ସୃଷ୍ଟି ଏବେ ମୋହର । ବୋଲାଇଲେ ନାହିଁ ଚନ୍ଦ୍ରମା

---

ଭାବ ( ଚନ୍ଦ୍ରକାନ୍ତ ମଣିତୁଲ୍ୟ ଶୀତଳତା ) ବହିଲେ ( ଧଇଲେ ) । "ସୂର୍ଯ୍ୟଙ୍କୁ ଦେଖି ସୂର୍ଯ୍ୟକାନ୍ତ ମଣି ଜଳି ଉଠିଲା ପ୍ରାୟ ସୀତାଙ୍କୁ ଦେଖି ରାମ କୋପରେ ଜଳି ଉଠିଥିଲେ ପଛେ ସୀତା ଅଗ୍ନିରେ ପଶନ୍ତେ ଚନ୍ଦ୍ରଙ୍କୁ ଦେଖି ଚନ୍ଦ୍ରକାନ୍ତମଣି ଦ୍ରବିଲାପ୍ରାୟ ଦ୍ରବୀଭୂତ ହେଲେ ଏହି ଫଳିତାର୍ଥ" । ବଙ୍କବକ୍ତ୍ରରେ ( ବଙ୍କଜନ ବିଚାର କରି ଏମନ୍ତ ବୋଇଲେ ) "ପରଘରେ ସୀତା ଥିଲା ତାକୁ ଆଣି ରଖିଲେ ଏହି ଲୋକନିନ୍ଦାଭୟେ ଅଗ୍ନି ପରୀକ୍ଷା କରାଇଲେ" "ପୁଣି ସେ ପ୍ରୀତିରେ ବଶୀଭୂତହୋଇ" ବକଳେ ( ଶେଷକାଳରେ ) ଦ୍ରବିଲେ । "ପ୍ରୀତି-ଯୋଗୁଁ ଜଳିବା ଦ୍ରବିବା" ଦୁଇକଥା "ରାମଙ୍କଠାରେ ଉପସ୍ଥିତ ହେଲା" ।୯।

୧୦ମ ପଦ—"ପୁଣି ରାମ ଶୋକକରି ବୋଇଲେ" ୧ବାଳିଶ (ମୂର୍ଖ ମୁଁ ) ବଚନେ (ମୋକଥାରେ ) ତୋହର ଜୀବନ ତେଜିବା ଉଚିତ ହୋଇଲା କି ? ( ଉଚିତନୋହେ ) "ତୁ ପଣ୍ଡିତା ହୋଇ ବିଚାର ନ କଲୁ ଏହିଭାବ" । "ମୁଁ ଯେଣୁ ତୋତେ ଅଗ୍ନିରେ ପଶିବାକୁ କହିଲି ଏଣୁ ମୁଁ ମୂର୍ଖ" । ଅନ୍ୟପକ୍ଷେ ଯଥା-୨ବାଳୀଶ ( ନାରୀଶ୍ରେଷ୍ଠ ତୁ ) ମୋ ବଚନରେ ଜୀବନ ତେଜିବା ତୋହର ଉଚିତ କି ? ଅନ୍ୟ ପକ୍ଷ ଯଥା— ବାଳୀଶ ( ହେ ବାଳି ! ) ୩ଈଶ ( ତୋ ପତି ମୁଁ ) ମୋ ବଚନରେ ଜୀବନ ତେଜିବା ତୋହର ଉଚିତ ହୋଇଲା ।

---

୧—ଶିଶୁମୂର୍ଖୌ ତୁ ବାଳିଶୌ ଇତ୍ୟମରଃ ।

୨—ବାଳୀ-କନ୍ୟା-ନାରୀ ଏଠାରେ ଲକ୍ଷିତଲକ୍ଷଣା ହେଲା ।

ଅଳଂକାରିକମାନେ ବୁଝିବେ । ବାଳା ବାଳିକା କନ୍ୟୟୋ ଶବ୍ଦ ଶବ୍ଦମାଳା । କନ୍ୟା କୁମାରିକା ନାର୍ଯ୍ୟୌ ରୋଷଧିରାଶିଭେଦୟୋ ଶବ୍ଦ ମେଦିନୀ ।

୩—ପ୍ରଭୁ ଶଙ୍କରସ୍ୟୋରୀଶ ଇତ୍ୟମରଃ ।

ହୋଇଲେ ଆନଅର୍ଥେ ଦୋଷାକର ରେ । ବରାଙ୍ଗି ! ବଂଶାକ୍ଷ କି
ତୋତେ ଛୁଇଁ ଭଜନ । ବିବେଚନା କରିଣ ମନେ ଘେନ । ବିଳମ୍ବ
ଅବଲମ୍ବକୁ ତ୍ୟଜ ତ୍ୟଜ ନ କର କୃଶାନୁସ୍ନାନ ରେ । ବରାଙ୍ଗି ।୧୦।

---

"ଯେଣୁ ତୁ ସାଧ୍ୱୀ କିପରି ମୋ କଥାକୁ ଲଂଘନ୍ତୁ"* । ଏବେ ମୋହର ସୃଷ୍ଟି (ସଂସାର) ବୁଡ଼ିଗଲା । "ଗୃହିଣୀ ଅଭାବରେ ଗୃହଧର୍ମ ନିରର୍ଥକ ଏହିଭାବ" । ରେ ବରାଙ୍ଗି ! ୪ ଚନ୍ଦ୍ରମା (କର୍ପୂର ନିନ୍ଦୁଣ ଅତି ବିଶଦ) ହୋଇଲେ (ହେଲେ) ଆନ ଅର୍ଥେ (ଅନ୍ୟ ଅର୍ଥରେ) ୫ ଦୋଷାକର (ରାତ୍ରିପତି ହୋଇ) ୬ ଦୋଷାକର (ଦୋଷର ଆକର) ବୋଲାଇ ନାହିଁକି ? (ବୋଲାଇ) । "ସେହିପରି ତୁ ମହାସତୀ ହୋଇ ପରଗୃହରେ ଥିବା ଅସତୀ ଦୋଷରେ ଦୋଷୀ ହୁଅନ୍ତୁ ନାହିଁ କି ? ଲୋକେ ଅବଶ୍ୟ ଦୋଷ ଦେଇନ୍ତେ ଏହିଭାବ" । ରେ ବରାଙ୍ଗି (ତୁ ଶ୍ରେଷ୍ଠାଙ୍ଗୀ ଅଟୁ) ବଂଶାକ୍ଷ (ରାବଣ) ତୋତେ ଛୁଇଁ ୭ ଭଜନ କି ? (ଛୁଇଁବାକୁ ଯୋଗ୍ୟ କି) ? "ଯୋଗ୍ୟ ନୁହେ ଏହିଭାବ" । "ତଥାପି ତୋତେ ଯାହା ଅଗ୍ନି ପରୀକ୍ଷା କରାଇଲି ।" ମନେ (ମନ ମଧ୍ୟରେ) ବିବେଚନା କରିଣ (ବିଚାର କରି) ଘେନ । "ତୋ ଦୋଷ ପରିହାର ହେବ ଏ ସତୀତ୍ୱ ବ୍ୟକ୍ତ ହେବ ଏଣୁ ମୋଠାରେ ଦୁର୍ଗୁଣ ନ ଘେନ ଏହିଭାବ" । ବିଳମ୍ବ ଅବଲମ୍ବକୁ (ବିଳମ୍ବ ଭାବ) । ୮ ତ୍ୟଜ ତ୍ୟଜ (ଛାଡ଼ି ଛାଡ଼) କୃଶାନୁସ୍ନାନ ନ କର (ପୋଡ଼ି ନ ମର ବେଗେ ଆସ) । ୧୦ ।

---

* ସାଧ୍ୱୀଲକ୍ଷଣ—ପତିଯାନାତି ଚରତି ମନୋବାକ୍‌କାୟସଂଯୁତା ।
ସାଭର୍ତ୍ତୃଲୋକ ମାପ୍ନୋତି ସଦ୍ଭିଃ ସାଧ୍ୱୀତି ଚୋଚ୍ୟତେ ।

୪—ଚନ୍ଦ୍ରଂ—କର୍ପୂରଂ ସାଦୃଶ୍ୟେନ ଇତ୍ୟଲଂକାରେ ।
ମାତି—ତୁଲସ୍ୱୀତି ଚନ୍ଦ୍ରମାଃ ।

୫—ଦୋଷା—ରାତି ତହିଁରେ କର—କିରଣ ଯାହାର ଏ ନିଜ ଅର୍ଥ ।

୬—ଦୋଷାଣାଂ ଦୋଷସ୍ୟ ବା ଆକାରଃ ଏ ଅନ୍ୟାର୍ଥ ।

୭—ଭଜନଂ ପାତ୍ରଯୋଗ୍ୟସ୍ତ୍ରୋ ଶତବିଶ୍ଚଃ ।

୮—ସ୍ନେହାର୍ଥେ ବୀପ୍ସା ।

ବାରିଦଅଙ୍କରେ ଲୀନ ହୋଇ ଥାଇ ପ୍ରକାଶଇ ଯଥା ଚଞ୍ଚଳା । ବକାଶିବୁ ମୋ ଭାଗ୍ୟେ ସେହ୍ନ ଲୀଳା । ବୋଲିବାକୁ ଜଳମଗ୍ନ ଜନ ପ୍ରାପ୍ୟେ ବାହାର ହେଲେ ନିର୍ମଳା ଯେ । ବରାଙ୍ଗୀ । ବେଢ଼ିଥିଲ ଜନେ ଜୟ ଘୋଷିଲେ । ବଧୂ ବିହୁମୁଖୁଁ ମୁକ୍ତ ଭାଷିଲେ । ବହାୟୁସରୁ ବହାୟୁସ ପରାଏ ଗେ କାଳେ ଖସି ଆସିଲେ ଯେ । ବବୁଧେ ।୧୧।

---

୧୧ଶ ପଦ—ଚଞ୍ଚଳା (ବିଜୁଳି) ବାରିଦ ଅଙ୍କରେ (ମେଘ କୋଳରେ) ଲୀନହୋଇ ଥାଇ ଯଥା° ପ୍ରକାଶଇ (ଲୀନ ହୋଇଥାଏ ପୁଣି° ଯେରୂପ ପ୍ରକାଶ ପାଏ ) ମୋ ଭାଗ୍ୟେ ( ମୋହର ସୁଭାଗ୍ୟବଶରୁ ) "ସେହିରୂପେ" ସେହି ଲୀଳା ( ଅଗ୍ନି କୋଳରୁ ଆସି ବିଜୁଳିପ୍ରାୟ ଲୀଳା ) ବକାଶିବୁ । ବୋଲିବାକୁ ( ରାମ ଏମନ୍ତ ସ୍ୱୀକାର ବାକ୍ୟ ବୋଲିବା ସମୟେ ) ସେ ବରାଙ୍ଗୀ "ସୀତା" ଜଳମଗ୍ନ ଜନପ୍ରାୟେ ( ଜଳରେ ବୁଡ଼ିଥିବା ଜନତୁଲ୍ୟ ) ନିର୍ମଳା ହୋଇ "ଅଗ୍ନି କୋଳରୁ" ବାହାର ହେଲେ ( ବାହାରି ଆସିଲେ ) । "ସୁନା ନିଆଁରେ ପୋଡ଼ିଲେ ବିଶୁଦ୍ଧଜ୍ୟୋତି ପ୍ରକାଶିଲ ପ୍ରାୟ ପ୍ରକାଶିଲେ ଏହିଭାବ"ଟୀ° । "ଏମନ୍ତ ଦେଖି" ବେଢ଼ିଥିଲ ଜନେ ଜୟ ଘୋଷିଲେ ("ଅଗ୍ନି ଗୃହଚାରିଧାରେ ବେଢ଼ି ରହିଥିବା ଲୋକେ ମଙ୍ଗଳ ସୂଚକ ଜୟଶବ୍ଦ ଉଚ୍ଚାରିଲେ ) । ବିହୁମୁଖୁଁ ( ରାହୁର ମୁଖରୁ ) ବଧୂ ( ଚନ୍ଦ୍ର ) ମୁକ୍ତ "ହେଲା" ଏମନ୍ତ ଭାଷିଲେ ( କହିଲେ ) । "ଲୋକେ ରାହୁମୁକ୍ତ ଚନ୍ଦ୍ରକୁ ଦେଖି ଆନନ୍ଦ ହେଲା ପ୍ରାୟ ଅଗ୍ନିମୁଖୁଁ ମୁକ୍ତି ସୀତାଙ୍କୁ ଦେଖି ଆନନ୍ଦ ହେଲେ ଏହିଭାବ" । "ଯେଉଁକାଳେ" ଶିଖୀ° (ସୀତା ) ବିହୃତି ( ପ୍ରକାଶିତ ) ସେ କାଳେ ( ଅଗ୍ନିରୁ ବାହାର ଆସି ସୀତା ପ୍ରକାଶ ପାଇବା ସମୟରେ ) ବବୁଧେ (ଦେବତାମାନେ) ବହାୟୁସରୁ ( ଆକାଶରୁ ) ବହାୟୁସ ( ପକ୍ଷୀଙ୍କ ) ପରାୟେ ( ପ୍ରାୟେ ) ଖସି ଆସିଲେ । ୧୧ ।

---

ଟୀ°—ଦଗ୍ଧଂ ଦଗ୍ଧଂ ତ୍ୟଜତି ନପୁନଃ କାଞ୍ଚନଂ କାନ୍ତିବର୍ଣ୍ଣଂ ଇତିପ୍ରୟୋଗଃ ।

ବନ୍ଦିତ ଶିଖି ପଞ୍ଚାସ୍ୟ ଆଦି କରି ପରେତଗରିଷ୍ଠ ବରୁଣହିଁ । ବାସ-ବରତ ପରିମଳ ଶୋହି । ବିକଳସନ୍ତା ହେଲେ ମୟୁରେ ଗନ୍ଧର୍ବେ ମରୁତେ ଅପୂର୍ବ ନୋହି ସେ । ବଦୁଷେ । ବିରସ ଏ ଅଜଜାତେ

୧୨ଶ ପଦ—ବନ୍ଦିତଶିଖି "ଏତେକ ଏଗୋର ପଦରେ ଅର୍ଥ ହୋଇ ଯାଇଅଛି" । "ବନ୍ଦୁଛନ୍ତି" ପଞ୍ଚାସ୍ୟ ( ମହାଦେବଙ୍କ ) ଆଦିକରି ପ୍ରେତ-ଗରିଷ୍ଠ ( ଯମ ) ବରୁଣ ହିଁ ( ମଧ୍ୟ ) ବାସବ ( ଇନ୍ଦ୍ର ) "ଏମାନେ" ରତ ( ଅନୁରକ୍ତରେ ) ପରିମଳ ( ନିର୍ମଳ ହୋଇ ) ଶୋହି ( ଶୋଭା ପାଇଲେ ) ୧ ମୟୁ ( କିଂପୁରୁଷମାନେ ) ୨ ଗନ୍ଧର୍ବେ ( ଗନ୍ଧର୍ବମାନେ ) ୩ମରୁତେ ( ଦେବତାମାନେ ) ଅପୂର୍ବ ନୋହି ( ସମସ୍ତ ଦେବତାମାନେ ଆସି ) ବିକ-ସନ୍ତା ହେଲେ ( ଶୋଭା ପାଇଲେ ବା ବିହାର କଲେ ) । ହେ ବଦୁଷେ ! ବିରସ ଏ ( ଆଶ୍ଚର୍ଯ୍ୟ ଏ ) "ଦେବତାମାନେ ଆସିଲାରୁଗୁରୁ" ଅଜଜାତେ (ଅଜପୁତ୍ର—ଦଶରଥ ରଜା ମରିଥିଲେ ପୁଣି ସେ ଆସି ) ରୁଚିର ( ମନୋରମ-କର ) ବୋଲେ ( ବ୍ରମଙ୍କୁ କହିଲେ ) । ତୁମ୍ଭେ ବିଷ୍ଣୁ ସ୍ୱଭାବେ ( ସ୍ୱଭାବରେ

୧—ସ୍ୟାତ୍‌ କିନ୍ନରଃ କିଂପୁରୁଷ ସ୍ତୁରଙ୍ଗ ବଦନୋମୟୁ ରତ୍ୟମରଃ ।
ରେ ନିରର୍ଥକ ୀଁ "ବିକଳସନ୍ତା ହେଲେ ମୟୁବେ ଗନ୍ଧର୍ବେ ମରୁତେ ଅପୂର୍ବ ନୋହି" ଏପରି ବୋଲିଥିଲେ ଭଲ ହୋଇଥାନ୍ତା । ଅସାବଧାନତା ଯୋଗୁଁ ମୟୁରେ ବୋଇଲେ । କେହି କେହି ମୟୂରେ ପାର୍ଯ୍ୟତ୍ୱକାର ପଢ଼ି ଏହିରୂପେ ଅର୍ଥ କରନ୍ତି, ଯଥା—ମୟୂର—ଶିଖୀ—ଅଗ୍ନି ଏରୂପ ଲକ୍ଷିତ ଲକ୍ଷଣା କରନ୍ତି । ଏରୂପ କବି ଅଭିପ୍ରାୟ ନୁହେ ।
୨—ହାହା ହୁହୁ ଶ୍ଚୈବମାଦ୍ୟା ଗନ୍ଧର୍ବା ସ୍ତ୍ରିଦିବୌକସଃ ।
୩—ମରୁତୌ ପବନାମରୌ ଇତ୍ୟମରଃ ।
୪—ସମ୍ପତ୍ତିଃ ଶ୍ରୀଶ୍ଚ ଲକ୍ଷ୍ମୀଶ୍ଚ ଇତ୍ୟମରଃ ।
ଶ୍ରୀପଦରେ ରାଜଲକ୍ଷ୍ମୀ—ଯଥା—ଏକାଦଶସ୍କନ୍ଧେ—
ତ୍ୟକ୍ତ୍ୱା ସୁଦୁସ୍ତ୍ୟଜସୁରେପ୍ସିତ ରାଜଲକ୍ଷ୍ମୀ ଧର୍ମିଷ୍ଠ ଆର୍ଯ୍ୟବଚସା ଯଦଗାଦରଣ୍ୟଂ ।
ମାୟାମୃଗଂ ଦୟିତୟେପ୍ସିତ ମନ୍ୱଧାବଦ୍‌ବନ୍ଦେ ମହାପୁରୁଷତେ ଚରଣାରବିନ୍ଦଂ ।
ହନୁମନ୍ନାଟକେ— ଶ୍ରିୟା ରାଜ୍ୟେ ମହ୍ୟାରଣ୍ୟେ ରାମସ୍ତ୍ୟକ୍ତ ସ୍ତ୍ରୁସ୍ତାପଥ ।
ବଦ ମୂଢ଼େ ପୁରନ୍ଧ୍ରୀଣାଂ ପ୍ରତ୍ୟୟଂ କଃ କରିଷ୍ୟତି ।

ରୁଚିର । ବୋଲେ ଶ୍ରୀ ତ୍ୟକ୍ତ କରିବା ବେଭାର । ବକ୍ଷ୍ଯ ତୁମ୍ଭେ ରାଜ-କୁମାରି ସ୍ୱଭାବେ ଯୁବାବୟସରେ ସାର ନୋହେ । ବରୁର । ୧୨ ।

ବୃଷାଙ୍କନ କହେ ବାସୁକି ଶ୍ରୀ ଯେହ୍ନେ ତୁମ୍ଭେ ମୋହ୍ୱପରି ଭୋଗରେ । ବସୁନ୍ଧରା ଫୁଟି ଜାତ ଯୋଗରେ । ବହ୍ନି ଯାହାକୁ ଜୀର୍ଣ୍ଣ କରି ନ ପାରେ । ଆନ କେ ଧର୍ଷିବ ତାରେ ହେ । ବରୁର । ବୋଲେ ରାଘବ ଜନ-ଅପ-

ରାଜକୁମାର ), ଯୁବାବୟସରେ ( ନବଯୌବନରେ ) ସାର ( ଶ୍ରେଷ୍ଠ ) "ଅଟେ"। "ତୁମ୍ଭର" ୪ ଶ୍ରୀ ତ୍ୟକ୍ତ କରିବା ( ଶ୍ରୀକି ଛାଡ଼ିବାରୁ ) ବେଭାର ( ମର୍ଯ୍ୟାଦା ) "ନୋହେ" । "ବକ୍ଷ୍ଯ" ଶ୍ରୀ ( ଲକ୍ଷ୍ମୀଙ୍କି ) ଛାଡ଼ନ୍ତ ନାହିଁ । ରାଜ-କୁମାର ଶ୍ରୀ ( ରାଜଲକ୍ଷ୍ମୀକି ) ଛାଡ଼ଇନାହିଁ । ଯୁବକଶ୍ରେଷ୍ଠ ଶ୍ରୀ ( ସମ୍ପତ୍ତିକି ) ଛାଡ଼ଇ ନାହିଁ । ଏ ବଚନକଥାରେ ତୁମ୍ଭେ ଯୁକ୍ତହୋଇ କପଟ ଛାଡ଼ିବ । ଏହି ଫଳତାର୍ଥ"। ହେ ରାମଚନ୍ଦ୍ର ! ବରୁର ( ବରୁରକର ) । ୧୨ ।

୧୩ଶ ପଦ—"ଦଶରଥ ରାମଙ୍କୁ କହିଲାପରେ" ବୃଷାଙ୍କନ (ମହାଦେବ) କହେ ( ଶ୍ଳେଷଭାଷାରେ କହିଲେ ) । ତୁମ୍ଭେ ଭୋଗରେ ( ଭୋଗ କରିବାରେ ) ମୋହ୍ୱପରି ( ମୋ ତୁଲ୍ୟ ) "ମୁଁ ବାସୁକି" ( ସର୍ପଙ୍କୁ ) ଶ୍ରୀ ( ଗରଳକୁ ) "ଭୋଗଲରେ", "ତୁମ୍ଭେ" ବାସୁକି ( ଅନନ୍ତଙ୍କୁ ) ଶ୍ରୀ ( ଲକ୍ଷ୍ମୀଙ୍କି ) "ଭୋଗ କର" ※ "ମୁଁ ସେ ଦୁହିଙ୍କି ଛାଡ଼ି ନ ପାରେ ତୁମ୍ଭେ ଏ ଦୁହିଙ୍କି ଛାଡ଼ି ନ ପାର ଏହି ଭାବ" । "ଏ ସୀତା" ବସୁନ୍ଧରା ଫୁଟି ( ଭୂମିରୁ ଫୁଟି ) ଯୋଗରେ ( ସୁଯୋଗରେ ) ଜାତ "ଅଟେ" । "ଅଯୋନିଜା ଏହିଭାବ" । ଯାହାକୁ ( ଯେଉଁ ସୀତାକୁ ) ବହ୍ନି ( ଅଗ୍ନି ) "ଖାଇ" ଜୀର୍ଣ୍ଣକରି ନ ପାରେ (ନପାରିଲା) ତାରେ ( ତାହାକୁ ) ଆନ କେ ( ଅନ୍ୟ କେଉଁ ପୁରୁଷ ) ଧର୍ଷିବ ( ଧର୍ଷଣ କରିପାରିବ ) ହେ "ରାମ ! ତୁମ୍ଭେ" ବିଚାରି ( ବିଚାର କର ) "ରାବଣ କଟକ ଫିଟିବାପାଇଁ ଚୋରିକରି ନେଇଥିଲା କାହୁଁ ଧର୍ଷିବ କରନ୍ତା ଏହିଭାବ" । "ମହାଦେବଙ୍କର ଏକଥା ଶୁଣି" ରାଘବ ( ରାମ ) ବୋଲେ ( ବୋଇଲେ ) । ଜନ ଅପବାଦ ( ଲୋକନିନ୍ଦା ) ବଧ୍ୟଂସିଲାଇଁ ( ସୀତାଙ୍କୁ

※—ଶେଷଃଶଯ୍ୟା ବସଥଜଳଧିର୍ବାହନଂ ପନ୍ନଗାରି ଭୂତପ୍ରସ୍ତୋଗଃ ।
ଭୂକଳଙ୍କେଶିତଳେଙ୍ଗ ଶଯ୍ୟାଧ୍ୟାର୍କଚନ୍ଦ୍ର ଦ୍ୱିନେତ୍ରାସ୍ୟ ତଦ୍ବୈ ନତାସ୍ମୋ
ଦତାସ୍ଯ ଇତ ପଦ୍ମପୁରାଣେ ।

ବାଦ । ବଧ୍ୱଂସିନିଙ୍କ ଭଲ ଏ କ ମନ୍ଦ । ବଶ୍ୱମ୍ଭର ଯେବେ ମୁହିଁ ମୋତେ ତେବେ ସେବନ୍ତିବ ଭୂଦେବବୃନ୍ଦ ହେ । ବନସ୍ତେ । ୧୩ ।

ବ୍ରହ୍ମା ବୋଇଲେ ମୋ ପୁତ୍ର ଶିବ ବୋଲେ ମୋ ମିତ୍ର ଜାଣି ଅନୁସରେ । ବହରିବେ ତାଙ୍କ ପୁତ୍ର ସେବାରେ । ବର୍ତ୍ତିବେ ସୈନ୍ୟ ରକ୍ଷ ଦୁଷ୍ଟବନ୍ଧନ ତେବେ ଆଜ୍ଞା ପାଳନରେ ହେ । ବବୁଧେ । ବୃଷ୍ଟି ସୁଧା ଯେ ବିସନ୍ତ ମରୁତ । ବଶେ ସମସ୍ତ କଲ ପଲ୍ଲବିତ । ବଂଶ ଦୁଷ୍ଟର ମୃତ୍ୟୁଭାବେ ରହିଲେ ଥିଲ ଜନେ ଆଚମ୍ବିତ ହେ । ବଦୂଷେ । ୧୪ ।

---

ଅଗ୍ନି ପରୀକ୍ଷା କରାଇ ନାଶକଲ ) "ଏକଥା" ଭଲ ୧ କ ମନ୍ଦ ( ଭଲ ଏ କନ୍ତୁ ମନ୍ଦ ନୁହେ ) । ଯେବେ ମୁହିଁ ବଶ୍ୱମ୍ଭର ( ନାରାୟଣ ) ତେବେ ମୋତେ ହେ "ବୃଷାଙ୍କନ" ଭୂଦେବବୃନ୍ଦ ( ବିପ୍ରଗଣ ) ବନସ୍ତେ ( ବଶେଷ ମତରେ ) ସେବିବେ ( ସେବା କରିବେ ) । ୧୩ ।

୧୪ଶ ପଦ—"ରାମ ଏହା କହନ୍ତେ" ବ୍ରହ୍ମା ବୋଇଲେ ମୋ ପୁତ୍ର "ବଶିଷ୍ଠ" ଶିବ ବୋଲ୍ଲେ ( ବୋଇଲେ ) ମୋ ମିତ୍ର "ବାମଦେବ ମୁନି" ଜାଣି ( ପୂର୍ବରୁ ଏହା ଜାଣିପାରି ) ଅନୁସରେ ( ଅନୁସରି ଅଛନ୍ତି ) ତାଙ୍କ ପୁତ୍ର ( ତାହାଙ୍କର ପୁତ୍ରମାନେ ) ସେବାରେ ( ତୁମ୍ଭ ସେବାକରି ) ବହିରିବେ ( କାଳ କାଟିବେ ) । "ଏହାଶୁଣି ରାମ କହିଲେ" ହେ ବବୁଧେ ! ( ହେ ଦେବତାମାନେ ) ଦୁଷ୍ଟ ରକ୍ଷ (ରାକ୍ଷସ) ବନ୍ଧନେ ( ଛଡ଼ା ) "ମରିଥିବା" ସୈନ୍ୟ ( ଋକ୍ଷକପି ରାକ୍ଷସସୈନ୍ୟ ) ବର୍ତ୍ତିବେ "ଯେବେ" ତେବେ "ଅମ୍ଭ" ଆଜ୍ଞାପାଳନରେ (ପାଳନ କରିବାର) "ଜାଣିବା" । "ଏହାଶୁଣି ଦେବତାମାନେ" ସୁଧାବୃଷ୍ଟି "କରନ୍ତେ" "ସେହି" ସେ ଅମୃତବର୍ଷଣ ଯେ ବସନ୍ତମରୁତ ( ବସନ୍ତ ପବନରୂପ ) "ବନ୍ଧୁବା" ବଶେ ( ଯୋଗୁଁ ) ସମସ୍ତ ( ସବୁ ସୈନ୍ୟଙ୍କୁ ) ପଲ୍ଲବିତ ( ବୃକ୍ଷ ପଲ୍ଲବିଲ ପ୍ରାୟ ) କଲ ( ଜୀଇଉଠିଲେ ) ଦୁଷ୍ଟର ( ଦୁର୍ଜନ ରାବଣର ) ବଂଶ ( କୁଳ ) ୧ ବଂଶ ( ବାଉଁଶଗଛ ପ୍ରାୟ ) "ନ ପଲ୍ଲବ" ମୃତ୍ୟୁଭାବେ ( ମଲଲୋକ ତୁଲ୍ୟ ) ରହିଲେ । ହେ ବଦୂଷେ

---

୧—କିଂ ବୃସ୍ତାସ୍ୟାଂ ବିତର୍କେଚ ନଦୋଷେଧପ୍ରଶ୍ନୟୋରପି ଇତ୍ୟମରଃ ।
୧—ପଦଂ ନୈକଯଦା କଶ୍ଚାରବାଟପେ ଦୋଷୋ ବସନ୍ତସ୍ୟାକଂ ଇତ୍ଯ ପ୍ରାସଙ୍ଗିକଃ ।

ବ୍ୟାପାରେ ବଳ ବନଦ୍ୱ ଜନ ଯଥା ଯୁଦ୍ଧାର୍ଥେ ତଥା ସର୍ବେ ଧାଇଁ । ବେନଦଗ ମନ୍ତ୍ରୀ ଏ ନିବର୍ତ୍ତାଇଁ । ବାହୁଡ଼ିଲେ ସୁରେ ସର୍ବେ ଅଯୋଧ୍ୟାକୁ ଜବେ ଯିବା କେହ୍ନ କହ୍ନ ହେ । ବୀରେନ୍ଦ୍ର । ବିଭୀଷଣ ପୁଷ୍ପକ ସମର୍ପଇ । ବଇଦେହୀଙ୍କି ମନ୍ଦୋଦରୀ ତହିଁ । ବିଳୋଇ ରହିଲେ ଶ୍ରୀରାମ ସବଳେ ବସନ୍ତେ ଗଗନେ ଯାଇ ସେ । ବିମାନ ।୧୫।

---

( ହେ ପଣ୍ଡିତମାନେ ) ଥିଲ ଜନେ ( ତହିଁ ଥାଇ ଦେଖୁଥିବା ଲୋକେ ଦେଖି ) ଆଚମ୍ବିତ ( ଆଶ୍ଚର୍ଯ୍ୟ ) ହେଲେ । ୧୪ ।

୧୫ଶ ପଦ—ବ୍ୟାପାରେ ( ବ୍ୟବସାୟାଦ ଗୃହବ୍ୟାପାରରେ ) ବଳ ( ଅଧିକ ) "ପରାକ୍ରମ କରି" ଜନ ( ଲୋକେ ) ଯଥା ( ଯେଉଁରୂପ ) ବନଦ୍ୱ ( ବେଣୀ ଶୋଭାପଡ଼ିଲା ) ତଥା ( ସେହିପରି ) "ଯୁଦ୍ଧ ବ୍ୟବସାୟରେ ଅଧିକ ପରାକ୍ରମ କରି ଧାଇଁ କିଦ୍ରା ଯାଉଥିବା" ସର୍ବେ ( ସବୁ ସୈନ୍ୟ ) "ଉଠି" ଯୁଦ୍ଧାର୍ଥେ ( ଯୁଦ୍ଧ କରିବାପାଇଁ ) "ବ୍ୟବସାୟୀ ଜନ ନିଦ୍ରାରୁ ଉଠି ଧାଇଁଲା ପ୍ରାୟ" ଧାଇଁଲେ । ବେନ ଦଗ ( ଦୁଇପକ୍ଷର—ରାମ ଓ ବିଭୀଷଣର ) ମନ୍ତ୍ରୀଏ ( ମନ୍ତ୍ରୀମାନେ ) ନିବର୍ତ୍ତାଇ ( ବୁଝାଇ ଫେରାଇ ନେଲେ ) । ସର୍ବେ ସୁରେ ( ସମସ୍ତ ଦେବଗଣ ) ବାହୁଡ଼ିଲେ ( ସ୍ୱର୍ଗକୁ ଚାଲିଗଲେ ) । ହେ ବୀରେନ୍ଦ୍ର ( ରାମ ) କହ ( କହିଲେ ) ଅଯୋଧ୍ୟାକୁ ଜବେ ( ବେଗରେ ) କେହ୍ନ ( କିରୂପେ ) ଯିବା ? । "ଏହା ଜାଣି" ବିଭୀଷଣ ପୁଷ୍ପକ "ଯାନ" ସମର୍ପଇ ( ଦେଲା ) । "ଏଥିରେ ବସିକି କରି ଗଲେ ବେଗରେ ଯିବ ଏହି ଅଭିପ୍ରାୟ" । ତହିଁ ( ସେଠାରେ ) ମନ୍ଦୋଦରୀ ( ଇନ୍ଦ୍ରଜିତ ମାତା ) ବୈଦେହୀଙ୍କି ( ସୀତାଙ୍କୁ ) ୧ ବିଳୋଇ ( ବିନତି କରି ) ରହିଲେ । ସବଳେ ( ସସୈନ୍ୟରେ ) ଶ୍ରୀରାମ ବସନ୍ତେ ( ସ୍ଥାନ ଆରୋହିଲେ ) ସେ ବିମାନ ( ସେ ପୁଷ୍ପକ ଯାନ ) ଗଗନେ ( ଆକାଶ ମାର୍ଗରେ ) ଯାଇ ( ଗଲା ) ।୧୫।

---

୧—ବିଳୋଇ ଦେଶୀକ ଭାଷା ।

ବର୍ଣ୍ଣବର୍ଣ୍ଣନେ ଅମରବରମଣି ମରକତ କର ଯାହାରେ ।
ବାଚକ ସେ ପ୍ରିୟାରେ ସ୍ନେହଭରେ । ବସିବା ଦମ୍ପତି ସମ୍ପତ୍ତିରେ
ରଥେ ପ୍ରତେ ନ ଥିଲା ମନରେ ରେ । ବାନ୍ଧବ । ବାଳାମଣି ଶୁଣି
କଲେ ଉତ୍ତର । ବିପତ୍ତିକ ସାକ୍ଷୀ ପୁଣି ଏ ମୋର । ବିରସ ହରଷ
ସ୍ମରଣଙ୍କୁ ଦରଶନ କଲା ଦଇବର ହେ । ବାନ୍ଧବ ୧୬ ।

---

୧୬ଶ ପଦ—ଯାହାରେ (ଯାହାଙ୍କୁ) ବର୍ଣ୍ଣ ବର୍ଣ୍ଣନେ ( ରୂପ ବର୍ଣ୍ଣିବାରେ) ଅମର ବରମଣି ( ଇନ୍ଦ୍ର ନୀଳମଣି ) ମରକତ "ମଣି" କର ( ସଦୃଶ )ବର୍ଣ୍ଣନା କରାଯାଏ ସେମନ୍ତ ଯେ ରାମ ※ ସେ ସ୍ନେହଭରେ ( ଅତି ସ୍ନେହରେ ) ପ୍ରିୟା'ରେ ବାଚକ (ସୀତାଙ୍କୁ କହିଲେ) । ଦମ୍ପତିସମ୍ପତ୍ତିରେ ( ଦୁହିଙ୍କ ଶ୍ରୀ ରୂପ ସମ୍ପଦ ଯେନ ) ରଥେ ( ରଥରେ ) ବସିବା "ବୋଲି" ମନରେ ପ୍ରତେ ( ପ୍ରତ୍ୟୟ ) ନ ଥିଲା । ୧ ରେ ବାନ୍ଧବ ( ହେ ପ୍ରିୟେ ) "ରାବଣ ମଲା ତୋତେ ପାଇଲି ଏହା ଈଶ୍ୱରଙ୍କ କୃପା ଏହିଭାବ" । "ରାମଙ୍କର ଏରୂପ ସ୍ନେହଗର୍ଭ ବଚନ" ଶୁଣି ବାଳାମଣି "ସୀତା" ଉତ୍ତର କଲେ ମୋର ବିପତ୍ତିକ ପୁଣି "ସମ୍ପତ୍ତି"କ ଏ ( ପୁଷ୍ପକଯାନ ) ସାକ୍ଷୀ "ଅଟେ" । "ରାବଣ ହରି ଆଣିଲାବେଳର ବିପତ୍ତିକି ଦେଖିଥିଲା ବର୍ତ୍ତମାନ ଦମ୍ପତି ସମ୍ପତ୍ତିକି ଦେଖିଲା ଏହିଭାବ" । ହେ ବାନ୍ଧବ ! ( ହେ ନାଥ ) "ମୋହର" ବିରସ ହରଷ ସ୍ମରଣଙ୍କୁ ( ବିରସ ସ୍ମର୍ଣ୍ଣ ଆଉ ହର୍ଷ ସ୍ପର୍ଶ ଏ ଦୁଇ କଥାଙ୍କୁ ) "ଏ ଯାନ" ଦଇବର ( ଦୈବଯୋଗୁଁ ) ଦରଶନ କଲା ( ଦେଖିଲା ) । ଦଇବର ( ବିଧାତାର ) "ଏ ଶକ୍ତି ଅଛି ଅନ୍ୟ କାହାର ନାହିଁ" । 'ଆଗେ ବିଧାତା ବିରସ ଦେଖାଇଥିଲା ଏବେ ହର୍ଷ ଦେଖାଇଲା ଏହି ଫଳିତାର୍ଥ" । ୧୬ ।

---

※—ଯଦୁକ୍ତଂ ସାହିତ୍ୟେ—ଯେବ ବିଶେଷଣ ଦ୍ୱାରା ବିଶେଷ୍ୟ ଲଭ୍ୟତେ
ସା ସୁଧର୍ମିତା । ଅର୍ଥ ମଧ୍ୟରେ ସୁଧର୍ମିତା ଗୁଣ ରହିଲା ।
ତତ୍ର ସୁଧର୍ମିତା ଯଥା—ଅସ୍ତୁ ମୁଦମ୍ବୁଧି ହ୍ରଦାଭଞ୍ଜନଃ
ପଦ୍ମିନୀନା ମୁଦମ୍ବୁଗିର ଦନାଲୀ କାଳଂ ମନ୍ଦାରହୁଷ୍ଟଂ । ଇତି ।
୧—ରେ ସ୍ନେହଗର୍ଭ କୁତ୍ସିତ ସମ୍ବୋଧନେ ।

ବନ୍ଦର୍ପକର ଦର୍ପକର ରୂପ ଯେ ଭାରତୀ ରଚତି ବଚନେ ।
ବଂଟେ ତୃଣାଙ୍କୁର ମେରୁ ଚୋ ଗାତ୍ରେ । ବନ୍ଧ ବନ୍ଧନ ନଳହେତୁ
ଜଳରେ ତଥା ରହିଛନ୍ତି ଗୋତ୍ରେ ରେ । ବାନ୍ଧବଂ ବରୁଣର ପ୍ରସନ୍ନ
ମନେ ଧାଇ । ଏଁଟି ଏ ସ୍ଥାନେ କୁଶଶଯ୍ୟା ମୁହିଁ । ବାମାକ୍ଷୀ ଭାଷେ
ଅଶୋକବନ ଦଣେ ଏଥିଁ ମୁଁ ମହୀରେ ଶୋଇ ହେ । ବାନ୍ଧବ ।୧୭।

---

୧୭ଶ ପଦ—"ଗ୍ରାମ କହିଲେ" ରୂପ ( ସୌନ୍ଦର୍ଯ୍ୟରେ ଅଥବା ଅଭୂଷଣରେ ଯେଉଁ ଭୂଷଣ ଗ୍ରାମଙ୍କ ଅଛି )ନ୍ଦପକର ( କନ୍ଦର୍ପର ) ବନ୍ଦର୍ପକର ( ଗର୍ବ ହରଣକାରୀ ) ଯେ ( ଯେଉଁ ଗ୍ରାମ ✻ ) ବଚନେ ( ଆଶ୍ଚର୍ଯ୍ୟ ) ୧ଭାରତୀ ( ଭାଷା ) ରଚତ ( ରଚିଲେ ) । ରେ ବାନ୍ଧବ "ଯଥା" ଚୋ ଗାତ୍ରେ ( ତୋ ଦେହରେ ) ତୃଣାଙ୍କୁର ( ଘାସର ଗଜା ) ମେରୁଂ ( ମେରୁ ପର୍ବତକୁ ) ବନ୍ଧେ ( ବନ୍ଧୁଅଛୁ ;।° ) ତଥା ନଳ ହେତୁ (ନଳବାନରଂ ଯୋଗେ) ବନ୍ଧ ( ସେତୁବନ୍ଧ ) ବନ୍ଧନ ( ବାନ୍ଧିଲୁ ) ଗୋତ୍ରେ ( ପର୍ବତମାନେ ) ଜଳରେ "ନ ବୁଡ଼ି" ରହିଛନ୍ତି । "ତୋ କଟି ତୃଣାଙ୍କୁର କୁଚ ମେରୁକୁ ବନ୍ଧିଲୁ ପ୍ରାୟ ପର୍ବତମାନେ ଜଳେ ନ ବୁଡ଼ି ରହିଛନ୍ତି ଦେଖି ଏରୂପେ କହିବାର ବଚନ ହେଲା ଏହିଭାବ" । ବରୁଣର ପ୍ରସନ୍ନ ମନେ ଧାଇଁ ( ବରୁଣ ଦେବତା ମୋତେ ପ୍ରସନ୍ନ ହେବେ ଏମନ୍ତ ଭାବିଣ ) ଏଁ ସ୍ଥାନେ ( ଅଙ୍ଗୁଳି ଦେଖାଇ କହିଲେ ଏହି ସ୍ଥାନରେଂ) ମୁହିଁ କୁଶଶଯ୍ୟା ବନ୍ଧି ( କଳଥିଲି ) । ବାମାକ୍ଷୀ ( ବାମନୟନା ସୀତା ) ଭାଷେ ( କହିଲେ ) ହେ ବାନ୍ଧବ ( ହେ ନାଥ ) ଦଣେ (ଅଙ୍ଗୁଳିଦ୍ୱାରା ଦେଖାଇ ଦେଲେ ହେଖ ଦିଶୁଅଛି ) ଅଶୋକବନ ଏଥିଁ ( ଏଥିରେ ) ମୁଁ ମହୀରେ ( ଭୂଇଁରେ ) ଶୋଇଥିଲି ୪ ଦୁର୍ଜ୍ଜନଙ୍କରି ଦଶା ସମାନ ଏହିଭାବ ।୧୭।

---

✻—ଏଠାରେ ମଧ୍ୟ ଷୁଧର୍ମିତା ଗୁଣ ରହିଲି ଲକ୍ଷଣ ପୂର୍ବପଦରୁ ଜାଣିବ ।

୧—ବାହ୍ମୀ ତୁ ଭାରତୀ ଭାଷା ଗୀର୍ବାଗ୍‌ବାଣୀ ସରସ୍ୱତ୍ୟମରଃ ।

;।° ଏହା କହନ୍ତେ ଲକ୍ଷଣାରେ ସାଧ୍ୟବସାନା ହେଲି—କଟୀତୃଣାଙ୍କୁର କୁଚ ମେରୁ ନି କହନ୍ତ ତୃଣାଙ୍କୁର ମେରୁକୁ ବହୁଛୁ । ଯଥା—

ଲତାମୂଳେ ପ୍ରାନୋପଦେଶ ପଲ୍ଲୋବେଣୋ ଦ୍ରୁମକରଃ ।
୪ ରଞ୍ଜିରକାରା ବହତି ଜଳଧାରା କୁବଳସ୍ଥା ଦତ ସାହିତ୍ୟେ ।

ବ୍ୟବସ୍ଥିତେ ଦେଖ ମାଲ୍ୟବନ୍ତକେଶି ମାଲ୍ୟବନ୍ତ ରାମ କଥିତ ।
ବଞ୍ଚିବାରେ ବରଷା କି ବ୍ୟଥିତ । ବରଗିଲୁଁ ଦୂତ ତୋ ପାଶେ
ଉଦନ୍ତ ଘେନି ସେ ବାହୁଡ଼ି ସ୍ଥିତ ରେ । ବରାଙ୍ଗି । ବୃକ୍ଷ ଶିଂଶପା ଏ
ସେ ସୀତା ବୋଲି । ବ୍ୟଥାବଶେ ମୁଁ ଯଥା ଆଶ୍ରା କଲି । ବାରତା ପାଇଁ
ତା ତଳେ ଆଶାବୃଦ୍ଧି ଆଶାମାନ ରୁନ୍ଧୁଁ ଥିଲି ହେ ବଲ୍ଲଭ । ୧୮ ।
ବକୁକ୍ଷିବଂଶୀ ବୋଲନ୍ତି କ୍ଷୀଣକୁକ୍ଷି ଅନା ଏ ଋଷ୍ୟମୂକ ଦଶି ।
ବ୍ୟାପିଥିଲି ସନ୍ତାପ ତମନଶି । ବାୟୁଜ ଅରୁଣ ସହ ମିତ୍ର ସୁପ୍ରାଦରେ

୧୮ଶ ପଦ—"ପୁଣି" ରାମ ୧ ବ୍ୟଥିତ ହୋଇ କଥିତ (କହିଲେ) ହେ ମାଲ୍ୟବନ୍ତକେଶି (ମାଳାପ୍ରାପ୍ତ କେଶବିଶିଷ୍ଟା ପ୍ରିୟେ) ମାଲ୍ୟବନ୍ତ (ମାଲ୍ୟବାନ୍ ପର୍ବତ ଏହି) ଦେଖ "ଏଥିରେ ମୋହର" ବରଷା (ବର୍ଷାକାଳ) ବଞ୍ଚିବାରେ (କଟାଇବାରେ) କି ବ୍ୟଥିତ (କି ଦୁଃଖଜାତ) ହେଲା "ତାହା ଅକଥନୀୟ ଏହିଭାବ"। ରେ ବରାଙ୍ଗି ! "ଏହି ପର୍ବତରେ ଥାଇଁ" ତୋ ପାଶେ (ତୋ ପାଖକୁ) ଦୂତ ବରଗିଲୁଁ (ପଠାଇଲୁ) "ତୋଠାରୁ" ଉଦନ୍ତ (ବାର୍ତ୍ତାଘେନି) ସେ (ଦୂତ) ବାହୁଡ଼ି "ଆସି ଏଠାରେ" ସ୍ଥିତ (ମିଳିଲା)। "ଏମନ୍ତ ଶୁଣି" ସୀତା ବ୍ୟଥାବଶେ (ଦୁଃଖର ବଶବର୍ତ୍ତୀ ହୋଇ) ବୋଲି (ବୋଇଲେ) ହେ ବଲ୍ଲଭ (ହେ ନାଥ) ମୁଁ ଯଥା (ଯେରୂପ) ଶିଂଶପା ବୃକ୍ଷ ଆଶ୍ରା କଲି ସେ "ବୃକ୍ଷ" ଏ (ଏହି) "ଦେଖ" ତା ତଳେ (ସେହି ବୃକ୍ଷମୂଳରେ) ବାରତା ପାଇ (ତୁମ୍ଭ ବାର୍ତ୍ତା ଦୂତମୁଖରୁ ପାଇ) ଆଶା ବୃଦ୍ଧି (ତୁମ୍ଭଙ୍କୁ ପାଇବାର ଆଶା ବଢ଼ିଲା) "ଆଗରୁ ଆଶା ନ ଥିଲା ଏହିଭାବ"। "ସେହିଦିନୁ" ଆଶାମାନ (ଦିଗମାନଙ୍କୁ) ରୁନ୍ଧୁଁ ଥିଲି। "ତୁମ୍ଭେ ଆସିବ ବୋଲି ଏହିଭାବ"। ୧୮ ।

୧୯ଶ ପଦ—ବକୁକ୍ଷିବଂଶୀ (ରାମ) ବୋଲନ୍ତି ହେ କ୍ଷୀଣକୁକ୍ଷି ! (କ୍ଷୀଣୋଦରି) ଦଶି (ଦିଶୁଅଛି) ଏ ଋଷ୍ୟମୂକ "ଗିରିକି" ଅନା (ଚାହାଁ) ୧ ସନ୍ତାପ (କଷ୍ଟରୂପ) ତମନଶି (ଅନ୍ଧାର ରାତ୍ରି) ବ୍ୟାପିଥିଲି (ମୋତେ

୧—ବ୍ୟଥା—ଇତିଚ୍ ଜାତାର୍ଥେ—ତାରକତ୍ୱଂ ନିର୍ଭିଃ ଯନ୍ତ୍ରା ।
୧—ସନ୍ତାପ ସ୍ତ୍ରାପକୃଚ୍ଛ୍ରେଷ୍ୱୋ ଶବ୍ଦ ମେଦିନୀ ।

ହୃଦପଦ୍ମ ତୋଷି ରେ । ବାନ୍ଧବ ! ବନ୍ଧ କଉଶିକଭବ ଗୁପ୍ତରେ । ବଇଦେହୀ ପ୍ରମାଣ ତାହା କରେ । ବନ୍ଧ୍ୟାନ ମୁଁ ଚନ୍ଦ୍ର ତାର ଭୂଷଣରେ ଘନ ହୋଇ ଏଥିଠାରେ ହେ ! ବାନ୍ଧବ । ୧୯ ।

---

ହୋଇଥିଲୁ ) । "ତେଣୁ ଶକ୍ର ମୋତେ ଅନ୍ଧାର ଘୋଟିଥିଲା ଏହିଭାବ" । ବାସ୍ଥିକ ୨ ଅରୁଣ ( ମାରୁତି ରୂପ ଅରୁଣ ନାମକ ସୂର୍ଯ୍ୟଙ୍କ ସାରଥି ) ସଙ୍ଗ ( ସହିତ ) ୩ ମିତ୍ର ( ସୂର୍ଯ୍ୟପୁତ୍ର ) "ହିନ୍ଦୁ ପୁଣ ସୁଗ୍ରୀବ ସହିତ" ମିତ୍ର ( ମିତ୍ରତାରି ) ୪ ସପାଦରେ ( ସବାଦରେ—ପରସ୍ପର କଥୋପକଥନ ରୂପ ) ସପାଦରେ ( ଉତ୍ତମ କାରଣରେ ) ହୃଦପଦ୍ମ ( ମୋହର ହୃଦୟ-କମଳ ) ତୋଷିଲା ( ଫୁଟିଲା ) । "ଆଗ ଅରୁଣୋଦୟ ପଛେ ସୂର୍ଯ୍ୟୋଦୟ ହେଲା ପ୍ରାୟ ଆଗ ମୋହର ହନୁମାନର କଥାବାର୍ତ୍ତା ପଛେ ସୁଗ୍ରୀବ ସଙ୍ଗେ ମିତ୍ରତା ହେଲା ଏହିଭାବ" । ହେ ବାନ୍ଧବ ! "ଏଠାରେ" ଗୁପ୍ତରେ ( ଆତ୍ମେ ଲୁଚି ରହି ) ୫ କଉଶିକଭବ ( ଇନ୍ଦ୍ର ପୁତ୍ର ବାଳିରାଜାକୁ ) ବନ୍ଧ ( ଶର ବିନ୍ଧି ମାଇଲୁ ) । ବଇଦେହୀ ( ସୀତା ) ତାହା ( ସେ କଥାକୁ ) ପ୍ରମାଣ *କରେ (ସତ୍ୟ କଲେ) "ତୁମ୍ଭେ କହିବା କଥା ସତ ବୋଲି ସୀତା ବୋଇଲେ ଏହିଭାବ" । "ପୁଣି ସୀତା କହିଲେ" ହେ ବାନ୍ଧବ ( ହେ ପ୍ରିୟ ) "ମୁଁ ତୁମ୍ଭ ବିଚ୍ଛେଦରେ" ଘନ (ଦୁଃଖିନୀ) ହୋଇ ତାର ୬ ଚନ୍ଦ୍ର (ତାଖ ଚନ୍ଦ୍ରଉଜ୍ଜ୍ୱଳ) ୭ ତାର (ଉଜ୍ଜ୍ୱଳ) ଚନ୍ଦ୍ର ( ସୁବର୍ଣ୍ଣ ) ଭୂଷଣରେ *ବନ୍ଧ୍ୟାନ ଏଥିଠାରେ "ହେଲି" । "ଅଙ୍ଗରୁ ଅଳଙ୍କାର କାଢ଼ି ଏଠାରେ ପକାଇ ଦେଲି ଏହିଭାବ" ୧୯ ।

---

୨—ଅରୁଣୋ ବ୍ୟକ୍ତରାଗେଽର୍କେ ସନ୍ଧ୍ୟାରାଗେ ସାରଥୌ ଇତି ବିଶ୍ୱଃ ।

୩—ମିତ୍ରଂ ସଖା ସୁହୃଦିତ୍ୟମରଃ । ଦ୍ୟୁମଣି ସ୍ତରଣିର୍ମିତ୍ର ଶ୍ଚିତ୍ରଭାନୁ ର୍ବିରୋଚନ ଇତ୍ୟପି ।

୪—ପାଦାରଶ୍ମ୍ୟଙ୍ଘ୍ରି ତୁର୍ଯ୍ୟାଂଶେ ଲଞ୍ଚ ହଲାଙ୍ଗୁଳୟଃ ।

୫—ମହେନ୍ଦ୍ର ଗୁଗ୍ଗୁଲୁଲୁକ ବ୍ୟାଳଗ୍ରାହିଷୁ କୌଶିକଃ ଇତ୍ୟମରଃ ।

*—ଚଳଦ୍ଧୋରଣିକ୍ୟଂ ।

୬—ଚନ୍ଦ୍ରଃ କର୍ପୂର କାମ୍ପିଲ୍ଲ ହେମ ଶୁଭ୍ରାଂଶୁ ବାରିଷୁ ଇତି ବିଶ୍ୱଃ ।

୭—ତାରେ। ଦାନବଭେଦେ ସ୍ୟାଦ୍ ବିଶୁଦ୍ଧୌ ଶୁଦ୍ଧମୌକ୍ତିକେ । ଇତି ।

ବିଚ୍ଛେଦ ଥିଲା ଦମ୍ଭତରୁ ତରୁଣି ବିଚ୍ଛେଦ ପରଶୁ ତୋହର । ବାହୁବନ୍ଧେ ପଡ଼ିଲୁଁ କବନ୍ଧର । ବିନାଦର କଲା ସୋଦର ଏସ୍ଥାନେ ଗିର ଆଦର ରାମର ଯେ । ବରାଙ୍ଗୀ । ବୋଲେ ତୁମ୍ଭେ ବଳବନ୍ତ କେଶରୀ । ଈଶ୍ୱର ମୁଁ ଅବଳା ସୁକୁମାରୀ । ବିଲୋକନ କରିବା ପଞ୍ଚ-ନଟୀକି ଏହି ସିନା କଷ୍ଟକାରୀ ହେ ! ବାନ୍ଧବ । ୨୦ ।

ବାହୁଜବର ବୋଇଲେ ବନଦୋଷ ବାନ୍ଧବ ମନରେ ନ ଘେନ । ବଣିଜର ଭାବ କରି ବର୍ଦ୍ଧନ । ବସାଇ ବିଚ୍ଛେଦ ତୁଳପାତେ ତୁଳି

---

୨୦ଶ ପଦ—ରାମ କହିଲେ ରେ ତରୁଣି ! ତୋହର ବିଚ୍ଛେଦ ରୂପ ପରଶୁ ( କୁଠାର ) "ମୋହର" ଦମ୍ଭରୂପ ତରୁ ( ବୃକ୍ଷକୁ ) ବିଚ୍ଛେଦ (କାଟି) ଥିଲା "ତୋ ବିନା ମୁଁ ଅଧୈର୍ଯ୍ୟ ହୋଇଥିଲି ଏହିଭାବ" । "ସେ ସମୟେ" କବନ୍ଧର ( କବନ୍ଧନାମକ ଦୈତ୍ୟର ) ବାହୁବନ୍ଧେ ( ବାହୁପାଶ ବନ୍ଧନରେ ) ପଡ଼ିଲୁଁ । ଏସ୍ଥାନେ ( ଏହିଠାରେ ) ସୋଦର ( ସାନଭାଇ ଲକ୍ଷ୍ମଣ ) ବିନା-ଦର କଲା ( ତା ବାହୁ ଛେଦ ନିର୍ଭୟକଲା ) । "ଏହାଶୁଣି" ବରାଙ୍ଗୀ (ସୀତା) ରାମର ଗିର ଆଦର ( ରାମଙ୍କ କହିବା କଥାରେ ଆଦରକଲେ ) ବୋଲେ ( ବୋଇଲେ ) ତୁମ୍ଭେ ବଳବନ୍ତ କେଶରୀ ( ବଳିଷ୍ଠଶ୍ରେଷ୍ଠ କିମ୍ବା ବଳବନ୍ତ ସିଂହ ବା ବଳବନ୍ତ ପକ୍ଷରେ , ତୁମ୍ଭକୁ କେ ( କିଏ ) ହରି ନେବ ? ) ହେ ବାନ୍ଧବ ( ହେ ନାଥ ) ଈଶ୍ୱର ( ବିଚାରକର ) ମୁଁ ସୁକୁମାରୀ ( କୋମ-ଳାଙ୍ଗୀ ) "ପୁଣି" ଅବଳା ( ବଳହୀନା ) ବିଲୋକନ କରିବା ( ଦେଖିବା-ହେତୁରୁ ) ପଞ୍ଚବଟୀକି ( ପଞ୍ଚବଟି ବନକୁ ) ଏହି "ବନ" କଷ୍ଟକାରି ସିନା ( କଷ୍ଟ ଦେଇଥିଲା ସିନା ) । ଅଥବା ଏହି ପଞ୍ଚବଟୀକି ବିଲୋକନ କରିବା ( ନ ଚାହିଁବା ) "କାହିଁକି" "ଏ ବନ ଆମ୍ଭ ଦୁହିଁଙ୍କର" କଷ୍ଟକାରୀ ( କଷ୍ଟ-ଦାତା ) ସିନା । "ତୁମ୍ଭେ ବଳବନ୍ତ ଥିବାରୁ କବନ୍ଧ ମାରି ଉଦ୍ଧରିଲ ମୁଁ ବଳହୀନା ରାବଣହାତରୁ କିପରି ଯାନ୍ତି ଏହିଭାବ" । "ଏ ବନ ଯେଣୁ ଦୁହିଙ୍କଙ୍କୁ କଷ୍ଟ ଦେଇଛି ଏଣୁ ନ ଚାହିଁବା ଉଚିତ ଏହି ଅଭିପ୍ରାୟ" । ୨୦ ।

୨୧ଶ ପଦ—"ସୀତା ଏରୂପେ କହିବାରୁ ଶୁଣି" ବାହୁଜବର (କ୍ଷତ୍ରିୟ-ଶ୍ରେଷ୍ଠ ରାମ ) ବୋଇଲେ, ରେ ବାନ୍ଧବ ବନଦୋଷ ( ବନର ଦୋଷକୁ )

ଦେଲା ସିନା ପ୍ରେମଧନରେ । ବାନ୍ଧବ । ବାରେ ନିରେଖ ଚିତ୍ରକୂଟ-
ଗିରି । ବନୋଦକୁ ଥିଲୁ ଏଠାଁ ଆଦରି । ବୋଲୁଁ ଭରଦ୍ୱାଜବନେ
ମିଳେ ରଥି ରହ ବୋଲି ଯେଣୁ ସ୍ମରି ସେ । ବୀରେନ୍ଦ୍ର । ୨୧ ।

ବ୍ୟୋମରେ ଅମରେ ଗମନ୍ତି କି ଋଷିକୁମରେ ମନେ କରି-
ଥିଲେ । ବଳ ନିବିଧରେ ଯହୁଁ ଦେଖିଲେ । ବଳି ତିରସ୍କାର
ନିବନ୍ଧନ ତହୁଁ ଦେଖି ଗୁରୁଙ୍କୁ କହିଲେ ସେ । ବଟୁରେ । ବ୍ୟଗ୍ର

---

ମନରେ ନ ହୋନ । ବଣିଜର ଗ୍ରାବ (ବଣିଆ ଯାଆନ୍ତି ବାଣିଜ୍ୟକୁ) ବର୍ଦ୍ଧନକରି (ବଢ଼ାଇଦେଇ) ବିଚ୍ଛେଦ ତୁଳପାଣେ (ବିରହରୂପ ନିକିତିରେ) "ଆନ୍ତୁହନ୍ତୁଙ୍କ" ପ୍ରେମଧନରେ (ପ୍ରେମରୂପ ଧନକୁ) ବସାଇ (ଥୋଇ) ତୁଳିଦେଲ ସିନା (କେତେ କମି ଗୁଟିବାପାଇଁ ତୁଳାଇ) "ଏଣୁ ଏ ବନ ଭିଳକାଳ ଏହାକୁ ନ ଗ୍ରହିବା କାହିଁକି ଏହିଭାବ" । ରେ ବାନ୍ଧବ ! ବାରେ ('ଅରେ) ଚିତ୍ରକୂଟ ଗିରି (ଚିତ୍ରକୂଟ ପର୍ବତକୁ) ନିରେଖ (ନିରିଖିଦେଖ) ଏଠାଁ (ଏଠାରେ) ବନୋଦକୁ (କେଳି) ଆଦରିଥିଲୁ । ବୋଲୁଁ (ରାମ ଏମନ୍ତ ବୋଲନ୍ତେ) ରଥ ଭରଦ୍ୱାଜ "ଋଷିଙ୍କ" ବନେ (ଆଶ୍ରମରେ) ମିଳେ ଯେଣୁ "ଟେଣୁ" ସେ ବୀରେନ୍ଦ୍ର "ରାମ" ରହିବୋଲି ସ୍ମରନ୍ତେ (ସେଠାରେ ରହିଲ) । ୨୧ ।

୨୨ଶ ପଦ—ଋଷିକୁମାରେ (ସେ ବନର ଋଷି ପୁତ୍ରମାନେ) ମନେ କରିଥିଲେ ଅମରେ (ଦେବତାମାନେ) ବ୍ୟୋମରେ (ଆକାଶରେ) ଗମନ୍ତିକି (ଯାନ ଚଢ଼ି ଯାଉଅଛନ୍ତି କି) ? ଯହୁଁ (ଯେଉଁ କାରଣ) ନିବ-ଧରେ (ଋଷକପି ରାକ୍ଷସ ଏରୂପେ ତିନିପ୍ରକାର) ବଳ (ସୈନ୍ୟ) ଦେଖିଲେ ତହୁଁ ବଳ ତିରସ୍କାରି (ବଳିଦୈତ୍ୟକୁ ତିରସ୍କାର କରିଥିବା) ନିବନ୍ଧନ (ବାମନ) ଏ ଜନ୍ମ ବଳି (ଜଳବନ୍ତ ରାବଣକୁ ତିରସ୍କାର "କରିଥିବା" ନିବନ୍ଧନ (ନାରାୟଣ) ଏ "ଏମନ୍ତ" ତହିଁ (ସେ ପୁଷ୍ପକରଥରେ) ଦେଖି ଗୁରୁଙ୍କୁ (ଭରଦ୍ୱାଜଋଷିଙ୍କି) କହିଲେ । ହେ ବଟୁରେ (ହେ ପଣ୍ଡିତମାନେ) ସେ "ଭରଦ୍ୱାଜ" ୧ବ୍ୟଗ୍ର (ବ୍ୟାକୁଳହୋଇ) ଆସି ପୂଜନକଲେ (ଶ୍ରୀମଙ୍କୁ-

---

୧—ବ୍ୟଗ୍ରୋ ବ୍ୟାସକ୍ତ ଆକୁଳେ ଇତ୍ୟମରଃ ।

ହୋଇ ପୂଜନ କଲେ ଆସି । ବେକୁଁ ବେକ ହୋଇଲେ ଅତି
ତୋଷୀ । ବିଭିନ୍ନ କର ହିରଣ୍ୟପ୍ରଭ ରଙ୍ଗେ ସେ ନରକେଶରୀ
ଭଷି ଯେ ।୨୨।

ବସାଇ ଆଶ୍ରମ ଆସନେ ଶୁଣିଲେ କାନ୍ତାବିଚ୍ଛେଦ କଷ୍ଟ ଖେଦ ।
ବଧ କରିବା କବନ୍ଧ ଅବଧ୍ୟାଦ । ବିଦ୍ଧ ସପ୍ତଶାଳ ସୁଗ୍ରୀବ ସପକ୍ଷ

---

ପୂଜାକଲେ ) ବେକୁଁ ବେକ ଅତି ତୋଷୀ ହୋଇଲେ ( ରାମଙ୍କୁ ଦେଖି-ହେଲକୁ ବେକ ଅତି ଆନନ୍ଦିତ ହେଲେ ) "ରାମ ସ୍ୱରୂପୀ ନାରାୟଣ ମୋ ଆଶ୍ରମରେ ବିଜେକଲେ ଏହିଭାବ" । ହେ ବିଦୁଷେ "ପୁନରପି" ସେ ( ଋଷି ) ଭଷି ( କହିଲେ ) ହିରଣ୍ୟପ୍ରଭ ( ହିରଣ୍ୟକଶିପୁ ରାକ୍ଷସତୁଲ୍ୟ ରାବଣକୁ ) ରଙ୍ଗେ ( କୌତୁକରେ ) ନରକେଶରୀ ( ନୃସିଂହତୁଲ୍ୟ ନରଶ୍ରେଷ୍ଠ ତୁମ୍ଭେ ) କର ( ହସ୍ତରେ ) ବିଭିନ୍ନ ( ବିଦୀର୍ଣ୍ଣ ) କଲ ✻ ।୨୨।

୨୩ଶ ପଦ—"ଭରଦ୍ୱାଜମୁନି" ଆଶ୍ରମେ ( ଆଶ୍ରମ ମଧ୍ୟରେ ) ଆସନେ ( ଆସନଦେଇ ) ବସାଇ କାନ୍ତାବିଚ୍ଛେଦ ( ସୀତାହରଣ ଜନିତ ) କଷ୍ଟ "ଉତ୍ପନ୍ନ" ଖେଦ ( ସନ୍ତାପ ) "ରାମଙ୍କଠାରୁ" ଶୁଣିଲେ । "ଯେଉଁରୂପେ" କବନ୍ଧଅବଧ୍ୟାଦ ( କବନ୍ଧ ରାକ୍ଷସକୁ ) ବଧକରିବା, ସପ୍ତଶାଳ ବିଦ୍ଧ ( ସପ୍ତ-ଶାଳ ବୃକ୍ଷକୁ ଭେଦକରିବା ) ସୁଗ୍ରୀବ ସପକ୍ଷ ( ସୁଗ୍ରୀବ ସହାୟ ହେବା ) କପୀନ୍ଦ୍ର ଭେଦକରିବା ( ବାଳିକି ମାରିବା ) ହେ ବିଦୁଷେ ( ହେ ପଣ୍ଡିତ-

---

✻—ହିରଣ୍ୟପ୍ରଭ ଉପମାନ, ରାବଣ ଉପମେୟ, ଉପମାନ ପଦ ଉତ୍କୃଷ୍ଟ, ଉପମେୟ-ପଦ ନିକୃଷ୍ଟ ଯଦୁକ୍ତଂ ସାହିତ୍ୟେ—

ଉତ୍କୃଷ୍ଟ ଗୁଣବତ୍ତ୍ୱୟା ସମ୍ଭାବ୍ୟମାନ ମୁପମାନଂ । ନିକୃଷ୍ଟ ଗୁଣବତ୍ତ୍ୱୟା ସମ୍ଭାବ୍ୟମାନ ମୁପମେୟଂ । ହିରଣ୍ୟ (ହିରଣ୍ୟକଶିପୁର୍) ତ୍ୱାପ୍ରାପ୍ତ ପ୍ରଭା ଯାହାର ଏରୂପ ରାବଣ ନରକେଶରୀ—ନରସିଂହ—ନରଶ୍ରେଷ୍ଠ—ଯଥା—ସ୍ୟୁରୁତ୍ତରପଦେ ତ୍ୱମୀ । ସିଂହ ଶାର୍ଦ୍ଦୂଳ ନାଗାଦ୍ୟାଃ ପୁଂସି ଶ୍ରେଷ୍ଠାର୍ଥ ବାଚକା ଇତ୍ୟମରଃ ।

ହିରଣ୍ୟକଶିପୁର ପ୍ରଭା ଅପେକ୍ଷା ରାବଣର ପ୍ରଭା ନିକୃଷ୍ଟ । ନୃସିଂହରୂପେ ହିରଣ୍ୟକଶିପୁକୁ କରସ୍ଥିତ ନଖରେ ତା' ଗୁଣ୍ଡ ବିଦାରିଥିଲେ ଏ ନରଶ୍ରେଷ୍ଠ ରାମରୂପେ ରାବଣ ମୁଣ୍ଡକୁ ଶରଦ୍ୱାରା କରରେ ବିଦାରିଦେଲେ ଏହି ଧ୍ୱନ୍ୟର୍ଥ— ଯଥା—ସାହିତ୍ୟେ—ବାଚ୍ୟାତିଶାୟିନି ବ୍ୟଙ୍ଗ୍ୟେ ଧ୍ୱନିସ୍ତତ୍‌କାବ୍ୟମୁତ୍ତମଂ ।

କପୀନ୍ଦ୍ର କରିବା ଛିଦ୍ର ହେଁ । ବିଦୁଷେ• । ବାରିପରେ ମହୀଧର ଭାସିବା । ବଂଶସହିତେ ରାବଣ ନାଶିବା । ବହିଲ ଗର୍ବ ସର୍ବ ମୋହରେ ହୋଇଛି ଶୁଣି ମୁନି ପ୍ରଶଂସିବା ଯେ । ବାତଜ ।୨୩।

ବନ୍ଦ୍ୟ ବନ୍ଦନୀୟ ଜାଣି ତାର ମନ ବାରୁଣୀବନେ ପଠାଇଁ । ବିଚ୍ଛନ୍ଦରେ ମହାଭୁଜ ଦେଖାଇ । ବିନ୍ଧାଣ ମଲ୍ଲସ୍ତମ୍ଭରେ କଳପ୍ରାୟ ଯୁଦ୍ଧାରମ୍ଭେ ଫୁଟି ରହି ସେ । ବାତଜ । ବିଭାବରୀ ସମ୍ମୁଖରେ ଯେମନ୍ତ । ବନରୁହରେ ବନ୍ଦୀ ମଧୁବ୍ରତ । ବିମୁକ୍ତକରାଇ ରାମ ନାମ ପ୍ରଭା ସ୍ଫୁରିଣ ହୋଇ ପ୍ରଭାତ ସେ । ବିଦୁଷେ ।୨୪।

---

ମାନେ ) ବାରିପରେ ( ସମୁଦ୍ରଜଳରେ ) ମହୀଧର ( ପର୍ବତ ) ଭାସିବା ବଂଶ ସହିତେ ରାବଣ ନାଶିବା ( ସବଂଶେ ରାବଣଙ୍କୁ ମାରିବା ) "ଇତ୍ୟାଦି ବିଷୟ- ମାନ ରାମ କହିବାରୁ" ମୁନି ( ଭରଦ୍ୱାଜ ) ପ୍ରଶଂସିବା ( ରାମଙ୍କୁ ପ୍ରଶଂସା- କରିବାର ) ଶୁଣି ବାତଜ ଯେ ( ହନୁମାନ୍ ) ସର୍ବ ( ଏ ସବୁକଥା ) ମୋହରେ ( ମୋଦ୍ୱାରା ) ହୋଇଛି, "ଏହାସବୁ ମୁଁ କରିଛି ଏହିଭାବ" । "ଏମନ୍ତ" ଗର୍ବ "ମନରେ" ବହିଲ ( କଲ ) । ୨୩।

୨୪ଶ ପଦ—ବନ୍ଦ୍ୟ ବନ୍ଦନୀୟ ( ଦେବପୂଜ୍ୟ ରାମ ) ତାର ( ସେହି- ହନୁମାନର ) ମନ ( ମନରେ ଗର୍ବକରିବା କଥା ) ଜାଣି ( ଅନ୍ତର୍ଯ୍ୟାମୀ ହେତୁରୁ ଜାଣିପାରି ) "ଗୁବଗଞ୍ଜନ ଯୋଗୁଁ ହନୁମାନର ଗର୍ବଖର୍ବ କରିବା ମାନସରେ" ବାରୁଣୀବନେ ( ବାରୁଣୀନାମକ ବନକୁ ) ପଠାଇ ( ପଠାଇ- ଦେଲେ ) । ବିଚ୍ଛନ୍ଦରେ ( ମାୟାରେ ) ମହାଭୁଜ "ନାମା ଏକ ରାକ୍ଷସକୁ" ଦେଖାଇ "ଦେଲେ । ମଲ୍ଲସ୍ତମ୍ଭରେ ( ମାଲଖମ୍ଭରେ ) ବିନ୍ଧାଣ କଳପ୍ରାୟ ଯୁଦ୍ଧାରମ୍ଭେ ( ମହାଭୁଜସଙ୍ଗେ ହନୁମାନ୍ ଯୁଦ୍ଧ ଆରମ୍ଭ କରନ୍ତେ ) ସେ ବାତଜ ( ହନୁମାନ୍ ) ଫୁଟି ରହି ( ନ ପାରି ବାଲ୍ଆହୋଇ ରହିଲେ ) । ଯେମନ୍ତ ( ଯେରୂପ ) ବିଭାବରୀ ସମ୍ମୁଖରେ ( ସନ୍ଧ୍ୟାସମୟରେ ) ବନ- ରୁହରେ ( ପଦ୍ମଫୁଲରେ ) ମଧୁବ୍ରତ ( ଭ୍ରମର ) ବନ୍ଦୀ "ହୁଏ ତଦ୍ରୂପ ହନୁ- ମାନ୍ ମହାଭୁଜରେ ବନ୍ଦୀହେଲେ" । ହେ ବିଦୁଷେ ରାମ ସ୍ମରଣ "ମାତ୍ରେ" ସେ ନାମପ୍ରଭା ସ୍ଫୁରିତ "କାଳ" ହୋଇ ବିମୁକ୍ତ କରାଇ ( କରାଇଲ ) ।

ବୋଧିକଲେ ପ୍ରଭୁ 'ଭେଟ ଆସି ତେଜସ୍ୱୀନେ ଦେଇ ଏହି ଲକ୍ଷିତ । ବ୍ୟାଧି ନାସାଚ୍ଛିନ୍ନ ଘାତେ ବ୍ୟଥିତ । ବିମର୍ଦ୍ଦନେ କ୍ଷମ କଦା ନୋହେ ହୋଏ କି ତା ପ୍ରାକ୍ରମ ନିନ୍ଦିତ ହେ । ବାତଜ । ବିଦ୍ଧସ୍ତନେ ଯା ରଭସ ତ୍ରାସିତ । ବିଜୟୀ ତୁ ହୁଅ ଆଜୁଁ ଜଗତ । ବୋଲିଣି କୈକେୟୀ ପାଶକୁ ପ୍ରେଷିତ ଜାଣିବା ପାଇଁ ଉଦନ୍ତ ସେ । ବୀରେନ୍ଦ୍ର ।୨୫।

---

"ପ୍ରଭାତକାଳ ସନ୍ଧ୍ୟା ସମୟେ ପଦ୍ମଫୁଲରେ ବନ୍ଦ ହୋଇଥିବା ଭ୍ରମରକୁ ମୁକ୍ତ କଲାପ୍ରାୟ ହନୁମାନ୍ ରାମନାମ ସ୍ମରଣ କରିବାରୁ ସେ ମହାତ୍ମନ୍ତ୍ର ତାକୁ ଛାଡ଼ିଦେଲା ଏହି ଭାବ" । ୨୪ ।

୨୫ଶ ପଦ—"ହନୁମାନ୍" ତେଜସ୍ୱୀନେ (ନିକଟେକ ହୋଇ) ଆସି "ରାମଙ୍କର" ଭେଟ "ହୁଅନ୍ତେ" ପ୍ରଭୁ (ରାମ) ଏହି ଲକ୍ଷିତ (ଦୃଷ୍ଟାନ୍ତର) ଦେଇ ବୋଧି କଲେ । ନାସା ଛିନ୍ନଘାତେ (ନାକ ଫୋଡ଼ିବା ଆଘାତରେ) ବ୍ୟଥିତ (ପୀଡ଼ିତ) ବ୍ୟାଘ ବିମର୍ଦ୍ଦନେ (ଅନ୍ୟକୁ ବିମର୍ଦ୍ଦନ କରିବାରେ) କ୍ଷମ ନୋହେ କି (ସମର୍ଥ ହୁଏ) କଦା (କେତେବେଳେ) ତା ପ୍ରାକ୍ରମ (ତାହାର ପରାକ୍ରମ) ନିନ୍ଦିତ ହୋଏ କି (ନିନ୍ଦିତ ନୋହେ) "ସେହିରୂପେ" ହେ ବାତଜ ! "ମହାଭୁଜଠାରୁ ପରାଜିତ ହେବା ବରସମ୍ଭବ" ଯା (ଯାହାକି ତୋହର) ତ୍ରାସିତ (ଭୟ ଜାତ ହୋଇଅଛି ସେ) ରଭସ (ବେଗରେ) ବିଦ୍ଧସ୍ତନେ (ବିଦ୍ଧଶୂନ୍ୟ) "ହେବ" । ଆଜୁଁ (ଆଜିଠାରୁ) ତୁ ଜଗତେ ୧ ବିଜୟୀ (ଜଗଜ୍ଜୟୀ) ହୁଅ । ସେ ବୀରେନ୍ଦ୍ର (ରାମ) "ଏମନ୍ତ" ବୋଲିଣ (କହି) କୈକେୟୀ (ଭରତ) ପାଶକୁ ଉଦନ୍ତ ଜାଣିବାପାଇଁ (ଆମ୍ଭେ ଆସିବା ବାର୍ତ୍ତା ପାଇବା ନିମିତ୍ତ) ପ୍ରେଷିତ (ହନୁମାନଙ୍କୁ ପଠାଇଲେ) । "ହନୁମାନଙ୍କୁ ନିସ୍ତେଜ-ଦେଖି ରାମ ବୋଇଲେ ନାକ ଫୋଡ଼ା ହୋଇଥିବା ବାଘ ବ୍ୟଥା ପାଇ ଲୋକଙ୍କୁ ବିଶେଷ ଆଘାତ କଲା ପ୍ରାୟ ଲଙ୍କା ଯୁଦ୍ଧରେ ମହାବଳ ବିଜୟୀ ତୁ ମହାଭୁଜଠାରୁ ପରାଜିତ ହେବାରେ ନିନ୍ଦିତ ନୋହୁ ବରଂ ଆଜିଠାରୁ ପ୍ରଶଂସ୍ୟ ଜଗଜ୍ଜୟୀ ହେବୁ ଭରତକୁ ଯାଇଁ ବାର୍ତ୍ତା କହ ଏହି ସରଳାର୍ଥ" । ୨୫ ।

---

୧—ବିଜୟୀସ୍ତୁ ଜଯେ ପାର୍ଥେ ଗୌର୍ଯ୍ୟାଂ ଚ ବିଜୟାତ୍ପଥୌ ଇତ୍ୟଭିଧାନଃ ।

ବଢ଼ାଇଥିଲେ ଶୃଙ୍ଗବେର ପାଳକ ମେଳ ହୋଇ ରାଗ ଜାଣିଲା । ବରାଟକ ବିନା ଗିରେ କଣିଲା । ବ୍ୟୋମନାସିକା ପରି ହୋଇ ଆକାଶେ ବିଳାସ ପ୍ରକାଶ କଲା ସେ । ବାତଜ । ବଲ୍ମୀକରୁ ଯେମନ୍ତ ଇନ୍ଦ୍ରଚାପ । ବ୍ୟାପି ନଭରେ ଧରେ ପ୍ରଭ୍ରରୂପ । ବିଚିତ୍ରତା ଦେଖି ଅଯୋଧ୍ୟା-ଗମନେ ଉତ୍ସୁକ ଶବରାଧିପ ହେ । ବଦୁଚ୍ଚେ ।୨୭।

---

୨୭ଶ ପଦ — ବଢ଼ାଇଥିଲେ ( ଆମ୍ଭ ମିତ୍ର ଗୁହକ ଶବରଙ୍କୁ ବାଟରେ ବାର୍ତ୍ତା ଦେଇ ଯିବ ବୋଲି ରାମ କହିଲେ ) "ତେଣୁ" ଶୃଙ୍ଗବେର ପାଳକ ( ଶବରରାଜ ଗୁହକ ) ସଙ୍ଗେ ମେଳ ହୋଇ ରାଗ ( ରାମଙ୍କଠାରେ ତାହାର ଯେତେଦୂର ସ୍ନେହ ) "ତାହା ହନୁମାନ୍" ଜାଣିଲା । ବରାଟକ୍ତ ବିନା ( କିଛି କଉଡ଼ି ନ ଦେଇ ) ଗିରେ ( ରାମ ବାଳି ରାବଣାଦିଙ୍କି ବଧି ବହୁତ୍ତ ବଳେ ଜଣିବା କଥା କହି ) "ଗୁହ ଶବରକୁ" କିଣିଲା । ୧"ଶୃଙ୍ଗବେର" ( ଅଦା ) ପାଳକ ( ରକ୍ଷାକାରୀ ଲୋକ ) "ସଙ୍ଗେ" ମେଳ ହୋଇ ବରାଟକ ( କଉଡ଼ି ) ବିନା ( ନ ଦେଇ ) "ଅଦାଖାଇ" ରାଗ ( କଟୁ ) ଜାଣିଲା ( ଜାଣିପାରେ ) ଗିରେ ( କୋମଳ ବାକ୍ୟରେ ) "ତା ମନକୁ" କିଣିଲା ( କିଣି ନେଇ ସନ୍ତୋଷ କରାଇଲା ପ୍ରାୟ ) ହନୁମାନ୍ ଗୁହକର ରାମ ପ୍ରତି ସ୍ନେହଥିବା ଜାଣି ରାମଙ୍କ ବାର୍ତ୍ତା କହି ସନ୍ତୋଷ କରାଇଲା ଏହି ଧ୍ୱନ୍ୟର୍ଥ । "ତଦନ୍ତେ" ସେ ବାତଜ ବ୍ୟୋମ ନାସିକା ( ଭରଡ଼ଆ ପକ୍ଷୀ ) ପରି ( ପ୍ରାୟ ) ହୋଇ ଆକାଶେ ( ଗଗନ ମାର୍ଗରେ ) ବିଳାସ ( ବିହାର ଲୀଳା ) ପ୍ରକାଶ କଲା । "ଉଡ଼ିଲା ଏହିଭାବ" । ହେ ଇନ୍ଦୁଚ୍ଛେ ! ବଲ୍ମୀକରୁ ( ବାଲୁଙ୍କା ବିଳରୁ ) ଇନ୍ଦ୍ରଚାପ ( ଇନ୍ଦ୍ରଧନୁ ) ଯେମନ୍ତ ବ୍ୟାପି ନଭରେ ( ଆକାଶରେ ) ପ୍ରଭ୍ର ( ଦୀପ୍ତ ) ରୂପ ( ରୂପକୁ ) ଧରେ "ତେମନ୍ତ" ଅଯୋଧ୍ୟାଗମନେ ( ଅଯୋ-ଧ୍ୟାକୁ ଯିବା ସମ୍ବନ୍ଧରେ ) "ହନୁମାନର" ବିଚିତ୍ରତା ( ନାନାରୂପ ଆଶ୍ଚର୍ଯ୍ୟଗତ ) ଦେଖି ଶବରାଧିପ ( ଗୁହକ ଶବର ) ୨ ଉତ୍ସୁକ "ହେଲା" । ଏ ପଦେ ଉପମା

---

୧—ଆଦ୍ରକଂ ଶୃଙ୍ଗବେରଂ ଇତ୍ୟମରଃ ।

୨—ଇଷ୍ଟାର୍ଥୋଦ୍ୟୁକ୍ତ ଉତ୍ସୁକେ ଇତ୍ୟମରଃ ।

ବିଭର୍ତ୍ତି କରନ୍ତି ଭରତ ଭରତଖଣ୍ଡ ଲକ୍ଷନୃପ ସସୈନ୍ୟେ ।
ବନ୍ଦେ ନନ୍ଦୀଗ୍ରାମ ଲକ୍ଷ ଏସନେ । ବହୁତ ତାରକା ନଭ ପ୍ରତିବିମ୍ବେ
ଜଳପାତ୍ରକେ ଯେସନେ ହେ । ବନ୍ଧୁହେ ! ବିତର୍କଇ ତା ଦେଖି
ହନୁମନ୍ତ । ବୈମାତୃକରେ ଲକ୍ଷଣ ଭରତ । ବାସିତ ପୁଷ୍ପ ନେ ଏ
କଣ୍ଟକପତ୍ର ଏକା କେତକୀରୁ ଜାତ ହେ । ବଧୀତ ।୨୭।

---

ଶ୍ଳେଷ ହେଲା । "ନଭବ୍ୟାପି ଇନ୍ଦ୍ରଧନୁର ବିଚିତ୍ର ପ୍ରଭା ଦେଖି ଲୋକେ ଉଜ୍ଜ୍ୱଳ ହେଲେ ପ୍ରାୟ ଆକାଶଗାମି ହନୁମାନର ବିଚିତ୍ର ଚଳିତରେ ଗୃହନ ଉଜ୍ଜ୍ୱଳ ହେଲ ଏହି ଫଳତାର୍ଥ" । ୨୬ ।

୨୭ଶ ପଦ—ଭରତ (କେକୟୀ ପୁତ୍ର) । "ପୂର୍ବରୁ ହନୁମାନଠାରୁ ରାମ ରାବଣ ଯୁଦ୍ଧ କଥା ଶୁଣି ଲଙ୍କା ଯିବାପାଇଁ" ସସୈନ୍ୟେ (ସୈନ୍ୟ ସହିତରେ) ଭରତଖଣ୍ଡ (ଭରତ ଖଣ୍ଡରୁ) ଲକ୍ଷନୃପ (ଲକ୍ଷ ସଂଖ୍ୟକ ରାଜାଙ୍କୁ) "ନନ୍ଦୀ ଗ୍ରାମରେ" ବିଭର୍ତ୍ତି କରନ୍ତି (ବିଶେଷ ରୂପେ ଭର୍ତ୍ତି କରି ରଖିଛନ୍ତି) । ହେ ବନ୍ଧୁହେ ! ବହୁତ ତାରକା (ଅସଂଖ୍ୟ ତାରାଯୁକ୍ତ) ନଭ (ଆକାଶ) ଜଳପାତ୍ରକେ (ଗୋଟିଏ ଜଳଆଧାରରେ) ପ୍ରତିବିମ୍ବେ (ପ୍ରତିବିମ୍ବିତ ହେଲେ) ଯେସନେ (ଯେମନ୍ତ) ଦିଶେ ଏସନେ (ଏରୂପ) ଲକ୍ଷ (ସାଦୃଶ୍ୟକୁ) ନନ୍ଦୀଗ୍ରାମ ବନ୍ଦେ (ଧାରଣ କରନ୍ତି) । ତା ଦେଖି (ଭରତ ଲକ୍ଷେରାଜା ରୁଣ୍ଡ କରିବା ଦେଖି) ହନୁମନ୍ତ (ହନୁମାନ୍) ବିତର୍କଇ (ବିଶେଷରେ ତର୍କଣା କଲ) "ରାମଙ୍କ ବୈମାତୃଜ ବନେ ନାହିଁ ଭରତ ତାଙ୍କୁ ଯୁଦ୍ଧରେ ସହଡ଼ାଇ ଦେବା ମାନସରେ ଲକ୍ଷେରାଜା ରୁଣ୍ଡ କରନ୍ତି କି ? "କାହିଁକି ନା" ଲକ୍ଷ୍ମଣ ଭରତ "ଏ ଦୁହେଁତ" ବୈମାତୃକରେ (ସମ୍ବନ୍ଧ ଭାଇ—ଏକୋଦର ନୁହନ୍ତି) ଏକା କେତକୀରୁ (କେମାନ କେତକୀ ବୃକ୍ଷରୁ) "ଜାତ ହେବ ପୁଷ୍ପ ଦୁହେଁ" "ତା ମଧ୍ୟରେ କୈୟକ୍ଷପୁତ୍ର" ଚିତ୍ର କଣ୍ଟକ (କଣ୍ଟାଯୁକ୍ତ) "ହେଲ", "କନିଷ୍ଠ" ପୁଷ୍ପ ବାସିତ (ସୁବାସ ଯୁକ୍ତ) "ହେଲ" "ସେହିପରି" ଏ (କୈୟସ୍ଥ ଭରତ) ୧ କଣ୍ଟକ (ଶତ୍ରୁ) "ହେଲେ"

---

୧—କଣ୍ଟକେ କ୍ଷୁଦ୍ରଶତ୍ରଵ ଈଙ୍ଗ କୋଷାନ୍ତରେ ।

ବୋଲିବୋଲି ହେଉଁ ଲଙ୍କାକୁ ଟାକ୍ଆଇ ଲଗ୍ନ କେଉଁଦିନ
ଶ୍ରବଣେ ବିବେକତା ଲାଗିଲୀ ସୁଲକ୍ଷଣେ । ବାହ୍ୟ କର୍କଶ ଦେଖାଇ
ରସଗର୍ଭ ହୋଇଗଲା ତତକ୍ଷଣେ ସେ । ବାତଜ । ବ୍ୟୋମ୍ନ ଖଷି
ଭରତେ ପ୍ରଣିପତ୍ୟ । ବିଗ୍ରହରେ ଦେଖି ସେହୁ ଜଡ଼ିତ । ବାର୍ତ୍ତା କ
ବାର୍ତ୍ତା କ ପୁଚ୍ଛୁଁ ଜସ୍ଥ କରି ପ୍ରଭୁ ବିଜୟ ଘଷିତ ସେ । ବାତଜ । ୨୮ ।

---

ସେ ( କନିଷ୍ଠ ଲକ୍ଷ୍ମଣ ) ବିସ୍ମିତ ( ମିତ୍ର ପ୍ରାପ୍ତ ) ହେଲେ । ହେ ବିଧାତ !
( ରେ ଦୈବ ) "ତୁ ସୁଘଟନାକୁ ଦୁର୍ଘଟନା ଏବଂ ଦୁର୍ଘଟନାକୁ ସୁଘଟନା କରି-
ପାରୁ" ଏହା ବୋଲି ଧାତାକୁ ଜଣାଇଲେ ଏହି ପଦାର୍ଥ ※ । ୨୭ ।

୨୮ଶ ପଦ—ସେ ବାତଜ ( ହନୁମାନ୍ ) "ଏମନ୍ତ ବିଚାରିକଲେ"
"ଲେକେ" ଲଙ୍କା କାଟକାଇ ଲଗ୍ନ କେଉଁଦିନ ( ଲଙ୍କାକୁ ନଷ୍ଟକାଇ କରି
ଥିବାକୁ ଲଗ୍ନ କେଉଁ ଦିନକୁ ସୁଝିଛି ଏରୂପ ) ବୋଲି ବୋଲି ( କୁହାକୁହି )
ହେଉଁ ହେବା କଥା ) ଶ୍ରବଣେ ( ଶୁଣନ୍ତେ ) "ହନୁମାନର" ବିବେକତା
( ବିଗ୍ରହ ), "ଏମନ୍ତ ହେଲ, ଏ ଭରତ" ଲାଗିଲୀ ( ନାରିକେଳ ଫଳ )
ସୁଲକ୍ଷଣେ ( ସୁଲକ୍ଷଣରେ—ହନୁଗୁଣ ) ବାହ୍ୟ ( ବାହାରେ ) କର୍କଶ ( କଠିନ
ଭାବ ) ଦେଖାଇ ୧ ରସଗର୍ଭ ହୋଇଗଲା ( ଭିତରେ ଅନୁରାଗ ରସପୂର୍ଣ୍ଣ
ହୋଇଅଛି ) । "ହନୁମାନ୍ ବିଚାରିଲ ମୁଁ ଯାହା ଭାବୁଥିଲି ଏ ଭରତ ରାମଙ୍କ
ଠାରେ ଶତ୍ରୁଭାବ ରଖି ସୈନ୍ୟ ସଂଗ୍ରହ କରିଅଛି ଏବେ ବୁଝିଲି ରାମଙ୍କୁ
ସାହାଯ୍ୟ ଦେବାକୁ ଯତ୍ନ କରୁଛି, ନଡ଼ିଆର ବାହାର କଠିନ, ଭିତରେ
ସ୍ୱାଦୁଜଳ ଥିଲା ପ୍ରାୟ ଏହାରୁ ବାହାରି କର୍କଶ, ଭିତରେ ରାମଙ୍କ ପ୍ରତି ଅନୁ-
ରାଗ ରସପୂର୍ଣ୍ଣ ହୋଇଅଛି ଏହି ଭାବାର୍ଥ" ଭରତେ ପ୍ରଣିପତ୍ୟ ( ଭରତଙ୍କୁ
ନମସ୍କାର କଲେ ) ଦେଖି ସେହୁ ( ଭରତ ) ବିଗ୍ରହରେ ( ହନୁମାନର
ଦେହରେ ) ଜଡ଼ିତ "ହେଲେ" "ଆଲିଙ୍ଗନ କଲେ ଏହିଭାବ" । କିଂ ବାର୍ତ୍ତା

---

※ —ଏ ପଦାର୍ଥରେ ଉତ୍ପ୍ରେକ୍ଷାଲଂକାର ହେଲା—ତଥାଚ ସାହିତ୍ୟେ—
ଶଙ୍କେ ମନ୍ୟେ ଧ୍ରୁବଂ ପ୍ରାୟୋନୂନଂ ଜାନାମି ତର୍କୟେ ।
ଇତ୍ୟାଦିଭିରୁତ୍ପ୍ରେକ୍ଷା ଗମ୍ୟତେ କାବ୍ୟବର୍ତ୍ମନି ।

୧—ଶୃଙ୍ଗାରାଦୌ ବିଷେ ବୀର୍ଯ୍ୟେ ଗୁଣେ ରାଗେ ଦ୍ରବେ ରସଃ ଇତ୍ୟମରଃ ।

ବାରବାମାମୁଖୁଁ ଧାଈ ଶୁଣି ଭଣୁ ଜନୟିତ୍ରୀଗଣ ଆସିଲେ ।
ବାଣୀ ସଲକ୍ଷଣଟିକି ଭାଷିଲେ । ବୋଇଲେ ରାମଚନ୍ଦ୍ର ଉଦେ ପୂର୍ଣ୍ଣରେ
କ୍ଷୀଣେ ସିନା ମୁଞ୍ଚୁଥିଲେ ସେ । ବାତଜ । ବଧାଇକି ବହୁତରୂପେ ଦେଇ ।
ବର୍ଗ୍ଗରନ୍ତେ ପାଗ୍ଗେ ଛିଟିଯିବା ତହିଁ । ଏମାନେ ଗଗନେ ଆସନ୍ତି ସିନା
ଯେ ସ୍ୱନାମଲକ୍ଷରେ କହି ସେ । ବାତଜ । ୨୯ ।[୨]

କ ବାର୍ତ୍ତା "ଏମନ୍ତ ଶୀଘ୍ର" ପୃଚ୍ଛନ୍ତି ( ପଚ୍ଚରନ୍ତେ ) ସେ ବାତଜ ( ହନୁମାନ୍ ) ଭାଷିତ ( କହିଲେ ) ପ୍ରଭୁ ଜୟ କରି ( ରାବଣ ମାରି ) ବିଜୟୀ ( ବିଜେ ହେଲେଣି ) । ୨୮ ।

୨୯ଶ ପଦ—ବାରବାମା ମୁଖୁଁ ( ବେଶ୍ୟା ମୁଖରୁ ) ଧାଈ ( ଧାଇ-ମାନେ ) ଶୁଣି ଭଣି ( ରାମ ଆସିଲେଣି ବୋଲି କହନ୍ତେ ) ଜନୟିତ୍ରୀଗଣ ( ମାତୃଗଣ ) ଆସିଲେ ( ଆସି ହନୁମାନ ପାଖରେ ପହୁଞ୍ଚିଲେ ) ବାଣୀ ଭାଷିଲେ ( ଶ୍ଳେଷାର୍ଥରେ କହିଲେ ) [୧] ସଲକ୍ଷଣ ଟିକି ? ସଲକ୍ଷଣ ( ଅଙ୍ଗ-ରାଗାଦି ସୁଲକ୍ଷଣ ଯୁକ୍ତ ହୋଇ ଅଛନ୍ତି ତ ? ) ସଲକ୍ଷଣ ( ଶ୍ରୀମାନ୍—ସୀତ ଯୁକ୍ତ ହୋଇ ଅଛନ୍ତି ତ ? ) ସଲକ୍ଷଣ ( ଲକ୍ଷ୍ମଣ ସହିତରେ ଅଛନ୍ତି ତ ? ) "ଏମନ୍ତ ମାତୃଗଣ ପଚ୍ଚରିବାରୁ" ସେ ବାତଜ ବୋଇଲେ ରାମଚନ୍ଦ୍ର କ୍ଷୀଣେ ସିନା ମୁଞ୍ଚୁଥିଲେ ଏବେ ପୂର୍ଣ୍ଣରେ ଉଦେ ( ଯେ ରାମଚନ୍ଦ୍ର ରମଣୀସ୍ୱଚନ୍ଦ୍ର ) ଯେ
[୨]ସଲକ୍ଷ୍ମ—ସଚିହ୍ନ, ଲକ୍ଷ୍ମୀଙ୍କ ନିବାସ ସ୍ଥାନ, ଲକ୍ଷଣବନ୍ତ, କ୍ଷୀଣକାଳରେ ସିନା ଲକ୍ଷ୍ମୀରୂପା ସୀତାଙ୍କୁ ତ୍ୟାଗ କରିଥିଲେ ଏବେକ ପୂର୍ଣ୍ଣଭାବରେ ଉଦେ ହୋଇଅଛନ୍ତି ଏଣୁ ସର୍ବପୂର୍ଣ୍ଣ ! "କେହି କହିବ ରାମଙ୍କ ମାତାମାନେ ଏହା କାହୁଁ ଜାଣିଲେ ଯେ ପଚାରିଲେ । ହନୁମାନ୍ ଔଷଧି ପର୍ବତ ନେବାବେଳେ ଭରତ ଆଗରେ କହିଥିବାରୁ ସେମାନେ ସୀତା ଓ ଲକ୍ଷ୍ମଣଙ୍କ ସଙ୍ଗେଥିବା ଏବଂ ଅଙ୍ଗ ସୁଲକ୍ଷଣ କଥା ପଚାରିଲେ ଏହି ଆଶୟାର୍ଥି" । "ଏମନ୍ତ ଶୁଭବାର୍ତ୍ତା ପାଇ ମାରୁତକୁ" ବହୁତରୂପେ ବଧାଇକି ( ପୁରସ୍କାର ) ଦେଇ ତହିଁ ( ସେଠାରେ ) ପାଗ୍ଗେଛିଯିବା ( ବାଟକୁ ଯାଇଁ ତାଙ୍କୁ ଚାଲିକୁ ଆଣିବା ଏମନ୍ତ ) ବର୍ଗ୍ଗରନ୍ତେ

୧—ସ୍ୟାଲ୍ଲକ୍ଷେ ଲକ୍ଷଣଂ ପୁଂସି ସୌମିତ୍ରୌ ଶ୍ରୀଚିହ୍ନ ନ୍ନିଷ୍ଣୁ ଇତି ଶାଶ୍ୱତଃ ।
୨—ସର୍ଦ୍ଧକ୍ତଂ ରତୁଷ୍ଟୀକ୍ୱାୟାଂ-ଚନ୍ଦ୍ରାରବିନ୍ଦ ରାଜବଦନାବିଦ୍ୟୋ ଲକ୍ଷ୍ମୀ-ନିବାସସ୍ଥାନାନୀତି ପ୍ରସିଦ୍ଧାନ ।

ବନୌକାଆଶ୍ରମେ ପୁଷ୍ପକାଳ ଶେଷକର ଅଶେଷ ତୋଷଭର । ବଇଦେହୀଭୋଗରେ ତତପର ।ବିଗତ ଅନଙ୍ଗଜ୍ୱର ସନ୍ନିପାତ ଭସ୍ମ ସ୍ୟନ୍ଦନ ବହାର ସେ । ବୀରେନ୍ଦ୍ର । ବାଦ୍ୟ ଶୁଭନ୍ତେ ଧରଣୀ ଉଚ୍ଛୁଳ । ବାହୁ ଊର୍ଦ୍ଧ୍ୱେ ନୃପତିବୃନ୍ଦ ତୋଳି । ବହୁତ କାକତରଙ୍ଗ ରଜ୍ଜୁଧୃତ କୁତୁମ୍ବ କ ଦୃଷ୍ଟି ଶାଳୀ ସେ । ବନ୍ଧୁରେ । ୩୦ ।

---

ସେ ବାଟିକି କହୁ ( କହିଲେ ) ସେ ( ପ୍ରଭୁ ) ସ୍ୱନାମ ( ରାମଚନ୍ଦ୍ର ) ଲକ୍ଷରେ ( ସଦୃଶିରେ ) ଗଗନେ ( ଆକାଶରେ ) ବିମାନେ ( ପୁଷ୍ପକଯାନରେ ) ଆସନ୍ତି ସିନା "ଚନ୍ଦ୍ର ଗଗନରେ ବିମାନଚଢ଼ି ଆସିଲପ୍ରାୟ ଆସୁଛନ୍ତି ଏହି ଭାବ" । ୨୯ ।

୩୦ଶ ପଦ—ବନୌକା ଆଶ୍ରମେ ( ଭରଦ୍ୱାଜ ଋଷିଙ୍କ ଆଶ୍ରମରେ ) "ରାମ" ୧ପୁଷ୍ପ କାଳ ( ରାତ୍ରି ) ଶେଷକର ଅଶେଷ ( ଅପରିମିତ ) ତୋଷଭର ( ତୋଷଯୁକ୍ତ ହୋଇ ) "ଆସନ୍ତି" । ବଇଦେହୀ ( ସୀତାଙ୍କ ) ଭୋଗରେ ( ସମ୍ଭୋଗରେ ) ୨ତତ୍ପର ( ଆସକ୍ତ ) "ହୋଇଅଛନ୍ତି" । ବିଗତ ( ଯାଇନାହିଁ ) ଅନଙ୍ଗଜ୍ୱର ସନ୍ନିପାତ ( କାମଜ୍ୱର ସମୂହ ) ଭସ୍ମ "ଯାହାଙ୍କର ଏରୂପ" ସେ ବୀରେନ୍ଦ୍ର ( ରାମ ) ସ୍ୟନ୍ଦନ ବହାର ( ରଥରେ ବିଜେ କରିବା ) ବାଦ୍ୟ ଶୁଭନ୍ତେ ଧରଣୀ ଉଚ୍ଛୁଳ ( ପୃଥ୍ୱୀ ଉଚ୍ଛୁଳିଲା ) । ଅଥବା—ଧର ନଉଛାଳି (ନଉଛାଳ କର ) ଊର୍ଦ୍ଧ୍ୱେ ( ଉପରକୁ ) ବାହୁ

---

୧—ପୁଷ୍ପଂଶାଂ କାଳଃ—ପୁଷ୍ପକାଳଃ—ରାତ୍ରିରେ ପୁଷ୍ପ ପ୍ରସ୍ଫୁଟିତହୁଏ । ସନ୍ଧ୍ୟା ବର୍ଣ୍ଣନାରେ କବିଲୋକମାନେ ରସକଲ୍ଲୋଳରେ ବର୍ଣ୍ଣନାକର ଅଛନ୍ତି ଯଥା—

କୁସୁମବୃକ୍ଷଙ୍କ ବେଳ ପରବେଶ ବହୁତ ଦୂରରେ ନାହିଁ ।

ଜଗନ୍ନାଥଦାସ ଭାଗବତ ଦଶମସ୍କନ୍ଧେ—

ଗଗନେ ପ୍ରକାଶିଲେ ଶଶୀ । ନିର୍ମଳ ବିରାଜଇ ନିଶି ॥

ଫୁଟିଲେ କଇରବେ ଫୁଲ । ପବନ ବହେ ପରିମଳ ॥

୨—ତତ୍ପରେ ପ୍ରସିଦ୍ଧୀ ସକ୍ତୌ ବିଷ୍ଣାର୍ଥେଯୁକ୍ତ ଉତ୍ସୁକ ଇତ୍ୟମରଃ ।

ବାଲ୍ୟଅବସ୍ଥା ସ୍ମରଣ ନର୍କରେ ସାରଣୀ ଫିଙ୍ଗିଲ୍ ପରରେ । ବିମାନ ଯେ ଖସିଆସି ସିନ୍ଧୁରେ । ବଳସି ପାରାବତ ବୃକ୍ଷେ ବସିବା ପରପ୍ରେ ସ୍ଥିତ ମଣ୍ଡଳରେ ସେ । ବିମାନ । ବ୍ୟୋମକେଶ ବୋଲନ୍ତି ତ୍ରିଲୋଚନ । ବୁଝିବାରେ ଉପମା ବିଦ୍ୟମାନ । ବିଭୂଷି ଥିଲେ ପାରିଜାତମାନଙ୍କୁ ଖସି ସେ ହେଲ୍ ପତନ କି । ବିଦୂଷେ । ୩୧ ।

ତୋଳ ଗାନ୍ଧପଟବୃନ୍ଦ "ହିଲଲେ" । ହେ ବିଦୂଷେ ସେ (ନୃପଗଣ) ବହୁତ କାଙ୍କତ ଚକ (ଅନେକ କାଗଜଚକରେ) ରଙ୍କ ଧ୍ଵଜ କୁତୁକୀ (ଦନ୍ଧଳଗାଇ ତାକୁଧରି କୌତୁକରେ) ଦୃଷ୍ଟିଶାଳୀ କି ! (ଦୃଷ୍ଟି ଦେଲପ୍ରାୟ ଦୃଷ୍ଟି ଦେଇଅଛନ୍ତି କି ?) । ୩୦ ।

୩୧ଶ ପଦ—ନର୍କରେ (ତତ୍‌ଖୋନେ) ବାଲ୍ୟଅବସ୍ଥା ସ୍ମରଣ "କରି" ସାରଣୀ ଫିଙ୍ଗିଲ ପରରେ (ଫୋପାଡ଼ିଲାପ୍ରାୟ) ପାରାବତ (କପୋତ) ବଳସି (ବାହାର) ବୃକ୍ଷେ ବସିବାପରପ୍ରେ (ବୃକ୍ଷରେ ବସିଲାପ୍ରାୟ) ବିମାନ ଯେ (ପୁଷ୍ପକଯାନ) ସିନ୍ଧୁରେ (ଶୀଘ୍ର) ଖସିଆସି ମଣ୍ଡଳରେ ସ୍ଥିତ "ହେଲା" । "ତାଦେଖି କବି ଏମନ୍ତ ଉତ୍ପ୍ରେକ୍ଷାକଲା" । ତ୍ରିଲୋଚନ (ମହାଦେବ) ବ୍ୟୋମକେଶ ବୋଲନ୍ତି ବୁଝିବାରେ ସେ ବିମାନ "ସଙ୍ଗେ" ଏ ଉପମା ବିଦ୍ୟମାନ (ପ୍ରକାଶ) "ହେଲ୍" । ହେ ବିଦୂଷେ ! ସେ (ବ୍ୟୋମକେଶ) ପାରିଜାତ "ପୁଷ୍ପ" ମାନଙ୍କୁ ବିଭୂଷି (ପିନ୍ଧି) ଥିଲେ "ସେ ମାଳା" ଖସି ପତନହେଲା କି (ଖସି ପଡ଼ିଲା କି ?) "ଉଭୟ ଶୁକ୍ଳବର୍ଣ୍ଣ ଥିବାରୁ ପାରିଜାତ ଓ ବିମାନର ଉପମାସାମ୍ୟ ରହିଲା" । ୪୧ ।

୩—ବୃନ୍ଦୌକ ପ୍ରକରାଳ ପୁଞ୍ଜନଚୟା ରାଜୀବ ବାଥ୍ୟାଦର୍କ୍ଷି ।
ଶ୍ରେଣୀ ପକ୍ଷ ଚୟାପ୍ର ତାଳ ନିକରାଃ ସଂଘାତ ପଂକ୍ତୀ ଗଣଃ ।
ନ୍ୟୂଲଂ ଚକ୍ରକଦମ୍ବ ସଂଘପଟଳ ବ୍ୟୂହାଃ କଲାପଃ ଛଟା ।
ରେଖା କର୍ଦଳ ସନ୍ନିପାତଫଳଗା ପୂଷା ସମୂହୋଦ୍ଭଵଃ ।
ଏତେ ସମୂହବାଚକାଃ ।

୧—ବ୍ୟୋମଯାନଂ ବିମାନୋ ସ୍ତ୍ରୀତ୍ୟମରଃ ।

ବନ୍ଧାଇ କ ଚୂଡ଼ା ରସା ରସାଳସା ଆକାଶ-ବେଶକାରୀ-ବଶେ । ବିରାଜନ୍ତ ଋକ୍ଷପ୍ରଭଜାଳେ ସେ । ବନ୍ୟସ୍ତ କର୍ବୂର କାଠିକ ସୁକରେ ରାମଗର୍ଭ ଦବ୍ୟବାସେ ସେ । ବଦୁଟେ । ବାହାରନ୍ତେ ସେ ରଥୁଁ ରଘୁମଣି । ବକାଶେ କ. ପୂର୍ବାଦ୍ରୁ ତରଣି । ବପ୍ର ନୃପତିକଳାପ କରାଞ୍ଜଳ ନାଇଁଗ୍ଳ ସ୍ତୁତି ଭଣି ହେ । ବଦୁଟେ ।୩୨।

୩୨ଶ ପଦ—"ପୁଷ୍ପକରଥ ଭୂମିରେ ରହିବା ଦେଖି" ବର୍ଣ୍ଣୁଛେ (ତହିଁଥିବା ପଣ୍ଡିତମାନେ) "ଏମନ୍ତ ଉତ୍ପ୍ରେକ୍ଷାକଲେ"। ରସାଳସା (ରସରେ-ଅଳସା ହୋଇ) ରସା (ପୃଥ୍ୱୀ ନାରୀ) "ବେଶ ହେବାପାଇଁ "ଆକାଶ "ତାହାର" ବେଶକାରୀ (ସିଂହାର) "ହେଲା" ବଶେ (ତାହାରବଶରେ-ରହି ପୃଥିବୀନାୟିକା) ଚୂଡ଼ା (ତା କୂଡ଼ା) ବନ୍ଧାଇ (ବନ୍ଧାଇଲା) କି ? ସେ (କୂଡ଼ା) ଋକ୍ଷପ୍ରଭ[1] ଜାଲେ (ନକ୍ଷତ୍ରପ୍ରଭ ପ୍ରାୟ ପ୍ରଭଶାଳୀ ମୁକ୍ତାମାଳ ଜାଲରେ) ବିରାଜଇ, "ତହିଁ ପୁଣି" ସେ (ଆକାଶ) ସୁକରେ (ଉତ୍ତମ-ହସ୍ତରେ) କର୍ବୂର (ସୁବର୍ଣ୍ଣଝରା) କାଠିକ ବନ୍ୟସ୍ତ (ବଶେଷଭାବରେ-ନ୍ୟୁକ୍ତ) "କରି" ଦବ୍ୟବାସେ ।(ଉତ୍ତମ ସୁବାସରେ) ରାମ (ମନୋଜ୍ଞ-ସୁନ୍ଦର)[2] ଗର୍ଭ (ଗର୍ଭକପୁଷ୍ପ) "ଖଞ୍ଜିଲେ"। ରଥପକ୍ଷେ—ସେ (ରଥ) [3]ଋକ୍ଷ (ଭଲ୍ଲୁକମାନଙ୍କର) ପ୍ରଭାଜାଲେ (ପ୍ରଭ ସମୂହରେ) ବିରାଜଇ (ଶୋଭପାଏ), [4]କର୍ବୂର (ରାକ୍ଷସମାନେ) କାଠିକ (କାଠିସଂଖ୍ୟାରେ) ସୁ (ଉତ୍ତମ) [5]କରେ (ସୁଖରେ) ବନ୍ୟସ୍ତ (ନ୍ୟସ୍ତ) "ହୋଇଅଛନ୍ତି", ରାମ (ରାମଚନ୍ଦ୍ର) ଗର୍ଭ (ତାହାର ଗର୍ଭରେ ଥିବାରୁ) ଦବ୍ୟ (ଉତ୍ତମ) ବାସେ (ବାସନାକରେ)। ହେ ବଦୁଟେ ସେ ରଥୁଁ (ଏରୂପ ସେହିରଥରୁ) ରଘୁମଣି (ରାମ) ବାହାରନ୍ତେ (ଓହ୍ଲାଇନ୍ତେ) "କବ ଉତ୍ପ୍ରେକ୍ଷାକଲ" ପୂର୍ବାଦ୍ରୁ

୧—ଆନାୟଃ ପୁଂସିଜାଲଂସ୍ୟା ଦତ୍ୟମରଃ ।

୨—ଗର୍ଭ—ଗର୍ଭକି ଦୁଇ ହୋଏ । ସମୁଦ୍ଗଃ ସମୁଦ୍ଗକଃ ଏହିପ୍ରାୟ ।

୩—ଋକ୍ଷାଚ୍ଛଭଲ୍ଲଭଲ୍ଲୁକା ଇତ୍ୟପି ।

୪—ରାକ୍ଷସଂଚରେ ରାତ୍ରିଚରଃ କର୍ବୁରେ ନିକଷାତ୍ମଜ ଇତ୍ୟମରଃ ।
ତପନୀୟଂ ଶାତକୁମ୍ଭଂ ଗାଙ୍ଗେୟଂ ଭର୍ମ କର୍ବୁର ମିତ୍ୟପି ।

୫—ସୁଖଶୀର୍ଷକଶେଷୁ କମିତ୍ୟପି ।

ବଡ଼ଦେଉଳ ଅଗ୍ରତରେ ଗୁଣ୍ଡିଚାରଥ ଯେ ଦେଖିଲେ ତର୍କନା
ବିଲୋକନେ ବିଳାସୀ ସର୍ବଲୋକ । ବିଦିତ ନରେଶେ ଉତ୍ସବ
ସେଠାରେ ଏ ନବ ଦିନ ସଂଖ୍ୟକ ହେ । ବିଦୁଷେ । ବେନି ସୋଦର

---

( ଉଦୟଗିରିରୁ ) ତରଣି ( ସୂର୍ଯ୍ୟ ) ବିକାଶେ କି ? ( ଉଦୟହେଲେ-କି ? ) "ଏହାଦ୍ୱାରା ରାମଙ୍କର କାନ୍ତିମାନ ଦୀପ୍ତ ସୂଚିତହେଲା" । ନୃପତି କଳାପ ( ରାଜଗଣ ) ବିପ୍ର ( ବିପ୍ରଙ୍କପ୍ରାୟ ) କରାଞ୍ଜଳି ନଉଞ୍ଜାଳି ( କର-ଆଞ୍ଜୋଳ ନଉଞ୍ଜାଳିକରି ) ସ୍ତୁତି ଭଣି ( ସ୍ତୁତି ପଢ଼ିଲେ ) ଉଦୟକାଳରେ ସୂର୍ଯ୍ୟଙ୍କୁ ଦେଖି ବିପ୍ର କରାଞ୍ଜଳିରେ ସ୍ତୁତିପଢ଼ନ୍ତି । ୭୨ ।

ଅନ୍ୱୟ ପଦ—ବଡ଼ଦେଉଳ ( ଶ୍ରୀ କ୍ଷେତ୍ରରେ ଜଗନ୍ନାଥଙ୍କ ଦେଉଳର ) ଅଗ୍ରତରେ ( ଆଗରେ ) ଯେ ( ଯେଉଁମାନେ ) ଗୁଣ୍ଡିଚାରଥ "ଏବଂ ବାହୁଡ଼ା-ରଥ" ଦେଖିଛି ସେମାନେ ତରକ ( ଅନୁମାନକରି ) ସର୍ବଲୋକ ( ସମସ୍ତ-ଲୋକେ ) ବିଲୋକନେ ( ଦେଖିବାକୁ ) ବିଳାସୀ "ହୁଅନ୍ତି" । "ସେହିପରି-ରାମ ରଥରେ ବସି ବନକୁଯାଇ ବାହୁଡ଼ି ପୁଷ୍ପକରଥରେ ବସି ନନ୍ଦୀଗ୍ରାମରେ ରହିବାରୁ ସମସ୍ତଲୋକେ ଦେଖିବାକୁ ବିଳାସୀହେଲେ" । ସେଠାରେ ( ସେହି ଶ୍ରୀକ୍ଷେତ୍ରରେ ) ନରେଶେ ( ପୁରୀ ରାଜାଙ୍କ ଦ୍ୱାରା ) ନବଦିନ ସଂଖ୍ୟକ ( ସଂଖ୍ୟାରେ ନଅଦିନ ) ଉତ୍ସବ ବିଦିତ ( ପ୍ରକାଶିତ ) "ହୋଇଅଛି" । ସେଠାରେ ( ସେହି ନନ୍ଦୀଗ୍ରାମରେ ) ଏ ଉତ୍ସବ ନରେଶେ ( ରାଜାମାନଙ୍କ-ଦ୍ୱାରା ) ନବଦିନ ସଂଖ୍ୟକ ( ଗଣନାରେ ନୂତନଦିବସ ବୋଲି ସେଦିନ ) ବିଦିତ "ହେଲା" "ସେ ଦିନପରି ଆଉ ଦିନହୋଇ ନାହିଁ କି ହେବନାହିଁ ଏହିଭାବ" । "ଲକ୍ଷ୍ମୀସହିତ ଜଗନ୍ନାଥ ରତ୍ନସିଂହାସନେ ବିଜେ କଲପ୍ରାୟ ରାମ ସୀତା ରତ୍ନସିଂହାସନେ ବିଜେକଲେ ଇତି ଆଶଯ୍ୟାର୍ଥ" । ହେ ବିଦୁଷେ "ଜାଣ" । ବେନିସୋଦର ( ରାମ ଲକ୍ଷ୍ମଣ ଦୁଇଭାଇଙ୍କି ) ବେନିସୋଦର (ଭରତ ଶତ୍ରୁଘ୍ନଦୁହେଁ) ନମସ୍କାରଂଅନ୍ତେ ( ନମସ୍କାର କଲାପରେ ) "ଯୋଗ୍ୟା-ନୁରୂପ ପରସ୍ପର ନମସ୍କାରକଲେ ଏହିଭାବ" । ହେ ବିଦୁଷେ ! "ତଦୁତ୍ତାରୁ" ମାତୃବ୍ରାତେ ( ମାତୃଗଣ ) ଆନନ୍ଦେ ( ଆନନ୍ଦଚିତ୍ତରେ ) ବଧୂ ( ସୀତାଙ୍କୁ ) ନେଲେ ( ନେଲେ ) । ବିଶେଷତ ( ବିଶେଷରେତ ) ସୁ ( ଉତ୍ତମ ) ଭରତ

ନମସ୍କାର ଅନ୍ତେ । ବର୍ଷି ନେଇ ଆନନ୍ଦେ ସ୍ନାତୃବ୍ରାତେ । ବିଶେଷତ
ସୁଭରତ ସୁଭରତ ଶ୍ରୀରାମ କଟାକ୍ଷପାତେ ହେ ! ବିଦୁଷେ ।୭୩।
ବାନରପତିରେ କେଶରୀ ସରିରେ ନରପତିବଧି ଆଦରେ ।
ବିପ୍ରବିଧି ସୁଷେଣ ଜାମ୍ବବରେ ! ବିଖ୍ୟାତଶେ ରାମ ଆତୁର ତ୍ରତୁର

---

ଶ୍ରୀରାମ ( ରାମଙ୍କ ) ୧କଟାକ୍ଷପାତେ (ଆଖିଠାରେ ତାଙ୍କ ମନରକ୍ଷାକୁ ବୁଝିପାରି) ସୁ ( ଉତ୍ତମରୂପେ ) "ସମସ୍ତଙ୍କୁ" ୨ଭରତ ( ପୋଷଣ ) "କଲେ" "ସମସ୍ତଙ୍କୁ ଚଳିଲେ ଏହିଭାବ" ✻ । ୭୩ ।

୭୪ଶ ପଦ—କେଶରୀ ସରିରେ ( ସିଂହତୁଲ୍ୟ ପରାକ୍ରମୀ ) ବାନର-ପତିରେ ( ସୁଗ୍ରୀବଙ୍କୁ ) ଆଦରେ ( ଆଦରକରି ) ନରପତି ବଧି ( ରାଜ-ବିଧିରେ ) "ଭରତ ରଖାଇଲେ" । ୧ ସୁଷେଣ "ବାନର" ୨ଜାମ୍ବବରେ

---

୧—ଆକାରୈ ରିଙ୍ଗିତୈର୍ଗତ୍ୟା ଚେଷ୍ଟୟା ଭାଷଣେନ ଚ ।
ନେତ୍ରବକ୍ତ୍ରବିକାରେଣ ଲକ୍ଷ୍ୟତେଽନ୍ତର୍ଗତଂ ମନଃ । ଇତି ଗ୍ରନ୍ଥାନ୍ତରେ ।

୨—ଭରଣାଦ୍ଭରତଂ ନାମ ଲକ୍ଷ୍ମଣଂ ଲକ୍ଷ୍ମଣାନ୍ୱିତଂ ।
ଶତ୍ରୁଘ୍ନଂ ଶତ୍ରୁହନ୍ତାର ମେବଂ ଗୁରୁରଭାଷତ ।
ଇତି ବାଲ୍ମୀକି ରାମାୟଣେ ।

ବିଶ୍ୱଭରଣ ପୋଷଣ କର ଯେହି । ତା କର ନାମ ଭରତ ଅସ ହୋଇ ॥
ଇତି ତୁଳସୀ ରାମାୟଣେ ।

✻—ବିଶେଷତ ଶୁଭରତ ସୁଭରତ ଶ୍ରୀରାମ କଟାକ୍ଷପାତେ । ଏ ପଦର ଅର୍ଥ ଏରୂପ କେହି କେହି କରନ୍ତି— ବିଶେଷରେ ଶୁଭ (ମଙ୍ଗଳରେ) ରତହୋଇ ଥାନ୍ତି ସୁ (ପ୍ରଶଂସିତ) ଭରତ ତାଙ୍କୁ ଶ୍ରୀରାମ କଟାକ୍ଷପାତେ (ନେତ୍ରଠାରି କହନ୍ତେ) "ସମସ୍ତଙ୍କୁ ଉତ୍ତମ ଅବସ୍ଥାରେ ରଖାଇଲେ" । ଏ ଅର୍ଥ ସମୀଚୀନ ନୁହେ, କାରଣ ଭରତଙ୍କଠାରେ ଶୁଭରତ ଏପରି ବିଶେଷଣ ଏଠାରେ ଅନାବଶ୍ୟକ, "ଆଉ ସମସ୍ତଙ୍କୁ ଉତ୍ତମ ଅବସ୍ଥାରେ ରଖାଇଲେ" ଏତକ କେଉଁଠାରୁ ଆଣିଲେ । ବରଂ ଏରୂପ ଅର୍ଥ କରାଯାଇପାରେ ଯଥା—ସୁ (ଉତ୍ତମ) ଭରତ ଶ୍ରୀରାମ କଟାକ୍ଷ ପାତେ (ରାମଙ୍କ ଆଖିଠାରରୁ ବୁଝିପାରି) ବିଶେଷତ ( ବିଶେଷଭାବରେ ) ଶୁଭ ( ଆହ୍ମମାନଙ୍କର ଚର୍ଚ୍ଚାରୂପ ଶୁଭକାର୍ଯ୍ୟରେ ରତ ହେଲେ ) ॥

୧—ବରୁଣୋ ଜନୟାମାସ ସୁଷେଣ ନାମ ବାନରଂ ।
୨—ଜାମ୍ବବନ୍ତମୃକ୍ଷସ୍ୟ ସହସା ମମ ବକ୍ତ୍ରାଦଜାୟତ । ଇତି ରାମାୟଣେ ବାଲକାଣ୍ଡେ ।

ପ୍ରଶଂସିତ ସମସ୍ତରେ ସେ । ବିଦୁଷେ । ବାଚକ ସେ କୃତାର୍ଥ ହେଲୁଁ ସବ । ବିଜେ ସତ୍ତ୍ୱରେ ସତ୍ତ୍ୱରେ ରାଘବ । ବିରଚ ସ୍ଥାନ ଚରଚି ସେ ଅନ୍ତରେ ସୁମନ୍ତ-ସୁମନ୍ତ୍ର ଭାବ ହେ । ବିବୁଧେ ।୩୬।

ବର୍ଦ୍ଧକ ବର୍ଦ୍ଧନ ଶୋଭା ଅଯୋଧ୍ୟାରେ ସେ ଦିନୁଁ ଅତିଯତନେ କରୁଁ । ବିଶ୍ୱକର୍ମା ବାଞ୍ଛା ଉତ୍କଟେ ଗୁରୁ । ବିଜ୍ୱଳତ ସେ ତ ଅନନ୍ତ-

(ରକ୍ଷରାଜ) "ଏହିହିକ୍କ" ୩ବିପ୍ରବିଧି (ବିପ୍ରବିଧିରେ) "ମର୍ଯ୍ୟାଦାକଲେ" । ବିପ୍ରକ୍ଷଣେ (ବିପ୍ରପକ୍ଷଦତ୍ତ) ରାମ ଆଚ୍ଚର (ରାମଙ୍କ ଆଚରଣପ୍ରାୟ) ଆଚ୍ଚର (ଆଚରଣ) "କଲେ" । "ରାମଙ୍କର ବିପ୍ରପକ୍ଷଠାରେ ଯେରୂପ ସ୍ନେହଥିଲା ସେହିପରି ଭରତସ୍ନେହ ରଖିଲେ ଏହିଭାବ" । ହେ ଋଦ୍ଧୁଷେ ! "ଏଣୁ" ସେ (ଭରତ) ସମସ୍ତରେ (ସମସ୍ତ ଲୋକରେ) ପ୍ରଶଂସିତ ହେଲେ । "ଲୋକେ ଭରତଙ୍କୁ ବିବେକୀବୋଲି ପ୍ରଶଂସିଲେ ଏହିଭାବ" । ହେ ସବ (ହେ ସମସ୍ତେ) ବାଚକ (କହିଲେ) "ଆମ୍ଭେ ତୁମ୍ଭ ଚର୍ଚ୍ଚାରେ" କୃତାର୍ଥହେଲୁ । "ଏ-ଉତ୍ତାରୁ" ରାଘବ (ରାମ) ୪ ସତ୍ତ୍ୱରେ (ଗାମ୍ଭୀର୍ଯ୍ୟସମ୍ଭାର ଯୋଗ) ୫ ସତ୍ତ୍ୱରେ ବିଜେ "ହେଲେ" । ହେ ବିବୁଧେ (ହେ ପଣ୍ଡିତମାନେ) ସେ ଅନ୍ତରେ (ତଦୁତ୍ତାରୁ) ସୁମନ୍ତ "ମନ୍ତ୍ରୀ" ସୁମନ୍ତଭାବ (ଉତ୍ତମ ବିଗ୍ରହଭାବରେ) ସୁମନ୍ତ (ଉତ୍ତମ ବିଗ୍ରହ) ସୁମନ୍ତ୍ର "ମନ୍ତ୍ରୀ" ଭାବ (ନିଯୁକ୍ତରୂପେ) "ରାମଙ୍କ-ନିକଟରେ ଆସିଥିବା ଲୋକଙ୍କୁ" ସ୍ଥାନ ବିରଚ (ବସିବାକୁ ସ୍ଥାନ କରି ଦେଲେ) "ଏବଂ" ଚରଚ (ଚର୍ଚ୍ଚିଲେ) । "ବିଧାନର ଉତ୍ତମ ସାମଗ୍ରୀ-ମାନ ଦେଇ ଚର୍ଚ୍ଚା କଲେ ଏହିଭାବ" । ୩୬ ।

୩୭ଶ ପଦ—ସେଦିନୁଁ (ରାମ ସଙ୍ଗରେ ଭଜେକାଳ ଦିନରୁ) ବର୍ଦ୍ଧକ (ବଢ଼େଇମାନେ) ଅଯୋଧ୍ୟାରେ (ଅଯୋଧ୍ୟା ରାଜଧାନୀରେ) ଅତିଯତନେ

୩—ମିତ୍ରଂ ସ୍ୱଚ୍ଛତୟା ରିପୁଂ ନୟବଲୈର୍ଲୁବ୍ଧଂ ଧନୈରୀଶ୍ୱରଂ ।
କାର୍ଯ୍ୟେଣ ଦ୍ୱିଜମାଦରେଣ ଯୁବତୀଂ ପ୍ରେମ୍ଣା ସମୈର୍ବାନ୍ଧବାନ୍ । ଇତ୍ୟାଦିବର୍ଣ୍ଣିତ ।
୪—ସତ୍ତ୍ୱଗଃ ସତ୍ତ୍ୱପୂର୍ଣ୍ଣତ୍ୱେ ଇତି ଜନକାଶେଷଃ ।
୫—ସତ୍ତ୍ୱ ସମସ୍ତ ସଭେ୍ୟ ଚ ଇତ୍ୟମରଃ ।
ସତ୍ତ୍ୱ ସମ୍ମାର୍ଜିକେ ଗୋଷ୍ଠୀ ଦ୍ୟୂତମନ୍ଦିରୟୋରପି ଇତି ମେଦିନୀ ।
ସ୍ତ୍ରିୟାଂ ସମ୍ମାର୍ଜିକେ ଗୋଷ୍ଠୀ ଦ୍ୟୂତମନ୍ଦିରୟୋଃ ସତ୍ତ୍ୱ ଇତି ରଭସଃ ।

ମଣିରେ ଅନନ୍ତ ମଣିରେ ରୁଚିରୁ ଏ । ବିଦୁଷେ । ବିଗ୍ରତଶୀ ଏ ଅଳକା-
ଶୋଭିତା । ବୈଧବ୍ୟ ଅବସ୍ଥା ଆଲିଙ୍ଗିତା । ବିଶେଷେ ଅଳଂକାର
ମୁଞ୍ଚି ଗଲାକି କେବଳ କରଣି ଚିନ୍ତା ଏ । ବିଦୁଷେ । ୩୫ ।

---

( ଅଣ୍ଡ ସନ୍ଧିରେ ) "କୀର୍ତ୍ତିବରର ପୂର୍ବାପେକ୍ଷା ଆଧୁନିକ" ଶୋଭା ବର୍ଣ୍ଣନ କରୁଁ
( କରନ୍ତେଂ ) ବିଶ୍ୱକର୍ମା ( ଦେବଶିଳ୍ପୀ ଦେଖି ) ରୁଚିରୁ କୁଣ୍ଠିତ ହେ
( ବଢ଼େଇମାନଙ୍କୁ ଗୁରୁ କରିବା ପାଇଁ ) ବର୍ଣ୍ଣିତ (ଇଚ୍ଛିଲେ) । "ବିଶ୍ୱକର୍ମାଠାରୁ
ଅଯୋଧ୍ୟା ବିଦ୍ୟାଣୀଏ ଅଧିକ କାରିଗର ଏମନ୍ତ ସୃଜିତ ହେଲ" ହେ ବିଦୁଷେ !
ସେ ତ ( ସେ ପୂର୍ବ ନିର୍ମିତ ଅଯୋଧ୍ୟା ) ୧ ଅନନ୍ତ ( ନିରବଧି ) ମଣିରେ
( ରତ୍ନମାନଙ୍କରେ ) ବିକ୍ଷଳିତ ( ଉଜ୍ଜ୍ୱଳ ନ ଥିଲି ) "କାଷ୍ଠାଦିରେ
ନିର୍ମିତ ହୋଇ ଥିଲି ଏହି ଭାବ" । ବର୍ତ୍ତମାନ ଏ ( ଅଯୋଧ୍ୟା )
ଅନନ୍ତ ( ଅପରିମିତ ) ମଣିରେ ( ରତ୍ନମାନଙ୍କରେ ) "ନିର୍ମିତ ହେବାରୁ"
ରୁଚିରୁ ( ମନୋହର ) ହେଲ । ହେ ବିଦୁଷେ ! ବିଗ୍ରତଶୀ ( ଯାହା କି ବିଗ୍ରହ
କରିଗଲି ) ୨ ଅଳକା ( କୁବେରପୁରୀ ) ଅଳକାଶୋଭିତା "ସ୍ପର୍ଦ୍ଧୀ ହେଲ" ।
"ସେ ଅଯୋଧ୍ୟା ଶୋଭାକୁ ଦେଖି" ବୈଧବ୍ୟ ଅବସ୍ଥା ( ବିଧବା ଦଶାକୁ )
ଆଲିଙ୍ଗିତା ( ଆଲିଙ୍ଗନ କଲି ) । ବିଶେଷ ( ବିଶେଷରେ ) ଅଳଂକାର ମୁଞ୍ଚି
( ତ୍ୟାଗ କରି ) ଏ "ଅଳକା" କେବଳ ଚିନ୍ତା କରି ଗଲି କି ? "ବିଧବା ଚିନ୍ତା
କରେ ଓ ଅଙ୍ଗରୁ ଅଳଂକାର କାଢ଼ି ଫୋପାଡ଼ି ଦିଏ ସେହିପରି କୁବେରପୁରୀ
ଅଯୋଧ୍ୟାକୁ ଅଧିକ ଶୋଭା ମନେ କରି ଚିନ୍ତିତ ହୋଇ ମଣି ରତ୍ନମାନ ଦେଇ
ବିଧବାପ୍ରାପ୍ତ ଅଲକ୍ଷଣ ଦର୍ଶାଉ ଏହି ଅଭିପ୍ରାୟ" "ଅଯୋଧ୍ୟା ଅଳକାଶୋଭିତା
ଏହିଭାବ" । ୩୫ ।

---

୧—ଅନନ୍ତଃ କେଶବେ ଶେଷେ ପୁମାନ୍ନିରବଧୌ ତ୍ରିଷୁ ଇତିବିଶ୍ୱଃ
୨—କୈଳାସସ୍ଥାନମଳକା ପୂର୍ବିମାନଂ ତୁ ପୁଷ୍ପକ ଇତ୍ୟମରଃ ।
ଅଳକା ଚୂର୍ଣ୍ଣକୁନ୍ତଳା ଇତ୍ୟପି ।

ବୋଲାଇ ଯେ ଲଙ୍କା ତହୁଁ କରୁ ଶଙ୍କା ତା ପୁଷ୍ପଲଙ୍କା କେଶୁ ଖସି । ବିମଳିନ ପତନ୍ନ ହୋଇ ଦିଶି । ବୟସ୍ଥା ଯହୁଁ ଅମରାବତୀ କହି ବାର୍ଦ୍ଧକ୍ୟ ସ୍ୱଭାବ ଦିଶି ହେ । ବିଦୁଷେ । ବସେ ଭୋଗବତୀ ପଦ-ତଳରେ । ବିଶ୍ୱାସିତ ଦାସୀଭାବ ବଳରେ । ବୈକୁଣ୍ଠ ଯେହି ନାମେ ମର୍ତ୍ତ୍ୟେ ନାହିଁ ତାତୁଲେ ତୁଳେ ତୁଳରେ ହେ । ବିଦୁଷେ । ୩୬ ।

୩୬ଶ ପଦ—"ଶୋଭାପୁରୀ ଅଟେ ଏମନ୍ତ" ଯେ ୧ ଲଙ୍କା ଯେ ଲଙ୍କା ( କୁଳଟା ସ୍ତ୍ରୀ ) ବୋଲାଇ ( ବୋଲାଇଲା ) କାହିଁକି ନା ? 'କୁତ୍ରିବେଦ୍ଧ ଭୋଗ କରିବାରୁ ସେ ଲଙ୍କାକୁ କୁଳଟା ବୋଲି ଲୋକେ ବୋଇଲେ ଏହି ତାତ୍ପର୍ଯ୍ୟାର୍ଥ' । ତହୁଁ ( ଏହି ଅଯୋଧ୍ୟାକୁ ) ଶୋଭାରେ ( ସମାନ ନୋହିବ ବୋଲି ) ଶଙ୍କା କରୁଁ ( ଭୟ କରନ୍ତେ ) ତା କେଶୁ ( ତାହାର କେଶରୁ ) ପୁଷ୍ପଲଙ୍କା ( ଫୁଲଡ଼ାଳ ) ଖସି ପତନ ହୋଇ ( ଖସି ପଡ଼ିଲା ) । ତେଣୁ-ସେ ଲଙ୍କା ମଳିନ ଦିଶି ( ମ୍ଳାନ ଦିଶିଲା ) "ସୁବର୍ଣ୍ଣ ରୂପ ଫୁଲ ଡାଳ କେଶ ଥିବାରୁ ଯିନା ସୁନ୍ଦର ଦିଶୁଥିଲା ସେ ଖସିବାରୁ ଅସୁନ୍ଦର ଦିଶିଲା ଅଯୋଧ୍ୟା ସଙ୍ଗେ କାହୁଁ ସମାନ ହେବ ଏହି ଅଭିପ୍ରାୟ" । ଅମରାବତୀ ( ଇନ୍ଦ୍ରପୁରୀକି ) ବୟସ୍ଥା ( ଯୁବତୀ ) କହି ସେ "ଯୁବତୀ ହୋଇ" ଯହୁଁ ( ଯେଉଁ ଅଯୋଧ୍ୟାର ଆଗରେ ) ବାର୍ଦ୍ଧକ୍ୟ ( ବୃଦ୍ଧା ସ୍ତ୍ରୀର ) ୨ ସ୍ୱଭାବ ( ସ୍ୱରୂପ ) ଦିଶି ( ଦେଖାଗଲା ) । ହେ ବିଦୁଷେ ! ଭୋଗବତୀ ( ପାତାଳପୁରୀ ) ଦାସୀ ଭାବ ( ଦାସୀତ୍ୱ ) ବଳରେ ବିଶ୍ୱାସିତ ( ବିଶ୍ୱାସ ଭାବରେ ) ପଦ ତଳରେ ( ପାଦତଳରେ ) ବସେ । "ଅଯୋଧ୍ୟା ପ୍ରଧାନ ନାୟିକା ପାତାଳପୁରୀ ତାର ବିଶ୍ୱାସିତ ଦାସୀ ଭାବରେ ପାଦ ତଳରେ ରହିଛି ଏହି ଫଳିତାର୍ଥ" । ହେ ବିଦୁଷେ ! ନାମେ ( ନାମରେ ) ଯେ ବୈକୁଣ୍ଠ ଯେ ମର୍ତ୍ତ୍ୟେ ( ମର୍ତ୍ତ୍ୟଲୋକେ ) ନାହିଁ ( ଏହା ନିଶ୍ଚୟ ) । ତା ତୁଲେ ( ସେ ବୈକୁଣ୍ଠ ସଙ୍ଗେ ) ତୁଳରେ ( ତୁଳନା କରିବାରେ ) "ଏ ଅଯୋଧ୍ୟା ଏକା" ତୁଲେ ( ସମାନ ଅଟେ ) । ୩୬ ।

୧—ଲଙ୍କା ଶେଫପୁରୀ ଶାଖା ଡାକିନୀ କୁଳଟାସୁ ଚ ।
ପୁଂଶ୍ଚଲୀ ଧର୍ଷିଣୀ ବନ୍ଧକ୍ୟସତୀ କୁଳଟେତ୍ୱରୀ ॥ ଇତ୍ୟମରଃ ।
୨—ସ୍ୱରୂପଂ ଚ ସ୍ୱଭାବଶ୍ଚ ନିସର୍ଗଶ୍ଚାଥ ବେପଥୁ ଇତ୍ୟମରଃ ।

ବନସ୍ଥ କୈକେୟୀସୁତ ପାଦୁକାକୁ ଥୋଇ ରଘୁବଂଶଈଶ ଶ୍ରୀମୁଖରେ ।
ବନ୍ଧ ନୃପପଦକୁ ତତପରେ । ବାସୁକୀ ବିନା ଧରାଭାର ଧାରଣ ଆନ
ସୋଦରେ କି ଚିରେ ହେ । ବୀରେନ୍ଦ୍ର । ବୋଲୁଁ ଶତ୍ରୁଘ୍ନ ଯଥାର୍ଥ
ଉଚ୍ଚାର । ବୋଲେ ସୁମନ୍ତ୍ର ହେଉ ଏ ସେପରି । ବିଷ୍ଣୁଙ୍କୁ ଅନୁସରି
ବ୍ରହ୍ମା ଯେମନ୍ତ ସୃଷ୍ଟି ପାଳନାକୁ କରି ହେ । ବୀରେଶ । ୩୭ ।

ବରିଷ୍ଠ ବଶିଷ୍ଠ ଗୁରୁପୁଷ୍ୟାଯୋଗେ ଅଭିଷେକ ହେବ ଭାଷିତ ।
ବାମଦେବ କହି ହେଲେ ଏମନ୍ତ । ବନେ ଦୂଷଣ ନାଶିଅଛ ଅନୁଜ-
ପ୍ରସୂଦୂଷଣ ହରିତ ହେ । ବୀରେନ୍ଦ୍ର । ବନ୍ଧୁ ଅଙ୍ଗୀକୃତେ ଏହା

୩୭ଶ ପଦ—ରଘୁବଂଶ ଈଶ ( ରାମଙ୍କ ) ଶ୍ରୀମୁଖରେ କୈକେୟୀ ( ଭରତ ) ପାଦୁକାକୁ ( ରାମଙ୍କର ପୂର୍ବଦତ୍ତ କଠାଉକୁ ) ଥୋଇ ବନସ୍ଥ କରି "କହିଲେ" ୧ ତତପରେ ( ଆପଣ ଆସକ୍ତ ହୋଇ ) ନୃପ ପଦକୁ ( ରାଜ୍ୟର ଭାର ) ବନ୍ଧ ( ବନ୍ଧନ କର ) । ହେ ବୀରେନ୍ଦ୍ର ! ଧରା ଭାର ( ପୃଥିବୀର ଭାର ) ଧାରଣ "କରିବା" ଚିରେ ( ଚିରକାଳ ପର୍ଯ୍ୟନ୍ତ ) ବାସୁକି ବିନା ( ନାଗରାଜ ଛଡ଼ା ) ଆନ ସୋଦରେ (ତାଙ୍କ ଅନ୍ୟ ଭାଇମାନଙ୍କ ଦ୍ୱାରା ) "ହେ ଇପାରେ କି ?" "ସେହିପରି ଆପଣ ଧରା ଧରିବାରେ ସମର୍ଥ ଆମ୍ଭେମାନେ ନୋହୁଁ ଏହିଭାବ" ! ବୋଲୁଁ ( ରାମଙ୍କ ଶ୍ରୀମୁଖରେ ଭରତ ଏରୂପ କଣାଉଁ ) ଶତ୍ରୁଘ୍ନ ଯଥାର୍ଥ ( ଏ ଉଚିତ ବୋଲି ) ଉଚ୍ଚାର ( କହିଲେ ) ସୁମନ୍ତ୍ର "ମନ୍ତ୍ରୀ" ବୋଲେ ( କହିଲେ ) ହେ ବୀରେଶ ( ବୀରଶ୍ରେଷ୍ଠ ରାମ ) ବ୍ରହ୍ମା ଯେମନ୍ତ ( ଯେପରି ) ବିଷ୍ଣୁଙ୍କୁ ଅନୁସରି ସୃଷ୍ଟି ପାଳନାକୁ କରି ( ସୃଷ୍ଟି ପାଳଇ) ଏ ସେପରି ହେଉ (ଏମାନେ ଆପଣଙ୍କୁ ଅନୁସରି ରାଜ୍ୟ ପାଳନ୍ତୁ) ।୩୭।

୩୮ଶ ପଦ—ବରିଷ୍ଠ ( ଶ୍ରେଷ୍ଠ ପ୍ରଧାନ ) ବଶିଷ୍ଠ "ଋଷି" ଭାଷିତ ( କହିଲେ ) ଗୁରୁ ପୁଷ୍ୟା ଯୋଗେ ( ଅମୃତ ସିଦ୍ଧି ଯୋଗରେ ) ଅଭିଷେକ ( ଆପଣଙ୍କର ନୃପାଭିଷେକ ) ହେବ । ବାମଦେବ "ମୁନି" ଏମନ୍ତ (ଏ ପ୍ରକାର) କହି ହେଲେ ହେ ବୀରେନ୍ଦ୍ର ! "ଆପଣତ" ବନେ ( ବନ ମଧ୍ୟରେ ) ଦୂଷଣ "ନାମ ରାକ୍ଷସ" ନାଶିଅଛ "ଏବେ" ଅନୁଜ ପ୍ରସୂ ( କେକୟୀର )

୧—ତସ୍ମିନ୍ ପ୍ରତିଷ୍ଠାସଙ୍କେ। ଇତ୍ୟମରଃ ।

ଶୁଣିଲେ । ବାୟୁପୁତ୍ରଙ୍କୁ ଜାମ୍ବବ ଭଣିଲେ । ବାଳଖିଲ୍ୟାସହ ସନକାଦି ମୁନି ଗଙ୍ଗାଦିଜଳ ଆଣିଲେ ହେ । ବିଦୁଷେ । ୩୮ ।

ବିଭିନ୍ନକଲେ ସଟା ଯହୁଁ ହରିର ଅରଣ୍ୟବିହାର ଅନ୍ତର । ବସିବାକୁ ସମ୍ରାଟପଦବୀର । ବିଭୂଷି କୁନ୍ତଳଦେଶ ପୁଷ୍ପପୂର ଅଙ୍ଗ-ଦେଶ ମନୋହର ହେ । ବିଦୁଷେ । ବହି ଅନନ୍ତଶୋଭା ମହୀଧାର୍ଯ୍ୟେ ।

ଦୂଷଣ ( ଅପବାଦ ) ହରି ( ହରଣ କର ) । ବିଭୁ ( ରାମ ) ଏହା ( ରାମ-ଦେବ କଥା ) ଶୁଣିଲେ, ଅଙ୍ଗୀକୃତେ ( ଅଙ୍ଗୀକାର କଲେ ) । "ମୁଁ ସେ ଦୋଷ ହରୁନାହିଁ ଏହିଭାବ" । ହେ ବିଦୁଷେ ! "ତଦୁତ୍ତାରୁ ରାମ" ବାୟୁ ପୁତ୍ରଙ୍କୁ ( ହନୁମାନଙ୍କୁ ) ଜାମ୍ବବ "ମନ୍ତ୍ରୀକି" ଭଣିଲେ ( କହିଲେ ) "ସେ ଦୂହେଁ" ବାଳଖିଲ୍ୟା "ମୁନି" ସହ ( ସହିତ ) ସନକାଦି ମୁନି ( ସନକ ଆଦି ମୁନିଙ୍କି ) ଗଙ୍ଗାଦି ( ଗଙ୍ଗା ପ୍ରଭୃତି ତୀର୍ଥରୁ ) ଜଳ ଆଣିଲେ । ୩୮ ।

୩୯ଶ ପଦ—ହରିର ( ସିଂହର ) ଅରଣ୍ୟବିହାର ଯହୁଁ ଅନ୍ତର ହୁଏ "ସେ ତାହାର" ସଟା ( କେଶର ) ବିଭିନ୍ନ ( ଇତଃସ୍ତତ ) କରେ "ସେହିପରି" ହରିର ( ରାମଚନ୍ଦ୍ରଙ୍କର ) ଅରଣ୍ୟ ( ବନ ) ବିହାର ଯହୁଁ ଅନ୍ତର "ହେଲା" ( ସରିଲା ) "ତହୁଁ" "ତାଙ୍କ" ୧ ସଟା ( ଜଟାକୁ ) ବିଭିନ୍ନ କଲେ ( ଫିଟାଇଦେଲେ ) "କାହିଁକି ନା" ? ସମ୍ରାଟପଦବୀର ( ମଣ୍ଡଳେଶ୍ୱର ପଦବୀରେ ) ବସିବାକୁ ( ବସିବାପାଇଁ ) କୁନ୍ତଳଦେଶ ( ମସ୍ତକକୁ ) ପୁଷ୍ପପୂର ( ପୁଷ୍ପ ସମୂହରେ ) ବିଭୂଷି ( ମଣ୍ଡନ କରି ) ଅଙ୍ଗଦେଶ ( ଅଙ୍ଗପ୍ରତ୍ୟଙ୍ଗ ) ମନୋହର "କଲେ" "କର୍ପୂର ଚନ୍ଦନ ପ୍ରିୟଙ୍କାଦିରେ ମଣ୍ଡିଲେ ଏହିଭାବ" । ହେ ବିଦୁଷେ ! ମହୀଧାର୍ଯ୍ୟେ ( ପୃଥ୍ୱୀ ବହିବାକୁ ଯୋଗ୍ୟ ହୁଅନ୍ତେ ) ଅନନ୍ତ ( ଅପରିମିତ ) ଶୋଭା ବହି ( ଧଇଲେ ) ଅଥବା— "ଶେଷଦେବ ମହୀ ଧରିବା ସମର୍ଥ ହେବରୁ" ଅନନ୍ତ ( ଶେଷଦେବ ) ଶୋଭା ବହିଲେ । ୨ ବିଧୁ ( ଚନ୍ଦ୍ରତୁଲ୍ୟ ) ବିଧୁ ( ରାମଚନ୍ଦ୍ର ) ନକ୍ଷତ୍ର ୩ ମାଳାରେ

୧—ବ୍ରତିନସ୍ତୁ ଜଟା ସଟା ଇତ୍ୟମରଃ ।
୨—ବିଧୁର୍ବିଷ୍ଣୌ ଚନ୍ଦ୍ରମସି ଶୂଳେ ଶଙ୍ଖେ ସୁବର୍ତ୍ତରେ ଛନ୍ଦ ଶବ୍ଦମାଳା ।
୩—ମାଳା ସ୍ରକ୍ ପଂକ୍ତି କାନନେ ଇତ୍ୟପି ।

ବଧୂ ନକ୍ଷତ୍ରମାଳାରେ ବସ୍ତ୍ରଜେ । ବୋଇଲେ କନ୍ଦର୍ପ କୋଟିଏ ଗୋଟିଏ ଦର୍ଶନେ ଜନସମାଜେ ହେ ।୩୯।

ବାଦ୍ୟଶବଦର ଗମକ ଚମକ ଦାନବେନ୍ଦ୍ର ଦାନ କାରଣ । ବସୃଜିଲେ ମାଇଲେଣି ରାବଣ । ବାଜଣା ଯାଜଣା କାହିଁକ ଏଣିକ ମାଗିବା ଇଚ୍ଛେ ଲବଣ ସେ । ବୀରେନ୍ଦ୍ର । ବ୍ୟାଳଶ୍ରେଷ୍ଠ ଦେଖିବା ଅଭିଷେକ । ବୋଲବୋଲ ହୋଇ ଯିବା ଉତ୍ସୁକ । ବଚନେ ଝବତ ଲୋଚନେ ଦେଖିବେ ମହାଭାଗ୍ୟବନ୍ତ ଲୋକ ହେ । ବଧୂରେ ।୪୦।

---

( ସତାଇଶନକ୍ଷତ୍ର ମାଳା ପ୍ରାପ୍ତ ସତାଇଶ ମୁକ୍ତାମାଳାରେ ) ବସ୍ତ୍ରଜେ ( ବସ୍ତ୍ରକଳ ପ୍ରାପ୍ତ ବସ୍ତ୍ରଜଲେ ) । ହେ ବଧୂଷେ ! ଜନସମାଜେ ( ଜନ ସମୂହ ) ଦର୍ଶନେ ( ସେ କାଳେ ରାମଙ୍କୁ ଦେଖି ) ବୋଇଲେ କୋଟିଏ କନ୍ଦର୍ପ "ଏକାଠି ହୋଇ" ଗୋଟିଏ "ହେଲ ପ୍ରାପ୍ତ ଦଶୁଛନ୍ତି" । ୩୯ ।

୪୦ଶ ପଦ—ବାଦ୍ୟ ଶବଦର ଗମକ ଚମକ ( ରାମଙ୍କ ଅଭିଷେକ କାଳର ଅଭଶସ୍ତ ବାଦ୍ୟନାଦ ) "ଶୁଣି ଜନ୍ମେ ମନେ କଲେ" ଦାନବେନ୍ଦ୍ର ( ଶ୍ରେଷ୍ଠ ଦାନବଙ୍କ ) ଦାନ ( ଛେଦନ ) କାରଣ ( କରିବା ପାଇଁ ) "ଏ ବାଜା ବାଜିଲୁ କି" ? "ପୁଣି" ବସୃଜିଲେ ରାବଣ ( ଦାନବେନ୍ଦ୍ର ରାବଣକୁ ) ମାଇଲେଣି ବାଜଣା ଯାଜଣା କାହିଁକି ( କ ସକାଶେ ବାଦ୍ୟ ସାଜୁ ଅଛନ୍ତି ) ସେ ବୀରେନ୍ଦ୍ର ( ରାମ ) ଏଣିକ ଲବଣ "ଦୈତ୍ୟଙ୍କୁ" ମାଗିବା ଇଚ୍ଛେ । ବ୍ୟାଳଶ୍ରେଷ୍ଠ ( ଶେଷଦେବ ) "ବାଦ୍ୟନାଦ ଶୁଣି" ଅଭିଷେକ ଦେଖିବା ଉତ୍ସୁକ ( ଉତ୍ସୁକରେ ) ବୋଲବୋଲ ହୋଇଯିବା "ଏମନ୍ତ" ବଚନେ ଝବତି ( କହୁ ଝବଲେ ) "ଆମ୍ଭେ କାହୁଁ ଦେଖିବା" ବଧୂରେ ( ଦୈବ ବଳରୁ ) ମହା ଭାଗ୍ୟବନ୍ତ ଲୋକ "କେବଳ" ଲୋଚନେ ( ନୟନରେ ) ଦେଖିବେ । "ଆମ୍ଭେ ହତଭାଗ୍ୟ ପୃଥୀଭାରେ ବନ୍ଧିବା ନା ଦେଖିବା ଏହାଭଳ" । ୪୦ ।

ବାଜୀ ଗଜ ରଥ ପତ୍ତି ଚତୁରଙ୍ଗ ପରଂପରା ହୋଇ ଏ ଥିଲା । ବିଧି ଏକ ନୂତନ ତହିଁ ହେଲା । ବାନର ଋକ୍ଷ ରାକ୍ଷସଙ୍କରି ମେଳ ହିଂସାହୀନ ରାମଲୀଳା ହେ । ବିଦୁଷେ । ବୈଜୟନ୍ତୀ ଉଡ଼େ ବ୍ରାତ ବ୍ରାତ । ବନ୍ଦିବୃନ୍ଦ ବନ୍ଦନରେ ଉନ୍ମତ୍ତ । ବିଭୀଷଣ ସୁଗ୍ରୀବାଦ ମହାପତି ଯାନମାନ ଆରୋହିତ ହେ । ବିବୁଧେ ।୪୧।

ବିଭ୍ରାଜ ହେଲେ ତ୍ରିଭୁବନକଣ୍ଠ ମର୍କତମଣି ସତ୍ତ ରାମ । ବିଧିରେଡ଼ ଅଯୋଧ୍ୟା ନିଜଧାମ । ବପୁଷ୍ମନ୍ତେ ମୁକ୍ତ ହୋଇବେ କଣ୍ଠତେ

---

୪୧ଶ ପଦ—"ପୁଣି ଲୋକେ ବୋଇଲେ" ଯେଉଁ ଚତୁରଙ୍ଗ "ବଳ" ପରମ୍ପରା ହୋଇ "ପୂର୍ବରୁ" ଥିଲା ଏ ସେହି ବାଜୀ ( ଅଶ୍ୱ ) ଗଜରଥ ପତ୍ତି ( ପଦାତି ) । ତହିଁ ( ସେହି ଅଯୋଧ୍ୟାରେ ) ଏକ ନୂତନ ବିଧି ହେଲା ( ଏବେ ଅଯୋଧ୍ୟାରେ ଆଉ ଗୋଟିଏ ନୂଆକଥା ଦେଖାଗଲା ) ହିଂସାହୀନ ( ଅହିଂସକ ହୋଇ ) ବାନର ଋକ୍ଷ ( ଭାଲୁ ) ରାକ୍ଷସଙ୍କର ମେଳ "ଯାହାଙ୍କ ସ୍ୱଭାବ ହିଂସ୍ର ସେମାନେ ହିଂସାଶୂନ୍ୟ ହୋଇ ଏକାଠି ହେବା ଏ କେବଳ" ରାମ ଲୀଳା ( ରାମଙ୍କର ଲୀଳା ) । ହେ ବିଦୁଷେ ! "ଦେଖ" ବୈଜୟନ୍ତୀ "ପତାକା" ବ୍ରାତ ବ୍ରାତ ( ବୃନ୍ଦ ବୃନ୍ଦ ହୋଇ ) ଉଡ଼େ ( ଉଡ଼ୁଅଛି ) । ବନ୍ଦିବୃନ୍ଦ ("ଭାଟମାନେ") ବନ୍ଦନରେ ( ସ୍ତୁତି ପାଠରେ ) ଉନ୍ମତ୍ତ ( ପ୍ରମତ୍ତ ) "ହୋଇ ଅଛନ୍ତି" । ହେ ବିବୁଧେ ( ପଣ୍ଡିତମାନେ ) "ସେ କାଳରେ" ବିଭୀଷଣ ସୁଗ୍ରୀବାଦ ( ସୁଗ୍ରୀବ ପ୍ରଭୃତି ) ମହାପତି ଯାନମାନ ( ବିମାନ ସବୁ ) ଆରୋହିତ ( ଆରୋହିଲେ ) । ୪୧ ।

୪୨ଶ ପଦ—ତ୍ରିଭୁବନ କଣ୍ଠ ମର୍କତ ମଣି ( ସ୍ୱର୍ଗ ମର୍ତ୍ତ୍ୟ ପାତାଳ ରୂପ ମୁକୁଟର ମରକତ ମଣି ସ୍ୱରୂପ ) ରାମ ବିଭ୍ରାଜ ହେଲେ ( ବିରାଜିଲେ ) । ସତ୍ତ ( ମିଥ୍ୟାନୁହେ ) "ସତହେଲେ" ( ଏହା ସତ୍ୟଂସିଦ୍ଧ ) । ବିଧିରେ ତ ଅଯୋଧ୍ୟା "ଦେଶ" ନିଜ ଧାମ ( ସ୍ଥାନ ) ଅଟେ । "ସେ କାଳେ" ବିଦୁଷ୍ଟେ କଣ୍ଠତେ ପ୍ରେମ ଜନମି ( ଚିତ୍ତରେ କଣ୍ଠିତ ପ୍ରେମ ଜନ୍ମିବାରୁ ) ଭାବିଲେ ବପୁଷ୍ମନ୍ତେ ( ସ୍ୱ ଦେହରେ ) "ଲୋକେ" ମୁକ୍ତ ହୋଇବେ ( ମୋକ୍ଷ ହୋଇ

ଘବଲେ ଜନମି ପ୍ରେମ ହେ । ବବୁଧେ । ବସ୍ୟାଳଶପଦେ ଛାନ୍ଦ ମଧୁର ।
ବୋଟଲେ ଉପେନ୍ଦ୍ରଭଞ୍ଜ ବୀରବର । ବୈନ୍ହାସିକ ହେବେ ନ ବୁଝିଲା
ଜନେ ତାହାଁକ କେଉଁ ବଗ୍ଧର ହେ । ବବୁଧେ । ୪୨ ।



## ଦ୍ୱିପଞ୍ଚାଶତ୍ ଛାନ୍ଦ

ରାଗ—ମଙ୍ଗଳ

ବର୍ଣ୍ଣନେ କବ ଅଶେଷ ଯେଉଁ ମହୋତ୍ସବ ।
ବଶଚଉ୍ ଚିଚତରେ ବଙ୍କେ ଅର୍ଥୀ ହେବ ହେ । ୧ ।

---

ଯିବେ ) ୍ ହେ ବବୁଧେ ! ଏ ଛାନ୍ଦ ବସ୍ୟାଳଶ ପଦେ ମଧୁର, ବୀରବର ଉପେନ୍ଦ୍ର ଭଞ୍ଜ କହିଲେ ନ ବୁଝିଲା ( ନ ବୁଝିପାରବା ) ଜନେ ବୈହାସିକ ହେବେ ( ହାସ୍ୟ କରବେ ) "ନେବେ" ତାହାଁକ "ମୋହର" କେଉଁ ବୈଗ୍ଧର ( କେହି ବଗ୍ଧର ନାହିଁ ) । ୪୨ ।



## ଦ୍ୱିପଞ୍ଚାଶତ୍ ଛାନ୍ଦ

୧ମ ପଦ—ଯେଉଁ ( ରାମଚନ୍ଦ୍ରଙ୍କର ) ଅଭିଷେକ ମହୋତ୍ସବ ତାହା ବର୍ଣ୍ଣନେ ( ବର୍ଣ୍ଣନା କରିବାରେ ) କବମାନଙ୍କର ରଚନା ଗୁଣରେ ଶେଷ ନୁହଇ ଅର୍ଥାତ୍ କେହି ବର୍ଣ୍ଣନ କର ନ ପାରନ୍ତ, ହେ ବଙ୍କେ ! (ହେ ପଣ୍ଡିତେ) ବଶଚଉରେ ( ସେହି ରାମ୍ଚ ଚରିତରେ ଚଉକୁ ବଶୀଭୂତ କର ) ବ୍ଲନ୍ତ କ "ସେହି ଉତ୍ସବକୁ ଚନ୍ତା କର" ଅର୍ଥୀ ହେବ (ବାଞ୍ଛିତ ଫଳ ପ୍ରାପ୍ତ ହେବ) ।୧ ।

ବ୍ରହ୍ମପୁତ୍ର କହିବାର ଗୁରୁପୁଷ୍ୟାଯୋଗେ ।
କରୁଣାଳୟ କୃପାରେ ଯେ ସେ ସୀତାସଙ୍ଗେ ଯେ । ୨ ।
ବିଶାରଦ ଗମ୍ଭୀରଗୁଣରେ ଅତିଅନ୍ତ ।
ବିଳସିତ ରଙ୍ଗେ ବହୁଭୁବନେ ରାଜିତ ହେ । ୩ ।
ବକଶାମଳ ବାଜୀ କୁମ୍ଭୀରେ ସ୍ଥାନ ପୂର୍ଣ୍ଣ ।
ବିଦିତ ଶଙ୍ଖ ମାଧୁରୀ ଆନକ ନିସ୍ୱନ ଯେ । ୪ ।

---

୨ୟ ପଦ—ବ୍ରହ୍ମପୁତ୍ର ( ବଶିଷ୍ଠ ) ଅଭିଷେକର ନିମିତ୍ତ ଗୁରୁ ପୁଷ୍ୟା-ଯୋଗେ ( ଗୁରୁବାର ଦିନ ପୁଷ୍ୟାନକ୍ଷତ୍ର ଯୋଗରେ ) ଅର୍ଥାତ୍ ଅମୃତଯୋଗରେ ଅଭିଷେକ ହେବାକୁ କହନ୍ତେ ସେହି ଯୋଗରେ କୃପାରେ କରୁଣାଳୟ ( ସମୁଦ୍ର ଅର୍ଥାତ୍ କୃପାସମୁଦ୍ର ଯେ ରାମଚନ୍ଦ୍ର ) ସେ ସୀତାଙ୍କ ସଙ୍ଗେ ଘେନି ( କୋଳେ ବସାଇ ) ଅଭିଷେକ ସିଂହାସନରେ ବସିଲେ । "ସମୁଦ୍ର, ସୀତା ଯେ ଗଙ୍ଗା ତାଙ୍କ ସଙ୍ଗେ ସଙ୍ଗ ହୁଅନ୍ତି ) । ୨ ।

୩ୟ ପଦ—"ସମୁଦ୍ର ଅତ୍ୟନ୍ତ ଗମ୍ଭୀରଗୁଣରେ" ବିଶାରଦ ଅତିଶୟରେ ଗମ୍ଭୀର, ଆଉ ତହିଁରେ ତରଙ୍ଗ ( ଲହରୀ ) ବିଳାସ କରଇ ଏବଂ ବହୁ ଭୁବନେ (ବହୁ ଜଳରେ) ରାଜିତ (ବିରାଜିତ ଅଟଇ ) । ରାମଚନ୍ଦ୍ର, ବିଶାରଦ ( ଚତୁର ) ଆଉ ଗୁଣରେ ଅତ୍ୟନ୍ତ ଗମ୍ଭୀର ଅର୍ଥାତ୍ ସମୁଦ୍ରର ଗମ୍ଭୀର ଯେପରି ଅକଳନ ସେହିପରି ରାମଚନ୍ଦ୍ରଙ୍କ ଗୁଣରେ କଳନା ନାହିଁ । ଆଉ ରଙ୍ଗ ( ନାନାବିଧ କୌତୁକରେ ) ବିଳସିତ ( ବିଳାସ କରନ୍ତି ) ଅଟନ୍ତି ଏବଂ ସେହି ଚାତୁରୀ ତାଙ୍କର ବହୁଭୁବନେ ( ଚତୁର୍ଦ୍ଦଶଭୁବନରେ ) ରାଜିତ ( ବିଖ୍ୟାତ ହୋଇଛି ) । ୩ ।

୪ର୍ଥ ପଦ—ସମୁଦ୍ରରେ ବକପକ୍ଷୀ, ଶ୍ୟାମଳପକ୍ଷୀ, ବାଜୀ ( ସିନ୍ଧୁ-ଘୋଟକ ) କୁମ୍ଭୀର ଏମାନେ ପୂର୍ଣ୍ଣ ହୋଇଥାନ୍ତି, ପୁଣି ତହିଁ ଶଙ୍ଖମାନେ ଥାନ୍ତି ଏବଂ ମାଧୁରୀ ( ମଧୁର ) ଆନ ଜନ୍ତୁମାନଙ୍କର ନିସ୍ୱନ ( ଶବ୍ଦ ଥାଏ ) । "ଅଭିଷେକ ସ୍ଥାନରେ ବକଶ୍ୟାମଳ ଚିହ୍ନ ବାଜିମାନେ ଥାନ୍ତି", ବାଜୀ (ଘୋଡ଼ା) କୁମ୍ଭୀ ( ହସ୍ତୀ ) ଏମାନଙ୍କରେ ସେହିସ୍ଥାନ ପୂର୍ଣ୍ଣ ହୋଇଅଛି । ଆଉ ଶଙ୍ଖ, ମଧୁରୀ ( ମହୁରୀ ) ଆନକ ( ବାଦ୍ୟ ବିଶେଷ ) ଏମାନଙ୍କ ସ୍ୱନ ସେହି ଅଭିଷେକ ସ୍ଥାନରେ ବିଦିତ ହୋଇଅଛି । ୪ ।

ବିତାନ ଅନନ୍ତ ଯହିଁ ଆନ ଲକ୍ଷ ନୋହି ।
ବିସ୍ତୃତ ତାରତାରା ନେତ୍ରରେ ଗୃରୁ ମୋହି ହେ । ୫ ।
ବିସ୍ତାରକ ସୁମନସପଦ୍ଧତି ଆବୃତ ।
ବିଦିତ ଚନ୍ଦ୍ରଝଲ୍‌କାବଳୀ କ ମାଧୁରୀ ଯେ । ୬ ।
ବିଳାସବଶରେ ଘନସାର ପ୍ରଚ୍ଛାଦିତ ।
ବିଜ୍ୱଳ ଛାୟାମଣ୍ଡପ କନ୍ୟାସ୍ତମ୍ଭକୃତ ଯେ । ୭ ।

---

୫ମ ପଦ—ଯହିଁ ( ଯେଉଁ ଅଭିଷେକ ସ୍ଥଳରେ ) ବିତାନ (ଚନ୍ଦ୍ରୁଆ) ଯେ ଅନନ୍ତ ( ଆକାଶ ତୁଲ୍ୟ ) ଆନ ( ଅନ୍ୟ ) ଲକ୍ଷ ନୁହଇ । ଆକାଶରେ ବିସ୍ତୃତ (ବିସ୍ତାରରୂପେ ) ତାର ( ଅତି ତେଜସ୍ୱୀ ) ତାରା ( ନକ୍ଷତ୍ର ) ଯେ ଗୃରୁ ( ମନୋହରରେ ) ନେତ୍ରକୁ ମୋହୁ ଥାଏ । ଚନ୍ଦ୍ରୁଆ ବିସ୍ତୃତ ( ବିସ୍ତାର ) ହୋଇଅଛି, ତାର ( ଉଜ୍ଜ୍ୱଳ ) ତାର ( ମଣିମାନେ ) ଚନ୍ଦ୍ରୁଆରେ ଥାଇ ଚାରୁ ( ମନୋହର ଗୁଣରେ ) ଦେଖନ୍ତା ଜନମାନଙ୍କର ନେତ୍ରକୁ ମୋହୁ-ଅଛନ୍ତି । ୫ ।

୬ଷ୍ଠ ପଦ—ଆକାଶରେ ସୁମନସପଦ୍ଧତି ( ନକ୍ଷତ୍ରଦାଣ୍ଡ ) ଯେ ବିସ୍ତାର ( ବିସ୍ତାରରୂପେ ) ଦେଖାଯାଏ ଆଉ ମାଧୁରୀ ( ମନୋହର ) ଅଟଇ ଏବଂ ଯେ ଚନ୍ଦ୍ରଙ୍କର ଝଲକାବଳୀ ( କିରଣ ସମୂହ ) ସେ ବିଦିତ ହୋଇ ଥାଏ, ଏଠାରେ ଚାନ୍ଦୁଆରେ ସୁମନସପଦ୍ଧତି (ପୁଷ୍ପମାଳ ସମୂହ) ବିସ୍ତାରକ ହୋଇଅଛି । ଆଉ ଯେଉଁ ଚନ୍ଦ୍ରଝଲକାଙ୍କ ସୁବର୍ଣ୍ଣ ନିର୍ମିତ ଚନ୍ଦ୍ର ତାରା ସବୁ ଖଚିତ ହୋଇଅଛି ତହିଁର ଝଲକାବଳୀ ଝଲକ ( ତେଜରେ ) କ ମାଧୁରୀ (କେଡ଼େ ମନୋହର) ହୋଇଅଛି । ୬ ।

୭ମ ପଦ—ସେହି ଅଭିଷେକ ସ୍ଥାନ ବିଳାସବଶରେ ଘନସାର ( କର୍ପୂର ) ତହିଁରେ ପ୍ରଚ୍ଛାଦିତ ( ଆଚ୍ଛନ୍ନ ) ହୋଇ ଗଲା । ବିଜ୍ୱଳ ( ଅତି ଉଜ୍ଜ୍ୱଳ ) ଯେଉଁ ଛାୟାମଣ୍ଡପ ହୋଇଥିଲା ସେ କନ୍ୟାସ୍ତମ୍ଭ ପ୍ରାୟ ଦେଖାଗଲା ଅର୍ଥାତ୍ କୃତିମ କନ୍ୟାଙ୍କର ମୂର୍ତ୍ତିସବୁ ସେହି ମଣ୍ଡପରେ ଥିବାରୁ ଏପରି ଅନୁମାନ ହେଲା । ୭ ।

ବାଡ଼ମୋହିନୀ ସ୍ୱଭାବେ ବିବୁଧରଞ୍ଜିତ ।
ବଭାତରେ ତମଚନ୍ଦ ହୋଇଛି ଖଣ୍ଡିତ ଯେ ।୮।
ବମ୍ବ ନିର୍ମଳ ଦେଖାଇ ସେ ବେଦିକାସାର ।
ବଦନରେ ଭ୍ରମ ଏତ ଅବ୍‌ଜଜାତପୁର ଯେ ।୯।
ବରଷାର ପରା ଭୂଭୃତଶିର ମଣ୍ଡନ ।
ବଜେ ଚଞ୍ଚଳା ଘନରଞ୍ଜନ ଭଦ୍ରାସନ ଯେ ।୧୦।

---

୮ମ ପଦ—ବାଡ଼ ( କାନ୍ଥ ) ସେମାନଙ୍କରେ ଯେଉଁ ମୋହିନୀ ( ସ୍ତ୍ରୀ ମୂର୍ତ୍ତି ) ସବୁ ଥିଲେ ସେମାନେ ସ୍ୱଭାବରେ ବିବୁଧ ( ଦେବତାମାନେ ) ସେମାନଙ୍କୁ ରଞ୍ଜିତ କରୁଅଛନ୍ତି । ଅର୍ଥାତ୍ କାନ୍ଥରେ ଥିବା ଚିତ୍ରନାରୀମାନଙ୍କୁ ଦେଖିଲେ ଦେବତାମାନେ ମୋହିତ ହୋଇଯାନ୍ତି । ଆଉ ବିଭାରେ ଭା ( କାନ୍ତି ) ତେଜରେ ସେ ସ୍ଥାନର ତମଚନ୍ଦ ( ଅନ୍ଧକାର ସମୂହ ) ଖଣ୍ଡିତ ହୋଇଅଛି ।୮।

୯ମ ପଦ—ରାମାଭିଷେକ ପାଇଁ ଯେଉଁ ବେଦିକା ସାର ନିର୍ମିତ ହୋଇଥିଲି ସେହି ବେଦିକାସାର ନିର୍ମଳଗୁଣରେ ଏବଂ ମନ୍ତ୍ରୀମାନଙ୍କ କୌଶଳର ନିର୍ମଳରେ ବିମ୍ବ ଦେଖାଇ ( ସେହି ବେଦିକାରେ ସମସ୍ତଙ୍କର ପ୍ରତିବିମ୍ବ ପଡ଼ଇ ) ତାକୁ ଦେଖିଲେ ଏ ଅବ୍‌ଜଜାତ ପୁର ( ବ୍ରହ୍ମାଙ୍କର ସ୍ଥାନ ) ବୋଲି ବଦନରେ ଭ୍ରମ ଜନ୍ମଇ ।୯।

୧୦ମ ପଦ—ସେହି ସମସ୍ତ ବର୍ଷାକାଳ ପ୍ରାପ୍ତ ହୋଇଅଛି, ବର୍ଷାକାଳରେ ଘନ ( ମେଘ ) ସେ ଭୂଭୃତ ( ପର୍ବତ ) ତାହାର ଶିର ( ଶିଖରେ ) ମଣ୍ଡନ ହୁଅଇ । ପୁଣି ସେହି ଘନରେ ଚଞ୍ଚଳା ( ବିଜୁଳୀ ) ରଞ୍ଜନ ହୋଇ ବିଜେ କରଇ ଆଉ ଭଦ୍ର ( ଭଦଭଦଳିଆ ପକ୍ଷୀ ) ସେମାନଙ୍କୁ ବହୁତ ଅଶନ ଗ୍ରାସ ମିଳଇ । ଏଠାରେ ଭୂଭୃତ ( ରାଜାମାନେ ) ସେମାନଙ୍କର ଶିରୋମଣ୍ଡନ ଯେ ରାମଚନ୍ଦ୍ର, ସେ ଘନପ୍ରାପ୍ତ ହେଲେ, ଭଦ୍ରାସନ ( ସିଂହାସନରେ ) ବିଜେ କଲେ ଆଉ ଚଞ୍ଚଳା ( ସୀତା ) ସେ ବିଜେକଲେ (ଶ୍ରୀରାମଚନ୍ଦ୍ରଙ୍କ କୋଳରେ ବସିଲେ ) ।୧୦।

ବିରାଜିତ ଶାରଙ୍ଗପତ୍ରିରେ ହୋଇଛନ୍ତି ।
ବେଗେ ଅମ୍ବର ପ୍ରକାଶ ଭରତ କରନ୍ତି ଯେ । ୧୧ ।
ବିଶଦ ଲକ୍ଷଣେ ଛତ୍ର ହୋଇଲା ଉଦୟ ।
ବାତଜାତ ପଦୃରେ ଧାପିତ ସେ ସମୟ ଯେ । ୧୨ ।
ବର୍ହିପ୍ରଭା ଶତ୍ରୁଘ୍ନ ଗ୍ରାମର ଚଳାଉଛି ।
ବିଖ୍ୟାତଣେ ଯୁକ୍ତ ଚନ୍ଦ୍ରହାସେ ହୋଇଅଛି ଯେ । ୧୩ ।
ବିଦ୍ୟପ୍ଲବଗ ବରହିପୁଚ୍ଛ ପ୍ରଚାଳନ ।
ବିଧିପୂର୍ବେ ସାର ଦଶେ ସକଳଭୁବନ ଯେ । ୧୪ ।

---

୧୧ଶ ପଦ—ରାମଚନ୍ଦ୍ର, ଶାରଙ୍ଗ ( ଧନୁ ) ପତ୍ରି ( ଶର ) ଏ ଦୁଇରେ ବିରାଜିତ ହୋଇଅଛନ୍ତି । ଭରତ ସାର ଅମ୍ବର ( ବସ୍ତ୍ର ) ଧରି ପ୍ରକାଶ କଲେ ( ଚାଳନ କଲେ ) । ୧୧ ।

୧୨ଶ ପଦ—ଲକ୍ଷ୍ମଣଙ୍କଠାରେ ବିଶଦଛତ୍ର ( ଶୁକ୍ଳଛତ୍ର ) ଉଦୟ ହେଲା ଅର୍ଥାତ୍ ଲକ୍ଷ୍ମଣ ଶୁକ୍ଳଛତ୍ର ରାମଚନ୍ଦ୍ରଙ୍କ ମସ୍ତକ ଉପରେ ଟେକିଲେ । ସେହି ସମୟରେ ( ଅଭିଷେକ-ସମୟରେ ) ବାତଜାତ ( ହନୁମାନ୍ ) ସେ ପଦରେ ଧାପିତ ( ପାଦସେବାରେ ନିଯୁକ୍ତ ହେଲେ ) । ୧୨ ।

୧୩ଶ ପଦ—ଶତ୍ରୁଘ୍ନ ସାର ବରହିପ୍ରଭାଚାମର (ମୟୂର ପୁଚ୍ଛ ଚାମରକୁ) ଚାଳିଲେ, ବିଖ୍ୟାତ ରାଜା ଚନ୍ଦ୍ରହାସ ଯେ ଖଡ୍ଗ ( ରାଜାମାନଙ୍କର ପାଟଖଣ୍ଡା ) ତାହାକୁ ଧରି ସେହିସ୍ଥାନରେ ରହିଲେ । ୧୩ ।

୧୪ଶ ପଦ—ସେହି ଅଭିଷେକ ସମୟ ଶରତ୍‌କାଳ ସଙ୍ଗେ ସମାନ ହୋଇଅଛି ! ଶରତ୍‌କାଳରେ ପ୍ଲବଗ ( ବେଙ୍ଗ ) ଆଉ, ବରହି ( ମୟୂରର ) ପୁଚ୍ଛଚାଳନ ବନ୍ଦ କରିବାରେ ସାର ଦଶଇ ଏବଂ ସମସ୍ତଙ୍କୁ ମୋହିତ କରାଇ, ଏଠାରେ ପ୍ଲବଗବର ( ସୁଗ୍ରୀବ ) ସେ ବରହି ପୁଚ୍ଛ ( ମୟୂର ପୁଚ୍ଛକୁ ) ଚାଳନ କଲେ, ବିଧିପୂର୍ବକରେ ( ବିଧାନରେ ) ସାର ( ଉତ୍ତମ ) ଦଶିବାରୁ ସମସ୍ତେ ମୋହିତ ହୋଇଗଲେ । ୧୪ ।

ବିଭ୍ରାଜିତ ବାରିଷ୍ଟଣ୍ଟି ତାରାଭିବ ଯହିଁ ।
ବିଶେଷିତ ଜ୍ୟୋତିର୍ବିଦ ଋକ୍ଷପତି ତହିଁ ଯେ । ୧୫ ।
ବିକସିତ କୁମୁଦାଦି ସୁମନ ରଭସେ ।
ବିମଳ ଅଗସ୍ତି ଭରଦ୍ୱାଜ ବାକ୍ୟ ଘୋଷେ ଯେ । ୧୬ ।
ବିହିତ ଏ ସ୍ୱରୂପକ ଶ୍ଳେଷରୀତି ପୁଣ ।
ବେଢ଼ି ସପ୍ତଋଷି ମିଳି କର୍ମର କାରଣ ଯେ । ୧୭ ।
ବର ବିଭୂତି ତପସ୍ୱି ଗଣେ କଲେ ଦାନ ।
ବିଟପୀ ରମ୍ଭା ସୁଷମା ଘଟ ବାରିପୂର୍ତ୍ତି ଯେ । ୧୮ ।

---

୧୫ଶ ପଦ—ଶରତ୍‌କାଳରେ ବାରିଷ୍ଟଣ୍ଟି (ଜଳଷ୍ଟର) ସେ ସବୁ ବିଭ୍ରାଜିତ ହୁଏ (ପ୍ରକାଶରେ ଜଣାଯାଏ) ଯହିଁ (ଯେଉଁ ସମୟରେ) ତାରା (ନକ୍ଷତ୍ରମାନେ) ଭିବ (ପ୍ରକାଶିତ) ହୁଅନ୍ତି । ଆଉ ବିଶେଷରେ ଋକ୍ଷପତି (ଚନ୍ଦ୍ର) ସେ ଜ୍ୟୋତିର୍ବିଦ (ନିର୍ମଳଜ୍ୟୋତି) ହୁଅନ୍ତି ଏଠାରେ ତାରାଭିବ (ଅଙ୍ଗଦ) ସେ ବାରିଷ୍ଟଣ୍ଟି ଯେନ ବିଭ୍ରାଜିତ (ପ୍ରକାଶିତ ହୋଇଥିଲେ) ଆଉ ବିଶେଷରେ ଋକ୍ଷପତି (ଜାମ୍ବୁବ) ଯେ ସେହିଠାରେ ଜ୍ୟୋତିର୍ବିଦ ହୋଇଅଛନ୍ତି । ୧୫ ।

୧୬ଶ ପଦ—ଶରତ୍କାଳରେ କୁମୁଦଆଦି ସୁମନ (ପୁଷ୍ପମାନେ) ରଭସେ (ବେଗରେ) ବିକସିତ ହୁଅନ୍ତି, ଆଉ ଅଗସ୍ତି ନକ୍ଷତ୍ର ବିମଳ (ନିର୍ମଳ) ହୁଅନ୍ତି ଏବଂ ଭରଦ୍ୱାଜ (ଭରଦ୍ୱାଜଆ ପକ୍ଷୀ) ଉତ୍ତମ ବାକ୍ୟକୁ ଘୋଷନ୍ତି (ସୁମଧୁର ସ୍ୱରରେ ବୋବାନ୍ତି) । ଏଠାରେ କୁମୁଦାଦି ବୀରମାନେ ସୁମନେ (ଉତ୍ତମ ମନରେ) ରଭସ (ବେଗରେ) ବିକସିତ (ହରଷିତ ହେଲେ) ଅଗସ୍ତି ଭରଦ୍ୱାଜ ଇତ୍ୟାଦି ମୁନିମାନେ ବିମଳ (ନିର୍ମଳରେ) ବାକ୍ୟ (ବେଦ ବାକ୍ୟକୁ) ଘୋଷିଲେ । ୧୬ ।

୧୭ଶ ପଦ—ଏହି ଗୀତ ସ୍ୱରୂପ ରୂପକ ଆଶ୍ଳେଷରେ ରଚିତ ହେଲା ଜାଣ, ସପ୍ତଋଷିମାନେ ବେଢ଼ି (ମିଳି) କର୍ମ (ଅଭିଷେକ କର୍ମ) ଆରମ୍ଭକଲେ ॥

୧୮ଶ ପଦ—ଅଭିଷେକ ଶ୍ଳେଷରେ ତପସ୍ୱିମାନଙ୍କୁ ରାମଚନ୍ଦ୍ର ବର ବିଭୂତି (ଅନେକ ସମ୍ପତ୍ତି) ଦାନ କଲେ, ବିଟପୀ ରମ୍ଭା (କଦଳୀଗଛ) ଏବଂ ଜଳପୂର୍ଣ୍ଣ ଘଟ ଏମାନଙ୍କର ସୁଷମା (ଶୋଭା) ସେ ପୂର୍ବ ରହିଥିଲା ।୧୮।

ବନ୍ଦମାସ୍ତ ଦ୍ୱୀପନାଥେ ପାଶେ ଅନୁସର ।
ବଶୁଦ୍ଧ ଲକ୍ଷଣ ଦାନ ହୋଇଛୁ ମାଧୁରୀ ଯେ   ୧୯ ।
ବଦ୍ୟମାନ ବଳଶୁଭେ ରସନାର ସ୍ୱନ ।
ବାରନାଶ୍ୱସାର ନୃତ୍ୟଗୀତର ବଧାନ ଯେ । ୨୦ ।
ବ୍ୟୋମ ଆଚ୍ଛାଦତ ଶୂରପ୍ରଭା ସାଧୁ ଗୃହୀ ।
ବୃଦ୍ଧି ସକଳ ଲୋକ ପ୍ରମୋଦ ଯହିଁ ହୋଇ ଯେ । ୨୧ ।
ବ୍ୟକ୍ତ ଗନ୍ଧର୍ବଗାୟକ ରସାଳେ ମାଧୁର୍ଯ୍ୟ ।
ବସନ୍ତ ମଙ୍ଗଳ ରାଗେ ଏକଭାବେ ଭଜ ଯେ । ୨୨ ।

---

୧୯ଶ ପଦ—ବନ୍ଦମାସ୍ତ (ପୂଜମାସ୍ତ) ଦ୍ୱୀପନାଥେ (ରାଜାମାନେ) ରାମଚନ୍ଦ୍ରଙ୍କ ପାଶେ ସେହିକାଳେ ଅନୁସର ଥିଲେ, ବଶୁଦ୍ଧ ଲକ୍ଷଣରୁ ଦାନ (ମଦଜଳକୁ ବହନ୍ତ) ଯେ ମତ୍ତହସ୍ତୀ ସେମାନଙ୍କ ଉପରେ ବସି ରାଜାମାନେ ରାମଚନ୍ଦ୍ରଙ୍କର ଅନୁଗାମୀ ହେଲେ । ୧୯ ।

୨୦ଶ ପଦ—ସେହି ସମୟରେ ରସନାର ସ୍ୱନ (ସ୍ତ୍ରୀମାନଙ୍କ ହୁଳହୁଳୀ-ଶବ୍ଦ) ନାନାବଧ ବାଦ୍ୟମାନଙ୍କ ନାଦକୁ ବଳ ଶୁଣାଗଲା, ଆଉ ସାର ବାର-ନାରୀ (ସାର ବେଶ୍ୟାମାନେ) ନୃତ୍ୟଗୀତ ବଧାନକୁ କଲେ । ୨୦ ।

୨୧ଶ ପଦ—ସେହି ସ୍ଥାନରେ ଥିବା ଶୂର (ବୀରମାନେ) ସେମାନଙ୍କ ପ୍ରଭା ବ୍ୟୋମ (ଆକାଶ) ତାକୁ ଆଚ୍ଛାଦନ କର ଦେଲ ଅର୍ଥାତ୍ ସେମାନଙ୍କ ବୀରପ୍ରତାପ ଆକାଶକୁ ଲାଗିଲା । ସେହି ସାଧୁ (ଉତ୍ତମରୂପେ) ଗୃହୀ ସମସ୍ତଙ୍କର ପ୍ରମୋଦ ଜନ୍ମିଲା ଅର୍ଥାତ୍ ଦେଖୁଥିବା ସମସ୍ତ ଲୋକେ ଆନନ୍ଦିତ ହେଲେ । ୨୧ ।

୨୨ଶ ପଦ—ଗନ୍ଧର୍ବଗାୟକମାନେ (ସଙ୍ଗୀତ ଗାୟକମାନେ) ରସାଳେ (ରସଯୁକ୍ତ) ମାଧୁର୍ଯ୍ୟ (ମନୋହରରେ) ବସନ୍ତ ମଙ୍ଗଳ ରାଗରେ ବ୍ୟକ୍ତ କଲେ (ଗାଇଲେ) ସମସ୍ତ ଗାୟକମାନେ ଏକଭାବରେ ସେହି ସ୍ଥାନକୁ ଭଜଲେ (ସମସ୍ତେ ଗାଇଲେ) । ୨୨ ।

ବ୍ରହ୍ମା ହରଂ ସ୍ତୁତ ଶ୍ରୁତିରଞ୍ଜନ ସ୍ବଭାବେ ।
ବନ୍ଦୀବଚନ ହୋଇଛି ସେକାଳ ଉତ୍ସବେ ଯେ । ୨୩ ।
ବହୁତନେତ୍ର ଆନନ୍ଦ ବିସ୍ତାର ଦର୍ଶନ ।
ବହୁତମୁଖରେ କୀର୍ତ୍ତି ଶେଷ ଅଭାଜନ ଯେ । ୨୪ ।
ବାଡ଼ବଜାତ ପ୍ରଭାବାସ୍ଥାନରେ ଭାବିତ ।
ବିଶ୍ବେ ସାର ରାମ କାମ ଦାନବାରି ସ୍ଥିତ ଯେ । ୨୫ ।

---

୨୩ଶ ପଦ—ସେହି ଅଭିଷେକ କାଳରେ ବ୍ରହ୍ମା, ହର ( ମହାଦେବ ) ସେ ଦୁହେଁ ଶ୍ରୁତିରଞ୍ଜନ ସ୍ବଭାବେ ( ବେଦବିହିତ ମାର୍ଗରେ ) ସ୍ତୁତି ରଚନା କଲେ, ସେହି ବେଦବିହିତ ବଚନ ସେହି ଉତ୍ସବକାଳରେ ବନ୍ଦୀବଚନ ( ଭାଟ କଏବାର ) କଲା ପ୍ରାୟ ହୋଇଲା । ୨୩ ।

୨୪ଶ ପଦ—ସେହି ଅଭିଷେକ ଉତ୍ସବ ଦର୍ଶନ କରି ( ଦେଖି ) ବହୁନେତ୍ର ( ଅନେକ ବ୍ୟକ୍ତିଙ୍କର ଚକ୍ଷୁ ) ସେ ଆନନ୍ଦିତ ହେଲେ । ଆଉ ବହୁତ ମୁଖରେ ( ଅନେକବ୍ୟକ୍ତିଙ୍କ ମୁଖରେ ) ସେହି ଅଭିଷେକ ସମୟର କୀର୍ତ୍ତି ଶେଷ ହୋଇ ନ ପାରିଲା, ଅର୍ଥାତ୍ କୀର୍ତ୍ତିବର୍ଣ୍ଣନାରେ କେହି ଭାଜନ ନୋହିଲେ । ପକ୍ଷାନ୍ତରେ ସେହି ଉତ୍ସବ ଦେଖିବାରେ ବହୁନେତ୍ର ( ସଦାଶିବ ) ତାଙ୍କର ଆନନ୍ଦ ବିସ୍ତାର ହେଲା, ଆଉ ବହୁମୁଖ ( ବ୍ରହ୍ମା ) ସେ ସେହି କୀର୍ତ୍ତିବର୍ଣ୍ଣନ କରିବାକୁ ଅଭାଜନ ହେଲେ । ୨୪ ।

୨୫ଶ ପଦ—ବାଡ଼ବଜାତ ଯେ ( ଅଶ୍ବିନୀକୁମାର ) ସେ ରାମଚନ୍ଦ୍ରଙ୍କ ଶୋଭା ଦେଖି ପ୍ରଭାବସ୍ଥାନରେ ଭାବିତ ( ଭାବନା କଲେ ) ଅର୍ଥାତ୍ ଅଶ୍ବିନୀକୁମାର ଶୋଭାରେ ରାମଚନ୍ଦ୍ରଙ୍କ ସମାନ କେହି ଭାବନା କରି କି ବିଶ୍ବ (ସଂସାରେ) ଏଥିରେ ଦାନବାରି ରାମ ( ରାମଚନ୍ଦ୍ର ) ସେ ସାରକାମ ( ନୂତନ କନ୍ଦର୍ପ ଅବତାର ) ହୋଇ ଅଛନ୍ତି ଅତଏବ ଏହାଙ୍କ ସମାନ କେହି ହୋଇ ପାରିବ ନାହିଁ । ୨୫ ।

ବସ୍ତାର ଏ ଗବେ ସ୍ତୁତ ବଧାତାକୁମର ।
ବ୍ରହ୍ମାଣ୍ଡଖଣ୍ଡରେ ଚକ୍ରବର୍ତ୍ତୀ ରଘୁଧର ଯେ । ୨୬ ।
ବସ୍ତୃରନ୍ତ ପୁଣ୍ୟଜନ ବରଶ୍ରୀ ଆଶ୍ରିତ ।
ବକ୍ଷେପକ ମେଘପୃଷ୍ଠ ସଧୀର ମରୁତ ଯେ । ୨୭ ।
ବବେକଜନ୍ମତ ଯେ ଯୋଗିରେ ଧର୍ମ ରାଜେ ।
ବସୁଧାରେ ସତ୍ୟ ଅବତାର ଏ ଉପୁଜେ ଯେ । ୨୮ ।
ବୈକୁଣ୍ଠ ଶ୍ରୀ କ ଏ ନବେଷ୍ଟେ ମାର୍କଣ୍ଡେୟ ଭଲେ ।
ବହ୍ୱଳ ମୁଁ ପୂର୍ବେ ଅବଧିରେ ଦେଖି ତୋଳେ ଯେ । ୨୯ ।

---

୨୬ଶ ପଦ—ଏହାବକୁ ବସ୍ତାର କର ବଧାତାକୁମର (ବଶିଷ୍ଠ) ସ୍ତୁତ କର କହିଲେ କ ଏହ ବ୍ରହ୍ମାଣ୍ଡଖଣ୍ଡ ମଧ୍ୟରେ ରଘୁଧର (ରାମଚନ୍ଦ୍ର) ସେ ଚକ୍ରବର୍ତ୍ତୀ ଅଟନ୍ତ । ୨୬ ।

୨୭ଶ ପଦ—ପୁଣ୍ୟଜନ (ସୁକୃତିଜନମାନେ) ତାହା ଦେଖି ବସ୍ତୃରନ୍ତ ଏହସ୍ଥାନ ଆଶ୍ରୟକର ବର (ଉତ୍କୃଷ୍ଟ) ଶ୍ରୀ (ଶୋଭା) ତହିଁରେ ରାଜତ (ବରାଜତ) ହୋଇଅଛନ୍ତ. ଆଉ ମରୁତ (ପବନ) ସେ ସଧୀରେ (ଧୀର ଧୀରେବହ) ମେଘପୃଷ୍ଠ (ଜଳକୁ) ବକ୍ଷେପ କରନ୍ତ ଅର୍ଥାତ୍ ମଙ୍ଗଳସୂଚକ କୁଶ ବନ୍ଦୁ ବୃଷ୍ଟି ପ୍ରାପ୍ତ ମନ୍ଦବାୟୁ ଯୋଗେ ଜଳ ପତନ ହୁଅଇ । ୨୭ ।

୨୮ଶ ପଦ—ଯୋଗିଜନମାନଙ୍କର ବବେକ ଏପରି ଜାତ ହେଲା କ ଏ ଧର୍ମ ବରାଜ ହୋଇଅଛନ୍ତ, ବସୁଧାରେ ଏ ସତ୍ୟ ଅବତାର ହୋଇ ଉପୁଜି ଅଛନ୍ତ (ଜନ୍ମି ଥିଲେନ୍ତ)। ୨୮ ।

୨୯ଶ ପଦ—ମାର୍କଣ୍ଡେୟ ମୁନ ତାହା ଦେଖି ଭାଳଲେ ଏ ନବେଷ୍ଟେ ବୈକୁଣ୍ଠ-ଶ୍ରୀ ହେବେ ଅର୍ଥାତ୍ ଏହ ରାମଙ୍କେ, ବୈକୁଣ୍ଠ (ବଷ୍ଣୁ) ପ୍ରୀତା ଯେ ଶ୍ରୀ (ଲକ୍ଷ୍ମୀ) ବରାଜଛନ୍ତ, ମୁଁ ପୂର୍ବେ (ମାଲ୍ୟବନ୍ତ ପର୍ବତ ଉପରେ) ବୁଲୁଥିବା ସମୟରେ ଏହାଙ୍କୁ ଅବଧିରେ (ଚକ୍ଷୁରେ) ଦେଖି ବହ୍ୱଳ ହୋଇଥିଲ ଅର୍ଥାତ୍ ଚହ୍ନିପାର ନ ଥିଲି । ୨୯ ।

ବର୍ତ୍ତମାନ ଧନ୍ୟ ଦେଖି ଅପୂର୍ବ ଉତ୍ସବ।
ବଢ଼ାଇ ଏ ତୋଷସିନ୍ଧି ଭବିଷ୍ୟେ ନୋହିବ ଯେ । ୩୦ ।
ବନ୍ଧାପନାବଧି ଶେଷ ଅଗୋଚର ଦ୍ରବ୍ୟେ ।
ବାସବର ପୁରସ୍କାର ଲଭି ତହିଁ ସର୍ବେ ଯେ । ୩୧ ।
ବସନ୍ତ ଯେ ସୁମନା-ନାଗର-ଗତି-ହେଲ ।
ବିଚିତ୍ରପ୍ରତିମା ହୋଇ ଈକ୍ଷଣେ ରହିଲ ଯେ । ୩୨ ।
ବଲ୍ମୀକରୁ ଜ୍ୟୋତି ଜାତ ସତ ଏ ପୁରାଣେ ।
ବିକାଶକ ହୃଦୟ-ପୁଷ୍କରେ କ୍ଷଣେକ୍ଷଣେ ଯେ । ୩୩ ।

---

୩୦ଶ ପଦ—ବର୍ତ୍ତମାନରେ ଏହି ଅପୂର୍ବ ଉତ୍ସବକୁ ( ଅଭିଷେକ ଯାତ୍ରା ) ଦେଖି ଧନ୍ୟହେଲ ଏହି ଦର୍ଶନ ମୋହର ଯେଉଁ ତୋଷ ସିନ୍ଧୁକି ବଢ଼ାଉଅଛି ଏପର ଭବିଷ୍ୟତରେ ଆଉ ହେବ ନାହିଁ । ୩୦ ।

୩୧ଶ ପଦ—ଅଗୋଚର ଦ୍ରବ୍ୟମାନଙ୍କରେ ( ବହୁମୂଲ୍ୟ ଓ ଅଦର୍ଶନୀୟ ଦ୍ରବ୍ୟମାନଙ୍କରେ ) ବନ୍ଧାପନା ବିଧି ଶେଷ ହେଲା, ତହିଁ ( ସେହିଠାରେ ) ସର୍ବେ ( ସମସ୍ତେ ) ବାସବର ( ଉତ୍ତମ ବସ୍ତ୍ର ପୁରସ୍କାର ମାନଙ୍କୁ ) ଲଭିଲେ ( ପାଇଲେ ) । ୩୧ ।

୩୨ଶ ପଦ—ବସନ୍ତ ( ଅଯୋଧ୍ୟାପୁର ) ଯେ ସୁମନା ( ସ୍ତ୍ରୀମାନେ ) ସେମାନଙ୍କର ଗତିକୁ ମୋହିବା ପାଇଁ ନାଗର ( ସୁରସିକ-ରୂପିପୁରୁଷ ) ହେଲ, ବିଚିତ୍ରପ୍ରତିମା ( ମନୋହର ରୂପକୁ ) ବହୁ ସ୍ତ୍ରୀମାନଙ୍କ ଈକ୍ଷଣେ ( ଚକ୍ଷୁରେ ) ରହିଲା । ୩୨ ।

୩୩ଶ ପଦ—ବଲ୍ମୀକ ( ବାଲ୍ମିକୀଙ୍କ ) ଠାରୁ ଯେପରି ଜ୍ୟୋତି ( ଇନ୍ଦ୍ରଧନୁ ) ଜାତ ହୁଅଇ ଏହା ସତ ବୋଲି ପୁରାଣରେ କହନ୍ତି, ସେହିପରି ରାମଚନ୍ଦ୍ରଙ୍କ ଅଙ୍ଗରୁ ଶୋଭା ଜନ୍ମି ସେମାନଙ୍କ ହୃଦୟ ଯେ ପୁଷ୍କର ( ଆକାଶ ) ହେଲ ତହିଁରେ କ୍ଷଣେ କ୍ଷଣେ ବିକାଶକୁ ବହିଲା । ୩୩ ।

ବାଞ୍ଛାପୂର୍ଣ୍ଣ ଚତୁର୍ବର୍ଗରେ ପ୍ରଭୁ କଲେ ।
ବିଧାନ କମଳା ସାର ପାକେ ଭୋଜ୍ୟ ଦେଲେ ଯେ ।୩୪।
ବିଧୁ ସିନ୍ଧୁ ସ୍ୱର୍ଗପ୍ରାୟ ସେ ଅମୃତାକାର ।
ବାମା ଗଜରାଜ କି ସଂଯୋଗ କଟକର ଯେ ।୩୫।
ବାଳସୂର୍ଯ୍ୟ ଯୁବାଗାୟକ କି ରାଗଯୁକ୍ତ ।
ବୈଶାଖ ପୁଷ୍ପ କନ୍ଦର୍ପ କି ମଧୁରେ ଯୁକ୍ତ ଯେ ।୩୬।

---

୩୪ଶ ପଦ—ପ୍ରଭୁ ( ରାମଚନ୍ଦ୍ର ) ସେ ସମସ୍ତଙ୍କର ଚତୁର୍ବର୍ଗପୂର୍ଣ୍ଣ କଲେ ( ଯେ ଯାହା ବାଞ୍ଛା କଲ ତାକୁ ତାହା ଦେଲେ ) କମଳା ( ଲକ୍ଷ୍ମୀ ) ସୀତା ଯେ ସାରପାକ ( ଉତ୍ତମପାକ ) ପ୍ରସ୍ତୁତକରି ସମସ୍ତଙ୍କୁ ଭୋଜନ ଦେଲେ । ୩୪ ।

୩୫ଶ ପଦ—ସେହି ଖାଦ୍ୟପଦାର୍ଥସବୁ ଅମୃତର ଆକର ( ସମୁଦ୍ର ) ହୋଇଥିବାରୁ ବିଧୁ ( ଚନ୍ଦ୍ର ) ସିନ୍ଧୁ ( ସମୁଦ୍ର ) ସ୍ୱର୍ଗ ( ଦେବଭୁବନପ୍ରାୟ ) ହୋଇଥିଲା । ପୁନରପି ସେହି ଖାଦ୍ୟସବୁ କଟକ ( କବଚରେ ) ଯୁକ୍ତ ହେବାରୁ ବାମା ( ଗଜରାଜ ) ଏଥିରେ ସଂଯୋଗହେଲା କି ବାମା ଯେଉଁ ସ୍ତ୍ରୀ ସେ କଟକ ( ବଳୟ ) ତହିଁରେ ଯୁକ୍ତ ହୋଇଥାନ୍ତି ଗଜରାଜ ( ଗଜଶ୍ରେଷ୍ଠ ) ସେ କଟକ ( ଦନ୍ତଭୂଷିତ ) ବଳୟରେ ଯୁକ୍ତ ହୋଇଥାନ୍ତି । ୩୫ ।

୩୬ଶ ପଦ—ସେହିଖାଦ୍ୟ ରାଗ ( କଟୁରସ ) ତହିଁରେ ଯୁକ୍ତ ହୋଇଥିବାରୁ ବାଳସୂର୍ଯ୍ୟ, ଯୁବା-ଓ ଗାୟକ ଏମାନଙ୍କ ସମାନ ହୋଇଅଛି, ଅର୍ଥାତ୍ ବାଳସୂର୍ଯ୍ୟ ରାଗ ( ରକ୍ତିମା ଗୁଣ ) ଯୁବାରାଗ ( ସ୍ନେହଗୁଣ ) ଗାୟକ ରାଗ ( ଗାନବିଶେଷ ରାଗ ) ଏମାନଙ୍କରେ ଯୁକ୍ତ ହୋଇଥାନ୍ତି । ପୁଣ ସେହି ଖାଦ୍ୟ ମଧୁରେ ( ମଧୁରଗୁଣରେ ) ଯୁକ୍ତ ହୋଇଥିବାରୁ ବୈଶାଖ, ପୁଷ୍ପ ଓ କନ୍ଦର୍ପ ଏ ତିନିଙ୍କର ସମାନ ହୋଇଅଛି, ଅର୍ଥାତ୍ ବୈଶାଖ ମଧୁ ( ଚୈତ୍ର ) ପୁଷ୍ପ ମଧୁ ( ମକରନ୍ଦ ) କନ୍ଦର୍ପ ମଧୁ ( ବସନ୍ତ ) ଏମାନଙ୍କରେ ଯୁକ୍ତ ହୋଇଥାନ୍ତି । ଇତ୍ୟାଦିରୂପେ ଭୋଜନାଦି ପଦାର୍ଥମାନଙ୍କୁ ବର୍ଣ୍ଣନ କଲେ । ୩୬ ।

ବାଚକ ହୋଇଲ ସୁଧା ଅଶନ ଭାବତ ।
ବିଶ୍ୱ ଘନ କମଳ ସାରଙ୍ଗ ପ୍ରାପ୍ତେ ଚିତ୍ତ ଯେ ।୩୭।
ବହୁରୂପା ନଳିନୀ ତାର ପାଦରେ ସୀତା ।
ବିକାଶିତ ରୂପରେ ସେ ସମସ୍ତ ତୋଷିତା ଯେ ।୩୮।
ବିରସ ରାମ ଆଜ୍ଞାରେ ସେଭାବ ସମ୍ମତ ।
ବାହୁଡ଼ି ଯୋଗୀ ହୋଇଲେ ସ୍ୱପୁରେ ସମସ୍ତେ ଯେ ।୩୯।
ବାସର ନିଶାରେ ମଧୁସୂଦନ ସହଜେ ।
ବିଶ୍ୱଧାତ୍ରୀଜାତ ପଦ୍ମବାସୀରସେ ମଜ୍ଜେ ଯେ ।୪୦।
ବୈଦେହୀଶ ବିଳାସ ଏ ଗୀତ ମନୋରମେ ।
ବାଣଚ୍ଛନ୍ଦେ ଶେଷ ଆଦ୍ୟ ବକାରେ ନିୟମ ଯେ ।୪୧।

---

୩୭ଶ ପଦ—"ମନୁଷ୍ୟମାନେ" ସୁଧା ( ଅମୃତ ) ଅଶନ ( ଭୋଜନ ) କରି ସାରଙ୍ଗ ( ଚାତକପକ୍ଷୀ ) ଘନକମଳ ( ମେଘଜଳ ) ପାଇ ଆନନ୍ଦ ହେଲ ପରି ବିଶ୍ୱଚିତ୍ତ ( ସମସ୍ତଙ୍କର ମନ ) ବାଚକ ହୋଇଲା ( ଆନନ୍ଦରେ ପୂର୍ଣ୍ଣହେଲା ) । ୩୭ ।

୩୮ଶ ପଦ—ବହୁରୂପା ( ନାନାଳଂକାର ଭୂଷିତା ) ନଳିନୀ (ପଦ୍ମିନୀ) ସୀତାଙ୍କର ପାଦରେ ସମସ୍ତେ ସନ୍ତୁଷ୍ଟ ହେଲେ । ୩୮ ।

୩୯ଶ ପଦ—ବିରସ ( ଅତିଶୟରସ ) ରାମଙ୍କର ଆଜ୍ଞାରେ ( ଆଦେଶପାଇ ) ସମ୍ମତେ (ସମ୍ମତି କ୍ରମେ) ସମସ୍ତେ (ସକଳଲୋକମାନେ) ଏବଂ ଯୋଗୀ ( ମୁନିମାନେ ( ନିଜ ନିଜ ପୁରକୁ ବାହୁଡ଼ି ( ବାହୁଡ଼ିଲେ ) । ୩୯ ।

୪୦ଶ ପଦ—ମଧୁସୂଦନ ( ରାମ ) ବାସର ନିଶାରେ ( ଉତ୍କଣ୍ଠିତ ) ବିଶ୍ୱଧାତ୍ରୀଜାତା ( ସୀତାଙ୍କ ) ସଙ୍ଗରେ ପରମାନନ୍ଦରେ ନିମଜ୍ଜିଲେ । ୪୦ ।

୪୧ଶ ପଦ—ଏହି ବୈଦେହୀଶ ବିଳାସ ମନୋହର ଗୀତ ଅଟେ, ଏ ଆଦ୍ୟ ବକାର ନିୟମରେ ରଚିତ ହୋଇ ବାଆନ ଛନ୍ଦରେ ଶେଷହେଲା । ୪୧ ।

ବାଲ୍ମୀକସଦନେ ଯାଇଁ ଜାନକୀ ରହିବା ।
ବଧ ଲବଣର କୁଶ ଲବ ଜନ୍ମ ହେବା ଯେ ।୪୨।
ବରଚିବା ଯାଗ ରାମସୁତ ଗୀତ ଗାନ ।
ବୈଦେହୀ ଆଣିମା ପୁଣି ପାତାଳେ ଗମନ ଯେ ।୪୩।
ବିଧୁର ହେବା ଲକ୍ଷ୍ମଣ ରାମ ମାତଙ୍ଗ୍ରାତ ।
ବହ୍ନିରେ ପଶିବା ଘେନି ସ୍ୱାମିର ସଙ୍କେତ ଯେ ।୪୪।
ବସୁଧାଭୃତ କରଣ ଲବ କୁଶ ବେନି ।
ବୈକୁଣ୍ଠ ଗମିବା ରାମ ସ୍ୱଜନଙ୍କୁ ଘେନି ଯେ ।୪୫।
ବିଭଙ୍ଗ ରସ ଦିବାଲଣ ନ ବର୍ଣ୍ଣିଲ ଏତେ ।
ବୁଧ ବୋଲନ୍ତି ଏହା ଦୋଷ ଛାନ୍ଦଗୀତେ ଯେ ।୪୬।
ବଉଦ୍ରବଂଶେ ଉଦ୍ଭବ ନୃପ ଧନଞ୍ଜୟ ।
ବଶିଷ୍ଟେ ଘୁମୁସର ଅଧିପ ଗୁଣାଳୟ ଯେ ।୪୭।

---

୪୨—୪୬ଶ ପଦ—ବାଲ୍ମୀକ ଆଶ୍ରମରେ ଯାଇଁ ସୀତାଙ୍କର ଅବସ୍ଥାନ, ଲବଣ ଦୈତ୍ୟର ବଧ, କୁଶ ଲବଙ୍କର ଜନ୍ମ, ରାମଙ୍କର ଅଶ୍ୱମେଧ ଯାଗ ବରଚିବା, ରାମ ସୁତ (ଲବକୁଶଙ୍କର) ଗୀତି (ରାମାୟଣ) ଗାନ କରିବା, ବୈଦେହୀଙ୍କ ଫେରାଇ ଆଣିବା, ପୁଣି ତାଙ୍କର ପାତାଳଯାତ୍ରା, ରାମଙ୍କ ସଙ୍ଗେ ଲକ୍ଷ୍ମଣଙ୍କର ବିଚ୍ଛେଦ ହେବା, କୌଶଲ୍ୟାଦି ମାତାମାନଙ୍କର ବହ୍ନି ପ୍ରବେଶ ଏବଂ ଲବକୁଶଙ୍କ ଅଭିଷେକ ରାମ ସ୍ୱଜନଙ୍କୁ ଘେନି ବୈକୁଣ୍ଠ ଗାମୀ ହେବା ଇତ୍ୟାଦି ବିଷୟ ବିଭଙ୍ଗ ରସ ହେଲେ ବର୍ଣ୍ଣନା କଲୁ ନାହିଁ । ଏ ବିଷୟ ବର୍ଣ୍ଣନାକୁ ପଣ୍ଡିତମାନେ ଛାନ୍ଦ ଗୀତରେ ଦୋଷାବହ ବୋଲି କହି ଅଛନ୍ତି । ୪୨—୪୬ ।

୪୭ଶ ପଦ—ବଉଦ୍ର (ମୟୂର) ବଂଶେ ଉଦ୍ଭବ ଅର୍ଥାତ୍ ଭଞ୍ଜ ବଂଶରେ ଜାତ ରାଜା ଧନଞ୍ଜୟ, ବଶିଷ୍ଟ ଗୁଣଶାଳୀ ହୋଇ ଘୁମୁସର ରାଜ୍ୟରେ ରାଜା ହୋଇଥିଲେ । ୪୭ ।

ବେଦ ଅର୍ଥେ ସେ କବି ଗଣେଶ ବୋଲି ଜାଣ ।
ବନ୍ଦନ ତଦ୍‌ବ୍ରତ ତାଙ୍କ ନନ୍ଦନ ପ୍ରମାଣ ଯେ ।୪୮।
ବସୁଧାପତି ଯେ ନୀଳକଣ୍ଠ ନାମେ ଖ୍ୟାତ ।
ବିଧାନରେ ମୁହିଁ ତାହାଙ୍କର ଜ୍ୟେଷ୍ଠସୁତ ଯେ ।୪୯।
ବୀରବର ପଦ ଉପେନ୍ଦ୍ର ମୋର ନାମ ।
ବାରେବାରେ ସେବାରେ ମନାଇଁ ସୀତା ରାମ ଯେ ।୫୦।
ବିଶ୍ୱାସ କବିତ୍ୱମାର୍ଗେ ପ୍ରକାଶିଲା ବୁଦ୍ଧି ।
ବିରଚିଲି ରାମାୟଣ ଏ ମୋ ବଡ଼ ସିଦ୍ଧି ଯେ ।୫୧।
ବିଦ୍ୱାନପଦରେ ଆଦରେ କଲି ଛାନ୍ଦ ଭ୍ରାନ୍ତି ।
ବୁଧେ ସରସ କର୍କଶେ ରସାଳ ଏ ମତ ଯେ ।୫୨।

ସମ୍ପୂର୍ଣ୍ଣ

—※—

୪୮—୪୯ଶ ପଦ—ସେ ରାଜା ଗଣେଶଙ୍କ ପରି କବି ହୋଇଥିଲେ, ତାଙ୍କର ପୁତ୍ର ମୁଖ ବେହୁପରି ବନ୍ଦନାକୁ ନିହ୍ନ ରଖିଥିଲେ । ତାଙ୍କର ନାମ ନୀଳକଣ୍ଠ ମୁହିଁ ତାଙ୍କର ଜ୍ୟେଷ୍ଠପୁତ୍ର ଅଟେ । ୪୮—୪୯ ।

୫୦—୫୧ଶ ପଦ—ମୋର ନାମ ବୀରବର ଉପେନ୍ଦ୍ର ବୋଲି ଖ୍ୟାତ, ସୀତା ରାମଙ୍କ ସେବା କରି ଆଶ୍ଚର୍ଯ୍ୟ କବିତା ମାର୍ଗରେ ମୋର ବୁଦ୍ଧି ପ୍ରକାଶିଲା, ତେଣୁ ଏ ରାମାୟଣ ବିରଚନା କଲି । ୫୦—୫୧ ।

୫୨ଶ ପଦ—ଆଦର ସହକାରେ ଭ୍ରାନ୍ତି ନ କରି ଏ ଛାନ୍ଦକୁ ରଚନା କଲି, ପଣ୍ଡିତମାନେ ଏହାକୁ ରସାଳ ( ଆମ୍ବ ) ଫଳ ପରି କଠିନ ଓ ରସପୂର୍ଣ୍ଣ ଅର୍ଥାତ୍ ଯେପରି କଠିନ ସେପରି ସରସ, ମନେ କରନ୍ତୁ । ୫୨ ।

ସମ୍ପୂର୍ଣ୍ଣ

—ଃ୦ଃ—

ମୁଦ୍ରାକର—ଶ୍ରୀ ଲକ୍ଷ୍ମୀଧର ଦାସ, ଦୁର୍ଗାପ୍ରେସ, ଖଟବିନ୍‌ସାହି, କଟକ-୧

ମଲାଟପୃଷ୍ଠ ମୁଦ୍ରଣ : ମନମୋହନ ପ୍ରେସ କଟକ-୨